# KOTI BRAHMANDA SUNDARI

BY

## KABIBARA UPENDRA BHANJ

**A Famous Poet**

IN

**Oriya Language.**

ଓଡ଼ିଆ—ଭାଷା—ଶେଖର

କବିବର

ଉପେନ୍ଦ୍ରଭଞ୍ଜ କୃତ.

# କୋଟି ବ୍ରହ୍ମାଣ୍ଡସୁନ୍ଦରୀ ।

(ସଚିତ୍ର)

ଅଧୁନା ଶ୍ରୀ ହରେକୃଷ୍ଣ ଦାଶଙ୍କ କର୍ତ୍ତୃକ
ସୁଖବୋଧଟୀକା ସହିତ ପ୍ରକାଶିତ ।

ପ୍ରଥମ ସଂସ୍କରଣ

Printed by H. K. Das,
Chandrodaya Press,
CUTTACK.

**1933.**

ମୂଲ୍ୟ ୪ [redacted]ଙ୍କା ମାତ୍ର ।

# ଭୂମିକା ।



ଉତ୍କଳ ଭାଷା-ଶଙ୍କର କବିବର ଉପେନ୍ଦ୍ର ଭଞ୍ଜ ଓଡ଼ ଅନେକ ପଦ୍ୟ ଗ୍ରନ୍ଥ ରଚନା କରିଅଛନ୍ତି । ତନ୍ମଧ୍ୟରେ କୋ ସୁନ୍ଦରୀ ଖଣ୍ଡିଏ ଉତ୍କୃଷ୍ଟ ଗ୍ରନ୍ଥ । ଏ ପୁସ୍ତକଖଣ୍ଡି ଉତ୍କଳର ପ୍ରାୟ ପରିଚିତ । ମାତ୍ର ତାହାର ସରଳ ଓ ବିସ୍ତୃତ ଟୀକା ଅଭାବରୁ ଏହାର ସରସତା ଉପଲବ୍ଧି କରିପାରନ୍ତି ନାହିଁ । ଏଥିରେ ପ୍ର ପଦର ସରଳାର୍ଥ ଓ କଠିନ ଶବ୍ଦର ଅର୍ଥ ମଧ୍ୟ ଦିଆ ଯାଇଅଛି । କଳେବର ଅତ୍ୟନ୍ତ ବୃଦ୍ଧି ପାଇବ ଓ ତତ୍ସଙ୍ଗେ ମୂଲ୍ୟ ମଧ୍ୟ ହେବ ଭାବି, ଏହାର ଅର୍ଥଗୁଡ଼ିକ ଶ୍ରେଷ୍ଠ ଅକ୍ଷରରେ ଦିଆଯା ଆଶାକରୁ ଏହା ସାଧାରଣଙ୍କର କ୍ରୟ କରିବା ପକ୍ଷେ ସହଜସାଧ୍ୟ

ପୁସ୍ତକରେ ସର୍ବତ୍ର କବିଙ୍କର ଭାବରକ୍ଷା କରିବାକୁ ଯଥା ଚେଷ୍ଟା କରାଯାଇଅଛି । ପାଠକବର୍ଗ କବିଙ୍କର ହୃଦୟ କିୟଦଂଶରେ ହୃଦୟଙ୍ଗମ କଲେ ଶ୍ରମ ସଫଳ ଜ୍ଞାନ କରିବୁ ।

ବାଲୁବଜାର, କଟକ ।
ତା ୧୫।୨।୩୩



ବଶମ୍ବଦ
ଶ୍ରୀ ହରେକୃଷ୍ଣ ଦାଶ,
ଚନ୍ଦ୍ରୋଦୟ ପ୍ରେସର ପ୍ରୋପ

ଏହି

# ଉପହାର

ଶ୍ରୀ .................. ଙ୍କ

କରକମଳରେ

ସ୍ନେହସ୍ୱରୂପ

ଅର୍ପିତ

ହେଲା ।

ତା ........................ } ଶ୍ରୀ .......... .........

## ( ସୂଚୀପତ୍ର )

# କୋଟିବ୍ରହ୍ମାଣ୍ଡସୁନ୍ଦରୀ ।

## ପ୍ରଥମ ଛାନ୍ଦ ।

ରାଗ ମଙ୍ଗଳଗୁଜ୍ଜରୀ ।

( ପୁରୁଷୋତ୍ତମ କ୍ଷେତ୍ର ବର୍ଣ୍ଣନା )

ଶୁଣ କୋବିଦେ ଭରତଖଣ୍ଡେ ପୁଣ୍ୟଧାମ ।
ଯେଣୁ ନାରାୟଣଦେହ ତେଣୁ ସେହି ନାମ ହେ ।୧।
୧ଗୀର୍ବାଣମତେ ୨ନିର୍ବାଣ ୩ସାରୂପ୍ୟକୁ ଦେଇ ।
ସାକ୍ଷୀ ପକ୍ଷୀ କରନ୍ତି ପ୍ରତିମାରୂପେ ଥାଇ ଯେ ।୨।
ଯେ ବ୍ରହ୍ମହତ୍ୟା-ପାତକ-ନିପାତକ ମନ୍ତ୍ରୀ ।
କପାଳମୋଚନ ତ୍ରିଲୋଚନ ସାକ୍ଷୀ ଯହିଁ ହେ ।୩।
ଆସି କାଶୀଶ୍ୱର ବାସ କଲେ ଏହା ଜାଣି ।
ଅନ୍ୟ କ୍ଷେତ୍ର ସମସ୍ତଙ୍କ ଏ ମସ୍ତକମଣି ହେ ।୪।
ଏଣୁ କ୍ଷେତ୍ର-ନରେନ୍ଦ୍ର ପଦତ ସମ୍ଭାବିତ ।
ବିନାଶେ ଭୁଜଙ୍ଗ-ଦୋଷ ତାକୁ କେତେ ମୁକ୍ତି ହେ ।୫।

---

୧—ଅହେ କୋବିଦମାନେ ଶୁଣ, ଭାରତ ବର୍ଷରେ ଗୋଟିଏ ପବିତ୍ର କ୍ଷେତ୍ର ଅଛି । ନାରାୟଣ (ପୁରୁଷୋତ୍ତମ) ଯେହେତୁ ଏଠାରେ ଦେହ ଧାରଣ କରି ରହିଅଛନ୍ତି, ସେହି ହେତୁରୁ କ୍ଷେତ୍ରର ସେହି ପୁରୁଷୋତ୍ତମ ନାମ ହୋଇଅଛି ।

୨—ଏହି କ୍ଷେତ୍ର ସାରୂପ୍ୟ ମୁକ୍ତି ଦାନ କରିପାରେ । ଦେଖ ଭୁଷଣ୍ଡିକାକ ଦେବତାପରି ହୋଇ ସାକ୍ଷୀ ରହିଅଛି । ରୋହିଣୀ କୁଣ୍ଡରେ ତାହାର ପ୍ରତିମା ଥାଇ ସାକ୍ଷୀ ଅଛି ଓ ଲୋକେ ପୂଜା କରୁଅଛନ୍ତି । ୧ଗୀର୍ବାଣ, ଦେବତା । ୨ନିର୍ବାଣ, ମୁକ୍ତି । ୩ସାର୍ଷ୍ଟ୍ୟ, ସାଲୋକ୍ୟ, ସାରୂପ୍ୟ, ସାଯୁଜ୍ୟ ଭେଦରେ ଚାରିପ୍ରକାର ମୁକ୍ତି ଅଟେ ।

୩—ଏହି ଭୂମି ବ୍ରହ୍ମହତ୍ୟା ମୋଚନ କରିପାରେ କାରଣ ପୂର୍ବକାଳରେ ମହାଦେବ ଏକ ବ୍ରାହ୍ମଣକୁ ହତ୍ୟା କରିଥିବାରୁ ବ୍ରାହ୍ମଣ ମସ୍ତକ ତାଙ୍କ ହସ୍ତରେ ଲାଗିରହିଥିଲା କିନ୍ତୁ ଏହି ପୁରୁଷୋତ୍ତମ କ୍ଷେତ୍ରକୁ ଆସିବାରୁ ତାହା ଖସି ପଡ଼ିଲା ଓ ସେ ବ୍ରହ୍ମହତ୍ୟାରୁ ମୁକ୍ତ ହୋଇ ଏଠାରେ ସାକ୍ଷୀସ୍ୱରୂପ ରହିଅଛନ୍ତି । ଅତଏବ ଏ ମହାଦେବଙ୍କର ନାମ କପାଳ ମୋଚନ ହୋଇଅଛି ।

୪—କାଶୀଶ୍ୱର ବିଶ୍ୱନାଥ କ୍ଷେତ୍ରର ଏହିସବୁ ମାହାତ୍ମ୍ୟ ଜାଣି ଏଠାରେ ଆସି ବାସକରିଅଛନ୍ତି । ଅତଏବ ଏ କ୍ଷେତ୍ର ଅନ୍ୟ ସମସ୍ତ କ୍ଷେତ୍ରମାନଙ୍କ ମଧ୍ୟରେ ମସ୍ତକମଣି ଅଟେ ।

୫—ଏଣୁ ଏହି କ୍ଷେତ୍ରକୁ କ୍ଷେତ୍ରରାଜ କହିବା ଉଚିତ କାରଣ ଯେପରି ନରେନ୍ଦ୍ର (ବିଷବୈଦ୍ୟ) ସର୍ପଦୋଷ ନଷ୍ଟ କରେ ସେହିପରି ଏହି କ୍ଷେତ୍ର ପାପ ରୂପ ନଷ୍ଟ କରେ ଓ ମଧ୍ୟ ପାପକୁ ବୈଦ୍ୟତୁଲ୍ୟ ଅଟେ ।

ଅବିଦ୍ୟା-ବିଷମ-ଅଶୀବିଷଘାତୀ ଜନେ ।
ଜ୍ଞାନାଜ୍ଞାନେ ପରାଧୀନେ ସେ ସ୍ଥାନ ଗମନେ ହେ । ୬ ॥
ଶ୍ରୀମହାପ୍ରସାଦ ଗଦ ପଦ ଘଣ୍ଟଘୋଷ ।
ଭକ୍ଷଣେ ଶ୍ରବଣେ ଯେ କଲ୍ମିଷ-ବିଷ ନାଶ କ୍ରିହେ ।୭।
ଉନ୍ନତ ପ୍ରାସାଦରାଜ ପତାକା ଉଡ଼ାଇ ।
ଏ ପ୍ରଦେଶେ ସମବର୍ତ୍ତୀପଣ ନାହିଁ ନାହିଁ ହେ ।୮।
ବଟରାଜା ଶାଖା ଯେଣୁ ନିଗମ ସାକ୍ଷାତ ।
ପାପ-ତାପ-ପଶୁ ନାଶ ସୁକର୍ମ ଉଦ୍ଧତ ଯେ । ୯ ।
ସେ ୧ଦୁର୍ଗ-ପରିଖା ତୀର୍ଥରାଜ ଗର୍ଜନରେ ।
କହେ ୨ଅବଗାହେ ପାପବ୍ୟୂହ ଦହ କରେ ହେ ।୧୦।
ଦହି ସବୁ ବାଡବରେ ଦେବ ଏ ପକାଇ ।
ଏ ଦରବଶରୁ ଦୂରୁ ଦୁରିତ ପଳାଇ ହେ । ୧୧ ।
ସେ କମ୍ବୁକଣ୍ଠଙ୍କ ରାଜା ନାମ ଜଗନ୍ନାଥ ।
ଗୂଢ଼ବର୍ଣ୍ଣେ ଚଉବର୍ଗ ଦେବାକୁ ସମର୍ଥ ହେ । ୧୨ ।
ଭକ୍ତି ଦେବା ଗୁପ୍ତ ହୋଇଅଛି ଯୁକ୍ତାକ୍ଷରେ ।
ବୈଷ୍ଣବ ବିହୀନେ କେବା ଜାଣିବ ସଂସାରେ ହେ ।୧୩।

---

୬ — ଉପ୍ରକର ଅଜ୍ଞାନରୂପ ସର୍ପ କାମୁଡ଼ିଥିବା ଲୋକ ସେ ସ୍ଥାନକୁ ଯିବାଦ୍ୱାରା ଅଜ୍ଞାନର ଅଧୀନ ଓ ଜ୍ଞାନର ପରାଧୀନ ହୋଇଥାଏ ।

୭ — ଶ୍ରୀମହାପ୍ରସାଦ ଔଷଧ ସ୍ୱରୂପ ଓ ଘଣ୍ଟାର ଶବ୍ଦ ଗାରୁଡ଼ିମନ୍ତ୍ରସ୍ୱରୂପ କଳିବିଷ (ପାପ)ର ବେଗକୁ ଶାନ୍ତ କରି ନଷ୍ଟ କରେ ।

୮ — ଏହି ପ୍ରଦେଶରେ ପ୍ରାସାଦ ରାଜ (ବଡ଼ଦେଉଳ)ର ପତାକା ଉଡ଼ୁଥିବାରୁ ଏ ଦେଶରେ ଯମରାଜାଙ୍କର ଚକ୍ରବର୍ତ୍ତୀପଣ ନାହିଁ ।

୯ — ଏହି କ୍ଷେତ୍ରରେ କଳ୍ପବଟ ଥିବାରୁ ଓ ତାହାର ଶାଖାମାନ ବେଦର ପ୍ରକରଣ ସ୍ୱରୂପବ୍ୟାପି ଥିବାରୁ ପଶୁଘାତ ଜନିତ ପାପ ଏଠାରେ ପଶିପାରେ ନାହିଁ ।

୧୦ — ତୀର୍ଥରାଜ ସମୁଦ୍ର ଏହି କ୍ଷେତ୍ରର ଗଡ଼ଖାଇରୂପେ ରହି ଗର୍ଜନରେ କହୁଅଛି, "ଅହେ ନରମାନେ, ସ୍ନାନକରି ପାପରାଶି ଦହନ କର" । ୧ଦୁର୍ଗପରିଖା, ଗଡ଼ଖାଇ । ୨ଅବଗାହ, ସ୍ନାନ । ୩ବ୍ୟୂହ, ସମୂହ ।

୧୧ । ଏହି ତୀର୍ଥରାଜ ନିଜ ଗର୍ଭରେ ଥିବା ବଡ଼ବାଗ୍ନିରେ ପକାଇ ପୋଡ଼ିଦେବା ଭୟରେ ପାପମାନେ ଦୂରନ୍ତୁ ପଳାଇ ଯାଉଅଛନ୍ତି ।

୧୨ — ଜଗନ୍ନାଥ ମହାପ୍ରଭୁ ସେହି ପୁରୁଷୋତ୍ତମକ୍ଷେତ୍ରର ରାଜା ଅଟନ୍ତି ସେ ଲୋକଙ୍କୁ ଧର୍ମ, ଅର୍ଥ, କାମ, ମୋକ୍ଷ ଦେଇ ପାରନ୍ତି ।

୧୩ — ଜଗନ୍ନାଥ ଏହି ଶବ୍ଦରେ (ଜଗତ୍—ଗଥା ଓ ନାଥ — ଶବ୍ଦ) ଭକ୍ତିର ଅବରୂପାଧା ଗୁପ୍ତ ଭାବରେ ଅଛନ୍ତି ତାହା ଭକ୍ତମାନେ ବୁଝିପାରିବେ ଯେଉଁମାନେ ଯୁଗଳରୂପ ଧ୍ୟାନରେ ମଗ୍ନ ।

ଶ୍ରୀଦେ ବନ୍ଦେ ସାର୍ବଭୌମ ବୋଲିବା କି ପଣ।
ଭକ୍ତାଧିପନଙ୍କର ଶିର ଲଗିବାକୁ ଆଶ ହେ।୧୪।
ଯାହା କଟାକ୍ଷ-କୁଠାର ପତନମାତ୍ରରେ।
ଅନେକ ଦୁଃଖ-ଅନୋକହକୁ ଛେଦ ପାରେ ହେ।୧୫।
ସେହି ପାଦପଦ୍ମାସନା ପାଟମହାଦେବୀ।
ଅଷ୍ଟଐଶ୍ୱର୍ଯ୍ୟଦାୟିନୀ ଅଷ୍ଟଶକ୍ତି ସେବ ହେ।୧୬।
ଭରସା କରି ଆସନ୍ତି ଦୂରଦେଶୁଁ ପ୍ରାଣୀ।
ଆରତଭଞ୍ଜନ ଦୀନବନ୍ଧୁ ନାମ ଶୁଣି ହେ।୧୭।
କର ଯୋଡ଼ି ସ୍ୱାମୁରେ ଜଣାଇ ପଷିଧବ।
ଆର୍ତ୍ତିଜନ ଗୁହାରିକି ସାବଧାନ ହେବ ହେ।୧୮।
କୋଟି-କନ୍ଦର୍ପ-ଲାବଣ୍ୟ-ମୂର୍ତ୍ତି ଦରଶନ।
ଦେବାକୁ ସୁବେଶେ ବସେ ରତ୍ନସିଂହାସନ ହେ।୧୯।
ଶିରେ ହେମ-ରତନ-ମୁକୁଟ ସପ୍ତଶାଖା।
କରୁଣା-ସିନ୍ଧୁରେ କି ବାଡ଼ବାନଳ ଶିଖା ହେ।୨୦।
କର୍ଣ୍ଣାଇ ସାଥ ନୋହିବ ଏମନ୍ତ ବଗୁର।
ପୁଣି ମଞ୍ଜୁଳ କୁଣ୍ଡଳ ମକର ଆକାର ହେ।୨୧।
ପ୍ରବାଳତରଣୀ ଦୃଷ୍ଟି ରଙ୍ଗାଧରେ ଅଛି।
ସତେଶେଷ ପରି ଲବଣ୍ୟଲକ୍ଷ୍ମୀ ସମ୍ଭବନ୍ତି ହେ।୨୨।

---

୧୪। ଭକ୍ତାଧିପଜନମାନେ ଯେ ପାଦକୁ ବନ୍ଦନା କରୁ ଅଛନ୍ତି ଏବଂ ଯାହା ବାତୁଳ୍ୟ ବାରଣ ମହାଦେବ ସେ ପାଦକୁ ଶିରରେ ଲଗାଇବାର ସଜ୍ଜା ଅଛି କରୁଅଛନ୍ତି।

୧୫—ଯାହାଙ୍କର ଲେଶମାତ୍ର କୃପାଦୃଷ୍ଟି ଅନେକ ଦୁଃଖ ବୃକ୍ଷକୁ ଛେଦନ କରିପାରେ ଅର୍ଥାତ୍ ଯହିଁର ମାତ୍ର ଦର୍ଶନରେ ଅନେକ ଦୁଃଖ ଯାଏ।

୧୬—ଲକ୍ଷ୍ମୀ ମଧ୍ୟ ଜଗନ୍ନାଥଙ୍କ ପରି ଅନେକ ଠାକୁରାଣୀ ଓ ଦେବୀମାନଙ୍କ ସେବ୍ୟ।

୧୭—ସେଠାକୁ ଅନେକ ଦୂରରୁ ଯାତ୍ରୀମାନେ ଆସନ୍ତି।

୧୮—ହେ ପ୍ରଭୋ ଦୁଃଖୀ ଲୋକମାନଙ୍କ ଗୁହାରି ଶୁଣିବାକୁ ସାବଧାନ ହେବ ଏହି ପଣ୍ଡିତମାନେ ହାତ ଯୋଡ଼ି ସ୍ୱାମୀମୁଖେ ଜଣାଉଅଛନ୍ତି।

୧୯—ନାନା କୋଟି କନ୍ଦର୍ପ ଲାବଣ୍ୟମୟ ମୂର୍ତ୍ତିକୁ ଦେଖାଇବାକୁ ରତ୍ନସିଂହାସନରେ ଉତ୍ତମ ବେଶମାନ ଧାରଣକରି ବସି କରିଅଛନ୍ତି।

୨୦—ସାତ ଶାଖାଯୁକ୍ତ ରତ୍ନଖଚିତ ସ୍ୱର୍ଣ୍ଣମୁକୁଟ ପ୍ରଭୁଙ୍କର ମସ୍ତକରେ ଲାଗି ହୋଇଅଛି। ଅତଏବ ଉତ୍ପ୍ରେକ୍ଷା, ଯହିଁରେ କି ବାଡ଼ବାଗ୍ନି ଶିଖାକୁ ଅଛନ୍ତି ? ଏହି ଉତ୍ପ୍ରେକ୍ଷା ହୋଇଅଛି।

୨୧—ମକର ଆକାର ସୁନ୍ଦର କୁଣ୍ଡଳ ଥିବାହେତୁରୁ ଏ ଉତ୍ପ୍ରେକ୍ଷା ଅନୁମାନ କରାହୁଁଛି ଠିକ୍ ନ ହେବ ସେ ହେତୁ ସମୁଦ୍ରରେ ମକର ଥାଏ।

୨୨—ସମୁଦ୍ରରେ ପୋହଳା ଓ ନୌକା ଥାଏ ଏବଂ ଲାବଣ୍ୟ ସମୁଦ୍ରକୁ ବାହାରି ଅଛନ୍ତି ଏଥି ଉତ୍ପ୍ରେକ୍ଷା ପ୍ରଭୁଙ୍କର ଭଙ୍ଗୀ ଅଧର ପୋହଳାକାହା ପରି ଦିଶୁଅଛି। ଏବଂ ସୌନ୍ଦର୍ଯ୍ୟ ଶୋଭାର ପୂର୍ଣ୍ଣତ୍ୱରେ ଏହାଙ୍କଠାରେ ଅଛି।୧। ପ୍ରବାଳତରଣୀ, ପୋହଳା ନୌକା।

ପୂର୍ଣ୍ଣଅବତାର ଲୀଳା ଯାହା କରନ୍ତି ।
ଜନଙ୍କୁ ଦେଖାନ୍ତି ଯୁଗାନ୍ତର କଥାମାନ ହେ । ୨୩ ।।
ସ୍ନାନ ଗୁଣ୍ଡିଚ୍ଚା ଏ ଦେବ ସ୍ୱୟଂଲୀଳା ଯାର ।
ପତିତପାବନ ଅଥେ ପ୍ରସାଦୁଁ ବାହାର । ୨୪ ।
ଜ୍ୟେଷ୍ଠ ପୌର୍ଣ୍ଣମାସୀ ପୂର୍ବାହ୍ଣ ଅବଶେଷେ ।
ସେବକେ ଉଗ୍ରକେ ମିଳି ମହାପ୍ରଭୁ ପାଶେ ହେ । ୨୫ ।।
ସେ କାଳକୁ ଅନୁସରି ଯାତ୍ରୀ ନର ନାରୀ ।
ଯେ ଯାହାର ନିତ୍ୟକର୍ମ ତ୍ୱରା ହୋଇ ସାରି ହେ । ୨୬ ।।
ହର ହର-ଦ୍ୱାରେ ମିଳି ହରି-ଧ୍ୱନି କଲେ ।
ହରିତ ପୂରିତ ଚରିତରେ ଚାହିଁ ହେଲେ ହେ । ୨୭ ।।
ପଡ଼ିଲା ଢୁଲୀ ପାହାଡ଼ା ବିଜୟ ନିମିତ୍ତେ ।
ବାଜିଲେ ମେଘା ମୃଦଙ୍ଗ ମର୍ଦ୍ଦଳ ସହିତେ ହେ । ୨୮ ।
କଂସାଳ ତାଳ କର୍ଣ୍ଣାଳ ପଟହ ଝର୍ଝରୀ ।
ମୋ ପରେ ବିଜେ କରିବେ ଘରେ ତୋଷ ଧରି ହେ । ୨୯ ।।
ନୋହିବେ ସର୍ବଙ୍କ କର୍ଧା ବ୍ରହ୍ମ-ପଞ୍ଜରକର ।
ଜାଣିଲେ ଭକ୍ତଙ୍କ ପ୍ରଭୁ ଦକ୍ଷିଣ-କୁଞ୍ଜର ହେ । ୩୦ ।
ପୂର୍ବଜରେ ଅପୂର୍ବଗଜ ଭାବ ଉପୁଜାଇ ।
ପହଣ୍ଡି ବିଜୟ କଲେ ଝୁଲାଇ ଝୁଲାଇ ହେ । ୩୧ ।

---

୨୩—ପୂର୍ଣ୍ଣ ଅବତାର ଲୀଳା ଯାହା ସମସ୍ତ ଯୁଗାନ୍ତରର କଥାମାନ ଲୋକମାନଙ୍କୁ ଅନେକ ସୁନ୍ଦର ଭାବେ ଦେଖାନ୍ତି ।

୨୪—ସ୍ନାନଯାତ୍ରା ଓ ଗୁଣ୍ଡିଚ୍ଚାଯାତ୍ରା ଏ ଦୁଇଟି ଏହି ଅବତାରର ଲୀଳା ଅଟେ । ଏହି ଦୁଇଯାତ୍ରାରେ ପ୍ରଭୁ ପତିତମାନଙ୍କୁ ଉଦ୍ଧାର କରିବାକୁ ବଡ଼ଦେଉଳରୁ ବାହାରନ୍ତି ।

୨୫—ସେବକମାନେ ଜ୍ୟେଷ୍ଠ ପୂର୍ଣ୍ଣିମା ପୂର୍ବାହ୍ଣ ଶେଷରେ ଉଗ୍ରଭାବ ହୋଇ ମହାପ୍ରଭୁଙ୍କ ନିକଟରେ ମିଳିତ ହେଲେ ।

୨୬-୨୭—ଯାତ୍ରୀ ଓ ପୁରବାସୀମାନେ ନିଜ ନିଜ ନିତ୍ୟ କର୍ମ ଶୀଘ୍ର ଶେଷକରି ସେହିପାଇଁ ସମସ୍ତେ ଅନ୍ତଃକରଣରେ ପ୍ରଭୁଙ୍କର ସିଂହ ଦ୍ୱାରେ ହରି ହରି ବୋଲି ଡାକିଲେ, ସେହି ହରିଧ୍ୱନିରେ ଦିଗମାନେ ଶୀଘ୍ର ପୂର୍ଣ୍ଣ ହେଲେ । ହର ଦନ୍ତ, ଓ ସିଂହ ହରିତ ଦିଗ ।

୨୮ । ୨୯—ପ୍ରଭୁ ବିଜେ କରିବାକୁ ଢୁଲୀ ଶେଜ ପାହାଡ଼ା ପଡ଼ିଲା । ମେଘା, ମୃଦଙ୍ଗ, ମାଦଳ, କଂସାଳ, ତାଳ, କର୍ଣ୍ଣାଳ, ପଟହ, ଝର୍ଝରୀ ପ୍ରଭୃତି ବାଦ୍ୟମାନ ବାଜିଲା । ପ୍ରଭୁ ମୋ ଉପରେ ବିଜେ କରିବେ ବୋଲି ଏମାନେ ପୃଥକ୍ ଆନନ୍ଦିତ ହେଲେ ।

୩୦ । ୩୧—ସେବକମାନେ ଯେହେତୁ ସର୍ବେଶ୍ୱରଙ୍କର ରକ୍ଷକ ଅଟନ୍ତି । ଅତଏବ ସେମାନେ ସର୍ବଙ୍କ ଦେବେ ନାହିଁ କାହିଁକି ? ଅତଏବ ସେମାନେ ଜଗନ୍ନାଥଙ୍କୁ ବାମନ ଜାଣି ଓ ତାଙ୍କ ବଡ଼ଭାଇ ବଳଦେବଙ୍କୁ ଐରାବତ ଗଜବର ଭୂଷଣ ପହଣ୍ଡି କରାଇଲେ । ଜଗନ୍ନାଥ ସ୍ୱୟଂ ବାମନ ଓ ବଳଦେବ ଶୁକ୍ଳ ହେତୁକ ଐରାବତ ତୁଲ୍ୟ ଅଟନ୍ତି । ଦକ୍ଷିଣ କୁଞ୍ଜର, ବାମନ । ପୂର୍ବଜ, ବଡ଼ଭାଇ । ଅପୂର୍ବଗଜ, ଐରାବତ ।

ଏମନ୍ତ ନୋହିଲେ କ ପ୍ରାସାଦ-ଦେଶ ତେଜ ।
ମଣ୍ଡପ-ସବୁ ଅବଗାହନରେ ଭଣ୍ଡ ମଣ୍ଡି ହେ ।। ୩୨ ।।
ଘୋର ଗନ୍ଧସାର-ପଙ୍କେ ଭୂଷିତ ହୋଇବେ ।
ଜନ-ପଙ୍କ-ପଙ୍କଜ-ବନକୁ ଉଜାଡ଼ିବେ ହେ ।। ୩୩ ।।
ସବୁ ଦେନେ ଲୀଳାସ୍ନାନ ନୀଳମଣ୍ଡଧର ।
ଭକ୍ତଭାବ-ରଜ୍ଜୁରେ ବନ୍ଧନା ଅଛୁ ଯାର ହେ ।। ୩୪ ।।
କଣ୍ଠ ଯେତେ ଜନ୍ତୁ ଏବେ ଭାବ କ ଜାଣିବେ ।
ବାହୁଡ଼ିବା ବେଳେ ଦେବଙ୍କ ବ୍ୟକତ ହୋଇବେ ।। ୩୫ ।।
ଭବ-ସାଗର-ସୁବର୍ଣ୍ଣ-ତରଣୀ ଉପର ।
ସୁଭଦ୍ରାଙ୍କୁ ବିଜେ କରାଇଲେ ତଥା ଧରି ହେ ।। ୩୬ ।।
ତାପ-ଦସ୍ୟୁ-ଖଣ୍ଡ ଭଞ୍ଜନକୁ ଦଣ୍ଡଧର ।
ସୁଦର୍ଶନଙ୍କ ବିଜେ ସେହି ପରକାର ହେ ।। ୩୭ ।।
ଇନ୍ଦ୍ରପଦଦାତା ଯେ ରାଜାଧିରାଜେଶ୍ୱର ।
ବିଜେ କରେ ଦ୍ୱିଜେ ଦେଇ ନିଜ କରଭର ହେ ।। ୩୮ ।।
ଝଳନ୍ତି ଚାମର ଶ୍ୱେତଛତ୍ର ଟେକା ତହିଁ ।
କ୍ଷୀର-ସାଗର-ଲହରୀ ଭ୍ରମ ଦିଶୁଥାଇ ହେ ।। ୩୯

---

୩୨—ଯେବେ ଦୃଷ୍ଟି ତାଙ୍କ ନ ହୋଇ ଥାନ୍ତା, ତେବେ ମନ୍ଦିର ବଡ଼ଦାଣ୍ଡର ରୂପକ ମଧ୍ୟରେ ସ୍ନାନମଣ୍ଡପ ରୂପକ ଯୋଜନାରେ ଗାଧୋଇବାକୁ ମତ ଦେଇଥାନ୍ତେ । ତେଣୁ, ଜଗନ୍ନାଥ ।
୩୩—ଅଭ ମଧ୍ୟ ତାଙ୍କ ପଙ୍କବୋଳ ହେବ ପରି ଉତ୍କଟ ଚନ୍ଦନ ପଙ୍କରେ ଭୂଷିତ ହେବ ଏବଂ ସେମାନଙ୍କ ପାପରୂପକ ପଙ୍କଜବନକୁ ତାଙ୍କ ପରି ଉପାଡ଼ିବେ । ଏମନ୍ତ ସେମାନ ଉତ୍କଟ ଚନ୍ଦନ ।
୩୪—ପ୍ରତ୍ୟକ୍ଷ ସ୍ନାନରେ ଯାହାଙ୍କର ନୀଳ ଦେହ ସମ୍ପର୍କ ଲୀଳାସ୍ନାନ ଅଟେ । ଏବଂ ସେ ପ୍ରଭୁ ଭକ୍ତମାନଙ୍କର ଭକ୍ତି ରୂପକ ରଜ୍ଜୁରେ ବନ୍ଧା ଅଛନ୍ତି ।
୩୫ - ମୂର୍ଖମାନେ ଏ ଭାବ କାହିଁ ଜାଣିବେ । ସ୍ନାନ ମଣ୍ଡପରୁ ବାହୁଡ଼ିବା ବେଳେ ତାହାଙ୍କର ଧାରଣା କରି ପ୍ରକାଶିତ ହେବେ । ଯେହେତୁ ପ୍ରଭୁ ସ୍ନାନ ପରେ ମଣ୍ଡପରେ ଗଣେଶ ବେଶ ଧାରଣ କରନ୍ତି ।
୩୬—ସେବକମାନେ ସୁଭଦ୍ରାଙ୍କୁ ସଂସାର ସମୁଦ୍ରର ସୁନାନୌକାରୂପ କାନ୍ଧରେ ଲମ୍ବାଇ ଧରି ବିଜେ କରାଇଲେ ।
୩୭—ତ୍ରିତାପ ରୂପ ଦସ୍ୟୁ ଭାଙ୍ଗିବାକୁ ଦଣ୍ଡଧର ସ୍ୱରୂପ ସୁଦର୍ଶନଙ୍କୁ ଠିକ ସେହି ପରି ବିଜେ କରାଇଲେ ।
୩୮—ଇନ୍ଦ୍ରପଦ ଦାତା ଶ୍ରୀ ଜଗନ୍ନାଥ ରାଜ ରାଜେଶ୍ୱର ପରି ବ୍ରାହ୍ମଣଙ୍କ ଠାରେ ହାତ ଭର ଦେଇ ବିଜେ କଲେ ।
୩୯ —ସେଠାରେ ଅନେକ ଚାମର ଝଳନ୍ତି ହେଉଥିଲା । ଶ୍ୱେତ ଛତ୍ର ଟେକା ହୋଇଥିଲା ଅର୍ଥାତ୍ କ୍ଷୀର ସମୁଦ୍ର ଲହରୀ ବୋଲି ଭ୍ରମ ହେଉଥିଲା ।

ଗହଳ ହୋଇଣ କଳାଛନ୍ଦ ଶୋଭା ଦଶି ।
ଶୃଙ୍ଗ ଶିଖରୀ ପରେ କି ଜଳଦ ଆକର୍ଷି ହେ । ୪୦
ପତାକା ବ୍ୟାଜନ୍ତି ଚେତେ ଶୂନ୍ୟେ ଧାରଧାର ।
ସ୍ୱେଦଛଳେ କରେ ନରବନ୍ଦୁ ଜରଜର ହେ । ୪୧ ।
ଚଞ୍ଚଳାଖେଳା ଚଳବା ଗଦ ପୀତବାସ ।
ତୃଷିତ ଦ୍ୱିଜ-ଶୃଙ୍ଗକ ଜଳପାନେ ତୋଷ ହେ । ୪୨ ।
ଏ ପ୍ରମାଣ ୧ବରହଣ ଶୁଛି ତେଣୁ ଚଲ ।
କ୍ଷଣାଣ-୨ମଣ୍ଡୂକ-ନାଦେ ଦଗନ୍ତ ଉଚ୍ଛୁଳ ହେ । ୪୩ ।
ଶ୍ରଭ୍ରୁ ଗଳନ ଶବଦ ଜନତ ୧ସ୍ତନତ ।
ଭୃଷ୍ଣ ଝଲ-ବକାବଲୀ ଉଡ଼ ଖଷେ ସତ ହେ । ୪୪ ।
ଏମନ୍ତେ ସ୍ନାନମଣ୍ଡପେ ସିଂହାସନ ପର ।
ବଜେ ମହାପ୍ରଭୁ ଘେନ ଭଗ୍ନୀ ସହୋଦର ହେ । ୪୫ ।
ନାଗ ନର କନ୍ନର ଗନ୍ଧର୍ବ ଛନ୍ତ ଯହିଁ ।
ଅନେକ କନକଘଟେ ପୂର୍ଣ୍ଣ କର ତହିଁ ହେ । ୪୬ ।
ଓ ଢାଳେ ଭୂସୁରେ ନୀର ଶ୍ରୀମୁଖମଣ୍ଡଳେ ।
ଧାରମାନ ଗତନ ହୋଇଲ ମହୋଚ୍ଛଳେ ହେ । ୪୭ ।

---

୪୦ — କଳାଛଟା ଚନ୍ଦ୍ର ଉନ୍ନତ ହୋଇ ଦେଖା ହୋଉଥିଲା । ଅତଏବ ଉଚ୍ଚ ପର୍ବତ ଉପରେ ଆକା-
ମେଘ ପଡ଼ ରହୁଥିଲା ।

୪୧ — ପତାକାଗୁଡ଼ିକ ଆକାଶରେ ଜଳ ଧାର ପର ପ୍ରକାଶ ହୋଇଥିଲେ ସାହାଷ୍ୟ କରୁଥିଲା । ତାହା-
ନୁହେଁ । ଖାଲି ବର୍ଷା କାଳରେ ଲୋକମାନଙ୍କ ଦେହଗୁଡ଼ିକୁ ଘର୍ମ ଝରିବ ।

୪୨ — ଲୋକମାନେ ଚଞ୍ଚଳ ଗଦ ଗଳନ କରୁଥିଲେ । ତାହା ବିଜୁଳି ଖେଳିଲା ପର ଦିଶୁଥିଲା ।
ଯେପରି ତୃଷାତୁର ଚାତକମାନେ ବର୍ଷା ଜଳ ପାନକର ତୃପ୍ତ ହୁଅନ୍ତି । ସେହିପରି ବ୍ରାହ୍ମଣମାନେ ପ୍ରଭୁଙ୍କ
ଘୋଷ ଦର୍ଶନ କର ସନ୍ତୁଷ୍ଟ ହେଲେ ।

୪୩ — ଏହା ଜ୍ୟେଷ୍ଠ ମାସ । ଏହି ହେତୁ ସେଠାରେ ମୟୂରପୁଚ୍ଛ ଚାଳନ ହେଉଥିଲା । ବର୍ଷାକାଳରେ
ମୟୂର ଆନନ୍ଦରେ ପୁଚ୍ଛ ମେଲୁଥାଏ । ଅଥଚ ମଧ୍ୟ ନଗାଣ ରୂପକ ବେଙ୍ଗ ଶବ୍ଦରେ
ଦଗନ୍ତ ଉଚ୍ଛୁଳ ପଡ଼ୁଥିଲା । ୧ବହିଣ, ମୟୂର, ୨ମଣ୍ଡୂକ, ବେଙ୍ଗ ।

୪୪ — ତୂରୀ ବାଜୁଥିଲାବେଳେ ଯେ ଭୂରି ଶବ୍ଦ ଶୁଭୁଥିଲା, ତାହା ମେଘ ଗର୍ଜନ ପର ହୋଉଥିଲା ।
ଧୂପ ଗନ୍ଧ ଯାହା ଖସି ପଡ଼ୁଥିଲା । ତାହା ବକସବୁ ଉଡ଼ିଲାପର ଦିଶୁଥିଲା । ୧ ସ୍ତନତ,
ଗର୍ଜନ ।

୪୫ — ମହାପ୍ରଭୁ ଏହିରୂପରେ ଭାଇ ଭଉଣୀ ଦୁହିଁଙ୍କ ସାଙ୍ଗରେ ଘେନି ସ୍ନାନମଣ୍ଡପ ଉପରେ ବିଜେ
କଲେ ।

୪୬ । ୪୭ — ସେଠାରେ ପାତାଳବାସୀ ନାଗ, ଭୂମିବାସୀ ମନୁଷ୍ୟ ଓ ସ୍ୱର୍ଗବାସୀ ଗନ୍ଧର୍ବ କନ୍ନରମାନେ
ଅପେକ୍ଷା କରି ରହିଥିଲେ । ବ୍ରାହ୍ମଣମାନେ ଅନେକ ସୁନା ମାଠିଆ ପୂର୍ଣ୍ଣକର ରଖିଥିବା ପାଣି
ମହାପ୍ରଭୁଙ୍କ ଶ୍ରୀମୁଖମଣ୍ଡଳରେ ଢାଳିଲେ । ସ୍ନାନଜଳଧାରା ଅତି ଉଚ୍ଛୁଳନ୍ତବାରେ ତିନି ପ୍ରଭୁଙ୍କ
ଚନ୍ଦ୍ରବିନ୍ଦୁ ପଡ଼ିଲା । ୧ଭୂସୁର, ବ୍ରାହ୍ମଣ ।

କ ମେରୁ-ସ୍ଥାନ-ମାରଗ-ହେମ-ଶୃଙ୍ଗ ଖସି ।
ଜାହ୍ନବୀ ଯମୁନା ହରିତାଳ-ଧାର ଆସି ହେ । ୪୮ ।
ଲେପନ ଚନ୍ଦନ ଖସି ଦିଶିଲା ଏମନ୍ତ ।
ସେ ଭଦ୍ରଶୃଙ୍ଗୁ କି ଜାତ ତରଳ-ରଜତ ଯେ । ୪୯ ।
ଦେଖିଲା ଆଖିରେ ଦରିଦ୍ରତା ନ ରଖିଲା ।
ମନହିଁ ଦୁଃସହ ଦୁଃଖମାନ ଉପେଖିଲା ହେ । ୫୦ ।
ହରି ଚନ୍ଦନ ସଙ୍ଗରୁ ସେହି ବୋଲି ଯେବେ ।
ବକ୍ଷରେ ହେବେ ଏତ ବାଞ୍ଛାବରଣୀ ହେ । ୫୧ ।
ସବୁରୂପେ ଏ ଉପମା ଉତ୍ତମ ସମ୍ଭବେ ।
ବରଜିତ ଭୁଜ-ଶାଖା ଅଧର-ପଲ୍ଲବେ ହେ । ୫୨ ।
ଭକ୍ତି ମୁକ୍ତି ଫଳ ଅଛି ନ ଦେଖନ୍ତି କେହି ।
ସ୍ୱଭାବରେ ବ୍ରହ୍ମ-ଦାରୁ ବ୍ୟସ୍ତପଦେ ରହି ହେ । ୫୩ ।
ସୁରଭିର ସ୍ଥାନ ସେନାପଣ୍ଟା ବଳକଳ ।
ଯାହାଙ୍କ ପଦେ ସଦା ଢଳଢଳ ଗଙ୍ଗାଜଳ ହେ । ୫୪ ।
ଭାଗ୍ୟରୁ ଏ ଉପମାକାରକ ମୁଁ ଯେ ହେଲି ।
ପୁଲକିତ-ଶରୀରେ ହରିରେ ସ୍ତୁତି କଲି ହେ । ୫୫ ।

୪୮ — ମେରୁପର୍ବତର ସ୍ଥାନ, ମାରକତମଣିର ସ୍ଥାନ, ଶୃଙ୍ଗସ୍ୱର୍ଣ୍ଣ ଗଙ୍ଗା ଓ ଯମୁନା ଏବଂ ହରିତାଳଧାର ଅଛି ବୋଲି ପଡ଼ୁଅଛି କି ? ଏମନ୍ତ ଉତ୍ପ୍ରେକ୍ଷା କରୁଛନ୍ତି । ୧ମାରଗ, କୃଷ୍ଣବର୍ଣ୍ଣମଣି ବିଶେଷ ।

୪୯— ଯେତେବେଳେ ପ୍ରଭୁମାନଙ୍କ ଦେହରୁ ବୋଳା ଚନ୍ଦନ ଧୋଇ ହୋଇ ଧାରଜଳମ ଖସିଲା, ସେତେବେଳେ ଭକ୍ତ ଚନ୍ଦ୍ରପ୍ରଭାର ମେରୁଶୃଙ୍ଗଙ୍କୁ ରୂପା ତରଳ ଧାରଜଳେ ବୋଲି ପଡ଼ିଲାପରି ଦଶି— ।

୫୦ —ତାହା ଦେଖିଥିବା ଲୋକମାନଙ୍କର ଦରିଦ୍ରତା ଦୂର ହେଲା, ଅଥଚ ତାହାଙ୍କୁ ଦେଖି ନିଜକୁ ଧନ୍ୟ ମନେକଲେ ଏବଂ ମନ ଦୁଃସହ ଦୁଃଖମାନ ପାଶୋରିଲା ।

୫୧—ହରି ଶ୍ରୀ ଜଗନ୍ନାଥ ଚନ୍ଦନ ସ୍ପର୍ଶରୁ ହରିଚନ୍ଦନ ନାମକୁ ଧାରଣ କଲେ । କଳ୍ପ ବୃକ୍ଷହେଲେକ ଯେହେତୁ ଏ କଳ୍ପ ବୃକ୍ଷପରି ବାଞ୍ଛିତ ବର ପ୍ରଦାନ କରିବେ ।

୫୨ —ଏହାଙ୍କଠାରେ ଏହି କଳ୍ପ ବୃକ୍ଷଉପମା ଉତ୍ତମରୂପେ ସମ୍ଭବ ହେଉଅଛି । ଯେହେତୁ ଏ ପ୍ରଭୁ ବନ୍ଧୁରୂପକ ଶାଖାହାର ଓ ଅଧର ରୂପକ କଅଁଳ ପତ୍ର ଦ୍ୱାରା ଶୋଭିତ ହୋଇ ଅଛନ୍ତି ।

୫୩—ଯେପରି କଳ୍ପ ବୃକ୍ଷରେ ଫଳଥାଏ; ସେହିପରି ଏ ପ୍ରଭୁଙ୍କଠାରେ ଭୋଗ ଓ ମୋକ୍ଷରୂପ ଫଳ ଅଛି । କିନ୍ତୁ କେହି ଦେଖି ପାରୁନାହାନ୍ତି । ସେ କଳ୍ପବୃକ୍ଷ ବ୍ରହ୍ମଦାରୁ ଅଟେ । କିନ୍ତୁ ଏହି ନାମଃ ଦେବଙ୍କ ବେଢ଼ି ରହିଥିବା ସେନାପଣ୍ଟା ବକ୍ଳ ହୋଇଅଛି । ପ୍ରଭୁଙ୍କଠାରେ ପଦଓଡ଼ଣାରେ ରହିଛି । ଯେହେତୁ ପ୍ରଭୁ ପାରବ୍ରହ୍ମ ଅଟନ୍ତି ।

୫୪—କଳ୍ପବୃକ୍ଷ କାମଧେନୁର ଅଧରୁ ସ୍ଥାନ, ପ୍ରଭୁ ସମସ୍ତ ସୌଭାଗ୍ୟର ପାତ୍ର ଅଟନ୍ତି । କଳ୍ପବୃକ୍ଷ ସ୍ୱର୍ଗରେ କଳ୍ପିତ ଥିବାରୁ ଓ ପ୍ରଭୁଙ୍କ ପାଦରେ ଗଙ୍ଗାଜଳ ଢଳଢଳ ହେଉଅଛି ଏହା ଦୁହିଙ୍କଠାରେ ସମାନ । ୧ସୁରଭି, କାମଧେନୁ ଓ ସ୍ୱର୍ଗ ।

୫୫— ଭାଗ୍ୟବଳରୁ ମୁଁ ଏପରି ଉପମାନ କଲି । ରୋମାଞ୍ଚିତ ଦେହରେ ପ୍ରଭୁଙ୍କ ସ୍ତୁତି କଲି । ସ୍ତୁତି ଆଗ ପଦରେ କୁହାଯିବ ।

ମହିମା ଅନନ୍ତ ପ୍ରଭୋ ମଣି ମା ଅନନ୍ତ ।
ମନୋହାଙ୍କ ସହୋଦର ହୋଇ ଯାର ଖ୍ୟାତ ହେ । ୫୬ ।
୧ଅର-ଦର-କର ବପୋ ଅର-ଦର-କର ।
ଯୁଗେ ଯୁଗେ ଧର ନାନା ରୂପ ଅବତାର ହେ । ୫୭ ।
୧ବଣ୍ଡଖଣ-ଅଘ ବଣ୍ଡଖଣ-୨ଅଘ ହର ।
ସ୍ଥାନ କରି ଦେଲ ଲଙ୍କା ନିଜ କଳେବର ହେ । ୫୮ ।
୧ଭବ-୨ବରଞ୍ଚି-୩ପୂଜିତ ହେ ଭବ-ବରଞ୍ଚି ।
ଶୁଚ ୪କବଳକ ସଦାନନ୍ଦ ସଦାଶୁଚ ହେ । ୫୯ ।
ରଚିବ "କୋଟିବ୍ରହ୍ମାଣ୍ଡ-ସୁନ୍ଦରୀ" ଚରିତ ।
ସୁଜାତ ସୁମନାପର ହୋଇବ ଏ ଗୀତ ହେ । ୬୦ ।
ସୁରଭିରେ ମୋହିତ-ମାନସ ହେବେ ୧ଦେବେ ।
ଗୁଣବନ୍ତେ ହୃଦେ ମାଳା କରଣ ଧରିବେ ହେ । ୬୧ ।
ରସିକ-ଭ୍ରମରେ ହେବେ ରସ ଯୋଗ ବଶ ।
ନିର୍ଗୁଣେ ଯୋଜନଲେ ନ ଯୋଜନଲେ ଅଛି କସ ହେ । ୬୨ ।
କେତେ ଉପଇନ୍ଦ୍ର ତବ କୃପାରେ ହୋଇଛି ।
ଏତେ ମନୋରଥ ସାର୍ଥେ କ ସଂଶୟ ଅଛି ହେ । ୬୩ ।

---

୫୬—ସ୍ତୁତି ଯଥା । ହେ ପ୍ରଭୋ ଆପଣଙ୍କ ମହିମାର ଅନ୍ତନାହିଁ । ମଣ୍ଡ,ଷଣ୍ଠଦେବୀ ଓ ମା, ଲକ୍ଷ୍ମୀଦେବୀ ଏବ ଅନନ୍ତ, ବଳଦେବ ଏମାନେ ଯାହାଙ୍କର ଭାର୍ଯ୍ୟା ଓ ଭାଇ ହୋଇଅଛନ୍ତି ।

୫୭—ହେ ବପୋ, ଆପଣ ଚକ୍ର ଶଙ୍ଖ ହସ୍ତରେ ଧାରଣ କରିଅଛନ୍ତି । ଏବ ପ୍ରତିଯୁଗରେ ନାନାପ୍ରକାର ଅବତାର ଧାରଣ କରି ଶତ୍ରୁମାନଙ୍କର ଉପଦ୍ରବ ହୋଇଅଛି । ୧ । ଅରି, ଚକ୍ର ଓ ଶତ୍ରୁ ଦର, ଶଙ୍ଖ ଓ ଭୟ ।

୫୮—ହେ ପ୍ରଭୋ, ଆପଣ ବଣ୍ଡଖଣ ପାପ ହରଣ କରି ତାଙ୍କୁ ଲଙ୍କା ସ୍ଥାନକରି ଦେଲ ଏବଂ ଉପଦ୍ରବ ଅଧାର୍ମିକଙ୍କୁ ମାରି ତାଙ୍କୁ ନିଜ ଦେହରେ ସ୍ଥାନ ଦେଲ । ଅର୍ଥାତ୍ ତାହାର ସାଯୁଜ୍ୟ ମୁକ୍ତି ଦେଲ । ୧ବଣ୍ଡଖଣ, ରାବଣ ଭ୍ରାତା ଓ ଉପଦ୍ରବ । ୨ଅଘ ପାପ ଓ ଅଘାସୁର ।

୫୯—ହେ ପ୍ରଭୋ ଆପଣ ମହାଦେବ ଓ ବ୍ରହ୍ମାଙ୍କ ଦ୍ୱାରା ପୂଜିତ ହୋଇଅଛ ଏବଂ ସଂସାର ରଚନା-କର୍ତ୍ତା ଅଛ । ଦୃଷ୍ଟ ବଳାତ୍କାରେ ଅନିଗ୍ରହ କରିଅଛ ଏବଂ ସଦାନନ୍ଦ ଓ ସର୍ବଦା ଶୁଦ୍ଧ ଅଛ । ୧ଭବ, ମହାଦେବ ଓ ସଂସାର । ୨ବରଞ୍ଚି ବ୍ରହ୍ମା ଓ ରଚନାକାରୀ । ୩ଶୁଚ, ଅଗ୍ନି ଓ ଶୁଦ୍ଧ । ୪କବଳକ, ଗ୍ରାସକାରୀ ।

୬୦—ମୁଁ କୋଟିବ୍ରହ୍ମାଣ୍ଡ ସୁନ୍ଦରୀର ଚରିତ ରଚନା କରିବି; ଏ ଗୀତ ଉତ୍ତମ ଜାତିଫୁଲ ପରି ହେବ ।

୬୧—ଜାତିଫୁଲ ସୌରଭରେ ଯେପରି ଦେବତାମାନଙ୍କର ମନ ମୋହିତ ହୁଏ । ସେହିପରି ଏ ଗୀତର ଆମୋଦରେ ଉତ୍ତମ ଲୋକମାନଙ୍କର ମନ ମୋହିତ ହେବ ଏବଂ ଗୁଣଜ୍ଞ ଲୋକମାନେ ମାଳାଭଳି ହୃଦରେ ଧାରଣ କରିବେ । ୧ଦେବ, ଉତ୍ତମ ଓ ଦେବତା ।

୬୨—ରସ ଗ୍ରାହକ ବ୍ୟକ୍ତିମାନେ ଭ୍ରମର ପରି ଏହାର ଶୃଙ୍ଗାରାଦି ରସରୂପ ମଧୁରେ ବଶ ହେବେ । ନିର୍ଗୁଣ ଲୋକମାନେ ଗ୍ରହଣ କଲେ ବା ନକଲେ କିଛି କ୍ଷତି ନାହିଁ ।

୬୩—ଉପେନ୍ଦ୍ରଭଞ୍ଜ ଆପଣଙ୍କ କୃପାରେ କବି ହୋଇଅଛି । ଏ ମନୋରଥ ସିଦ୍ଧି ବିଷୟରେ କିଛି ସନ୍ଦେହ ନାହିଁ ।

## ଦ୍ୱିତୀୟ ଛାନ୍ଦ ।

### ରାଗ ମାଳବ । ଚୋକୀ ବାଣୀ ।

( ଚମ୍ପାନଗର ବର୍ଣ୍ଣନା ଓ କୋଟିବ୍ରହ୍ମାଣ୍ଡସୁନ୍ଦରୀଙ୍କ ଜନ୍ମବୃତ୍ତାନ୍ତ )

ପୂର୍ବଗଣ ଅଭିଧାନ ଜାଣିଥିଲେ । ପୁଣି କସ ହେବ ଶବ୍ଦ ହେଲେ ।
ସାବଧାନ ହୋଇ ସୁବୁଦ୍ଧିଗଣ । ନଗରବର୍ଣ୍ଣିକା ମନକୁ ଆଣ । ୧ ।
ଚମ୍ପା ସେ ରମ୍ୟା ୧ଯୋଷା ଶିରେ ବନ୍ଧ । ୨ଶିବ ତହିଁରେ ଗୁରୁତର-ସ୍ନେହ ।
ଜନ-ମନୋହର ସୁବାସ ଅଛି । ଭ୍ରମର ଅବଲମ୍ବ ନାହିଁ କିଛି । ୨
ଦେଖିବାରୁ ଯାହା ରୂପରରୂପ । ଶଙ୍କା ଲଭି ୧ଲଙ୍କା ୨ଅଳକା ୩କାଞ୍ଚୀ ।
ତରୁ ତରୁଣୀରେ ଶରଣ ଭଜି । କର୍ମ ସ୍ତମ୍ଭ ତକା ତେବେ ନ ତେଜି । ୩ ।
୧ବହ୍ନିଶ୍ରୀ ୨ବଡ଼-ଶ୍ରୀ ଜନମ କରେ । ୩ହରିତହୟ ୪ହରି-ହୟ ଶରରେ ।
୫ବଇଜୟନ୍ତକୁ ଜିଣିବ ବୋଲି । ୬ବଇଜୟନ୍ତୀରେ ଛନ୍ଦନ ଘାଲି । ୪ ।

---

ଦ୍ୱିତୀୟ ଛାନ୍ଦ !

୧—ପୂର୍ବଗଣ ଅଭିଧାନ ଜାଣିଥିଲେ ପୁଣି କସ ଶବ୍ଦ ଲୋକର ଏଥି ଯେଉଁ ଭାବ ବଡ଼ ତୃପ୍ତି ହେଉଥାନ୍ତି । ଅହେ ସଜ୍ଜନ ଲୋକମାନେ ଶୁଣ । ଏବେ ନଗର ବର୍ଣ୍ଣନା କରାଯିବ, ଶୁଣ ।

୨—ଚମ୍ପାନଗରେ କୋଟିଏ ନଗର ଅଛି । ତେବ ତାହାକୁ ଚମ୍ପାଫୁଲ ସାଙ୍ଗେ ତୁଳନା କରାଅଛନ୍ତି । ଯେଉଁ ସ୍ତ୍ରୀମାନେ ଚମ୍ପାଫୁଲକୁ ମୁଣ୍ଡରେ ଧାରଣ କରନ୍ତି । ଏ ନଗରକୁ ପୃଥିବୀରୂପକ ସ୍ତ୍ରୀ ମସ୍ତକରେ ଧାରଣ କରିଅଛି, ଅର୍ଥାତ୍ ଏ ପୃଥିବୀରେ ଉତ୍ତମ ନଗର । ଚମ୍ପା ଫୁଲରେ ମହାଦେବଙ୍କର ସ୍ନେହ ଥାଏ, ଏ ନଗରରେ ମଙ୍ଗଳ ଅତି ସ୍ନେହ କରନ୍ତି । ଅର୍ଥାତ୍ ସର୍ବଦା ରହିଅଛି । ଚମ୍ପାଫୁଲର ମନୋହର ସୁବାସ ଅଛି । ଏ ନଗରରେ ଲୋକମନୋହର ଉତ୍ତମ ସୁଦ୍ରବ୍ୟ ଅଛି । ସେ ଫୁଲରେ ଭ୍ରମର ବସେନାହିଁ । ଏ ନଗରରେ କାହାର କିଛି ଭ୍ରମ ନାହିଁ ଅର୍ଥାତ୍ ସନ୍ଦେହ ନାହିଁ । ୧ଯୋଷା, ସ୍ତ୍ରୀ । ୨ଶିବ, ମହାଦେବ ଓ ମଙ୍ଗଳ । ୩ସୁବାସ, ଉତ୍ତମ ଗନ୍ଧ ଓ ସୁବସ୍ତୁ । ୪ଭ୍ରମର, ଭଅଁର ଓ ଭ୍ରାନ୍ତ ।

୩—ଲଙ୍କା, ଅଳକା ଏବଂ କାଞ୍ଚୀ ଏହି ନଗରୀମାନେ ଯେ ଚମ୍ପାନଗରୀର ମନୋହର ଶୋଭାଦେଖି ଶଙ୍କାକରି ଅର୍ଥାତ୍ ଆମ୍ଭେ ପରାସ୍ତ ହେବୁବୋଲି ଭୟ କରି ଅର୍ଥାତ୍ ତାହା ବୃକ୍ଷଠାରେ ଶରଣ ପଶି ସ୍ତମ୍ଭ କର୍ମ ବା ଯନ୍ତ୍ର କରୁଛନ୍ତି ଅର୍ଥାତ୍ ... ପୂର୍ଣ୍ଣ ବୃକ୍ଷ ବା ସ୍ତ୍ରୀଲୋକଙ୍କଠାରେ ଶରଣ ପଶି ସ୍ତମ୍ଭ କରୁ ଥିବା ଯନ୍ତ୍ର ନାହିଁ ଓ କାଞ୍ଚୀ ଅର୍ଥାତ୍ କଟିସୂତ୍ର ତାକୁ ପକାଉବା ଅର୍ଥାତ୍ ଛାଡ଼ିବାକୁ ଯନ୍ତ୍ରଣା ନାହିଁ । ୧ଲଙ୍କା, ରାକ୍ଷସନଗରୀ ଓ ଶାଳ ଗଛର ଶାଖା; କୁବେରପୁରୀ ଓ ଚୂର୍ଣ୍ଣକୁନ୍ତଳ । ୩କାଞ୍ଚୀ ନଗରୀ ବିଶେଷ ଓ କଟିମାଳା ଏ ନଗରୀର ଶୋଭାମାନ ଶକ୍ତିପୂର୍ଣ୍ଣ ଓ ବର୍ଦ୍ଧନ ଦର୍ଶିତ ହେଉଅଛି ।

୪—ଏହି ନଗରୀର କୋଠାଘରୁ ଉଠି ଧୂମ ସୌରଭ୍ୟ ଲୋକମାନଙ୍କ ମନରେ ବଡ଼ ଲୋଭ କରାଉଛନ୍ତି । ନଳ ଅଟ୍ଟାଳିକାଠାରୁ ଅଧିକ ବୋଲି ଜଣାଉଅଛନ୍ତି । ୧ବହ୍ନିଶ୍ରୀ, ଅଗ୍ନିଶୋଭା । ୨ବଡ଼-ଶ୍ରୀ ... ଋଷି । ୩ହରିତହୟ, ସୂର୍ଯ୍ୟ । ୪ହରି-ହୟ, ସୂର୍ଯ୍ୟ ଘୋଡ଼ା । ୫ବଇଜୟନ୍ତ, ଇନ୍ଦ୍ରପ୍ରାସାଦ । ୬ବଇଜୟନ୍ତୀ, ପତାକା ।

୨

ବତାନ ଏସନ ପ୍ରସନ୍ନ ଧରେ । ଯେସନ ଗଗନ ନିଶାକାଳରେ ।
ଚନ୍ଦ୍ରମଣ୍ଡଳ କରେ ପ୍ରକାଶିତ । ପୁଣି ତାର ୧ତାର-ରାଜ ରାଜିତ । ୫ ।
କେତେ ଚିତ୍ର-ରଥ ଗନ୍ଧର୍ବ-ଚୟ । ଅଳପ ଧନେ ହେଉଛନ୍ତି କ୍ରୟ ।
ମାଲ-ପସରଙ୍କି ସୁଧର୍ମାସଭା । ୧ସୁମନା ।-ବଳୀରେ ହୋଇଛି ଶୋଭା । ୭ ।
ତହିଁ ଭୋଗବତୀ କେତେ ମାତର । କଥାକେ କରି ଦେଇଛି ଇତର ।
ଅନନ୍ତ-ମଣିରେ ସେ ଜ୍ୟୋତି ନାହିଁ । ଅନନ୍ତ- ମଣି କଣା ବିକା ଯହିଁ । ୮ ।
ଯେଉଁ ପୁରେ ପଢ଼େ ଶୁକ-ଦ୍ୱ-ଯାକ । ଶୁକ-ବିରଚିତ ଚରିତ ଶ୍ଳୋକ ।
ପୁରଜନମାନେ ତା ଅର୍ଥ କରିବା । ବିଶଦ କରି କାହିଁକି ଯେନିବା । ୯ ।
ବୈଦ୍ୟ-ଶାର୍ଦ୍ଦୂଳେ ଅଶ୍ୱିନୀ-କୁମାରେ । ମୃଗ କରି ଚରେ ବିବେକ କରେ ।
ଥିଲେ ତାଙ୍କର ଚରକ ସୁଶ୍ରୁତ । ବୁଝିଥାନ୍ତେ ଆସି ଆମ୍ଭ ପୁରତ । ୧୦ ।

---

୫—ରାତ୍ରିରେ ଆକାଶ ଯେପରି ଦିଶେ, ଏ ନଗରୀର ଚନ୍ଦ୍ରାତପସବୁ ସେହିପରି ନିର୍ମଳ ଦିଶୁଅଛନ୍ତି । ଆକାଶରେ ଚନ୍ଦ୍ରମଣ୍ଡଳ ଓ ଉଜ୍ଜ୍ୱଳ ନକ୍ଷତ୍ରମାନେ ଥାନ୍ତି । ଏ ଚନ୍ଦ୍ରାତପରେ ସୁନାଚନ୍ଦ୍ର ଓ ମଣିମୟ ନକ୍ଷତ୍ର ଶୋଭାପାଉଥିଲା । ୧ତାର-ତାର, ଉଜ୍ଜ୍ୱଳ-ନକ୍ଷତ୍ର ।

୭—ଯେଉଁ ନଗରୀର ହାଟ ଇନ୍ଦ୍ରନଗରୀକୁ ଛକାଉଅଛି । ଅମରାବତୀରେ ଗୋଟିଏ ଲମ୍ବା ଓ ଚଉଡ଼ା ଅପୂର୍ବ ଅଛି । କିନ୍ତୁ ଏଠାରେ କେତେ ରତ୍ନାକର ଅର୍ଥାତ୍ ସୁନ୍ଦରୀ ବସିଅଛନ୍ତି । ସେଠାରେ ଗୋଟିଏ ଐରାବତ ହସ୍ତୀ ଅଛି । କିନ୍ତୁ ଏଠାରେ କେତେ ଐରାବତ ଅର୍ଥାତ୍ ନାଗଙ୍କ ବିକାହେବାକୁ ଉଭାହୋଇଅଛନ୍ତି ।

୬—ସେଠାରେ ଗୋଟିଏ ଚିତ୍ରରଥ ନାମକ ଗନ୍ଧର୍ବ ଅଛି । କିନ୍ତୁ ଏ ହାଟରେ କେତେ ବିଚିତ୍ର ରଥ ଓ ଗନ୍ଧର୍ବ ଅର୍ଥାତ୍ ଘୋଡ଼ାମାନ ଅଳ୍ପମୂଲ୍ୟ କଣା ହେଉଅଛନ୍ତି ।
ଏଠାରେ ମାଲୀପସରା ଦେବସଭାପରି ହୋଇଅଛି । ସେ ସଭା ଦେବତାମାନଙ୍କ ଦ୍ୱାରା ଶୋଭା ପାଉଥାଏ । ଏ ପସରା ପୁଷ୍ପ ସମୂହରେ ଶୋଭା ପାଉଅଛି । ୧ସୁମନା ବଳ, ଦେବସମୂହ ଓ ପୁଷ୍ପସମୂହ ।

୮—ମେ ହାଟମାନଙ୍କ ସମାନ ହେବାକୁ ଭୋଗବତୀ ଅର୍ଥାତ୍ ପାତାଳ ରାଜଧାନୀ କେତେମାନ ଅବା, ଅର୍ଥାତ୍ କଣ୍ଠରୁ ଦେବ । ଯେବେ ଗୋଟିଏ କଥାରେ ତାକୁ ନିକୃଷ୍ଟ କରି ଦେଇଅଛି । ଏ ହାଟରେ ବିଶେଷ ଦେଖ । ଯେଉଁମିତ ମଣିମାନଙ୍କଠାରେ ଯେ ଜ୍ୟୋତି ଅଛି । ପାତାଳରେ ଅର୍ଥାତ୍ ଶେଷଦେବଙ୍କ ଫଣା ମଣିରେ ସେପରି ତେଜ ନାହିଁ ।

୯—ଯେଉଁ ନଗରୀରେ ଶୁକ ପକ୍ଷୀମାନେ ଶୁକଦେବଙ୍କ ରଚିତ ଭାଗବତ ବଚନାଦି ଶ୍ଳୋକ ପାଠ କରୁଅଛନ୍ତି । ପୁରଜନମାନେ ତାହାର ଅର୍ଥ ପ୍ରକାଶ କରିବା କଥା କାହିଁକି ଅଗ୍ରାହ୍ୟ ମନେ କରିବା ।

୧୦—ସେ ପୁରର ବୈଦ୍ୟଶାର୍ଦ୍ଦୂଳ ଅର୍ଥାତ୍ ବୈଦ୍ୟଶ୍ରେଷ୍ଠମାନେ ସ୍ୱୟଂ ବ୍ୟାଘ୍ର, ସେମାନେ ସ୍ୱର୍ବୈଦ୍ୟ ଅଶ୍ୱିନୀକୁମାରଙ୍କୁ ମୃଗପରି ନିକୃଷ୍ଟ ମନେ କରୁଅଛନ୍ତି । ଯଦି ଅଶ୍ୱିନୀକୁମାରଙ୍କର ଚରକ ଓ ସୁଶ୍ରୁତ ବୈଦ୍ୟଶାସ୍ତ୍ର ଥାଆନ୍ତା ତେବେ ଆସି ଆମ୍ଭଠାରୁ ବୁଝିଥାନ୍ତେ ଏପରି ଗର୍ବ ମଧ୍ୟ କରୁଅଛନ୍ତି ।

ଗଣକ-ଗଣଙ୍କ ଏମନ୍ତ ହୃଦ । ଗୁରୁ-ଗୁରୁ ହେବା ପଡ଼ିଲେ ବାଦ ।
ଧର୍ମୀ-ଜନ ମତେ ଧନଦ ଊଣା । ନ ଥିବାରୁ ତାଙ୍କ ୧ପୁଷ୍ପକ ଗଣା । ୧୧ ।
୧ସୁ-ନାସୀରଙ୍କର ଏହି ଗୁମାନ । କେ କଲା ଆମ୍ଭ ପଦ ଇନ୍ଦ୍ରେ ଦାନ ।
ବହୁତ ୨ବଲ ଭୟ ଉପୁଜାଉଁ । ୩ବଜ୍ର-ସାର-ବାର ଭୂଷଣେ ବହୁଁ । ୧୨ ।
କଟକ ନିର୍ମାଣ କଟକ ଦେଖି । ୧ବିଶ୍ୱକର୍ମା ୨ମୟ ବୁଜଣ ଆଖି ।
ଭଲ ଶିଳ୍ପି ବୋଲି ହୋଇବା କଥା । ୩ଇଷ୍ଟ ହୋଇ କରେ ହୃଦକୁ ବ୍ୟଥା ।
ତହେଁ ସେ ବିଷ୍ଣୁ ଜାନ୍ତୁ ଅନୁମାନ । ସର୍ବଦା ଲକ୍ଷ୍ମୀ କରିବାରୁ ସ୍ଥାନ ।
୨ନିଶାନ୍ତ-ରତନ ଜୋତ ପ୍ରକାଶେ । ନିଶାନ୍ତ ପ୍ରାପ୍ତ ସବୁବେଳେ ଦିଶେ । ୧୪ ।
୧ଉଦ୍ୟାନ-ହାଟେ କେଉଁଠି କେ ଘଟେ । କଳଶ କୁଚ ଯୋଣସ୍ତମ୍ଭ ଭୁଜେ ।
ଶୁଭେ ନାରୀପଦ-ନୂପୁର ବାଦ୍ୟ । ସମ୍ଭବେ ଯହିଁ ଭଲ ଭଲ ପଦ । ୧୫ ।

---

୧୧—ବାଦ ବିବାଦ ହେଲେ ଆମ୍ଭେମାନେ ବୃହସ୍ପତିଙ୍କଠାରୁ ଅଧିକ ହେବା, ଏହା ସେ ନଗରୀର ଜ୍ୟୋତିଷମାନେ ମନେ କରନ୍ତି । ସେଠା ଧର୍ମଲୋକମାନେ ମଧ୍ୟ କୁବେରଙ୍କୁ ନିଜଠାରୁ ଊଣା ମନେ କରୁଥିଲେ । ଯେହେତୁ କୁବେରଙ୍କର କେବଳ ଏକ ପୁଷ୍ପକଯାନ ଅଛି । ଏମାନଙ୍କର ପୁଷ୍ପକ ଅର୍ଥାତ୍ ସ୍ୱର୍ଣ୍ଣ ବା ରତ୍ନ କଙ୍କଣ ଅଗଣିତ ଅଟେ । ୧ପୁଷ୍ପକ, କୁବେର ଯାନ ଓ ସ୍ୱର୍ଣ୍ଣ ବା ରତ୍ନ କଙ୍କଣ ।

୧୨—ଏଠା ଉତ୍ତମ ଅସ୍ତ୍ରଧାରୀ ଯୋଦ୍ଧାମାନେ ଏପରି ଗୁମାନ କରୁଅଛନ୍ତି । ଆମ୍ଭ ସୁନାସୀର ପଦ କିଏ ଇନ୍ଦ୍ରଙ୍କୁ ଦେଲା । ଦେଖ, ସେ ଇନ୍ଦ୍ର ଗୋଟିଏ ବଳ ନାମକ ଅସୁରକୁ ଭୟ ଜନ୍ମାଇଥିଲେ । କିନ୍ତୁ ଆମ୍ଭେମାନେ ଅନେକ ସୈନ୍ୟମାନଙ୍କର ଭୟ ଜନ୍ମାଉଅଛୁଁ । ପୁଣି ଇନ୍ଦ୍ରଙ୍କଠାରେ ଗୋଟିଏ ବଜ୍ର ଅଛି । କିନ୍ତୁ ଆମ୍ଭେମାନେ ଅଳଙ୍କାରରେ ଅସଂଖ୍ୟ ବଜ୍ରନାମକ ମଣିମାନଙ୍କୁ ଧାରଣ କରୁଅଛୁଁ । ୧ସୁନାସୀର, ଉତ୍ତମ ଅସ୍ତ୍ରଧାରୀ ସୈନ୍ୟ ଓ ଇନ୍ଦ୍ର, ୨ବଳ, ଅସୁର ବିଶେଷ ଓ ସୈନ୍ୟ, ୩ବଜ୍ର, ମଣି ବିଶେଷ ଓ ଇନ୍ଦ୍ରଙ୍କ ଅସ୍ତ୍ର ।

୧୩—ଦେବଶିଳ୍ପୀ ଓ ଅସୁରଶିଳ୍ପୀ ଦୁହେଁ ଏ ନଗରୀର ନିର୍ମାଣ ଚାତୁରୀ ଦେଖି ବିସ୍ମୟରେ ଆଖି ବୁଜିଲେ । ଏବଂ ଏ ଶିଳ୍ପୀ ଭଲ ବୋଲି ଯାହା କହନ୍ତି, ତାହା ସେପରି ତାଙ୍କ ହୃଦୟକୁ ପୀଡ଼ାଦେଲା । ୧ବିଶ୍ୱକର୍ମା, ଦେବଶିଳ୍ପୀ । ୨ମୟ, ଅସୁର ଶିଳ୍ପୀ ୩ଇଷ୍ଟ ଭଲ ।

୧୪—ଏ କଥା ବିଷ୍ଣୁ ଜାଣନ୍ତି ? ଏହି ତର୍କ ସେ ନାଟକୋତ୍ଥିତ ହେଉଅଛି । ଯେହେତୁ ସେଠାରେ ମହାଲକ୍ଷ୍ମୀଙ୍କପରି ସର୍ବଦା ଏ ନଗରୀରେ ସମସ୍ତ ଅବସ୍ଥାନ କରୁଅଛି । ଅତ ମଧ୍ୟ ବୃହସ୍ପତି ରତ୍ନମାନ ଜ୍ୟୋତି ପ୍ରକାଶ କରିବାରୁ ସର୍ବକାଳଠାରେ ଦିଶୁଅଛି । ୧ଲକ୍ଷ୍ମୀ, ଧନଦେବୀ ଓ ସମ୍ପତ୍ତି ୨ନିଶାନ୍ତ ଗୃହ, ଓ ପ୍ରଭାତ ।

୧୫—ଏ ନଗରୀ ଉଦ୍ୟାନରେ ହାଟରେ ଥିବା ଅର୍ଥାତ୍ ଲଗିଥିବା ... କେଉଁଠି ସ୍ତ୍ରୀ ପରି ଶୋଭା ପାଉଅଛି । କୋଠାଉପରେ ଥିବା ସ୍ୱର୍ଣ୍ଣକଳସ କୁଚପରି ଦିଶୁଅଛି । ସ୍ତମ୍ଭ ତଳେ ଲାଗିଥିବା ହାତପରି ଦିଶୁଅଛି । ପୁରସ୍ତ୍ରୀମାନଙ୍କ ପାଦ ନୂପୁର ଶବ୍ଦ ସେ ହାଟରେ ବାଜୁଥିବା ବାଜାପରି ଶୁଭୁଅଛି । ସେ ହାଟରେ ଭଲ ଭଲ ବୋଲି ନାଟୁଆମାନେ କହୁଥାନ୍ତି । ଏ ନଗରୀରେ ମଧ୍ୟ ସେହିପରି ଶବ୍ଦରେ ପ୍ରଶଂସା ହେଉଅଛି । ୧ଉଦ୍ୟାନ, ଉପବନ ।

ଲକ୍ଷି ହୋଇ ନଦୀ ଅରଣ୍ୟ ସଙ୍ଗେ । ମଞ୍ଜୁଳ ¹ସଫରୀ ²ଖଞ୍ଜନ ରଙ୍ଗେ ।
³ସ୍ୱର-ସଂଯୁକ୍ତରୁ ଉତ୍ତମ ଗୀତ । ହୁଁ ହୁଁ କରିବାରେ ମତ୍ତକପୋତ । ୨୯ ।
ପେଚକ କରଟ କଟକେ କରି । ମହାଗିରି ପ୍ରାୟ ଉତ୍ତୁଙ୍ଗ କରୀ ।
ଦାନ-ବାରିରୁ ଘନାଘନ ପଦ । ଉଚିତ ସିନା ହେବାର କୋବିଦ । ୩୦ ।
¹ହୟ ²ହରିନାମ ³ବିକ୍ରମବଶେ । ⁴ଖୁରି ମାରିବାରୁ କ୍ଷୋଣୀ ତୋଷ କସେ ।
ଗୃଢ଼ ଉଦର ଦ୍ୱିଗୁଣ୍ୟ ତଥି କି । ବାଜଣୀ ନୂପୁର ବାନ୍ଧ ନର୍ତ୍ତକୀ । ୩୧ ।
କଣ୍ଠ-ମଣି ଯେଣୁ ଯେମନ୍ତ ରବ । ବାଜ ବନ୍ଧିବାରୁ ଶିକାରୀ ଛବ ।
ରଥଚୟ ମହାପୁରୁଷବତ । ଉଚ୍ଚ ଜାତକରେ ¹ଅରି-ସେବିତ । ୩୨ ।
ଦିବ୍ୟ ନାୟିକା ପୁଣି ଅଲଙ୍କୃତ । ସୁତ-କ୍ରୀଡ଼ାରେ ହୋଇଛନ୍ତି ବିଦିତ ।
ଗର୍ବ କରି ଊର୍ଦ୍ଧ୍ୱେ ବାନା ଉଡ଼ାଇ । ଏମନ୍ତେ ଚତୁରଙ୍ଗ ଚଳି ଯାଇ । ୩୩ ।

---

କରନ୍ତି, ଅତଏବ ସେମାନେ ମହାଭୈରବ ହୋଇଥିଲେ । ¹ମହାଭୈରବ ଦେବତା ବିଶେଷ ଓ ଅତିଭୟଂକର ।

୨୯— ହୃଦ ପାଇକମାନେ ନଦୀ ଓ ଜଙ୍ଗଲ ସଦୃଶ ଲକ୍ଷିତ ହେଉଥିଲେ, ନଦୀରେ ସଫରୀ ଅର୍ଥାତ୍ କେବଳ ମାଛ ଥାନ୍ତି । ସୈନ୍ୟ ସଫରୀ ନାମକ ଅସ୍ତ୍ର ଯୁକ୍ତ ହୋଇଥିଲେ । ଅରଣ୍ୟ ଖଞ୍ଜନ ଅର୍ଥାତ୍ ଖଣ୍ଡା ଦ୍ୱାରା ଶୋଭିତ । ପାଇକମାନେ ଖଣ୍ଡାଦ୍ୱାରା ଶୋଭା ପାଉଅଛନ୍ତି । ଅରଣ୍ୟରେ ସକାଳର ରକ୍ତିମା ପଡ଼ିଲେ କପୋତପକ୍ଷୀ ମତ୍ତ ହୋଇ ହୁଁକାର କରେ । ପଦାତିମାନେ ସ୍ୱରସଂଯୋଗରେ ଉତ୍ତମଗାନ କରୁଥିଲେ । ¹ସଫରୀ, ମତ୍ସ୍ୟବିଶେଷ ଓ ଫରୀ ସହିତ । ²ଖଞ୍ଜନ, ଗଣ୍ଡା ଓ ଖଣ୍ଡା ³ରାଗ, ସ୍ୱର ଓ ରକ୍ତିମା ।

୩୦—ସେନାହାତୀମାନେ ମହା ପର୍ବତ ପରି ଉଚ୍ଚହୋଇଥିଲେ ତାଙ୍କ ନିକଟରେ ପେଚକ ଅର୍ଥାତ୍ ଲାଙ୍ଗୁଳ ମୂଳ ଓ କରଟ ଅର୍ଥାତ୍ ଗଣ୍ଡସ୍ଥଳ ଏବଂ କଟକ ଅର୍ଥାତ୍ ଦନ୍ତ ବେକଯୁ ଥିଲା । ସେମାନଙ୍କଦ୍ୱାରା ପର୍ବତତୁଲ୍ୟ ହୋଇଥିଲେ । ଯେହେତୁ ପର୍ବତରେ ପେଚକ ଅର୍ଥାତ୍ ପେଚା ଓ କରଟ ଅର୍ଥାତ୍ କାଉ କଟକ, ଅର୍ଥାତ୍ ନିତମ୍ବ ଭୂମି ଥାଏ ।

୩୧— ବାଜନ ଅର୍ଥ ତ ପଚଳନ ହେତୁରୁ ଘୋଡ଼ାମାନଙ୍କର ହରି ନାମ ହୋଇଥିଲା । ହରି ବାମନା-ବତାରରେ ବିକ୍ରମ ଅର୍ଥାତ୍ ପାଦବିନ୍ୟାସଦ୍ୱାରା ବିଶ୍ୱବ୍ୟାପ୍ତ କରିଥିଲେ । ଖୁରି ମାରି ଚାଲୁଥିବାରୁ ସେମାନେ କ୍ଷୋଣୀ ଶୋଷ କରୁଥିଲେ କି ? କ୍ଷୋଣୀତଳମାନେ ଖୁରି ଅର୍ଥାତ୍ ଜଳପାତ୍ର ତମ୍ବା ପାତ୍ରରେ ସମସ୍ତ ନିରୂପଣ କରନ୍ତି । ମଧ୍ୟରେ ଗୂଢ଼ ଥିବାରୁ ଦ୍ୱିଗୁଣ୍ୟ ଉଦରେ ହୋଇଥିଲେ । ଦ୍ୱିଗୁଣ୍ୟରେ ନୃତ୍ୟକାଳ ଉଦର ଥାଏ । ବାଜେଣି ନୂପୁର ବନ୍ଧାହୋଇ ଥିବାରୁ ନାଚୁଥିବ ହୋଇଥିଲେ । ¹ହୟ, ଘୋଡ଼ା । ²ହରି, ବିଷ୍ଣୁ ଓ ଘୋଡ଼ା । ³ବିକ୍ରମ, ପରାକ୍ରମ ଓ ପାଦବିନ୍ୟାସ । ⁴ଖୁରି, ଘୋଡ଼ାଙ୍କ ଗତି ବିଶେଷ ଓ ତମ୍ବାପାତ୍ର ।

୩୨—ଘୋଡ଼ାମାନେ କଣ୍ଠମଣି ନାମକ ଭଅଁର କଣ୍ଠରେ ଥିବାରୁ ସୁନ୍ଦରତର ହୋଇଥିଲେ । ପକ୍ଷୀଙ୍କ କଣ୍ଠରେ ଯେମନ୍ତ ଧ୍ୱନି ଥାଏ । ବାଜ ଅର୍ଥାତ୍ ମୁହଁରୁ ଫେଣ ବାହାରୁ ଥିବାରୁ ଘୋଡ଼ାମାନେ ଶିକାରୀ ତୁଲ୍ୟ ହୋଇଥିଲେ । ଶିକାରୀମାନେ ବାଜ ଅର୍ଥାତ୍ ବାଣ ପକ୍ଷ ବନ୍ଧିଥାନ୍ତି । ପୁଣି ରଥସବୁ ମହା-ପୁରୁଷ ତୁଲ୍ୟ ହୋଇଅଛନ୍ତି । ମହାପୁରୁଷଙ୍କର ଉଚ୍ଚ ଜାତକ ଅର୍ଥାତ୍ କୋଷ୍ଠିରେ ଶତ୍ରୁମାନେ ସେବା କରିବାର ଯୋଗ ଥାଏ । ରଥମାନେ ଜାତକ ନାମକବସ୍ତ୍ର ଦ୍ୱାରା ଉଚ୍ଚ ହୋଇଥିଲେ ଏବଂ ଚକ୍ରଯୁକ୍ତ ହୋଇଥିଲେ । ¹ଅରି, ଚକ୍ର ଓ ଶତ୍ରୁ ।

୩୩—ଅଧିକନ୍ତୁ ମହାପୁରୁଷ ଦିବ୍ୟ ନାୟିକା ଅର୍ଥାତ୍ ଉତ୍ତମା ସ୍ତ୍ରୀ ଦ୍ୱାରା ଅଲିଙ୍ଗିତ ହୋଇଥାନ୍ତି । ରଥମାନେ ଉତ୍ତମ ନାୟିକା ବାକ୍ସଯୁକ୍ତ ହୋଇଥିଲେ । ମହାପୁରୁଷ ସୁତ ଖେଳାଇବାରେ ଥାଆନ୍ତି ।

୧କ୍ଷୋଦବଶରେ ଭାନୁ-ଜ୍ୟୋତି ସରେ । ୨ତମ-ଗ୍ରସ୍ତ ଏ ଭ୍ରମ ଜ୍ୟୋତିଷରେ ।
ତମ-ଗ୍ରସ୍ତରେ ସ୍ତ୍ରୀହନାରୀ ମାନ । ଦୀପ ଦୀପକ କରିବା କାରଣ । ୩୪ ।
ନିଶାଣେ ଦ୍ୱୀପିମାନେ ଚମକିଲେ । ନଗେ ଥିବା ଦ୍ୱୀପମାନେ ଶଙ୍କିଲେ ।
ଶ୍ରୀନଗରୁ ଆଦ୍ୟବର୍ଣ୍ଣ ଲୁଟିଲେ । ଘୋଷବାସୀ ମ୍ରାଣ୍ଡୁ ଅସି ଭେଟିଲେ । ୩୫ ।
ଆଗ ହୋଇଲେ ସେ ମାଗି ଦେଖାଇ । ପାପନ୍ଧା ଗଙ୍ଗାକୂଳେ ହେଲେ ଯାଇ ।
ସହଜେ ସୀତା ପାତାଳଗାମିନୀ । ହୈମବତୀ ଶଙ୍କର-ମୋହିନୀ । ୩୬ ।
ଗୃରୁ-ଧାରା ଯେ ୧ବୃଷା-ନନ୍ଦଦାୟୀ । ଅମୃତ-ନଧି ବିଷ୍ଣୁ-ପଦସ୍ଥାୟୀ ।
ସିନ୍ଧୁର-ବର-ତୋଷ-ଦାନ-କାରୀ । ଶ୍ୱେତ-ସ୍ୱ-ରୂପେ ପତିତ ନିସ୍ତାରି । ୩୭ ।
ସ୍ୱର୍ଣ୍ଣ ଷ ବୁଦରଶନ ସାରି । ଏକ ୧ଅସ୍ତ୍ରପେ ଦିବ୍ୟ ହଂସ ଧରି ।
୨ଷଡ୍ସୁର-ମାର୍ଗେ କରି ବନ୍ଦନ । ୩ଅମର୍ଷ ହୋଇ କରୁଛନ୍ତି ଗମନ । ୩୮ ।

---

ରଥମାନେ ସାଜଥିର ଶୀଘ୍ରରେ ଗ୍ରଥିତ ହେଉଥିଲେ । ଗର୍ବିକର ଉପରେ ବାନା ଉଡ଼ାଉ ଥିଲେ । ଏହାପର ସ୍ୱବରେ ହସ୍ତୀ ଅଶ୍ୱ ରଥ ପଦାତମାନେ ଯାଉଥିଲେ । ୧ସୂତ, ସାରଥି । ସୃତ, ସୃଜ ।

୩୪—ଧୂଳି ଉଡ଼ିବା ହେତୁରୁ ସୂର୍ଯ୍ୟ କିରଣ ପଡ଼ୁନ ନାହିଁ । ସନ୍ଧ୍ୟା ହେଲାବୋଲି ଜ୍ୟୋତିଷ ମାନଙ୍କର ଭ୍ରମ ହେଲା । ଅନ୍ଧକାର ଅଧିକ ହେବା ହେତୁରୁ ସ୍ତ୍ରୀମାନଙ୍କର ଦୀପ ଜାଳିବା ଅସ୍ପର୍ଶ ଜନକ ହୋଇଥିଲା । ୧କ୍ଷୋଦ, ଧୂଳି । ୨ତମଗ୍ରସ୍ତ ଓ ଅନ୍ଧାର ।

୩୫—ନିଶାଣ ବାଦ୍ୟ ଧ୍ୱନିରେ ଦ୍ୱୀପି ମାନେ ଅର୍ଥାତ୍ ବ୍ୟାଘ୍ରମାନେ ଚମକିଲେ । ଦ୍ୱୀପମାନେ ଅର୍ଥାତ୍ ବଣ ପ୍ରଭୃତି ସମ୍ପ୍ରଦାୟବାସୀ ଲୋକମାନେ ଚମକିଲେ । ନଗମ ନିକଟରେ ଥିବା ଦ୍ୱୀପନେ ଅର୍ଥାତ୍ ଜୀବ-ଜନ୍ତୁମାନେ ଡରିଗଲେ । ଶ୍ରୀ ନଗରରୁ ଅର୍ଥାତ୍ କାଶୀରୁ ଆଦ୍ୟ ବର୍ଣ୍ଣ ଶ୍ରୀ ଅର୍ଥାତ୍ ସମ୍ପତ୍ତି ଲୁଟିବାରୁ ସେଠା ଲୋକମାନେ ଅସି ଭେଟି ଦେଲେ ।

୩୬।୩୭—କାଶୀର ବାସିମାନେ ଆଗରୁ ଯାଇ ବାଟ ଦେଖାଇବାରୁ ପାପ ନାଶିନୀ ଗଙ୍ଗାଙ୍କ କୂଳରେ ପହଞ୍ଚିଲେ । ଗଙ୍ଗାବର୍ଣ୍ଣନ । ଗଙ୍ଗାଙ୍କର ସୀତା ନାମ ଥିବାରୁ କବି ତାହାଙ୍କୁ ସୀତାଦେବୀ ବୋଲି ତୁଳନା କରି ଅଛନ୍ତି । ଯେ ହେତୁ ତାହାଙ୍କର ନାମ ସୀତା ଏବଂ ସେହେଁ ପାତାଳକୁ ଗମନ କରି ଅଛନ୍ତି । ପୁଣି ଏ ଗଙ୍ଗା ଦୁର୍ଗାଙ୍କ ପରି । ଯେ ହେତୁ ସେହେଁ ହିମାଳୟରୁ ଜନ୍ମି ମହାଦେବଙ୍କ ସନ୍ତୁଷ୍ଟ କରି ଅଛନ୍ତି । ଗଙ୍ଗା ଶଚୀ ପରି ଗଙ୍ଗାଙ୍କର ପ୍ରବାହ ମନୋହର । ଶଚୀଙ୍କର ନାମ ଗୃତ୍ରଧାରା ଏବଂ ଗଙ୍ଗା ଉତ୍କୃଷ୍ଟ ଆନନ୍ଦ ଦେଇ ଅଛନ୍ତି । ଶଚୀ ବୃଷା ଅର୍ଥାତ ଇନ୍ଦ୍ରଙ୍କର ଆନନ୍ଦଦାୟିନୀ । ପୁଣି ଚନ୍ଦ୍ର ପରି ଗଙ୍ଗା ଅମୃତ ନିଧି ଅର୍ଥାତ ଜଳାଶୟ, ଚନ୍ଦ୍ର ସୁଧାନିଧି ଅଟନ୍ତି । ଚନ୍ଦ୍ର ବିଷ୍ଣୁପଦ ଅର୍ଥାତ ଆକାଶରେ ଥାଏ । ଗଙ୍ଗା ବିଷ୍ଣୁଙ୍କର ପାଦରେ ଅଛନ୍ତି । ଚନ୍ଦ୍ର ସିନ୍ଧୁର ଅର୍ଥାତ ସମୁଦ୍ରର କରତୋଷ (ପରମ ଆନନ୍ଦ) ଦିଏ । ଗଙ୍ଗା ସିନ୍ଧୁରବର ଅର୍ଥାତ ଐରାବତର ସନ୍ତୋଷ ଦାୟିନୀ ଅଟନ୍ତି । ଗଙ୍ଗା ଶ୍ୱେତଙ୍କ ମାତା ରୂପରେ ଶାନ୍ତନୁଙ୍କ ଓ ପାପିମାନଙ୍କୁ ଉଦ୍ଧାର କରି ଥିଲେ । ଚନ୍ଦ୍ର ଶ୍ୱେତ ସ୍ୱରୂପେ ଅର୍ଥାତ ଅନ୍ଧାରରେ ପଡ଼ିଥିବା ଲୋକ ମାନଙ୍କୁ ଉଦ୍ଧାର କରୁ ଅଛନ୍ତି । ୧ ବୃଷା, ଇନ୍ଦ୍ର । ବୃଷ ଉତ୍କୃଷ୍ଟ ।

୩୮—ଜଣେ ସେବକ ଅଳ୍ପ ଭକ୍ତି ଉଦୟ ହେବାରୁ ନାରାୟଣ ଓ ଗଙ୍ଗାଙ୍କର ଦର୍ଶନକର ଗୋଟିଏ ସ୍ୱର୍ଗୀୟ ହଂସବାହନ ବ୍ରହ୍ମଲୋକ ମାର୍ଗ ଧରିବୁ କ୍ରୋଧବଶ ବଗ ହୋଇ ଯାଉଅଛି । ୧ଅସ୍ତ୍ରପ, ବିଷାଦ ୨ଷଡ୍ସୁର, ବ୍ରହ୍ମଲୋକ, ୩ଅମର୍ଷ, କ୍ରୋଧ ୪ଉଦ୍ଭବ, ଭକ୍ତି ।

ବୋଲୁଛି କଣ୍ଠ ଧାରା ବାବୁ ଭଲେ । ଯତ୍ନରୁ ରମା ସୁଖେ ଅଷ୍ଟଷୋଡ଼ଶକାଳେ ।
ସଙ୍ଗି ଥୋଇଲାକୁ ମୁଁ ଭୁଟେ ଶଙ୍କ । ହେଲା ପାଦ-ଗତ ଚତୁରମୁଖ । ୩୯ ।
ନରେଶ ଏ ବାଣୀ ଯହୁଁ ଶୁଣିଲେ । ଭୁଜଙ୍ଗମକୁ ଧୂଆଇଁ ହାଣିଲେ ।
ସୁରଙ୍ଗତର ହୋଇ ତରବାରି । ଦଣ୍ଡାଳ ୧କିଂଶୁକ-କଳିକା ପରି । ୪୦ ।
ମୁଣ୍ଡ ପଡ଼େ ଗଣ୍ଡଶୈଳ ପରାୟେ । ରକ୍ତରେ ବ୍ୟକ୍ତ ଗୈରିକ-ଧାରା ଏ ।
ରାଜା ପୃଚ୍ଛା କଲେ କହିଲା ହଂସ । ମୁହିଁ ଲୋମପାଦ-ବଂଶ-ଅବତଂସ । ୪୧ ।
୧ଅମ୍ବୁଜ ନାରାୟଣଙ୍କ ପୂଜନେ । ଆସିଁ ଅଛନ୍ତି ଚଞ୍ଚରୀକାବନେ ।
ମୁଁ ଯେ ବହୁଁ ଜମ୍ବୁନଦ-ସରୋଜ । କଲା ଏ ନିଶାଚର ଏ ହିଂସାରେ । ୪୨ ।
ବଜ୍ରପୁରରେ ଥିବେ ଆମ୍ଭେ ଭେଦ । କିଲିରୁ ଏହା ବଂଶ ନିରଚ୍ଛେଦ ।
ସେ ମରାଳରାଜ ଯୋଗେ ଗଲେ । ଭୂପତି ମିଳିଲେ କି ବୈକୁଣ୍ଠେ ଗଲେ । ୪୩ ।
୧ସ୍ୱୟମ୍ଭୂ ପାଦେ ପ୍ରଣାମ କହିଲା । ଏ କଥାମାନ କାଦମ୍ବ କହିଲା ।
ହରଷେ ଆଜ୍ଞା ଦେଲେ ୨ହଂସ-ରଥ । ମାଗ ହୋ ରାଜା ଯେ ତୋ ମନୋରଥ ।
ବ୍ରଜେଶ୍ୱର କରଯୋଡ଼ି ରହିଲେ । ପ୍ରଜାପତି ମତି ଜାଣି କହିଲେ ।
ମନକର୍ଣ୍ଣ କଥା ଶୁଣି ପ୍ରସଙ୍ଗେ । ତପ ତେଜିଲେ ଅପସରା ସଙ୍ଗେ । ୪୫ ।

---

୩୯—ସେ ରାକ୍ଷସ କହୁଅଛି ରେ ହଂସ, ତୋ ବାପ ବ୍ରହ୍ମା ଅଧି ବଳେ ରକ୍ଷା କରୁ । ଶିକାରବେଳେ ମୋ ମନରେ ପଡ଼ିବୁ । ମୁଁ ତୋତେ ସହିବ ନ ଶିପାରିବି ନାହିଁ । ମୁଁ ଶଙ୍ଖାସୁର ନୁହେଁ । ସେ ମିନା ବେଦ ଚୋରାଇ ନେଇ କିଛି ନ କରି ରହିଥିଲା । ଏବେ ତୋ ଅଭାବରେ ବ୍ରହ୍ମା ପାଦଚାରୀ ହେବ । ୧ଅଷ୍ଟେ ଶିକାର ।

୪୦—ରାଜା ଏ କଥା ଶୁଣିବା ମାତ୍ରେ ଖଡ୍ଗ ଆସ୍ଫାଳନ କରି ସେ ରାକ୍ଷସକୁ ହାଣିଦେଲେ ତା ରକ୍ତରେ ଅଚଳାଇ ତରବାରି ପଳାଶ କଢ଼ି ପରି ଦିଶିଲା । ୧କିଂଶୁକ, ପଳାଶ ।

୪୧।୪୨। ସେ ରାକ୍ଷସର ମଣ୍ଡ ଗଣ୍ଡଶୈଳ ଅର୍ଥାତ୍ ପର୍ବତରୁ ଖସିଥିବା ବଡ଼ ପଥର ପରି ପଡ଼ିଲା । ଗେରୁଧାର ପରି ରକ୍ତଧାର ବହୁଥିଲା । ତହୁଁ ରାଜା ପଚାରିବାରୁ ହଂସ କହିଲା, ହେ ଲୋମପାଦ ବଂଶ ଭୂଷଣ । ଶୁଣ, ବ୍ରହ୍ମା ନାରାୟଣଙ୍କ ପୂଜା କରିବାକୁ ଚମ୍ପକ ବନକୁ ଆସିଅଛନ୍ତି ଏ ସମୟରେ ମୁଁ ସୁବର୍ଣ୍ଣ ସରୋଜରେ ବହନ କରୁଥିଲି । ଏ ରାକ୍ଷସ ହିଂସାରେ ମୋତେ ଧରିଲା । ୧ଅମ୍ବୁଜ, ପଦ୍ମ ।

୪୩—ମୁଁ ପୂର୍ବ କାଳରେ ବଜ୍ରପୁର ପୁରରେ ଭେଦ ନ ଥିବାରୁ ଏ ରାକ୍ଷସର ବଂଶ ଉଣା ହୋଇ ଥିଲା । ସେହି ବୈର ଶୋଧନ କଲା । ରାଜା ସେ ହଂସ ଯୋଗରୁ ଯେପରି ବୈକୁଣ୍ଠ ପର୍ବତରେ ପହଞ୍ଚିଲେ ।

୪୪—ହଂସ ବ୍ରହ୍ମାଙ୍କ ପାଦରେ ନମସ୍କାର କରି ସେସବୁ କଥା କହିଲା ତହୁଁ ବ୍ରହ୍ମା ଆନନ୍ଦରେ କହିଲେ । ହେ ରାଜନ୍; ବର ମାଗ । ୧ସ୍ୱୟମ୍ଭୂ, ବ୍ରହ୍ମା । ୨ହଂସରଥ, ବ୍ରହ୍ମା । ୩କାଦମ୍ବ, ମରାଳ ।

୪୫—ରାଜା ହାତଯୋଡ଼ି ଠିଆହେଲେ । ବ୍ରହ୍ମା ମନ ଜାଣି କହିଥିଲେ । ମନ କର୍ଣ୍ଣଋଷି ତପସ୍ୟା ଛାଡ଼ି ଅପସରା ସଙ୍ଗରେ ରହି ସୁଖଭୋଗ କଲେ । ଆପଣ ଏହା କଥା ପ୍ରସଙ୍ଗରେ ଶୁଣିଥିବେ ।

ପ୍ରଧାନ ସେହିତ ସ୍ୱର୍ଗ-ଭୋଗର । ଅଧିକ ସୁଖ ସେ କର ବିଗ୍ରହ ।
ଭଲୁ ହେବ ଶୋଭାବତୀ ନନ୍ଦନା । ପୂର୍ଣ୍ଣ କରିବା ତୋ ଦୁଇ କାମନା । ୪୬ ।
ଗନ୍ଧମାଦନରେ ଆମ୍ଭେ ବସନ୍ତେ । ଗୁପ୍ତ ହୋଇଥାଇ ଖ୍ୟାତ ବସନ୍ତେ ।
ରତିମର୍ଦ୍ଦା ସେ ଅପସରାବାର । ଶକ୍ତ କି ତାକୁ ଅପସରିବାର । ୪୭ ।
ତାକୁ କନ୍ଦର୍ପ ଭୋଗ କରିବ । ସୁତା ଉପୁଜାଇ ପୁରକୁ ନେବ ।
ନ ଥିଲା ନାହିଁ ନୋହିବ ଏ ବାଣୀ । କୁମାରୀଠାରେ ସମ୍ଭବ ପୁଣି । ୪୮ ।
ବୋଲିବେ କୋଟିବ୍ରହ୍ମାଣ୍ଡସୁନ୍ଦରୀ । ପ୍ରେମ ଅଙ୍କୁରରୁ ପ୍ରେମମଞ୍ଜରୀ ।
ଏ ଆଜ୍ଞା ଦେଲ ରାଜା ଅନୁଗତ । ନାରାୟଣଙ୍କୁ କରି ପ୍ରଣମିତ । ୪୯ ।
ଦେଖିଲେ ସ୍ଥାନ ମହାଗଦ ପ୍ରାୟ । ୧କୁଣ୍ଡଳୀ ଗମନେ କରନ୍ତି ଭୟ ।
ସ୍ୱଭାବେ ସ୍ୱର୍ଗପୁରକୁ ନିଶ୍ରେଣୀ । ଅପୂର୍ବ ଫଳୀରେ ରୁଚିର ପୁଣି । ୫୦ ।
ସଉଧ ଯୋଗବାରୁ ଦିବ୍ୟବାସ । ମାନସେ ବିହରେ ପରମହଂସ ।
୧ତପେ ସେ ଖ୍ୟାତ ଶୁଚି ଜାତ କରେ । ପ୍ରଖର ହୁଅଇ ଜ୍ୟେଷ୍ଠ ପ୍ରକାରେ । ୫୧ ।

---

୪୬ – ସ୍ୱର୍ଗ ଲୋକରେ ସେ ଅପ୍ସରା ସଙ୍ଗ ପ୍ରଧାନ ଓ ସେହି ଏକା ଅଧିକ ସୁଖ । ତୁମ୍ଭେ ଏହା ଭଲୁଙ୍କଠ ପୁଣି ତୁମ୍ଭର ସୁନ୍ଦରୀ କନ୍ୟା ଜାତ ହେବ । ଅମ୍ଭେ ତୁମ୍ଭେ ତୁମ୍ଭର ଅପ୍ସରା ଭୋଗ ଓ ସୁନ୍ଦରୀ କନ୍ୟାପ୍ରାପ୍ତି ହେବା ଏହି ଦୁଇ ମନୋରଥ ପୂର୍ଣ୍ଣ କରିବା ।

୪୭—ଅମ୍ଭେ ଗନ୍ଧମାଦନ ପର୍ବତରେ ବାସ କରୁଥିବା ବେଳେ ଗୁପ୍ତ ହୋଇ ରହୁଥିବା ରତିମର୍ଦ୍ଦନାମ୍ନୀ ସୁନ୍ଦରୀ ଦେଖିଗଲା । ଅପ୍ସରାମାନେ ସୌନ୍ଦର୍ଯ୍ୟରେ ପରାସ୍ତ ହୋଇ ତାକୁ ଅପସରିଯିବା ବଡ଼ କଷ୍ଟ ନୁହେଁ ।

୪୮—ତୁମ୍ଭେ ସେ ସୁନ୍ଦରୀକି କନ୍ଦର୍ପକ ଭୋଗ କରି ଝିଅଟିଏ ଜନ୍ମାଇ ଘରକୁ ନେଇଯିବ । ବର୍ତ୍ତମାନ ତାପରି କେହି ନାହିଁ ଓ ପୂର୍ବେ ନ ଥିଲେ, ଏବଂ ଭବିଷ୍ୟତରେ କେହି ହେବ ନାହିଁ । ଏକଥା ଏକା ତୁମ୍ଭ ଝିଅଠାରେ ସମ୍ଭବ ।

୪୯-୫୦—କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ବୋଲି ଝିଅ ନାଁ ଦେବ । ସେ ପ୍ରେମ ଅଙ୍କୁର ବାହାରିଥିବା ପ୍ରେମମଞ୍ଜରୀ ହେବ । ବ୍ରହ୍ମା ଏହା ଆଜ୍ଞା ଦେବାରୁ ରାଜା ତାଙ୍କର ଅନୁଗତ ହୋଇ ଶ୍ରୀନାରାୟଣଙ୍କୁ ପ୍ରଣାମ କରି ସେ ସ୍ଥାନର ଶୋଭା ଦେଖିଲେ, ସେ ସ୍ଥାନ ମହାଗଦ ପରି ହୋଇଅଛି । ସାପମାନେ ସେ ପାଖକୁ ଯିବାକୁ ଡରନ୍ତି । ଏ ସ୍ଥାନକୁ ଋଷିମାନେ ଶାପଥିବାରୁ ଅସନ୍ତୁ ନାହିଁ । ଏକ ସମୟରେ ଲୋକରେ ସ୍ୱର୍ଗନିଶ୍ରେଣୀ ହେବାରୁ ଋଷିମାନେ ଏଠାକୁ ନ ଆସିବାରୁ ଶାପ ପାଇଥିଲେ । ଏସ୍ଥାନ ସ୍ୱଭାବରେ ସ୍ୱର୍ଗକୁ ଯିବାକୁ ନିଶ୍ରେଣି ପରି ହୋଇଅଛି । ନିଶ୍ରେଣିରେ ପାହାଚମାନ ଲାଗିଥାଏ । ଏଠାରେ ଫଳୀ ଅର୍ଥାତ୍ ବୃକ୍ଷମାନେ ଅଛନ୍ତି । ୧କୁଣ୍ଡଳୀ, ସର୍ପ ଓ କୁଣ୍ଡଳଧାରୀ ।

୫୧—ସୌଧ ଅର୍ଥାତ୍ ଦେବତାମାନଙ୍କ ସେଠାରେ ଥିବାରୁ ଉତ୍ତମ ଗୃହ ପରି ହୋଇଅଛି । ସେଠାରେ ସୌଧ ଅର୍ଥାତ୍ ଅଟ୍ଟାଳିକାମାନ ଥାଏ । ପରମହଂସ ( ମୁନିମାନେ ) ବିହାର କରୁଥିବାରୁ ଏ ସ୍ଥାନ ମାନସସରୋବର ପରି ହୋଇଅଛି । ମାନସରେ ଉତ୍କୃଷ୍ଟ ହଂସମାନେ ବିହାର କରନ୍ତି । ଏ ସ୍ଥାନ ଜ୍ୟୋତ୍ସ୍ନାସ୍ୱପରି ହୋଇଅଛି । ଏସ୍ଥାନ ତପସ୍ୟା ବିଷୟରେ ବିଖ୍ୟାତ । ଜ୍ୟେଷ୍ଠ ଗ୍ରୀଷ୍ମରେ ପ୍ରସିଦ୍ଧ । ଏସ୍ଥାନ ଶୁଚିତା ଜନ୍ମାଏ । ଜ୍ୟୋତ୍ସ୍ନା ଅଗ୍ନି ଜାତ କରେ । ୧ତପ, ତପସ୍ୟା ଓ ମାଘ ମାସ, ଶୁଚି, ଶୁଦ୍ଧ ଓ ଅଗ୍ନି ।

ରାଜା ଯାନ ତହୁଁ ନିତ୍ୟ ଗମନ । କେଦାରେଶ୍ୱରଙ୍କ ନିକଟ ସ୍ଥାନ ।
ସ୍ୱର୍ଣ୍ଣ-ସର-ତୀର ଚନ୍ଦନ-ବନ । 'ଚ' କାଟି ଯହିଁ 'କ' ଯୋଗଇ ନନ । ୫୨ ।
ସମାନ ବନେ ଏ କନ୍ୟାକୁ ଦେନ । ବିହର କହିଗଲେ ପଦ୍ମଯୋନ ।
ସେ ବନ ସେବନେ ସେହି ଦମ୍ପତି । ବିରଚନ କଲେ ଅଭେଦ ପ୍ରୀତି । ୫୩ ।
ମାଳା କରି ଦେଲେ କେବଳ କର । ହେଳା କରି ଦେଲେ ବିଷୟ ବାର ।
ପାନ କରି ମାନ୍ଦ କଲେ ଅଧର । ଧ୍ୟାନ କରି କଲେ ଭାବବିସ୍ତର । ୫୪ ।
ଦାନ କରି କଲେ ସରୁଚୁମ୍ବନ । ଭିନ୍ନ କରିଦେଲେ ଝିନବସନ ।
ଘାତ କରି ଯହିଁ ଦଶନ ନଖ । ଜାତ କରି ତହିଁ ପରମ ସୁଖ । ୫୫ ।
ପାଠ କଲେ ଯେନାଯେନ ବଚନ । ହଠ କଲେ ଜିଣିବାକୁ ମଦନ ।
ଏକାନ୍ତ ସେ କାନ୍ତକାନ୍ତା ତରୁଣ । ଏମନ୍ତ ମତ କ ଅଧିକ ପୁଣ । ୫୬ ।
(୧)ବନୀ ତ ଜନତ ଅନଙ୍ଗ କରେ । ମନ୍ଦ ମନ୍ଦ ଗନ୍ଧବହ ବିହରେ ।
ପୁଷ୍ପ ପୁଷ୍ପରସ ପତନ ଅତ । ରଣରଣ ବୋଲେ ଭ୍ରମରପନ୍ତ । ୫୭ ।
କୁହୁକୁହୁ କରୁଛନ୍ତି କୋକିଳ । ହୁଁ ହୁଁ ହୁଁ ହୁଁ କରେ କପୋତକୁଳ ।
ଶୁଭୁଅଛି ପୁଣି କିନ୍ନରୀ-ଗୀତ । ଲୋଭୁଅଛି ତହିଁ ବିଶେଷ ଚିତ୍ତ । ୫୮ ।
ତରୁ (୧)ଆଳବାଳ (୨)ଜମ୍ବୁ-ଜମ୍ବାଲ । ଘୂରୁ ଭ୍ରମିବାରୁ ଶୀତଳ ଜଳ ।
ମହୀରେ ରେଣୁ କେବଳ କର୍ପୂର । ତହିଁରେ ପଙ୍କ କସ୍ତୂରୀକର । ୫୯ ।

---

୫୨-୫୩—ରାଜା ଏହା ପରେ ଯାନ କେଦାରେଶ୍ୱରଙ୍କ ନିକଟକୁ ନିତ୍ୟ ଗମନ କରୁଥିଲେ । ସେଠାରେ ସ୍ୱର୍ଣ୍ଣ-ସରୋବର କୂଳରେ ଚନ୍ଦନବନ ଅଛି । ସେ ଶବ୍ଦରୁ ଚ କାଟିଦେଇ ନ ଯୋଗକଲେ ନନ୍ଦନ ହେଉଅଛି । ନନ୍ଦନବନ ସମାନ ଏହି ବନରେ ଏ କନ୍ୟାକୁ ଦେଇ ବିହାର କର । ପଦ୍ମଯୋନି ( ବ୍ରହ୍ମା ) ଏହା କହି ସେ ଦମ୍ପତୀଙ୍କୁ ଦେଇ ଚାଲିଗଲେ । ସ୍ତ୍ରୀ ପୁରୁଷ ଦୁହେଁ ସେ ବନ ବିହାର କରିବାକୁ ଅଭେଦ ପ୍ରୀତି କଲେ ।

୫୪—ସେ ଦମ୍ପତି ପରସ୍ପର ଆଲିଙ୍ଗନ କରି ବାହୁକୁ ମାଳା କଲେ ଅନ୍ୟ ବିଷୟରେ ସବୁ ହେଳା କଲେ । କେବଳ ପରସ୍ପର ଅଧର ପାନରେ ରତ ହେଲେ । ପରସ୍ପର ଅନୁରାଗ କଥା ଧ୍ୟାନ କଲେ ।

୫୫—ପରସ୍ପର ସରୁଚୁମ୍ବନ ଦାନ ଦେଇ ଦେଲେ । ଦେହରୁ ସରୁ ଲୁଗାମାନ ବାହାର କଲେ । ପରସ୍ପର ଦନ୍ତ ଓ ନଖ ଘାତ କରି ପରମସୁଖ ଜାତ କଲେ ।

୫୬—ପରସ୍ପର ଦେଖା ଦେଖି କଥା କେବଳ ପାଠପରି ପଢ଼ିଲେ । କନ୍ଦର୍ପକୁ ଜିତାଇବାକୁ ହଠକଲେ । ଯେଉଁଠାରେ ଏକାନ୍ତ ହୋଇଥିବ, ସେ ଦମ୍ପତୀ ଓ ଯୁବକ ହୋଇଥିଲେ । ଏପରି ସମ୍ଭୋଗ କରିବା କଥା କ'ଣ ଅଧିକ ହେବ ?

୫୭—ସେ ବନ କାମ ଉଦ୍ରେକ କରାଉଥିଲା । ବାୟୁ ମନ୍ଦ ମନ୍ଦ ବହୁଥିଲା । ଫୁଲମାନଙ୍କରୁ ମଧୁରସ ପଡ଼ୁଥିଲା । ଭ୍ରମରମାନେ ରଣରଣ ଶବ୍ଦକଲେ । ୧ବନୀ, ବନଭୂମି ।

୫୮—କୋକିଳ ବୋବାଉଥିଲେ । କପୋତମାନେ ହୁଁକାର କରୁଥିଲେ । କିନ୍ନର ସ୍ତ୍ରୀ-ମାନେ ଗୀତ କରୁଥିଲେ, ସେ ଗୀତରେ ମନ ଆସକ୍ତ ହେଉଥିଲା ।

୫୯—ଗଛମୂଳମାନଙ୍କରେ ଜମ୍ବୁପଙ୍କ ଦିଆ ଯାଇଥିଲା । ନଦୀରେ ପାଣି ଘୂରି ବୁଲି ଘେରିଥିବାରୁ ଶୀତଳ ହୋଇଥିଲା, ସେ ଭୂମିରେ କେବଳ କର୍ପୂର ଧୂଳି ପଡ଼ୁଥିଲା । କସ୍ତୁରୀ ମଧ୍ୟ ପଙ୍କ ହୋଇଥିଲା ।

ବଞ୍ଚିତ ଏମନ୍ତେ ପକ୍ଷିଣୀ କେତେ । ଗୁପ୍ତ ସୁକୁମାରୀ କୁମାରୀ ଜାତେ ।
ଶୋଚନା କରନ୍ତେ ନୃପତି ମଣି । ରଚନା କଲା ମନ୍ତ୍ରୀ ବୋଧବାଣୀ । ୬୦ ।
ନନ୍ଦନୀ ଶୋଇ ରତନ ପଲଙ୍କେ । ଋବାଧୀ ଦେଖିଲା ଆଖିପଲକେ ।
ସ୍ୱେଦକଣ୍ଠନ କ୍ଷଣେ କ୍ଷଣେ ରତି । ପିକେ ଦେଉଛନ୍ତି [1]ମୂକଭୃତ୍ତି ଯାତି । ୬୧ ।
ରତିକ ସମାନ ନୋହିବ ରତି । ଯତି କେ ଦେଖିଲେ ରଖିବ ଧୃତି ।
ଯୁବାକାଳେ ଏ ବା ହେବ କେମନ୍ତ । ହେବାର ଜନମ ଯେଣୁଁ ଏମନ୍ତ । ୬୨ ।
ଯମାନେ କାହୁଁ ଭଥଇବା ବର । ଏମାନେ ସଚିବ ଚିନ୍ତ ଅଧିର ।
ଥାକ ଶବ୍ଦୁ ଶୁଭେ ଏମନ୍ତ ଗୀର । ପ୍ରକାଶ ହେଲାଣି ବର ଏହାର । ୬୩ ।
ଏଣୁ ସ୍ଥିର-ଚିତ୍ତ ପୁଜୀକ ଘେନ । ସବଳେ ପରବେଶ ରାଜଧାନୀ ।
ପାଳିତ ହୋଇଲା ରାଣୀ ଗଣରେ । ଜେମା ଲଳିତ ବାଳି ଅବସ୍ଥାରେ । ୬୪ ।
ବଦ୍ରିକାନାଥ ଉପଇନ୍ଦ୍ର ଭଣନ୍ତେ । [1]ଶୁଦ୍ଧ ସୁବର୍ଣ୍ଣ-ମୟ-ପଦ ଜାତେ ।
ଧ୍ୟେନେ ଶରଣ କରିବେ [2]ହୃଦୟ ଶରଣ ମଣିରେ ନିର୍ମାଣ କାୟ । ୬୫ ।

---

୬୦—ଏହାପରେ କେତେଦିନ ଯାପନ କରି କନ୍ୟାଟିଏ ଜାତ କରିବାରୁ ସେ ରତିମର୍ଦ୍ଦା ଗୁପ୍ତ ହୋଇଗଲା । ତା ବିରହରେ ରାଜା ଶୋକ କରିବାରୁ ମନ୍ତ୍ରୀ ପ୍ରବୋଧ ବାକ୍ୟ ଦ୍ୱାରା ଅଶ୍ୱସ୍ତ କଲେ ।

୬୧—ସେ ରାଜକନ୍ୟା ରତ୍ନପଲଙ୍କରେ ଶୋଇଥିଲା । ତାକୁ ଦେଖିବା ଲୋକର ଆଖି ପଲକ ଅପଲକ ହେଲା ଅର୍ଥାତ୍ ପଲକ ପଡ଼ିଲା ନାହିଁ । ଅଳ ସେ କନ୍ୟାର ଶୋଭାକୁ ଦେଖି ବସ୍ତ୍ରରେ ନିର୍ନିମେଷ ହେଲା ଏବଂ ଏ କନ୍ୟା କେବେ କେବେ କାନ୍ଦିବା ସ୍ୱରରେ ପିକକୁ ଲଜ୍ଜାରେ ମୂକ କରିଦେଉଥିଲା ଅର୍ଥାତ୍ ଏହା ସ୍ୱର ପିକସ୍ୱରଠାରୁ ମଧୁର ଅଟେ । [1]ମୂକବୃତ୍ତି, ମୌନ ।

୬୨।୬୩—ଏ କନ୍ୟାର ରତି ଏ ଶୋଭାକୁ ରତିଦେବୀ ସମାନ ହେବେ ନାହିଁ । କେଉଁ ସନ୍ନ୍ୟାସୀ ଏ କନ୍ୟାକୁ ଦେଖି ଧୈର୍ଯ୍ୟ ଧରିବ । ଏ ଜନ୍ମହେବା ସମୟରେ ଯେବେ ଏପରି ସୁନ୍ଦରୀ ତେବେ ଯୁବାକାଳେ ଏ କିପରି ହେବ । ଏହା ସମାନ ବର ଅବା କେଉଁଠାରୁ ଭେଟିବା । ମନ୍ତ୍ରୀ ଏହା ଭାବି ଅସ୍ଥିର ଚିତ୍ତ ହେଲେ । ଏହି ସମୟରେ ଆକାଶ ବାଣୀ ଶୁଭିଲା । ଏ କନ୍ୟାର ବର ଜନ୍ମ ହେଲାଣି ।

୬୪—ରାଜା ଏହି ଆକାଶ ବାଣୀରେ ସ୍ଥିରଚିତ୍ତ ହୋଇ କନ୍ୟାକୁ ସେନା ସମୈନ୍ୟରେ ରାଜଧାନୀରେ ପ୍ରବେଶିଲେ । ସେ ଜେମା ପିଲା ଅବସ୍ଥାରେ ରାଣୀମାନଙ୍କଦ୍ୱାରା ଲାଳିତ ପାଳିତ ହେଲା ।

୬୫—କବି ଉପେନ୍ଦ୍ର ଭଞ୍ଜ କହନ୍ତିରେ ବିଶୁଦ୍ଧ ଅକ୍ଷର ପୂର୍ଣ୍ଣ ପଦମାନ ସ୍ମରଣ ହେବ ବୋଲି ବଦରିକା-ନାଥଙ୍କୁ ଚିନ୍ତା କଲେ । ବଦରିକାନାଥଙ୍କ ପ୍ରତିମା ଯେହେତୁ ସ୍ୱର୍ଣ୍ଣ ମଣିରେ ନିର୍ମିତ, ଅତଏବ ତାହାଙ୍କୁ ଅବା ହୃଦ୍ ଅର୍ଥାତ୍ ହୃଦୟ ରୂପ ଅୟସ୍କ (ଲୁହାକୁ) ଧ୍ୟାନରେ ସ୍ୱର୍ଣ୍ଣ କରିମାନେ ଶୁଦ୍ଧସୁବର୍ଣ୍ଣମୟ ପଦର ଜାତ ନହେବ । ଲୁହାରେ ସ୍ପର୍ଶମଣି ଲାଗିଲେ ସୁନା କରିଦିଏ ଏହା ପ୍ରସିଦ୍ଧି ଅଛି । [1]ଶୁଦ୍ଧସୁବର୍ଣ୍ଣମୟପଦ, ଅପଲମ୍ଭନାପଦ ଓ ନିର୍ଦ୍ଦୋଷ ଅକ୍ଷର ପୂର୍ଣ୍ଣ ପଦ । [2]ହୃଦୟ, ହୃଦ୍ + ଅୟ = ହୃଦୟ ରୂପକ ଲୁହା ।

## ତୃତୀୟ ଛାନ୍ଦ ।

### ରାଗ କେଦାର । ଚକ୍ରକେଳୀ ବାଣୀ ।

( କୋଟିବ୍ରହ୍ମାଣ୍ଡସୁନ୍ଦରୀର ବାଲ୍ୟ ପୌଗଣ୍ଡ ଏବଂ ଯୌବନାବସ୍ଥା ବର୍ଣ୍ଣନ )

ନାନା ଶବ୍ଦ ଅର୍ଥେ ଯେ ବିଚକ୍ଷଣ । ଯେହୁ ଜାଣେ ଅଳଙ୍କାର ଲକ୍ଷଣ ।
ସେହି କରୁ ଏ ଛାନ୍ଦ ବିବେଚନା । ବାଲ୍ୟ ପୌଗଣ୍ଡ ଯୌବନ ରଚନା ॥
ନବବିଧାତା ମଦନ ହୋଇଲା । ନବ ଯୌବନସୃଷ୍ଟି ଭିଆଇଲା ।
ବାଲ୍ୟ ପୌଗଣ୍ଡ ଯୌବନ-ଶାଟକ । ଆନ ଆନ ସ୍ଥାନେ ଦେଲା ସ୍ଥିତିକ । ୨ ॥
୧ରଜନୀକର ମାଗିଲା ଖେଳିଲା । ରଜନୀକର ସ୍ନେହେ ତା ଗୁଡ଼ିଲା ।
୨ ଧାତ୍ରୀମଣ୍ଡନା ହେବାରୁ ଭୁଲାଇ । ଧାତ୍ରୀମଣ୍ଡନା ନାମ ଯେ ବୋଲାଇ । ୩ ॥
୧ ନେତ୍ର-ଗତରେ ଥିଲା ଅଧୀରତା । ନେତ୍ର-ଗତରେ ଅଣି କଲା ରତା ।
କନ୍ୟା ବର କରିବାର କଣ୍ଠାଇ । କନ୍ୟାବର ଚଉଁ ଦେଲା ଛଡ଼ାଇ । ୪ ।
ଚନ୍ଦ୍ର-ବନ୍ଧ ଦରଶନେ ଥୋଇଲା । ଚନ୍ଦ୍ର-ବନ୍ଧନ ଚଉକୁ ହୋଇଲା ।
୧ ବନ୍ଦୀ ଲକ୍ଷେ ଶୋଭା-କୀର୍ତ୍ତି କୁହାଇ । ବନ୍ଦୀ ଲକ୍ଷେ ୨ଅବରୋଧେ ରୁହାଇ । ୫ ॥

---

### ତୃତୀୟ ଛାନ୍ଦ ।

୧—ଯେଉଁ ଲୋକ ଅନେକ ଶବ୍ଦାର୍ଥ ଜାଣେ ଓ ଅଳଂକାର ଶାସ୍ତ୍ର ଜାଣେ ସେ ଲୋକ ବାଲ୍ୟ ପୌଗଣ୍ଡ ଯୌବନବର୍ଣ୍ଣନାତ୍ମକ ଏ ଛାନ୍ଦକୁ ସମାଲୋଚନା କରୁ ।

୨—କନ୍ଦର୍ପ ନୂଆବିଧାତା ହୋଇ ଏ କନ୍ୟାର ନୂଆ ଯୌବନ ତିଆରିକଲା ଏବଂ ବାଲ୍ୟ, କୈଶୋର ଓ ଯୌବନର ଚୀଟମାନଙ୍କୁ ଭିନ୍ନ ଭିନ୍ନ ସ୍ଥାନରେ ରଖିଲା । ତାହା ଆଗରେ କୁହାଯିବ ।

୩—ଏ କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ବାଲ୍ୟାବସ୍ଥାରେ ରଜନୀକର ଅର୍ଥାତ୍ ଚନ୍ଦ୍ରକୁ ଆଣିଦିଅ ବୋଲି ମାଗିଲା । କୈଶୋରାବସ୍ଥାରେ ରଜନୀକର ଅର୍ଥାତ୍ ଧୂଳିସମୂହରେ ଖେଳିଲା । ଯୌବନାବସ୍ଥାରେ ରଜନୀକର ଅର୍ଥାତ୍ କର୍ପୂର ସ୍ନେହରେ ଧୂଳିଖେଳ ଛାଡ଼ିଲା । ପୁଣି ବାଲ୍ୟାବସ୍ଥାରେ ଧାତ୍ରୀ ମଣ୍ଡନା ଅର୍ଥାତ୍ ଭାର ହେବାଦ୍ୱାରା ଧାଈମାନଙ୍କୁ ଶୋଭିତ କଲା । କୈଶୋରାବସ୍ଥାରେ ଭୁଲାଇଲା ଅର୍ଥାତ୍ ଉକ୍ତ କାର୍ଯ୍ୟ ହେଲାନାହିଁ । ଯୌବନାବସ୍ଥାରେ ଧାତ୍ରୀମଣ୍ଡନା ଅର୍ଥାତ୍ ସୌନ୍ଦର୍ଯ୍ୟରେ ପୃଥିବୀ ମଣ୍ଡନା ବୋଲାଇଲା । ୧ରଜନୀକର, ଚନ୍ଦ୍ର ଓ କର୍ପୂର । ରଜନୀକର, ଧୂଳିସମୂହ । ୨ଧାତ୍ରୀ ଧାଈ ଓ ପୃଥ୍ୱୀ ।

୪—ଏହାର ବାଲ୍ୟ ଓ କୈଶୋରାବସ୍ଥାରେ ନେତ୍ର ଓ ପାଦ ଅର୍ଥାତ୍ ଲୁଚାଚୋରି (ପିଲାଖେଳରେ) ଓ ଗମନରେ ଅସ୍ଥିରତା ଥିଲା । କିନ୍ତୁ ଯୌବନାବସ୍ଥାରେ ନେତ୍ର ଗତିରେ ଅର୍ଥାତ୍ ଚାହାଣିରେ ପୁଣି ସେହି ଚଞ୍ଚଳତା ରହିଲା । ପିଲାଦିନେ ଲୁଗାପିନ୍ଧିବାରେ ପ୍ରୀତି ନ ଥିଲା ଏବଂ ଗମନରେ ଚଞ୍ଚଳତା ଥିଲା । ଯୌବନରେ ପୁଣି ଚାହାଣିରେ ଚଞ୍ଚଳତା (ରତି) ରହିଲା । ପୁଣି ଏ କନ୍ୟାବର (ଜାମାତ୍ରେଷ୍ଠ) ପିଲାଦିନେ କଣ୍ଢେଇ ବରକନ୍ୟା କରି ଖେଳୁଥିଲା । ଯୌବନାବସ୍ଥାରେ ତାହା ମନରୁ ଛାଡ଼ିଦେଲା । ୧ନେତ୍ର ଓ ପାଦ ଓ ଅଣ୍ଟି ।

୫—ଏ ସୁନ୍ଦରୀ ଯୌବନରେ ଚନ୍ଦ୍ରାଇଷ୍ଟିଙ୍କ ସ୍ତ୍ରୀଙ୍କ ଦେଖିବାକୁ ଥୋଇଲା । ଚନ୍ଦ୍ରକୁ ବାନ୍ଧିବାକୁ ବନ୍ଧନରେ ହେଲା । ନିଜର ସୌନ୍ଦର୍ଯ୍ୟରେ ଲକ୍ଷ ଲକ୍ଷ ଭାଟଙ୍କ ମୁହଁରେ କୁହାଇଲା । ଅର୍ଥାତ୍ ଭାଟମାନେ ଏହାର ସୌନ୍ଦର୍ଯ୍ୟ ଗାଇଅଡ଼େ କୀର୍ତ୍ତନ କଲେ । ବନ୍ଦୀ ଅର୍ଥାତ୍ କଏଦପରି ଅବରୋଧରେ ହେଲା । କଏଦମାନେ ଅନ୍ତଃପୁରରେ ଥାନ୍ତି, ଏ ସୁନ୍ଦରୀ ଅନ୍ତଃପୁରେ ହେଲା । ୧ବନ୍ଦୀ, କଏଦ ଓ ଭାଟ । ୨ଅବରୋଧ, ଅନ୍ତଃପୁର ଓ ଅଟକ ।



କୋଟିବ୍ରହ୍ମାଣ୍ଡସୁନ୍ଦରୀ । [ ୨୦ ପୃଷ୍ଠା

[୧] ସୁଷମାକୁ ଉଣରୁ କଣ୍ଠଧିକ । ସୁସମାକୁ ବଢ଼ାଇଲା ଅଧିକ ।
[୨] ପୁନ୍ନାଗ ପୂଗ ପରାଗେ ରଞ୍ଜନ । ପୁନ୍ନାଗ-ପୂଗ ଧୈର୍ଯ୍ୟ ଭଞ୍ଜନ । ୬ ।
ହେଲା ସେ [୧] ସୁମନାଳୟ ଉଦୟ । [୨] ରସା-ବାସ କର ଜଳ ହୃଦୟ ।
[୩] ବଳୀ-ସଦନ ହୋଇଲା ଉଦର । ତ୍ରିଭୁବନ ପୁରଞ୍ଜନ ଆଦର । ୭ ।
ଅଙ୍କୁରିଲା ନୂତନେ ରୋମାଳି । ସତ ପ୍ରଥମ-ରସ ବର୍ଣ୍ଣାବଳୀ ।
ଅତି ଶୋଭି ନାଭି ଏହି ପ୍ରକାର । ଧାଡ଼ିପ୍ରାନ୍ତେ ରଖିଅଛୁ ଠକାର । ୮ ।
ଆଉ ବର୍ଣ୍ଣ ଚୂର୍ଣ୍ଣକେଶେ ରଖିଲା । ଥିଲା ଅସ୍ତବ୍ୟସ୍ତ ସମେ ଲେଖିଲା ।
ହ୍ରସ୍ୱ ସାର୍ଘ ପ୍ଲୁତ କରି ସ୍ୱରୂରେ । କଲା [୨] ପ୍ରସ୍ତାର ଦେଖାଇ [୩] ଭ୍ରୂରୁରେ । ୯ ।
କଲା ନିତମ୍ବ ପୃଥୁ-[୧] ଚକ୍ରବର୍ତ୍ତୀ । ବେଗେ ଅବବେକ ଗଲା ନିବର୍ତ୍ତି ।
କରି ନୂପୁର ଚୂର୍ଣ୍ଣକୁ ବାଜଣୀ । କଟି-ଡମ୍ବରୁରେ ଘଣ୍ଟି ସାଜଣୀ । ୧୦ ।

---

୬—ଗତ ପିଲାଅବସ୍ଥାରେ ସମାନ ଥିଲା । ଯୌବନ ସମୟରେ ସ୍ତନାଗ୍ର ଓ ଗୁଆପର ଅକାରର ସ୍ତନଦ୍ୱୟ ଗଣ୍ଠିତ ହେବାରୁ ପୂର୍ବସମତାକୁ ଗତ ପରମଶୋଭାକୁ ଖୁବ୍ ବଢ଼ାଇଲା ଏବଂ ପୁରୁଷଶ୍ରେଷ୍ଠମାନଙ୍କର ଧୈର୍ଯ୍ୟ ଭାଙ୍ଗିଲା । [୧] ସୁଷମା, ଉତ୍ତମସମତା ଓ ପରମଶୋଭା । [୨] ପୁନ୍ନାଗ ପୂଗ, ସ୍ତନାଗ୍ର ଗୁଆ ଓ ପୁରୁଷ ଶ୍ରେଷ୍ଠ ସମୂହ ।

୭—ସେ ସ୍ତନାଙ୍କର ମନର ସ୍ଥାନ ହେଲା ଅର୍ଥାତ୍ ମନ ହାଣିନେଲା । ଅତଏବ ସୁମନାଳୟ (ସ୍ୱର୍ଗ) ହେଲା । ଯେହେତୁ ସ୍ୱର୍ଗ ସୁମନା (ଦେବତା) ମାନଙ୍କର ସ୍ଥାନ ଅଟେ । ହୃଦୟ ଶୃଙ୍ଗାରର ରସର ସ୍ଥାନହେଲା । ଅତଏବ ରସାବାସ ଅର୍ଥାତ୍ ପୃଥ୍ୱୀ ନିବାସ ହେଲା । ଉଦର ତ୍ରିବଳୀର ସ୍ଥାନ ହେଲା । ଅତଏବ ବଳୀସଦନ ପାତାଳ ହେଲା । ଏହିପରି ଏ ସ୍ତ୍ରୀ ତ୍ରିଭୁବନ ଲୋକଙ୍କର ଆଦରଣୀୟ ହେଲା । [୧] ସୁମନାଳୟ, ସରସ ମନର ସ୍ଥାନ ଓ ଦେବତାଙ୍କର ସ୍ଥାନ ସ୍ୱର୍ଗ । [୨] ରସାବାସ, ରସସ୍ଥାନ ଓ ଭୂନିବାସ ।

୮—ଅନନ୍ତର ଲିଖିତ ଅକ୍ଷର ଧାଡ଼ିପରି ରୋମାବଳୀ ସ୍ୱତଃ ଜନ୍ମହୋଇ ବାହାରିଲା । ଶୃଙ୍ଗାର ରସରବର୍ଣ୍ଣ କୃଷ୍ଣବୋଲି କବିବର୍ଣ୍ଣିତ । ସେ ଅକ୍ଷର ଧାଡ଼ି ଶେଷରେ 'ଠ' ହେଲା ଯେ ଅତି ସୁନ୍ଦରେ ଶୋଭା ପାଉଥିଲା ।

୯—ଏ ଧାଡ଼ିର ଏଠାରେ ରଖି, ଅନ୍ୟ ଅକ୍ଷର ସବୁ ଅଳକାରେ ରଖିଲା । ସେ ସବୁ ଗୋଳମାଳ ହୋଇଥିଲା, ଯୌବନରେ ତାକୁ ସବୁ ସମାନ କରି ସାଜିରଖିଲା ଏବଂ ଭ୍ରୂଲତାରେ ହ୍ରସ୍ୱଦୀର୍ଘ ଓ ପ୍ଲୁତ ଉଚ୍ଚାରଣରୂପେ ଦେଖାଇ ପ୍ରସ୍ତୁତ କଲା । ଯେହେତୁ ଭ୍ରୂଲତା ହ୍ରସ୍ୱ (ସରୁ) ଏବଂ ଦୀର୍ଘ (ଲମ୍ବ) ପୁଣି ପ୍ଲୁତ (ଚକ୍ରଣ) ହୋଇଥିଲା ।

୧୦—ନିତମ୍ବ ପୃଥୁଳ ଓ ଚକ୍ରପରି ଗୋଲ ହେବା ଲାଗିଲା । ଅତଏବ ଜଣାଗଲା ଏ ପୃଥୁ ନାମକ ଚକ୍ରବର୍ତ୍ତୀ (ସୁବର୍ଣ୍ଣପ୍ରାପ୍ତ) କାହିଁକି ନ ? ଅତଏବ ଅବିବେକ ଶୀଘ୍ର ପଳାଇଲା । ପିଲାଙ୍କ ସମୟରେ ଅବିବେକ ଥିଲା । ଏହାର ଯୌବନରେ ବିବେକ ଆସିଲା । ରାଜା ହେଲେ ବାଜା ବାଜେ ଏହାର ନୂପୁର ରୁପରୁପ ଝୁଣ୍ ଝୁଣ୍ ହେଲା । କଟିଦ୍ୱୟରେ ଡମ୍ବରୁ ବାଜାରେ ଘଣ୍ଟିପରି ଅଳଙ୍କାର ସଜ୍ଜିତ ହେଲା । [୧] ପୃଥୁ ଚକ୍ରବର୍ତ୍ତୀ, ପିଣ୍ଡ-ଚକ୍ରପରି ବର୍ତ୍ତମାନ ଓ ପୃଥୁ ମହାରାଜ ।

ଝପା ବଳୟେମେ ପାଣ୍ଡ ମନୋହରେ । ମନ ଅସୀମାରେ ଅସି ବାହାରେ ।
ଜ୍ୟୋତମୋତ ନାସାରେ ଯେ ବଦତ । ଯେଣୁ ଲଗ୍ନ ଉଚ୍ଚେ କାବ୍ୟ ଉଦିତ ।୧୧
ଅଙ୍ଗଦେଶରେ ଶୋଭା-ଅନୁଚରେ । ବୃଦ୍ଧି ଅକଥିତ ହୋଇ ସଞ୍ଚରେ ।
କାନ୍ତ କରଣ ପ୍ରକଟ ଛଟକେ । ଅଧିକାର କଲା ହେମ-କଣ୍ଟକେ । ୧୨ ।
ଦୀପ୍ତି ପ୍ରଧାନ ପ୍ରକାଶ ବହନେ । ନଷ୍ଟେ ମଣିତ ସେ ସର୍ବମୋହନେ ।
ମାଧୁର୍ଯ୍ୟତା ହୃଦ ପୁଣି ଉପୁଜେ । ଚିତ୍ର-ଲେଖନ ବିନା ଅନ୍ୟ ପୂଜେ । ୧୩ ।
ପ୍ରଗଲ୍‌ଭତା ବିଦୂଷକ ସଙ୍ଗତ । ଜାତ ପରିହାସ ସୁଗର୍ବ ଉକ୍ତି ।
୧ରାଗ ବ୍ୟକ୍ତ ଅତଶୟ ଅଧରେ । ସାରକର ମଞ୍ଜିଷ୍ଠାକୁ ଉଦ୍ଧରେ । ୧୪ ।
କଳା କ ସୃଷ୍ଟି କଣ୍ଠେ ନ ହୁଡିଲା । ହାର-ଲୀଳା ଏରୂପେ ଶୋଭିଲା ।
ସୁଗ୍ରୀବକେ ଯେ ଚନ୍ଦନ ମିଶ୍ରିତ । ୧ ରାମ-ଲକ୍ଷ୍ମଣ ମୁଖେ ପ୍ରଶଂସିତ । ୧୫ ।
ପ୍ରକାଶିତ ଚନ୍ଦ୍ରହାସ ଝଲକ । ମନୋଦରୀ-ବର ଶକ୍ତି-ତିଳକ ।
୩ମେଘନାଦ ଶିଖା ଲକ୍ଷ୍ୟ ଝଲକ । ଦକ୍ଷ ଧର ସେ ୪ସୁମନା-ବଳୀକ । ୧୬ ।

---

୧୧—ରାଜା ହେଲେ ପାତ୍ରମନ୍ତ୍ରୀମାନେ ରାଜ୍ୟ କରନ୍ତି । ଏହାର ଝପା ଅର୍ଥାତ୍ ଲାଜ ପାତ୍ରପଦ ଉତ୍ତମରୂପେ ମନର ସମସ୍ତ ସୀମାରେ ବଢ଼ାଇ ଦେଲା । ଝପାଶବ୍ଦରୁ ଓଲଟାଇ ଦେଲେ ପାଝ ହେଉଅଛି । ଏ ଯୌବନରେ ଲଜ୍ଜାବତୀ ହେଲା । କନ୍ୟାର ଉଚ୍ଚ ଲଗ୍ନରେ ଶୁକ୍ର ଥାନ୍ତି । ଏହାର ନାସାରେ ମୋତି ଶୁକ୍ରତାରା ପରି ଉଦିତ ହେଲା ।

୧୨—ରାଜସେବକମାନେ ଦେଶରେ ବୁଲନ୍ତି । ଏହାର ଶରୀର ପ୍ରଦେଶରେ ଶୋଭାସବୁ ରାଜଭୃତ୍ୟପରି ଅକଥନୀୟଭାବେ ବଢ଼ି ସଞ୍ଚାର କଲେ । ପୁଣି କାନ୍ତ ରାଜକରଣପରି ଛଟକରେ ପ୍ରକାଶହୋଇ ଏହାର ସ୍ତନ ଉପରେ ଅଧିକାର କଲା । କରଣ ମୁନସୀ ମାନ ଅଧିକାର କରେ । ଅର୍ଥାତ୍ ସ୍ତନାଗ୍ରରୁ ଶ୍ୟାମ ହେଲା । ୧ଛଟକ, ଚକ୍ର ଓ ନଗର ।

୧୩—ପ୍ରଭା ପ୍ରଧାନ ପରି ଶୀଘ୍ର ପ୍ରକାଶ ହେଲା । ସେ ନଷ୍ଟପ୍ରାୟ ସମସ୍ତଙ୍କୁ ମୋହିବ । ଏହା ମଣୁଅଛୁ । ଯେହେତୁ ସେ ମଣି ଅତଏବ ତାର ପ୍ରଭା ସମସ୍ତଙ୍କୁ ମୋହିବ । ମାଧୁର୍ଯ୍ୟ ତାର ହୃଦୟରେ ପ୍ରକାଶିଲା । ଅନ୍ୟମାନେ ବିନା ଚିତ୍ରରେ ତାକୁ ମାନିଲେ । ମାଧୁର୍ଯ୍ୟ ଜନ୍ମିବାରୁ ଏ ଚିତ୍ର ଲେଖିବା ଭିନ୍ନ ଅନ୍ୟ କିଛି କଲା ନାହିଁ । ଏ ପକ୍ଷରେ ଚିତ୍ରଲେଖ ଓ ନ ଅନୁପମ ପରିଚ୍ଛେଦ ହେବ ।

୧୪—ପ୍ରଗଲ୍‌ଭତା ରାଜବିଦୂଷକପରି ହେବାର ଠିକ । ଯେହେତୁ ସେ ପରିହାସ ଓ ବକ୍ରୋକ୍ତି ନାନା କରୁଅଛି । ଏ ସ୍ତ୍ରୀ ଚଳନ୍ତେ ହେବାରୁ ଅଙ୍ଗ ଓ ଉପାଙ୍ଗର କଥା କହୁଥିଲେ । ହୃଦୟରେ ଜନ୍ମିଥିବା ରାଗ (ଅନୁରାଗ) ଓଷ୍ଠରେ କ୍ରମେରୂପେ ବ୍ୟକ୍ତ ହେଲା । ମଞ୍ଜିଷ୍ଠାଠାରୁ ସମାନ କରିବାରୁ ତାକୁ ଉତ୍କୃଷ୍ଟ କଲା । ୧ରାଗ, ଅନୁରାଗ ଓ ରକ୍ତିମା ।

୧୫—କପୋଳ ଉଜ୍ଜ୍ୱଳ କଲା, କଣ୍ଠ ଭୂଲିଲା ନାହିଁ । ଏ ସ୍ତ୍ରୀ ନିଜ ରୂପରେ ହାରଙ୍କର ଶୋଭାଧାର ଲୀଳା ସବୁ ନିର୍ବାହ କଲା । ନିଜର ସ୍ତନର ବେଢରେ ଚନ୍ଦନ ବୋଳିଲା । ତୁଳନା କରୁଥିବାରୁ ନାକ ମୁଖ ହାର ଚନ୍ଦ୍ରଙ୍କ ତରଙ୍ଗିତ କରାଇଲା । ରାମ ଚରିତରେ ସୁଗ୍ରୀବ ଓ ଅଙ୍ଗଦ ନାମକ ମର୍କଟ ହୁହେଁ ମିଳି ରାମଲକ୍ଷ୍ମଣଙ୍କ ମୁଖରେ ପ୍ରଶଂସା କରୁଥିଲେ । ୧ରାମଲକ୍ଷ୍ମଣ, ଦଶରଥ ପୁତ୍ର ଦୁଇ ଓ ମୃଗାଙ୍କ (ଚନ୍ଦ୍ର) ।

୧୬—ସେହି ଚନ୍ଦ୍ରକଣ୍ଠଶ୍ରେଣୀ ଚନ୍ଦ୍ରପରି ହାସଶୋଭା ପ୍ରକାଶ କଲା ଓ କଣ୍ଠ ତଳ ଦେଖାଗଲା । ରାମ ଚରିତରେ ରାବଣର ଖଡ୍ଗ ଝଲକିବା ପ୍ରକାଶ ହୋଇଅଛି ଓ ଶକ୍ତି ନାମ ଉତ୍କୃଷ୍ଟ ଅସ୍ତ୍ର ଧାରଣ ହୋଇଅଛି । ଏହାର କେଶ ମୟୂର ପୁଚ୍ଛ ବନ୍ଧକୁ ଲକ୍ଷ୍ୟ ହେଉଅଛି । ସେ ମଧ୍ୟ ପୁଷ୍ପନାଙ୍କୁ

ସଦା ୧ ଅଙ୍ଗଦ ବାହୁରେ ବହୁରେ । କୁଚ-୨କୁମ୍ଭ ଉନ୍ନତ ଚିତ୍ତ ହରେ ।
ଏଣୁ ନର ସ୍ତ୍ରୀ-ଲଙ୍କା କମ୍ପନ । ଏତ ଅଲୁକ କଥା ଉଦ୍ଦୀପନ । ୧୬ ।
ନେତ୍ରେ ପୂର୍ବରତ ହେବା ଜାଣୁଛି । ୧କୃଷ୍ଣ ଅର୍ଜୁନ ରଙ୍ଗ କରୁଅଛି ।
ଗୁଣ ଅଞ୍ଜନ କପୋଳ କମାଣ । ବାଣପ୍ରୟୋଗ କଟାକ୍ଷ ପ୍ରମାଣ । ୧୮ ।
୧କର୍ଣ୍ଣ ବକ୍ର-ମଞ୍ଜୀକତ୍ତୀ ବହିଲା । ସୁତାଟଙ୍କ ୨ଅଞ୍ଜଳୀରେ ଶୋହିଲା ।
୩ଦ୍ରୋଣସୁତ ଉତ୍ତରହିଁ ବିଖ୍ୟାତ । ନାଶ କ ଉପଲକ୍ଷଣା ସାକ୍ଷାତ । ୧୯ ।
ଭଲ ଯୌବନ-ସୃଷ୍ଟି ସଜାଡ଼ିଲା । ଆଗ ଉପମା-ସୃଷ୍ଟି ଉଜାଡ଼ିଲା ।
ଯୋଗୀ-ସୃଷ୍ଟିରେ ପ୍ରଳୟ ବହିବ । ଯୁବା-ସୃଷ୍ଟି ଆଉ କେହୁ ରହିବ ।୨୦।
ଅଛି ଏବେ ହେବାଯାଏ ଦର୍ଶନ । କାଳିମାତ୍ର ସେହି ଶୋଭା-ପ୍ରସନ୍ନ ।
୧ଯୋଗୀଗଣେ ମୁଁ ଜଣେ ଚଉଦ ଭଳ । ଶମୁଶିଳା ହେଲେ ହେବ ସମ୍ଭାଳ ।୨୧

---

ଧାରଣ କରିବାକୁ ଯୋଗ୍ୟ । ରାମ ବନ୍ଧନରେ ମେଘନାଦ ଚେଜକୁ ଯନ୍ତ୍ରଣା ଲକ୍ଷ୍ୟ ହୋଇଥିଲା ଏବଂ ସେ ଇନ୍ଦ୍ରଜିତ ଦେବତାମାନଙ୍କୁ ଧରିବାକୁ ସମର୍ଥ ଥିଲା । ୧ଉନ୍ନତ ଦାସ, ଗଜ ଓ ଚନ୍ଦ୍ରପରହାସ । ୨ମନ୍ଦୋଦରୀବର, ରାବଣ ଓ କୁମ୍ଭୋଦରୀ ଶ୍ରେଷ୍ଠା । ୩ମେଘନାଦ, ଇନ୍ଦ୍ରଜିତ ଓ ମୟୂର ୪ସୂଚନାବଳୀ, ଦେବସମୂହ ଓ ପୁଷ୍ପସମୂହ ।

୧୬—ଏହା ବାହୁରେ ବାଜବନ୍ଧ ଅଙ୍ଗଦ ଶୋଭାପାଉଛି । କୁଚକଳଶର ଉଚ୍ଚତା ମନୋହର ହୋଇଅଛି ଅଥଚ ମଧ୍ୟ ବଳୀଗରେ ଫୁଲଡାଳ ହଲୁଅଛି । ରାମ ବନରେ ଅଙ୍ଗଦ ନାମକ ମର୍କଟ ଭୁଜବଳରେ ବିହାର କରୁଥାଏ । କୁମ୍ଭ କର୍ଣ୍ଣର ଉଚ୍ଚତା ମନକୁ ଖ୍ୟାତ କରୁଥାଏ । ଏହି ହେତୁରୁ ଦୃଷ୍ଟିଗୋଚର ଓ ଲଙ୍କାପୁର କମ୍ପିଥାଏ ଏହା ଶ୍ରେଷ୍ଠ ଅଛି । ଏହି କୁ ୨୦ଟି ଏବେ କଳ୍ପନା ହେବ; ୧ଅଙ୍ଗଦ, ବାହୁପୁନ ଓ ବାଜବନ୍ଧ, ୨କୁମ୍ଭ, କଳଶ ଓ କୁମ୍ଭକର୍ଣ୍ଣ, ୩ସ୍ତ୍ରୀ-ଲଙ୍କା ସୁନ୍ଦରୀର ଓ ଦୃଷ୍ଟିର, ଲଙ୍କାପୁର ।

୧୮—ଏ ସ୍ତ୍ରୀ ଚକ୍ଷୁଶୋଭାରେ ମହାଭାରତପର ହୋଇଅଛି । ଯେହେତୁ କୃଷ୍ଣ ଅର୍ଜୁନ ରଙ୍ଗ ଅର୍ଥାତ୍ କଳା ଧଳା ଓ ରଙ୍ଗ ବର୍ଣ୍ଣ ପ୍ରକାଶ କରୁଅଛି । ମହାଭାରତରେ କୃଷ୍ଣାର୍ଜୁନଙ୍କର ଯୁଦ୍ଧ କଥା ହୋଇଅଛି । ଏହାର କପାଳ ଧନୁ ଓ କଜ୍ଜଳଗାର ଗୁଣ ହୋଇଅଛି । ଉହାଣି ବାଣ ପ୍ରୟୋଗରେ ହୋଇଅଛି ଓ ଦାସୀ ଫୁଲ ପକାଇବା ପରି ଦିଶୁଛି । ୧ କୃଷ୍ଣ ଅର୍ଜୁନ ରଙ୍ଗ, କଳାଧଳା, ନାଚ ଓ କୃଷ୍ଣାର୍ଜୁନ ଯୁଦ୍ଧ ।

୧୯—ଏହାର କାନ ବକ୍ରାଣି ଖଚିତ ମଲକଡ଼ି ଧାରଣକରି । ଉତ୍ତମ ଚଉଡ଼ା ଅଞ୍ଜଳିରେ ଶୋଭାପାଇଥିଲା । ଏହାର ଉତ୍ତରବଚନ କୋକିଳ ଧ୍ୱନିପରି ବିଖ୍ୟାତ ହୋଇଥିଲା । ମହାଭାରତରେ କର୍ଣ୍ଣବୀର ବକ୍ର କବଚ ଓ ବକ୍ର ଧରିଥିଲେ । ଅଶ୍ୱତ୍ଥାମା ନାମରେ ବିଖ୍ୟାତ ଦ୍ରୋଣପୁତ୍ର ବିଖ୍ୟାତ ଥିଲେ । ଏ ସବୁ ଉପମା ସାକ୍ଷାତରେ ହେଲା । ୧କର୍ଣ୍ଣ, କାନ, ଅଙ୍ଗରାଜ । ୨ଅଞ୍ଜଳୀ, କବଚ । ୩ଦ୍ରୋଣସୁତ ଉତ୍ତର, ଅଶ୍ୱତ୍ଥାମା ବିଖ୍ୟାତପୁତ୍ର ଓ କୋକିଳ ଉତ୍ତର ବଚନ ।

୨୦—ଏବେ ଅଚ୍ଛା ଯୌବନ ଗଢ଼ିଲା । ଅଗକର ଉପମାମାନଙ୍କୁ ଭୁଲିକଲା ବୋଧହୁଏ ଯୋଗିସୃଷ୍ଟିର ପ୍ରଳୟ କରିଦେବ । ଯୁବାସୃଷ୍ଟି ଥିଉ କପରି ରହିବ ।

୨୧—ସେ ସ୍ତ୍ରୀର ଶୋଭାଟିକ ଏ ଦେଖା ପଡ଼ିବାଯାଏ କେବଳ ସବୁ ସୃଷ୍ଟି ରହିଅଛି । ମହାଦେବ ବସ୍ତ୍ରହରିଲ ମୁଁ ଯୋଗିଙ୍କ ଭିତରେ ଜଣେ । କାଳେ ମୋର ପ୍ରଳୟ ହୋଇଯିବ ଏହା ଭାବ ସମ୍ଭାଳ ହୋଇଯିବେ ବୋଲି ପଥର ହେଲେ ।

ନୋହିବ କି ଦ୍ରବଣ ଶିଳାଙ୍କର । କେଉଁ ସ୍ଥାନ ସ୍ଥିର କଲେ ଶଙ୍କର ।
ଦେବୀ ସୃଷ୍ଟି କଲା ଭାବ ମଦନ । ମନୋରମ ସ୍ଥାନେ କଲା ସଦନ ।୨୨।
ଅନବରତେ ମଣ୍ଡନ ସୁ-ଭର । ଉରୁ ଅର୍ଗଳ-ଦ୍ୱାର ହିଁ ରୁଚିର ।
ରତି ଗୁପ୍ତେ ରହି ତହିଁ ସହର । ମହୋଜ୍ଜ୍ୱଳ ସୁ-ଜଘନ ଚତ୍ୱର ।୨୩।
ଝିଲିମିଳିମାଳୀ କି ଶୋଭାକର । ଏକାଦଶ ଘରେ ଗ୍ରହନିକର ।
ହେମ ବଦ୍ରୁମ ମର୍କତ ମୋତିରେ । ଉଦେ ଯେ ଯାହାର ନିଜ କ୍ଷେତ୍ରରେ ।୨୪।
ମୀନକେତନ ନିଜ ନିକେତନେ । ରଙ୍କ-କେତନ ବାନ୍ଧିଲ ଯତନେ ।
ରଙ୍ଗପଦ୍ ସେ ହୋଇଥିବ ପରା । ପୁଷ୍ପ ବୋଲାଇଥିଲୁ ପରମ୍ପରା । ୨୫ ।
ପୁଣି ପୁଷ୍ପଶର ନାମ ଯାହାର । ଆନ କେତନ କି ହେବ ତାହାର ।
ବାସେ ଅନୁସରିଲେ ଭୃଙ୍ଗମାନେ । ଏଣୁ ହେଲାତ ପୁଷ୍ପ ଅନୁମାନେ ।୨୬।
ବାଳା ପଦ୍ମିନୀ ହେବାର ସକାଶେ । ନାହିଁ ସଂଶୟ ତ ପୁଷ୍ପ ପ୍ରକାଶେ ।
ଥିଲେ ସଜନୀ-ମାଳୀ ସନ୍ନିଧିରେ । ନେଲେ ବାସ ସୁମନସ ବିଧିରେ ।୨୭।
ଥିଲେ ତହିଁ ଦୈବଜ୍ଞା ଉପାଧ୍ୟାୟୀ । ଶୁଭାଶୁଭ ବୁଝିଲେ ସବୁ ଧ୍ୟାୟି ।
କାତ୍ୟାୟନୀ ଥିଲା ତାଙ୍କ ସଙ୍ଗରେ । ପୁଷ୍ପ ସ୍ଫୁଟି କହି ନୃତ୍ୟରଙ୍ଗରେ ।୨୮।

---

୨୨—କିନ୍ତୁ ଏହାର ଲବଣ୍ୟ ଦେଖି ପଥର ମଧ୍ୟ ତରଳିଯିବ । ତେବେ ମହାଦେବ କ'ଣ ସ୍ଥିରମ୍ଭିର କଲେ କିନ୍ତୁ କନ୍ଦର୍ପ କୋଟିଏ ଭାବକାମ ତିଆରି କଲା । ଯେହେତୁ ମନୋହର ସ୍ଥାନରେ ସ୍ଥିତ ହେଲା ଯୋନିକୁ କନ୍ଦର୍ପଗୃହ କୁହାଯାଏ ।

୨୩-୨୪—ସେହି କାମଗୃହ ସର୍ବଦା ଉତ୍ତମ ଲୁଗାରେ ମଣ୍ଡିତ ହୋଇଅଛି । ଯେପରି ଗୃହରେ ଗୃହ୍ୟ ଥାଏ ଶୋଭା ହୋଇଥାଏ । ଜଙ୍ଘଦ୍ୱୟର ମଧ୍ୟ ଦ୍ୱାରପରି ହୋଇଅଛି ଏବଂ ଜଙ୍ଘ ଅର୍ଗଳିପରି ହୋଇଅଛି । ସେ ଗୃହରେ ରତିଦେବୀ ଲୁଚିରହିଅଛି । ଜଘନ ଉତ୍ତମ ଅଗଣାପରି ହୋଇଅଛି । ଅଣ୍ଟାରେ ଯେ ଝିଲିମିଲି ମାଳି ଅଛି, ସେ ଏକାଦଶ ଘରେ ଗ୍ରହମାନେ ଉଜ୍ଜ୍ୱଳ ଦିଶିଲାପରି ଦିଶୁଥିଲେ । ସୁନା ପୋହଳା ଓ ମରକତ ମଣି ସେମାନଙ୍କରେ ନିଜ ନିଜ ଘରେ ପ୍ରକାଶିତ ହୋଇଥିଲେ ।

୨୫—ଏବେ କନ୍ଦର୍ପ ନିଜଘରେ ନାଲି ପତାକା ବାନ୍ଧିଲା । ଅର୍ଥାତ୍ ଜ୍ୟୋତିର୍ବ୍ରହ୍ମାଣ୍ଡ ମଦନ ପୁଷ୍ପବତୀ ହେଲା ଯେହେତୁ ତାକୁ ପୁଷ୍ପବୋଲି ପରମ୍ପରାରେ କହନ୍ତି । ଅତଏବ ସେ କାମଗୃହ ନାଲି ପଦ୍ମ ହେବତ ?

୨୬—କନ୍ଦର୍ପର ନାମ ଯେହେତୁ ପୁଷ୍ପଶର ହୋଇଅଛି । ଅତଏବ ତାର ପୁଷ୍ପବ୍ୟତୀତ ଅନ୍ୟ ପତାକା ହେବା ଠିକ୍ ନୁହେଁ । ଭ୍ରମରମାନେ ସୁବାସ ହେତୁକ ଅନୁସରଣ କରୁଥିବାରୁ ପୁଷ୍ପବୋଲି ଅନୁମାନ ହେଲା ।

୨୭—ଏ ବାଳା ପଦ୍ମିନୀ ସ୍ତ୍ରୀ, ଅତଏବ ପଦ୍ମଲତା ହେଲା ତେବେ ଫୁଲ ଫୁଟିବା ବିଷୟରେ ସନ୍ଦେହ ନାହିଁ । ନିକଟରେ ସଖୀମାନେ ଥିଲେ । ସେମାନେ ବସ୍ତ୍ରରୂପକ ପୁଷ୍ପରୁ ମାଳୀମାନେ ସୁବାସପୁଷ୍ପକୁ ନେଲାପରି କାଢ଼ିନେଲେ । ବାଳା ମାଉଲୁଗା ବଦଳାଇଲା ।

୨୮—ସେଠାରେ ଜ୍ୟୋତିଷ ଜାଣି ଶିକ୍ଷୟିତ୍ରୀ ଥିଲେ । ସେ ପ୍ରଥମ ରଜୋଦର୍ଶନର ଶୁଭାଶୁଭ ବିଚାର କଲେ । କାତ୍ୟାୟନୀ ବୃଦ୍ଧା ସ୍ତ୍ରୀ ତାଙ୍କ ସଙ୍ଗରେ ଥିଲେ । ସେ "ପୁଷ୍ପବତୀ ହେଲା" କହି ଆନନ୍ଦିତ ହେଲେ ।

ଶ୍ରୀ ଚିତ୍ରବନ୍ଧରେ କାର୍ଯ୍ୟ ରଞ୍ଜାଇଲେ । ଏହା ମଙ୍ଗଳ-ମଧୁଶ୍ରୀ ବାଇଲେ ।
ନାମ ଯା 'କୋଟିବ୍ରହ୍ମାଣ୍ଡସୁନ୍ଦରୀ' । ଦୃଷ୍ଟିରଜା ପଦ ଏବେ ଆଦରି । ୧୯ ।
ଯେବେ ଏ ପଦ ଉଭୟବଶରେ । ଉଚ୍ଛନଯୁବା ସର୍ବରୂପେ ନ ସରେ ।
ବିଚାରିଲେ ଲୋକେ ଏହା ଲୋକରେ । ଅମ୍ଭ ଜୀବ ରହିଲା କାମ-କରେ ।୨୦।
ନବଚଣ୍ଡୀ ଅର୍ଚ୍ଚନ ଆରମ୍ଭରେ । ପଶୁ ଭାବନା କରନ୍ତି ଆମ୍ଭରେ ।
କନ୍ୟା ସମସ୍ତ ହେଲା କି ସଂଶୟ । ତୁଳା ହେବାରୁ ଦୂର ଅନ୍ତଶୟ ।୨୧।
ଶଲ୍ୟା ଜନମ ଉପମା ଲେଖାର । ତାଙ୍କ ଇଚ୍ଛାରେ ହେଲେ ନାରଖାର ।
ବଦ୍ୟ ଅଶର-[1]ପ୍ରତିଭା ଲକ୍ଷକେ । ଚନ୍ଦ୍ର କ୍ଷୀଣ ହୋଇଗଲା [2]ପକ୍ଷକେ ।୨୨।
ଘନ ଜୀବନୁ ଅଗ୍ନି ଉପୁଜାଇ । ଧୂମ-ବର୍ଣ୍ଣ ହେଲା ଜଳି ଯାଇ ।
ଭକ୍ଷ କଲା ସୁପର୍ଣ୍ଣ କାକୋଦର । ମନ୍ଦ ନାମରେ ବହିଲା ମନ୍ଦର ।୨୩।
ପଦ୍ମ-ମୃଣାଳ କଣ୍ଟକକୁ ଧରି । ହୁଏ ପଙ୍କଜ ପଦେ ସେ ଉଦରି ।
ବିମ୍ବ ବୋଇଲା ଉଷ୍ଣ ବିଲେପନ । କୁକ୍ଷରାଜ-ଦଳ ବହେ କମ୍ପନ । ୨୪ ।

---

୧୯—ଚିତ୍ରବନ୍ଧ ଅନୁସାରେ ମଙ୍ଗଳ କର୍ମମାନ କଲେ । ଏ କାର୍ଯ୍ୟରେ ମଙ୍ଗଳ ମଧୁର ବାଜଣା । ଏବେ କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ଦୃଷ୍ଟିରଜା (ପୁଷ୍ପବତୀ) ପଦ ପାଇଲେ ॥

୨୦—ଦୃଷ୍ଟିରଜା ଓ ପୁଷ୍ପବତୀ ଏହି ଦୁଇ ଅର୍ଥ ହେବା ହେତୁରୁ ଯୁବାମାନେ ସବୁ ମତେ ଉଚ୍ଛନ୍ନ ହେଲେ । ଜଗତରେ ଲୋକମାନେ ବିଚାରିଲେ, ଏବେ ଅମ୍ଭ ଜୀବ କନ୍ଦର୍ପ ହାତରେ ରହିବ ଯେହେତୁ ଏ ବାଳା ପୁଷ୍ପବତୀ ହେଲା । ଯେଉଁଥିରୁ ଖଣ୍ଡଣା ଦେବାରେ ଅମ୍ଭ ଜୀବନ ରହିବ । ଯେହେତୁ ଦୃଷ୍ଟି ରଜା ହେଲେ ।

୨୧—ଏ ନବଚଣ୍ଡୀ (କୁଆଁରବ୍ରତ) ପୂଜା ଆରମ୍ଭ କରନ୍ତେ, ଯୁବାମାନେ ବିଚାରିଲେ ଏ କନ୍ୟା ଦୁର୍ଗାପୂଜା, ଏଥିରେ ଅମ୍ଭଙ୍କୁ ପଶୁକରି ବଳି ଦେବେ ? ଯଦି ଏ ଦୁର୍ଗାପୂଜା ତେବେ କନ୍ୟାସଙ୍କ୍ରାନ୍ତି ଅର୍ଥାତ୍ ଆଶ୍ୱିନମାସ ହେଲା କି ? କିନ୍ତୁ ଆଉ କନ୍ୟାସଂକ୍ରାନ୍ତି ନାହିଁ । ଏପରି ସନ୍ଦେହ ରୂପ ତୁଳାକନ୍ୟାରେ ରହିବାରୁ, ତୁଳାହେବାରୁ ଅର୍ଥାତ୍ କାର୍ତ୍ତିକ ମାସ ହେଲା ବୋଲି ଜାଣିବାରୁ ଭାବନା ଦୂର ହେଲା ।

୨୨—ଚନ୍ଦ୍ର ପଦ୍ମାଦି ଉପମାନ ପଦାର୍ଥ ସମୂହର ଶଲ୍ୟା ଜାତ ହେଲା ଅତଏବ ସେମାନେ ତାଙ୍କ ଇଚ୍ଛାରେ ନାରଖାର ହେଲେ । ଏହାଙ୍କ କାନ୍ତିର ଉପମାନ ବିଜୁଳି ଅଧର ପ୍ରଭା ହେଲା । ଯାହା ତାହା ନୁହେଁ ତାର ଧଳପ୍ରତିଭା ନଷ୍ଟ ହେଲା । ଅତଏବ ହେଲା ମୁଖର ଉପମାନ ଚନ୍ଦ୍ର ପକ୍ଷେ କ୍ଷୀଣ ଅର୍ଥାତ୍ ସହାୟହୀନ ହେଲେ । [1]ପ୍ରଭାବ, କାନ୍ତି ଓ ରୂପ । [2]ପକ୍ଷ, ସହାୟ ଓ ଅର୍ଦ୍ଧମାସ ।

୨୩—କେଶର ଉପମାନ ମେଘ ନିଜ ଜୀବନରୁ (ଜଳରୁ) ଅଗ୍ନି ଜାତକରି ଜଳିଯାଇ ଧୂମ୍ରବର୍ଣ୍ଣ ହେଲା । ବାହାର ଉପମାନ ଗରୁଡ଼ ସାପ ଖାଇଲା ଅର୍ଥାତ୍ କଷ୍ଟରେ ମନ୍ଦରକୁ ବସିଲା । କୁଚର ଉପମାନ ମନ୍ଦର ପର୍ବତ ନିଜ ନାମରେ ମନ୍ଦ ଶବ୍ଦ ରଖିଲା ଅର୍ଥାତ୍ ମୂଢ଼ ହୋଇଗଲା ।

୨୪—ବାହୁର ଉପମାନ ପଦ୍ମ ମୃଣାଳ କଣ୍ଟକ ଧାରଣ କଲା । କଣ୍ଟାଦ୍ୱାରା କ୍ଷତ ହେଲା । ହସ୍ତର ଉପମାନ ପଦ୍ମ ପଙ୍କରୁ ଜାତ ହୋଇଅଛି ବୋଲି ଉର୍ଦ୍ଧ୍ୱକୁ ଉଠିଲା । ଓଷ୍ଠର ଉପମାନ ବିମ୍ବଫଳ ପାର୍ଶ୍ୱର୍ତ୍ତୀ ହେଲା ଅର୍ଥାତ୍ ବିରକ୍ତହୋଇ ପାର୍ଶ୍ୱ ବୋଲ ହେଲା, ଦାନ୍ତମୂହର ଉପମାନ ଅନ୍ୟପ୍ରକାର କମ୍ପିଲା ।

ଫଳେ ଅଧୋମୁଖୀ ହେଲା କଦଳୀ । ଜବା କାଳିମା-ରଙ୍ଗେ ଶୋଭା ଦଳି
ଖେଦୁଁ ଇନ୍ଧନ ହୋଇଲା ଚନ୍ଦନ । କଲା ମୁକୁତା ଶାମୁକେ ସଦନ । ୩୫ ।
ବୀଣା ସ୍ୱନ କଲା ପରବଶରେ । ସିଂହ ଲୁଚିଲା କେଉଁ ପ୍ରଦେଶରେ ।
ବକ ଶବଦୁଁ ମୃଣାଳ-ଅହାସ୍ୟ । ଦେଖ ହୋଇଲା ମାନସ ବାହାସ୍ୟ । ୩୬ ॥
ଏହରୂପେ ସୁଲକ୍ଷଣା ମାତର । ହେଲେ ସ୍ଥିର ନ ପାରିଲେ କାତର ।
ଭିର୍ଦ୍ଧ ଅଧୋମୁଖେ କରି ବିସ୍ମର । ଗନ୍ଧବନ୍ଧ ଭ୍ରମର କଲା ସ୍ୱର । ୩୭ ।
ବାଳା ସମ୍ମୁଖେ ଆସିବ ଜଣାଇ । ସ୍ୱଇଚ୍ଛାରେ ସମ ନୋହୁଁ ମଣାଇ ।
ସବୁ ଦୋଷ ଏ କବିମାନଙ୍କର । ତାଙ୍କୁ କଷ୍ଟତରେ କୋପ ନ କର । ୩୮ ॥
ଆଳୀ ଗୁଳିଁ ଧ୍ୱନ ଧରେ ବ୍ୟଜନ । ତହିଁ ଥାଇ ଜଣାଇ ପ୍ରଭଞ୍ଜନ ।
ଯେଉଁ ସ୍ଥାନ ବିଜୟେ ନାୟିକାୟୀ । ଗେଲେ ଜଣାଇ ଭୃଙ୍ଗ ଅନୁସରି । ୩୯ ।
କାଣ୍ଡ-ଗୃହେ ରଖିଲେ ଅନୁଗୃହ । ବାଳାକାମକାଣ୍ଡ ଏହା ବିଗ୍ରହ ।
ନୋହେ ଲୋହ ଫୁଲ ଏଥୁଁ ବାହାର । ରୂପ ମୋହନାସ୍ତ୍ର ନସ୍ତେ ଏହାର ।୪୦॥
କାମ ରୂପାସ୍ତ୍ର ନୋହିଲେ କାହିଁକି । ଆଗୁଁ ଗୋଚର ଥିଲା ଏ ବାହିକ ।
ଏବେ ଗୋଚର ହୋଇଲା କବିକ । ବର୍ଣ୍ଣିମାରୁ ତା ମଞ୍ଜୁଳ ଛନ୍ଦକ । ୪୧ ।

---

୩୫—ଉରୁର ଉପମାନ କଦଳୀ ଗଛ ଫଳକାଳରେ ମୁହଁ ପୋତିଲା । ଓଷ୍ଠର ଉପମାନ ଜବାଫୁଲ କଳା ପଡ଼ିଯିବା ହେତୁରୁ ଶୋଭା ନଷ୍ଟକଲା । ଦେହ ଶୀତଳତାର ଉପମାନ ଚନ୍ଦନ ଦୁଃଖରେ କାଠ ହୋଇଗଲା । ଦନ୍ତର ଉପମାନ ମୁକୁତା ଶାମୁକରେ ( ଅଶୁଦ୍ଧସ୍ଥାନରେ ) ରହିଲା ।

୩୬—ବଚନର ଉପମାନ ବୀଣା ପରର ଅଧୀନରେ ରହି ବେଦକଲା । ଅର୍ଥାତ୍ ଉପଲୋଭିଲା, କଟିର ଉପମାନ ସିଂହ ବୁଦରେ ଲୁଚିଲା । ଗତିର ଉପମାନ ହଂସ ବକବୋଲାଉଥିବା ମୃଣାଳକୁ ମରିବାପାଇଁ । ଭକ୍ଷଣ କଲା ମାନସ ବହାର. ହଂସ ।

୩୭—ଉପମାନ ପଦାର୍ଥମାନେ ଏହପରି ହେଲେ କାତରତା ନ ଛାଡ଼ିଲେ । ଉପମାନଙ୍କଠାରେ ଏହି ସବୁ ହେବାରୁ ସେମାନେ ଏ ସୁନ୍ଦରୀର ଅଙ୍ଗମାନଙ୍କ ସଙ୍ଗରେ ସମାନ ହୋଇ ପାରିଲେ ନାହିଁ । ଏହାର ତାତ୍ପର୍ଯ୍ୟ ସେମାନେ ଉପରକୁ ଓ ତଳକୁ ମୁହଁକରି ପରସ୍ପର ବିସ୍ମରକରି ପବନ ଓ ଭ୍ରମରକୁ ଦୂତକରି ପଠାଇଲେ । ଅର୍ଥାତ୍ ପବନରେ ଭ୍ରମରମାନେ ଏହା ପାଖକୁ ଉଡ଼ିଆସିଲେ ।

୩୮—ଅରେ ଭ୍ରମର ତୁ ବାଳାସମ୍ମୁଖରେ ଜଣାଇବୁ ଅମ୍ଭେମାନେ ନିଜେ ସମାନ ନୋହୁଁ । ଅମ୍ଭମାନଙ୍କ ତୁଳ୍ୟସହିତ ତୁଳନା କରିବା କବିମାନଙ୍କର ଦୋଷ । ସେ ପ୍ରତି କଷ୍ଟ ସହିବ ନାହିଁ ।

୩୯—ସଖୀ ଚଳୁଥିବା ବସ୍ତ୍ରଣ ଶବ୍ଦରେ ପବନ ଜଣାଇଲା । ଏକାନ୍ତରେ ସେ ନାୟିକାଙ୍କୁ ଭ୍ରମର ଜଣାଇଲା ।

୪୦—ଏ ବାଳା କନ୍ଦର୍ପର ଶର ସ୍ୱରୂପ, ଏହା ସଖୀମାନେ ବିଗ୍ରହ ତାଙ୍କୁ କାଣ୍ଡ ଗୃହରେ ରଖାଇଲେ । କ୍ଷତ୍ରିୟ କନ୍ୟା ପୁଷ୍ପବତୀ ହେଲେ ସାତ ଦିନ କାଣ୍ଡ ନିର୍ମିତ ଗୃହରେ ରହେ । ଏହା ପ୍ରସିଦ୍ଧି ଅଛି । କାଣ୍ଡ ମଧ୍ୟ କାଣ୍ଡ ଗୃହ (ତୁଣୀର) ରେ ରହେ । ଏ ଲୁହାଶର ନୁହେଁ, କାରଣ ପୁଷ୍ପଶର, ଅତଏବ ପୁଷ୍ପ ପ୍ରକାଶ ହେଲ । ଏହାର ରୂପ ନିଶ୍ଚୟ ମୋହନାସ୍ତ୍ର ।

୪୧—କନ୍ଦର୍ପ ପୁଷ୍ପାସ୍ତ୍ର, କାହିଁକି ରୂପାସ୍ତ୍ର ନହେଲା, ଏହାପୂର୍ବରୁ ବଧାଇଙ୍କୁ ଜଣାଥିଲା । ଏବେ କବିମାନେ ତା ରୂପ ବର୍ଣ୍ଣନା କରି ଉକ୍ତ କଥା ଜାଣିଲେ ।

ସାତ ସାଗରେ ଯାହା ବନ୍ଦାଇଲେ । ସାତ ଦ୍ୱୀପରେ କି ଅଛି ବୋଇଲେ ।
ସାତଦ୍ୱିଗୁଣ ଭୁବନ-ସୁନ୍ଦରୀ । ବୃନ୍ଦେ ହୋଇଲ ସିନା ସୁନ୍ଦରୀ । ୪୨ ।
ସାନ୍ଦ୍ରନନ୍ଦନାନ୍ତରେ କରି ବସୁଧା । କଲେ ଚଳାଇ ଅଶୋକ ବସୁଧା ।
ସୁରୁ ପ୍ରପଦ-କଳିକା ଧରିଲା । ପଦ ପଡ଼ନେ ଦୋହଦ ହୋଇଲା । ୪୩ ।
ତହୁଁ ସ୍ଥଳକମଳ ଫୁଟିଲେ । ଚୁମ୍ବ ଦେବାକୁ ଭ୍ରମର ଘୋଟିଲେ ।
କରିବାରେ ରବି ଅର୍ଘ୍ୟବନ୍ଦନ । ଓଷ୍ଠ କଲା ପ୍ରାତୋଦୟ ନିନ୍ଦନ । ୪୪ ।
ଏଥି ଉତ୍ତାରେ ମନ୍ଦିରେ ପ୍ରବେଶ । ସଖୀଗଣ ବେଢ଼ି କଲେ ସୁବେଶ ।
ବେଶ ବେଶକୁ ଯେବଣ ସୁନ୍ଦରୀ । କିସ ବର୍ଣ୍ଣିବା ତା ବେଶ ଚାତୁରୀ । ୪୫ ।
ଯେ ଲକ୍ଷଣ ଶେଷାଞ୍ଚଳ-ବିହାରୀ । ଜନ-ଅଭୀଷ୍ଟ-ଦାତା ଦୁଃଖହାରୀ ।
ମନୋରଥ ପୂର୍ଣ୍ଣ ହେବା କାରଣ । ଉପଇନ୍ଦ୍ର ଭଞ୍ଜ ପଦେ ଶରଣ । ୪୬ ।



## ଚତୁର୍ଥ ଛାନ୍ଦ ।

ରାଗ ମଙ୍ଗଳବରାଡ଼ି । ମୁନିବର ବାଣୀ ।

[ ପାଟଳିପୁତ୍ର ବା ପୁଷ୍ପପୁର ନଗର ବର୍ଣ୍ଣନା ଏବଂ ତହିଁର ରାଜପୁତ୍ର ପୁଷ୍ପକେତୁର ରୂପ ଗୁଣ ବର୍ଣ୍ଣନା ]


ଣ ବିଦଗଧ ଜନ । ମଗଧଦେଶ ରଞ୍ଜନ ।
ମାଗଧ[୧]—[୨]ମାଗଧେ ଭଣି । ଦେଶ ଅଗ୍ରଣୀ ଏ । ୧ ।

---

୪୨—ସେ ସୁନ୍ଦରୀଙ୍କ ଯାହା ସାତସାଗରେ ବନ୍ଦାଇଲେ । ତାହାର ଜମ୍ବୁପ୍ରଭୃତି ସାତଦ୍ୱୀପରେ ଏହାପରି କେହି ନାହିଁ ଏହା ସୂଚନା କଲେ । ଏ ସୁନ୍ଦରୀ ଚଉଦ ଭୁବନ ସ୍ତ୍ରୀମାନଙ୍କ ମଧ୍ୟରେ ଉଚ୍ଚ ହେଲା ।

୪୩—ଏହାଙ୍କ ସାତନନ ଭିତରୁ ଶୁଦ୍ଧସ୍ନାନ କରାଇ ଚଳାଇ କେନ୍ଦୀବାସ ବସୁଧାକୁ ଅଶୋକ ଅର୍ଥାତ୍ ଆନନ୍ଦିତ କରାଇଲେ । ସେ ଅଶୋକ (ବୃକ୍ଷବିଶେଷ) ଦେବାକୁ ଏହାଙ୍କର ସୁନ୍ଦର ପାଦାଗ୍ରକୁ କଳିରୂପେ ଧାରଣ କଲା । ଯେହେତୁ ଏହାଙ୍କ ପାଦଘାତରେ ଦୋହଦ ଭାବ ହୋଇଥିଲା । ଅକାଳରେ ଫୁଲ ଫୁଟିବାକୁ ଗଛମାନଙ୍କର ଯେ ଉପାୟ କରାଯାଏ ତାହାକୁ ଦୋହଦ କହନ୍ତି । ସ୍ତ୍ରୀମାନଙ୍କର ପାଦାଘାତ ଅଶୋକର ଦୋହଦ ରୂପେ କବି ପ୍ରସିଦ୍ଧ ଅଛି ।

୪୪—ଏ ବାଳା ଚାଲିଲା ବେଳେ ସ୍ଥଳ ପଦ୍ମ ଫୁଟିଲା । ତହୁଁ ଭ୍ରମରମାନେ ଚୁମ୍ବିବାକୁ ବେଢ଼ିଲେ । ସୂର୍ଯ୍ୟଙ୍କୁ ଅର୍ଘ୍ୟଦେଇ ନମସ୍କାର କରିବାବେଳେ ତାଙ୍କ ଓଷ୍ଠ ପ୍ରାତଃକାଳ ସୂର୍ଯ୍ୟୋଦୟଠାରୁ ଅଧିକ ଲାଲ ହୋଇଥିଲା ।

୪୫—ଏଥିଉତ୍ତାରୁ ଘରକୁ ଗଲେ । ସଖୀମାନେ ତାଙ୍କୁ ବେଶକଲେ । ଯେଉଁ ସ୍ତ୍ରୀ ବେଶମାନଙ୍କର ବେଶ ଅର୍ଥାତ୍ ଶୋଭା ବର୍ଦ୍ଧକ, ତାହାର ବେଶ ଚାତୁରୀ କିଏ ବର୍ଣ୍ଣନା କରିପାରେ ? ।

୪୬—ଯେ ସମସ୍ତଲକ୍ଷଣପୂର୍ଣ୍ଣ ଓ ଶେଷଶାୟୀ ଲୋକମାନଙ୍କର ବାଞ୍ଛାପୂର୍ଣ୍ଣକାରୀ ଓ ଦୁଃଖହାରୀ, କବି ଉପେନ୍ଦ୍ରଭଞ୍ଜ ତାଙ୍କ ପଦେ ଶରଣ ଅଛି ।

### ଚତୁର୍ଥ ଛାନ୍ଦ ।

୧—ଅହେ ପଣ୍ଡିତମାନେ ମଗଧଦେଶ ବର୍ଣ୍ଣନା ଶୁଣ । ଏଦେଶ ଦେଶଅଗ୍ରଣୀ ବୋଲି ମଗଧ ଦେଶୀୟ ଲୋକମାନେ କହନ୍ତି । ୧ମାଗଧ, ମାଗଧ ୨ମଗଧ ଦେଶୀୟ ଲୋକ ।

ପୁଚ୍ଛିଲେ ନଷେଧ କହି । ସ୍ୱଦେଶୀ ସେ ସମ କେହି ।
ଏ ବାଣୀ ମରୁ ମଲ୍ଲାରେ । କହେ ବେଗରେ ଯେ । ୨ ।
ଯହିଁ ବସ୍ତି ପର୍ଣ୍ଣା ସ୍ଥିତ । ବଟଦେହେ ଗତ ବାଞ୍ଛନ୍ତି ।
ବ୍ରହ୍ମଯୋନି ପ୍ରେତଶିଳା । ହୋଇଛି ମେଳା ଯେ । ୩ ।
ଫଲ୍‌ଗୁ ସରିତ ବରିତ୍ର । ଖଦାଉଲେ ତାର ଗାର୍ଦ୍ଧ ।
ମତ୍ସ୍ୟସହ ସ୍ୱଚ୍ଛଜଳ । ଜାତ ତତ୍କାଳ ଯେ । ୪ ।
ରଜ ପିଣ୍ଡଦାନେ ମୋକ୍ଷ । ରହସ୍ୟ ଯହିଁ ପ୍ରତ୍ୟକ୍ଷ ।
ଶୁଭାଶୁଭ କାଲ ନାହିଁ । ସାକ୍ଷୀ ବୈଦେହୀ ଯେ । ୫ ।
ତହିଁ ପିଣ୍ଡଦାନମାନ । ଅଗୋଚର କରି ଯେନ ।
ପାତକୀ କରେ ପତନ । ସେ ଗୟା କ୍ଷେତ୍ର ଯେ । ୬ ।
ରାଜଧାନୀ ପୁଷ୍ପପୁର । ସହଜେ କୁନ୍ତଳ ପର ।
ଶୈଳ କାଞ୍ଚୀ ତାର ତଳ । ଏତେ ମଞ୍ଜୁଳ ଯେ । ୭ ।
ବିଦଗ୍ଧ ରାକ୍ଷସହସ୍ତୀ । ଅସମାନ-ମାନୁ କରି ।
ନଗରମାନଙ୍କ ମୋକ୍ଷ । ତହିଁ କି ଲକ୍ଷ୍ୟ ଯେ । ୮ ।

---

୨—କେହି ସ୍ୱଦେଶୀ ଏ ମଗଧର ସମାନ କି ନୁହେଁ ପଚାରିଲେ ନିଷଧଦେଶବାସୀ ନିଷେଧ କରୁଥିଲେ ଅର୍ଥାତ୍ ନାହିଁ କହୁଥିଲେ, ପୁଣି ମରୁଦେଶ ଏହାହିଁ କହୁଛ, ଅର୍ଥାତ୍ ଏ ଦେଶ ତା ଆଗେ କେବଳ ମରୁଭୂମି, ବୋଲି କହେ । ମଲ୍ଲାର ଦେଶମଧ୍ୟ ଏହାହିଁ ଅର୍ଥାତ୍ ଅନ୍ୟ ଦେଶଅପେକ୍ଷା ମଗଧ (ମୂଲ୍ୟହୀନ) ବୋଲି କହିଲା ।

୩-୪—ଯେଉଁ ମଗଧରେ ଗଙ୍ଗାନଦୀ ଅଛି, ଲୋକେ ଯେ ଗଙ୍ଗାରେ ଦେହତ୍ୟାଗ କରି ମୁକ୍ତି ଇଚ୍ଛା କରୁଅଛନ୍ତି, ଯେ ଦେଶରେ ବ୍ରହ୍ମଯୋନିତୀର୍ଥ ଏବଂ ଗୟା ପ୍ରେତଶିଳାତୀର୍ଥ ରହିଅଛି, ଅଥମଧ୍ୟ ଅପୂର୍ବଜନକ ଫଲ୍‌ଗୁନଦୀ ଅଛି. ଯେ ଶୁଖିଲାପଡ଼ିଥାଏ ତା ବାଲିକୁ ଖୋଳିଲେ ପାଣି ଓ ମାଛ ବାହାରେ ।

୫ - ଯେଉଁଠାରେ ବାଲିପିଣ୍ଡ ଦେଲେ ସୁଦ୍ଧା ମୋକ୍ଷ ମିଳେ. ଏ ରହସ୍ୟକୁ ସାକ୍ଷାତ ଦେଖାଯାଉଅଛି । ସୀତା ଯେ ଏଥିର ସାକ୍ଷୀ, ପୂର୍ବେ କୌତୁକରେ ସୀତା ଫଲ୍‌ଗୁରେ ବାଲିପିଣ୍ଡ ଗଢ଼ାଉଥିଲେ, ଦଶରଥ ହାତ ବଢ଼ାଇନେଇଗଲେ । ଅଶୁଭ କାଳରେ ସୁଦ୍ଧା ଗୟାଶ୍ରାଦ୍ଧ କରାଯାଇପାରେ । ସେ ବିଷୟରେ କାଳ ଶୁଭାଶୁଭ ବିଚାର ନାହିଁ ।

୬—ସେଠା ପିଣ୍ଡଦାନର କେତେ ଫଳ, କେହିଜାଣି କହିପାରେ ନାହାନ୍ତି । ସେ ଗୟାକ୍ଷେତ୍ର ପାପିମାନଙ୍କ ପତନ କରୁଅଛି ।

୭—ପୁଷ୍ପପୁର ସେହି ମଗଧର ରାଜଧାନୀ ଅଟେ । ସେ କୁନ୍ତଳ ଦେଶ ଉପରେ ଅଛି । ଶୈଳ ଏବଂ କାଞ୍ଚୀ ପ୍ରଦେଶ ମଧ୍ୟ ତା ତଳେ ଅଛନ୍ତି । ଅର୍ଥାତ୍ ଏ ସବୁ ଦେଶଠାରୁ ଉତ୍କୃଷ୍ଟ ଯେହେତୁ ତାର ନାମ ପୁଷ୍ପପୁର (ଫୁଲଧାନ) ସେ କୁନ୍ତଳ (କେଶ) ଉପରେ ହେବା ସ୍ୱାଭାବିକ । ପୁଣି ଶୈଳ (କାଞ୍ଚନ) କାଞ୍ଚୀ (କଟୀସୂତ୍ର) ଦୁହେଁ ତାର ତଳେ ରହିବା ଠିକ୍ । ଫୁଲକେହିପରି ମନୋହର ଦିଶୁଅଛି ।

୮—ଲଙ୍କାପୁରୀ ଏ ନଗରର ସମାନ ନ ହେବାରୁ ଅଗ୍ନିମାନରେ ପୋଡ଼ିଯାଇଅଛି କି ? ଅନ୍ୟ ନଗରୀର ଶ୍ରେଷ୍ଠମାନେ ମଧ୍ୟ ତାହାସଙ୍ଗେ ସମାନ ନୁହନ୍ତି ।

ଛନ୍ଦ ନୁହଇ ଏ ପୁଣ । ସନ୍ଦ ରତନେ ନିର୍ମାଣ ।
ପଦ ସକାଶରୁ ଜାଣି । ଦେବା ଭଜନୀ ଯେ । ୯ ।
ନାନାରତ୍ନ ପ୍ରଭା ଧରି । କଳି ଶଙ୍ଖବାଡ଼ ସରି ।
ଦେଖାଇବେ କେଉଁ ଜ୍ୟୋତି । ତାରକାପନ୍ତି ଯେ । ୧୦ ।
ପ୍ରଭାହୀନ ପ୍ରଭାକର । ହାଙ୍ଗୁଲି କୁରୁକୀ ସାର ।
ଉଡ଼ାଇ କାକଚଟକ । ଏମନ୍ତ ତର୍କି ଯେ । ୧୧ ।
ଜଗତ୍ତ-ବିଳାସୀ ଭ୍ରମା । ସନ୍ଧ୍ୟେ ଯାଉଁ ଚନ୍ଦ୍ରମା ।
ଭାବନ୍ତି ସେ ଅଦରଣ । ହୀନ ପାରସ ଯେ । ୧୨ ।
ତୋରଣୀ ବିବିଧ ରତ୍ନେ । ପ୍ରାସାଦେ ଖଞ୍ଜିତ ଯତ୍ନେ ।
ବଲ୍ମୀକରେ ଇନ୍ଦ୍ରଶୃପ । ଜାତ ସ୍ୱରୂପ ସେ । ୧୩ ।
ଯହିଁରେ ମଣ୍ଡପମାନ । ଯଥା ପୁଷ୍ପକଯାନ ।
ଯେଉଁ ପୁଣ୍ୟଜନବର । କି ଶୋଭାକର ସେ । ୧୪ ।
ଗୃହେ ମଣିମୟ ସ୍ତମ୍ଭ । ବଉଳଶ୍ରୀ ପ୍ରବାଳ ।
ମହାରଜତ ରଜତ । ବାଡ଼ ନିର୍ମିତ ଯେ । ୧୫ ।
ମାଣିକ୍ୟ ମର୍କତ ମିଶ୍ରା । ପିତୁଲି ଚିହ୍ନ ରଚନା ।
ଲତା ମଞ୍ଜୁବୃନ୍ଦଜାଳି । ଭିତ୍ତିରେ ଝୁଲେ ଯେ । ୧୬ ।

---

୯—ଯେ ପୁଷ୍ପପୁର ସ୍ତମ୍ଭସବୁ ରତ୍ନରେ ତିଆରି ହୋଇଥିବାରୁ ଦନ ଓ ରାତ ସମାନ ଜଣାପଡୁଛି । କେବଳ ପଦ୍ମଫୁଟିବା ଓ ମୁଦିହେବା ଦ୍ୱାରା ଚିହ୍ନି ହେଉଅଛି । ଏକଥା କପଟ ନୁହେଁ ।

୧୦—ସେଠାରେ ଚତୁର୍ଦ୍ଦିଗର ଅକାଶ ନାନାବର୍ଣ୍ଣର ମଣିମାନଙ୍କ ଝଟକରେ ରଞ୍ଜିତ ବାଡ଼ପରି ଦିଶୁଛି । ଅକାଶର ତାରାମାନେ ସେଠାରେ ଅବା କି ଜ୍ୟୋତି ଦେଖାଇବେ ।

୧୧—ସେଠାରେ ମଣିକିରଣରେ ସୂର୍ଯ୍ୟ ନିସ୍ତେଜ ହେଉଅଛି । ଯେମନ୍ତକ କୌଣସି କୌତୁକୀ ଲୋକ ହାଙ୍ଗୁଲ୍ ରେ ରଙ୍ଗକରି କାଗଜ ଚଢ଼େଇ ଉଡ଼ାଉଅଛି । ସୂର୍ଯ୍ୟ ଏହିପରି ଦିଶୁଅଛନ୍ତି ।

୧୨—ଅତଏବ ଜଗତଉପରେ ବିହାର କରୁଥିବା ସୁନ୍ଦରୀମାନେ ନିକଟରେ ଥିବା ଚନ୍ଦ୍ରକୁ ମଣିକିରଣରେ ନିସ୍ତେଜ ଦେଖି ପାରା ଖଡ଼ିଯାଇଥିବା ଦର୍ପଣ ବୋଲି ଭାବୁଅଛନ୍ତି ।

୧୩—କୋଠାମାନଙ୍କରେ ନାନା ନିର୍ମିତ ତୋରଣୀ ଉଇହୁଙ୍କାରୁ ବାହାରିଥିବା ଇନ୍ଦ୍ରଧନୁ ପରି ଦିଶୁଅଛି । ଇନ୍ଦ୍ରଧନୁ ଉଇଁହୁଙ୍କାରୁ ବାହାରିବା ଲୋକ ପ୍ରବାଦ ଅଛି ।

୧୪—ଯେଉଁଠାରେ ମଣ୍ଡପସବୁ ପୁଷ୍ପକ ବିମାନ ପରି ଦିଶୁଅଛି । ପୁଷ୍ପକରେ କୁବେର ଶୋଭା ପାଉଥାନ୍ତି । ମଣ୍ଡପମାନଙ୍କରେ ପୁଣ୍ୟାତ୍ମାଲୋକମାନେ କେଡ଼େ ଶୋଭାପାଉଅଛନ୍ତି । ୧ପୁଣ୍ୟଜନବର, କୁବେର ଓ ପୁଣ୍ୟାତ୍ମାଶ୍ରେଷ୍ଠ ।

୧୫—ସେଠା ଘରମାନଙ୍କ ସ୍ତମ୍ଭ ମଣିନିର୍ମିତ ଅଟେ । ତହିଁରେ ପୋହଳାର ଝରି ବଉଳା ଓ ଦ୍ୱାର । ବାଡ଼ମାନ ସୁନା ଓ ରୁପାରେ ତିଆରି ହୋଇଅଛି ।

୧୬—ସେ ବାଡ଼ମାନଙ୍କରେ ମାଣିକ୍ୟ ଓ ମରକତ ଜଡ଼ିତ ପ୍ରତିମା ଓ ଲତା ଏବଂ ଡାଳସବୁ ଝୁଲା ହୋଇ ଚିତ୍ର ହୋଇଅଛି ।

କଳଧଉତ ସ୍ୱର୍ଣ୍ଣ ବୈଦୂର୍ଯ୍ୟ । ପ୍ରକାଶମାନ ଯେ ତେଜ ।
କି ଶ୍ୱେତ ପୀତ ଗଜାନା । ଏମନ୍ତ ଶଙ୍କା ଯେ । ୧୭ ।
ନୀଳମଣି ସ୍ଫଟିକର । ଯହିଁ ପାବଚ୍ଛ ଚତ୍ୱର ।
ମୁକୁତାଗୁଚ୍ଛା ଭ୍ରମର । ଭଜାନ ତାର ଯେ । ୧୮ ।
ବେଣୀ ବଦଖ ସଙ୍ଗତେ । ଶଶୁ ଝେୟଣ କରନ୍ତେ ।
୧ମାତଙ୍ଗୀ ଯୋଗ୍ୟ ହୁଅନ୍ତି । ୨ମାତଙ୍ଗ-ମୋଡ ଯେ । ୧୯ ।
ଯହିଁ ଅବଗାହ ସର । ସ୍ୱଚ୍ଛ ପଙ୍କ ମନୋହର ।
ତହିଁ ସ୍ନାନବଧୂ ସାରୁ । ସେ ସୁରସ୍ୱାରୁ ଯେ । ୨୦ ।
ସୁଚ୍ଛଲେ କୁନ୍ଦକାରକ । ନ ଦେଖାନ୍ତ ୧ସମ୍ମୁଖକ ।
ଅର୍ଦ୍ଧବାସେ ସ୍ତନ ଗୃହିଁ । ଆତଙ୍କ ବନ୍ଧ ଯେ । ୨୧ ।
ଆଣିଲେ ୧ପୁଳିନବାଇ । ମୟୂରଶ୍ମିଚ୍ଛ ଭ୍ରମର ।
ଭବନ୍ଧ କେଶ ଅନାଇ । ବେଗେ ଲୁଗୁଇ ଯେ । ୨୨ ।
ଏକା ନ ଯିବ ଏ ବ୍ୟଥା । ଜନ୍ମି ଯରଖର କଥା ।
କାଠ ବ୍ୟାଘ୍ର ନଖକୁଳ । ବକବା ସୁଲ ହେ । ୨୩ ।
ସେ ଯାଃଳପୁରପୁର । ନୃପତି ସପ୍ତି ସାଗର ।
ବଂଶବରସ୍ଥ ଲଭିତ । ତାହାର ସୁତ ଯେ । ୨୪ ।

---

୧୭—କୋଠାଉପରେ ସ୍ୱର୍ଣ୍ଣ ଓ ବୈଦୂର୍ଯ୍ୟ ମଣିମୟ କଳସରୁ ବାହାରୁଥିବା କିରଣ ଧାର ଧଳା ଓ ହଳଦିଆ ପତାକାପରି ଜଣାଯାଉଅଛି ।

୧୮—ଯେଉଁଠାରେ ପାହାଚ ଓ ଅଗଣା ଇନ୍ଦ୍ରନୀଳ ସ୍ଫଟିକମଣି ନିର୍ମିତ ଅଟେ । ଗୃହରେ ମୁକୁତା ଗୁଚ୍ଛା ଭ୍ରମର ଉଡୁଅଛି ।

୧୯—ସେଠାରେ ତରୁଣୀମାନେ ବଡ଼କାଳି ସାଙ୍ଗେ ଗଜମୁକ୍ତା ଗୋଟାଉ ଅଛନ୍ତି । ପିଲାମାନେ କୋଳ କରି ମୁକ୍ତାସବୁ ବାଛି ଦେଉଅଛନ୍ତି ଅତଏବ ସେ ମାତଙ୍ଗ ମୋଡ ମାତଙ୍ଗୀ ଯୋଗ୍ୟ ହେଉ ଅଛନ୍ତି । ୧ମାତଙ୍ଗୀ, ମନ୍ତ୍ରକନ୍ୟା । ୨ମାତଙ୍ଗ, ହାତୀ ।

୨୦—ଯେଉଁଠାରେ ଗଙ୍ଗା ଗାଧୋଇବା ପୋଖରୀ ହୋଇଅଛି, ସୁର ସ୍ତ୍ରୀମାନେ ତହିଁରେ ଗାଧୋଉ ଅଛନ୍ତି ।

୨୧—ଯେଉଁଠାରେ କୁନ୍ଦୁରମାନେ ଓଦାଲୁଗା ପିନ୍ଧିଥିବା ସ୍ତ୍ରୀମାନଙ୍କର ସ୍ତନ ଦେଖି ନିଜ ଫଳମାନଙ୍କୁ ନିନ୍ଦା କରୁ ଅଛନ୍ତି । କଣ ଅଣିତ ଦେଖା ବୋଲି ପଚାରିଲେ ସୁଦ୍ଧା ସେ ଫଳ ଦେଖାଉ ନାହାନ୍ତି ୧ସମ୍ମୁଖକ, ଫଳ ।

୨୨—ଶବରମାନେ ସେଠାରେ ସ୍ତ୍ରୀମାନଙ୍କର ଫିଟିଥିବା କେଶ କେଶପାଶ ଦେଖି ବନ ଆଣିଥିବା ନିଜର ମୟୂରପୁଚ୍ଛ ଓ ଚମର ନିକୃଷ୍ଟ ଜାଣି ଶୀଘ୍ର ଲୁଚାଇ ଦେଉଅଛନ୍ତି । ୧ପୁଳିନବାଇ, ଶବରସମୂହ ।

୨୩—ଏ ସବୁ ସେଠାରେ ଦେଖାଯିବ ନାହିଁ ଏହ ଦୁଃଖ ଜନ୍ମିବାରୁ ଶୂଳ ଓ କାଠ ବାଘନଖ ଦେଖିବା ଏ କଥାବାର୍ତ୍ତା ହେଉଅଛନ୍ତି ।

୨୪—ସପ୍ତିସାଗର ସେହି ପାଟଳି ପୁରର ରାଜା । ତାଙ୍କପୁଅର ଷୋଡ଼ଶ ବର୍ଷ ବୟସ ।

ଏମନ୍ତ ସୁନ୍ଦର-ଈଶ । କାମଦେବ ତାହା ବେଶ ।
ଧରି ସୁନ୍ଦର ବୋଲାଏ । ପୌଣ୍ଡ୍ରିକ ପ୍ରାୟେ ସେ ॥ ୨୪
ଧ୍ୱଂସ ଲକ୍ଷଣେ ମକର । କେତୁରେ ବହନ୍ତି ମାର ।
ପୁଷ୍ପକେତୁ ନାମ ସିଦ୍ଧ । ସେ ପୁଷ୍ପ ଧନୁ ଘେନ । ୨୬ ॥
ଏମନ୍ତ ସେ ବୀରପଣେ । ଭୀମ ବୋଲି ଯେବେ ଶୁଣେ ॥
ସେହି ବୃନ୍ଦକୁ ଗଞ୍ଜଇ । ଏକା ଖଙ୍ଗଙ୍କ ସେ । ୨୭ ॥
ଭୈରବ ନ ସାଧାଇଲେ । ଏମନ୍ତ ଚିତ୍ତେ ଧ୍ୟାଇଲେ ॥
ପଦାକ ରହିବ କେଉଁ । ପାଞ୍ଚିଲେ ଏଣୁ ସେ । ୨୮ ॥
ଶୁଣି ଧନୁର୍ଦ୍ଧର ପଣ । ଲକ୍ଷ୍ୟେ ଭାବିଲେ ଲକ୍ଷ୍ମଣ ।
ହୋଇଥିବ ଇନ୍ଦ୍ରଜିତ । ଅବଶ୍ୟ ଜାତ ସେ । ୨୯ ॥
କର୍ତ୍ତାପର ବ୍ୟାକରଣେ । ପାଣିନୀସୁ ମନେ ଗୁଣେ ॥
କରିବା ଏହା ସଙ୍ଗତି । ହେବ ବ୍ୟୁତ୍ପତ୍ତି ସେ ॥ ୩୦ ॥
ମୀମାଂସା ବେଦ ବେଦାନ୍ତେ । ଟୀକାସୂତ୍ରକ ଏ ସଂଗେ ॥
ଜୈମିନ ବ୍ରହ୍ମ ବ୍ୟାସ । ପ୍ରଶଂସି ତୋଷେ ସେ ॥ ୩୧ ॥

---

୨୪—ସେ ରାଜପୁତ୍ର ଏପରି ସୁନ୍ଦର ଥିଲେ ଯେ, କନ୍ଦର୍ପ ତାଙ୍କ ବେଶ ଧାରଣ କରି ଜଗତରେ ସୁନ୍ଦର ବୋଲାଉଅଛି । ଯେପରି ପୂର୍ବକାଳରେ ପୌଣ୍ଡ୍ର ଦେଶର ରାଜା ଶ୍ରୀକୃଷ୍ଣଙ୍କ ପରି ବେଶଭୂଷା ଓ ବାସୁଦେବ ନାମ ଧାରଣ କରି ଶ୍ରୀକୃଷ୍ଣ ହେବାକୁ ବସିଥିଲା ।

୨୬—କେଶ, ମକରରେଖା ଏହି ରାଜପୁତ୍ରଙ୍କର ପ୍ରଧାନ ଶୁଭଲକ୍ଷଣ, କନ୍ଦର୍ପ ମକରକୁ ପତାକାରେ ଧାରଣ କରିଅଛି । ରାଜପୁତ୍ରଙ୍କର ନାମ ପୁଷ୍ପକେତୁ । କନ୍ଦର୍ପ ତାହା ଅନୁକରଣ କରି ପୁଷ୍ପାୟୁଧ ହୋଇଅଛି ।

୨୭—ସେ ରାଜପୁତ୍ର ଏପରି ବୀର ଥିଲେ ଯେ, ଭୀମ ବଳବାନ ବୋଲି ଯେଉଁଠାରୁ ଶୁଣିଥିଲେ ସେ କୋପରେ ଘୃଣା କରୁଥିଲେ, ଗଦାମାନଙ୍କୁ ଭାଙ୍ଗି ପକାଉଥିଲେ ।

୨୮—ଏକପାଦରେ ରହି ଶଣ୍ଢ୍ରାଖେଳ କରିବାକୁ ଭୈରବ ସାଧନା କହନ୍ତି । ଏ ରାଜପୁତ୍ର ତାହା କଲେ ନାହିଁ । କେବଳ ଏପରି ସାଧନା ମନେ ମନେ ଧ୍ୟାନ କଲେ । ସେ ପାଇଲେ, ମୋର ପାଦ କେଉଁଠାରେ ରହିବ । ଯେଉଁଠାରେ ପଡ଼ିବ ସେଠାର ଲଙ୍ଘିଯିବ, ସମ୍ଭାଳିବ ନାହିଁ ।

୨୯—ଯେବେ ଏହାଙ୍କର ଧନୁର୍ଦ୍ଧର ପଣ ଶୁଣି ଲକ୍ଷ୍ମଣଙ୍କୁ ଲକ୍ଷ୍ୟ କଲେ ଯେବେ ଏ ଲକ୍ଷ୍ମଣ, ତେବେ ଇନ୍ଦ୍ରଜିତ ଅବଶ୍ୟ ଜନ୍ମିଥିବ । ନହେଲେ ଏହାର ବୀର ପଣିଆ କେଉଁଠାରେ ଦେଖାଯିବ ।

୩୦—ବୈୟାକରଣମାନେ ଭାବିଲେ, ଏ ରାଜପୁତ୍ର ବ୍ୟାକରଣରେ ପାଣିନିଙ୍କ ପରି, ଅସ୍ତୁ ଏହାଙ୍କ ସଙ୍ଗେ ମିଳିବା, ଅନ୍ୟର ବ୍ୟୁତ୍ପତ୍ତି ବଢ଼ିବ ।

୩୧—ମୀମାଂସା ଶାସ୍ତ୍ର ବେଦ, ଓ ବେଦାନ୍ତ ଶାସ୍ତ୍ରରେ ଏ ରାଜପୁତ୍ର ଟୀକାପୋଥିପଢ଼ି, ଏପରି ପ୍ରଶଂସା କରି ଜୈମିନି ଋଷି (ମୀମାଂସା ଶାସ୍ତ୍ରକାର) ବ୍ରହ୍ମା (ବେଦ ପ୍ରଣେତା) ଓ ବ୍ୟାସ (ବେଦାନ୍ତ ଶାସ୍ତ୍ରକାର) ସନ୍ତୁଷ୍ଟ ହୋଇଥିଲେ ।

କଣ୍ଠାଗ୍ରେ କର ଅଞ୍ଜଳି । କରେ ଶୁଣି ପତଞ୍ଜଳି ।
ବଇଶେଷିକ ସାଂଖ୍ୟରେ । ସାକ୍ଷୀ ପ୍ରକଟେ ଯେ । ୩୨ ।
ବେଦରୂପେ ନ୍ୟାୟବନ୍ତ । ଏହୁରୂପେ ଜାଣେ ୧ମନ୍ତ ।
ଅଳଙ୍କାର ଅଳଙ୍କାର । ଦୁଇ ପ୍ରକାର ଯେ । ୩୩ ।
ତୁରଙ୍ଗାରୋହଣ ଗୃହି । ୧ହେଳି କାଶ୍ୟପିକ କହି ।
କେମନ୍ତ ଅଶ୍ଚର୍ଯ୍ୟ ସାଧ । ମଣ୍ଡି ସମ୍ବାଦ ଯେ । ୩୪ ।
ଚଢ଼ି ନ ଜାଣନ୍ତି ଗଜ । ଏହାପର ସୁରରାଜ ।
ହସ୍ତୀ ହସ୍ତୀ ନାହିଁ ମେଳ । ଆସନ ଭଲ ଯେ । ୩୫ ।
ସୁମେରୁ ଦାନକୁ ଭୟ । କର ହେଲା ଦେବାଳୟ ।
ଯେବଣ ଏହି ବିବେକ । ମହାଧାର୍ମିକ ଏ । ୩୬ ।
ଯାହାର କୀରତି-ସୁଧା । ଧବଳି ସାରୁ ବସୁଧା ।
ହଂସ ହୋଇଲା ମାନସେ । କ୍ରୀଡ଼ା ମାନସେ ଯେ । ୩୭ ।
ସେ ପୁଣି କ୍ଷୀର ହୋଇଲା । ବ୍ରହ୍ମାଣ୍ଡ-ଭାଣ୍ଡ ପୂରିଲା ।
ଶ୍ରୁତି-ମୁଖରେ ପିଇଣ । ପୁଷ୍ଟ ୧ମାର୍ଗଣ ଯେ । ୩୮ ।
ବୀଣା ଶ୍ରବଣେ ନାରଦ । ସନ୍ତୋଷେ ହେଲେ ବରଦ ।
ହେଉ ତବ ମନୋହାରୀ । ଦିବ୍ୟ ସୁନ୍ଦରୀ ଯେ । ୩୯ ।

---

୩୨—ଯୋଗଶାସ୍ତ୍ରକାର ପତଞ୍ଜଳି ଉକ୍ତ ଶାସ୍ତ୍ରରେ ଏହାଙ୍କର ଯୋଗ୍ୟତା ଦେଖି ସନ୍ତୁଷ୍ଟ ହୋଇ ଆଶୀର୍ବାଦ କରିବାକୁ ହସ୍ତ ଅଞ୍ଜଳି କଲେ । କଣାଦକୃତ ବୈଶେଷିକଦର୍ଶନ ଓ କପିଳ କୃତ ସାଂଖ୍ୟ ଦର୍ଶନରେ ଏ ସାକ୍ଷୀପରି ସଙ୍ଗେ ଥିଲେ ।

୩୩—ଏ ରାଜପୁତ୍ର ବ୍ୟାସପରାୟଣ ଓ ନ୍ୟାୟ ଶାସ୍ତ୍ରଜ୍ଞ ଥିଲେ । ମତଶାସ୍ତ୍ରଜ୍ଞ ଓ ତନ୍ତ୍ର ଶାସ୍ତ୍ରଜ୍ଞ ଥିଲେ । ଭୂଷଣମାନଙ୍କର ଶୋଭାବର୍ଦ୍ଧକ ଓ ଅଳଂକାରିକ ଶ୍ରେଷ୍ଠ ଥିଲେ । ୧ମନ୍ତ, ମନ୍ତ୍ରଣା ଓ ଦେବାରାଧନା ।

୩୪—ସୂର୍ଯ୍ୟ ଏହାଙ୍କର ଘୋଡ଼ାଚଢ଼ିବା ଦେଖି ଅରୁଣଙ୍କୁ କହୁଥିଲେ । ଦେଖ, ପୃଥିବୀ କେଡ଼େ ଆଶ୍ଚର୍ଯ୍ୟଜନକ ଅଶ୍ୱାରୋହୀ ସମ୍ଭାଳିତ । ୧ହେଳି, ସୂର୍ଯ୍ୟ କାଶ୍ୟପି, ଅରୁଣ ।

୩୫—ଇନ୍ଦ୍ର ଏହାଙ୍କପରି ହାତୀ ଚଢ଼ି ଜାଣନ୍ତି ନାହିଁ । କଲୁ ଏହାଙ୍କ ଆସନଯୋଗ୍ୟ ଘୋଡ଼ାହାତୀ ମିଳନାହିଁ ।

୩୬—ଏହାଙ୍କ ଦାନପଣିଆ ଦେଖି ଉତ୍ତରର ସୁବର୍ଣ୍ଣ ପର୍ବତମେରୁ ଭାବିଲା, କାଳେ ମୋତେ ଭାଙ୍ଗି ବାଣ୍ଟି ଦେବେ । ତେବେ ମୁଁ ଦେବତାଙ୍କ ବସତି ହେବ । ତାହାହେଲେ, ଏତ ଅତି ଧାର୍ମିକ, ଦେବାଳୟ କଣ ଭାଙ୍ଗିବେ ?

୩୭—ଏହାଙ୍କର କୀର୍ତ୍ତିରୂପକ ସୁଧା ସାରା ପୃଥିବୀକୁ ଧଳା କରିଦେଇସାରି ବର୍ତ୍ତମାନ ଲୋକମାନଙ୍କ ମନରୂପ ମାନସ ସରୋବରରେ ଖେଳିବା ମାନସରେ ହଂସ ହୋଇ ବିହାର କରେ । ଅର୍ଥାତ୍ ସମସ୍ତ ପୃଥିବୀର ଲୋକେ ଏହାଙ୍କ କୀର୍ତ୍ତି ଅନୁଭବ କଲେ ।

୩୮—ସେହି କୀର୍ତ୍ତି ପୁଣି ଦୁଗ୍ଧ ହୋଇ ବ୍ରହ୍ମାଣ୍ଡ ରୂପକ ହାଣ୍ଡିରେ ପୂର୍ଣ୍ଣ ହେଲା ଯାଚକମାନେ ତାହା କର୍ଣ୍ଣରୂପକ ମୁଖରେ ପିଇ ପୁଷ୍ଟ ହେଲେ । ଅର୍ଥାତ୍ ଶୁଣି ସନ୍ତୁଷ୍ଟ ହେଲେ । ୧ମାର୍ଗଣ, ଯାଚକ ।

୩୯—ନାରଦ ଏହାଙ୍କ ବୀଣା ବାଦନ ଶୁଣି ସନ୍ତୁଷ୍ଟ ହୋଇ ବର ଦେଲେ । ତୁମ୍ଭର ଉତ୍ତମ ସୁନ୍ଦରୀ ଭାର୍ଯ୍ୟା ହେଉ ବୋଲି କହିଲେ ।

ଯା ପର ସ୍ତ୍ରୀ-ଲୋଚନ । ଦେଖି ନ ଥିବ ସପନ ।
ଏରୂପ କଳ୍ପନା ହୋଇ । ସମ୍ଭବ ଯେହ୍ନ ଯେ । ୪୦ ।
ଅଳପକ କଲପନା । ନୋହେ ଯେଉଁ ସୁଲପନା ।
୧କଳ୍ପ କଳ୍ପ କଳ୍ପ ହୋଇ । ଯାହା ଧିଆଇ ଯେ । ୪୧ ।
ଋଷି କହି ତିରୋହିତ । ଖସି ଶୂନ୍ୟରୁ ତ୍ୱରିତ ।
ମିଳେ ଅଦ୍ଭୁତ ପୁରୁଷ । ୧ ମସ୍କରୀ ବେଶ ଯେ । ୪୨ ।
କୁମାର ପ୍ରଣମ୍ୟ ଶେଷେ । ଦିବ୍ୟାସନ ପାଇ ବସେ ।
ସେ ଖର ସମ ବୟସ । ବେନ ବୟସ୍ୟ ଯେ । ୪୩ ।
ବିଦ୍ୟାନନ୍ଦ ଯଶୋବନ୍ତ । ପୁରୋହିତ ମନ୍ତ୍ରୀ-ସୁତ ।
ପୃଚ୍ଛିଲେ କାହୁଁ ଆଗତ । ହେ ତପୋବନ୍ତ ଯେ । ୪୪ ।
କହିଲେ ସେ ପରିବ୍ରାଟ । ମଠ ଗନ୍ଧସର ତଟ ।
ଏ ଖର ଗୁଣ ପ୍ରକଟ । ହୋଇଲୁ ଭେଟ ଯେ । ୪୫ ।
ଜାଣୁ ବହୁ ଚମତ୍କାର । ଏଣୁ ସେ ପାଇ ଆଦର ।
ବଞ୍ଚିଲେ ତାହାଙ୍କ ସଙ୍ଗେ । ଆଶ୍ଚର୍ଯ୍ୟ ରଙ୍ଗେ ଯେ । ୪୬ ।
କଠିନ ଦୋଷ ହରିଲା । ଶିଳାକୁ ଅବଳା କଲା ।
ସେ ପଦ-ପ୍ରସାଦେ ଯଦ । ସ୍ଫୁରଣେ ମୋଦ ମୁଁ । ୪୭ ।

---

୪୦—ଯଥାର୍ଥ ଉପଭୋଗ କରିବା ନିମନ୍ତେ ଥାଉ, ଯାହାପର ସ୍ତ୍ରୀ କେବେ ସ୍ୱପ୍ନରେ ଦେଖି ନ ଥିବ ଏପରି କଳ୍ପନା ଯାହାଠାରେ ସମ୍ଭବ । ସେ ଭୂମିର ସୁନ୍ଦରୀ ହେବ ।

୪୧—ସେ ସୁନ୍ଦରୀ ଅଳ୍ପ କଳ୍ପନାରେ ହୋଇନାହିଁ । ଯଥାର୍ଥ ଅନେକ କଳ୍ପ ପର୍ଯ୍ୟନ୍ତ ଅନ୍ତରରେ ଯାହା ବିଚାର କରିଥିଲେ । ୧କଳ୍ପ, କାଳଯୋଗ ଓ ଯଥାର୍ଥ ଆଚରଣ ।

୪୨—ଋଷି ଏହା କହି ଚାଲିଗଲେ । ତହୁଁ ଗୋଟିଏ ଅଦ୍ଭୁତ ପୁରୁଷ ସନ୍ନ୍ୟାସୀ ବେଶରେ ଆକାଶରୁ ଖସି ପ୍ରବେଶ କଲେ । ୧ମସ୍କରୀ, ସନ୍ନ୍ୟାସୀ ।

୪୩।୪୪—ରାଜପୁତ୍ର ପ୍ରଣାମ କରନ୍ତେ ସେ ସନ୍ନ୍ୟାସୀ ଉତ୍ତମ ଆସନ ପାଇ ବସିଲେ । ରାଜପୁତ୍ରଙ୍କ ସମବୟସ୍କ ମନ୍ତ୍ରୀପୁତ୍ର ଯଶୋବନ୍ତ ଓ ପୁରୋହିତ ପୁତ୍ର ବିଦ୍ୟାନନ୍ଦ ବୁଝିବା ପାଇଁ ସେ ସନ୍ନ୍ୟାସୀଙ୍କୁ ପଚାରିଲେ, "ହେ ତପୋଧନ ଆପଣ କେଉଁଠାରୁ ଆସିଲେ ।"

୪୫—ସେ ସନ୍ନ୍ୟାସୀ କହିଲେ, ଆମ ମଠ ଗନ୍ଧସର କୂଳରେ । ଏ ବୀରଙ୍କର ଗୁଣ ପ୍ରକଟ ହେବାରୁ ଶୁଣିକରି ଆସିଲୁଁ ।

୪୬—ଆମ୍ଭେ ବହୁତ ଆଶ୍ଚର୍ଯ୍ୟ ବିଦ୍ୟା ଜାଣୁ । ଏହା କହିବାରୁ ବଡ଼ ଆଦରପାଇ ସେହି ରାଜପୁତ୍ରଙ୍କ ସଙ୍ଗରେ କୌତୁକରେ ରହିଲେ ।

୪୭—ରାମଚନ୍ଦ୍ରଙ୍କର ପାଦ ପଥରକୁ ସ୍ତ୍ରୀ କରି ଦେଇଥିଲା, ପଥର ହୋଇଥିବା ଅହଲ୍ୟାଙ୍କୁ ମୁକ୍ତ କଲା । ଅତଏବ ସେ ପାଦପଦ୍ମ ଅନୁଗ୍ରହରେ କଠିନତା ଦୋଷ ନାଶ କରିଥିଲା । ମୋର ସକଳ ପଦମାନ ସ୍ଫୁରିଲେ ମୁଁ ଆନନ୍ଦିତ ହେବ ।

ଉପେନ୍ଦ୍ର ଭଞ୍ଜ କବି । ନିରତେ ଚିତ୍ତରେ ଭାବି ।
ହୋଇବ ଅର୍ଥେ ସରସ । ନୋହିବ ଦୋଷ ଯେ । ୪୮ ।

## ପଞ୍ଚମ ଛାନ୍ଦ ।

### ରାଗ ଗୁଜ୍ଜରୀ ।

( କୋଟିବ୍ରହ୍ମାଣ୍ଡସୁନ୍ଦରୀର ଯୌବନ, ଯଶପ୍ରକାଶ ଏବଂ ଋତୁପ୍ରାପ୍ତି ବୟସ ବର୍ଣ୍ଣନ )

ଯେଉଁ ଯୌବନଶ୍ରୀ ଧରି । ଧରଣୀ ହୋଇଲା ଉର୍ବରୀ ।
ତନୁ ତାର ମାପ ପ୍ରମାଣ । ଅଦଭୁତରେ ସେ ନିର୍ମାଣ । ୧ ।
ସେ କଳାନିଧି କଳା ବୃଦ୍ଧି । କରନ୍ତେ ବାଲ୍ୟରୁ ଅବଧି ।
ଯୌବନେ ପୂର୍ଣ୍ଣତା ପାଇଲା ॥ ଲକ୍ଷଣେ ମହତ ବହିଲା । ୨ ।
ସେ ବଶୀକରଣବିଧି । ପ୍ରକାଶ ହାସ ଅଉଷଧି ।
ମୋହନ-ମନ୍ତ୍ର ମୃଦୁ-ବାଣୀ । ବୋଲାଇ ରମଣୀଙ୍କ ମଣି । ୩ ।
ନବବୟସ ସଙ୍ଗେ ମେଳ । ହୋଇ ହେବାରୁ ଗୋଲାଗୋଳ ।
ଶୋଭା ପ୍ରଭାଏ ଉଡ଼ାଉଡ଼ି । ହରଷ ରସ ଜଡ଼ାଜଡ଼ି । ୪ ।
ଭାବ ଲାଜ ଏ କଷାକଷି । ହାବ ନୟନ ମିଶାମିଶି ।
ଲୀଳା ବିଳାସ ଦିଶିଗଲେ । ପ୍ରସନ୍ନ-ସାଗର ଉଛୁଳେ । ୫ ।

---

୪୮—କବି ଉପେନ୍ଦ୍ର ଭଞ୍ଜ ଯେ ପାଦପଦ୍ମକୁ ସର୍ବଦା ଧ୍ୟାନ କରୁଅଛନ୍ତି ଅତଏବ ଏ ବାକ୍ୟ ସରସ ଓ ନିର୍ଦ୍ଦୋଷ ହେବ ।

ପଞ୍ଚମ ଛାନ୍ଦ ।

୧—ଧରଣି ଯେ ସୁନ୍ଦରୀ ହାତ ଅପଣାକୁ ଧନ୍ୟ ମନେ କରୁଥିଲା, ତାହାର ଦେହ ମାପକାଠିରେ ମପାହୋଇ ଅଧିକ ହେଲାପରି ଦିଶୁଥିଲା ।

୨—ସେ ସୁନ୍ଦରୀ ଗୀତବାଦ୍ୟ ପ୍ରଭୃତି ଚଉଷଠି ପ୍ରକାର କଳାମାନଙ୍କୁ ଜାଣୁଥିଲା । ଅତଏବ କଳାନିଧି (ଚନ୍ଦ୍ର) ପରି ବାଲ୍ୟକାଳରୁ କଳା ( ଅବୟବାଂଶ ) ମାନଙ୍କୁ ବଢ଼ାଇ ଯୌବନରେ ପୂର୍ଣ୍ଣତ୍ୱ ପାଇଲା ଶରୀର ଲକ୍ଷଣମାନଙ୍କରେ ଉତ୍କୃଷ୍ଟ ହେଲା । ଚନ୍ଦ୍ର ପୂର୍ଣ୍ଣତ୍ୱ ପାଇଲେ କଳଙ୍କ ଧାରଣ କରନ୍ତି ଏବଂ ବଢ଼ନ୍ତି ।

୩—ସେ ସୁନ୍ଦରୀମଣି ମନ୍ତ୍ର ଓ ମହୌଷଧି ରୂପରେ ଅନେକପ୍ରକାର ବଶୀକରଣ ଉପାୟ ସ୍ୱରୂପ ହୋଇଥିଲା । ଦେଖ, ବଶୀକରଣ ଔଷଧସ୍ୱରୂପ ହାସ ଓ ମୋହନ ମନ୍ତ୍ରସ୍ୱରୂପ କୋମଳବଚନ ପ୍ରକାଶ କରୁଥିଲା ।

୪-୫—ଯେତେବେଳେ ନବଯୌବନ ତାକୁ ପାଇ ଘୂରି ଘୂରି ହେଲା ପରି ରହିଲା । ସେତେବେଳେ ସୌନ୍ଦର୍ଯ୍ୟ ଓ ଲାବଣ୍ୟ ଦୁହେଁ ତା ଠାରେ ଉଡ଼ାଉଡ଼ି ହେଲାପରି ରହିଲେ । ଆନନ୍ଦ ଓ ଶୃଙ୍ଗାରରସ ପରସ୍ପର ଜଡ଼ିତ ହେଲେ ଅର୍ଥାତ୍ ରସାନନ୍ଦ ଅନୁଭବ ହେଲା । ତାର ବଡ଼ ଏହା ବୟସ ଶୃଙ୍ଗାରଭାବ ଓ ଲାଜ ଦୁହେଁ ପରସ୍ପର କଷାକଷି ହେଲେ । ଭଙ୍ଗୀ ଓ ଅକ୍ଷି ଦୁହେଁ ପରସ୍ପର ମିଳିତ ପରି ହେଲେ ଅର୍ଥାତ୍ ଚାହାଣି ଭଙ୍ଗୀଯୁକ୍ତ ହେଲା । ଯେ ଘୂରାଘୂରି ହୁଅନ୍ତି, ସେ ଉଡ଼ାଉଡ଼ି ଜଡ଼ାଜଡ଼ି, କଷାକଷି ଓ ମିଶାମିଶି ହୁଅନ୍ତି । ଏଠାରେ ଅନେକମାନେ ହେଲେ, ଅତଏବ ଅତ୍ୟାଶ୍ଚର୍ଯ୍ୟ ହେଲା, ଅଙ୍ଗଭଙ୍ଗୀ ଓ ବିଳାସ ପ୍ରକାଶହେଲା, ପ୍ରସନ୍ନତା ସମୁଦ୍ର ଉଛୁଳିଲା ।

ଯୋଗେ ଯୋଗୀଏ ଦେଲେ ଗୃହିଁ । ପଲକ ଖସିଯିବ କାହିଁ ।
ବୁଡାଇବେ ସେ ପୁଣି ଜ୍ଞାନ । ବଢାଇ ଯାହାର ଏସନ । ୬ ।
ଜଗତୀ-ବିଳାସରେ ଥାଇ । ଜଗତୀ ବିଳାସକୁ ଦେଇ ।
ଏସନ କୀର୍ତ୍ତିସମୃଦ୍ଧକୁ । ଯେ ଶୁଣେ ଭଜେ ସେ ମୋହକୁ । ୭ ।
କମ୍ବୁ ଡମରୁ ବକ୍ଷୁ ଶିବେ । ଜଣାନ୍ତି କ କରିବୁଁ ଏବେ ।
ଯୌବନ-କୁନ୍ଦେ କୁନ୍ଦ ହେଲା । କାମ-ହେମ-ଯନ୍ତ୍ର-ପିରୁଲା । ୮ ।
ସେ ଯେଣୁ ଦଳ ଧୈର୍ଯ୍ୟ ବାଧ । ଏକ ନୟନ ସିନ୍ଧୁମଧ୍ୟ ।
ଏକ କୃତ୍ତିକ ଯୋଡ଼ି ହେଲେ । ତାକୁ ଲୁଣ୍ଠିଲ ସେ ଲୁଚିଲେ । ୯ ।
ମୁଖ ଛବି ଧ୍ୟାନରେ ଲୀନ । ସଙ୍କୋଚେ ନଳିନ ମଳିନ ।
ବନାନ୍ତେ ଜନ୍ମିଲ ସେ ଖିତ । ନତ ନତ ଭଜେ ସେ ଖିତ । ୧୦ ।
ଚତୁର-ମୁଖ ଯେ ଚତୁର । ଜାଣିଲ ଅସନରୁ ତାର ।
ଏବେ ସେ ତରୁଣକୁ ଭଜେ । କୋଟିବ୍ରହ୍ମାଣ୍ଡସୁନ୍ଦରୀ ଯେ । ୧୧ ।
ନିଜ ବାହନ-ଦୁହିତାକି । ଦେଲା ସେ ମାନସୀ-ମୂର୍ତ୍ତିକି ।
ନାମ ତା ଦେଲା କାଦମ୍ବିନୀ । କହେ ସାରସେ ଯାଅ ଯେଣି । ୧୨ ।
ସେ କନ୍ୟା ସଖୀ ଏ ହୋଇବ । ମାଙ୍ଗଳୀ ଭେଟ କରାଇବ ।
ସେ ବେନି କରନ୍ତେ ଗମନ । ମାର୍ଗରେ ଦେଖନ୍ତି ଏମାନ । ୧୩ ।

---

୬—ଯୋଗିମାନେ ଏହାକୁ ଦେଖିଲେ ପିହୁଳା ପକାଇବେ ନାହିଁ । ସେମାନଙ୍କ ଜ୍ଞାନ ବୁଡ଼ିଯିବା ପରି ସମ୍ଭବ ହୁଏ । ତେଣୁ ସେ ସ୍ତ୍ରୀର ଏତେ ବଡ଼ା ହୋଇଥିଲା ।

୭—ଏ ସ୍ତ୍ରୀ ଖେଳାରେ ଆମୋଦ ପ୍ରମୋଦରେ ରହି ଜଗତର ବିଳାସ ସମ୍ପାଦନ କରୁଥିଲା । ଏହାର ଏସବୁ କୀର୍ତ୍ତି ଯେ ଶୁଣିଲା, ସେ ମଗ୍ନ ହେଲା ।

୮-୯—ଏ ସୁନ୍ଦରୀର କଣ୍ଠ ଦେଖି ବାସୁଶଙ୍ଖ ଧରି ଓ ଏହା କଟୀ ଦେଖି ଶିବ ଡମରୁଧରି "ଅମ୍ଭେ ଯାରୁ ଏବେ କଣ କରିବୁଁ ଏହା ବୋଲି ଜଣାଇଲେ । ଏ ସ୍ତ୍ରୀ କନ୍ଦର୍ପର ସୁବର୍ଣ୍ଣନିର୍ମିତ ସୂକ୍ଷ୍ମାଚକ୍ର ପିରୁଳା । ଏ ପୁଣି ଯୌବନରୂପକ କୁନ୍ଦରେ କୁନ୍ଦାହେଲା । ବକ୍ଷୁଣିବ ଦୂରେ ଏହା ଦଶର ଧୈର୍ଯ୍ୟ ଛଡ଼ିଲେ । ନଦୀ (ବକ୍ଷୁ) ପାଇଁ ସମୁଦ୍ର ଭିତରେ ଯୋଗ ଶିଖିବା ଲୁଚିଗଲେ ଓ ଅପେ ଲୁଚିଲେ ।

୧୦—ପଦ୍ମଯାହା ପାଣିରେ ବୁଡ଼ିଥିଲା, ବୋଧହୁଏ ଏହା ମୁଖଶୋଭା ଧ୍ୟାନ କରୁଥିଲା । ବୋଧହୁଏ ପୁଣି ସେ ଲାଜରେ ମ୍ଳାନ ହୋଇଥିଲା ଦିନ ଶେଷରେ ମଧ୍ୟ ଭୟ ପାଉଥିଲା । ଏବେ ପ୍ରଭା ନତ ସେ ଏ ରୀତିକ ଧରେ ।

୧୧—କୋଟି ବ୍ରହ୍ମାଣ୍ଡସୁନ୍ଦରୀ ଯୌବନ ପାଇବା କଥା ବ୍ରହ୍ମା ନିଜବାହନ ହଂସଠାରୁ ଶୁଣିଲେ ।

୧୨—ବ୍ରହ୍ମା ନିଜବାହନ ହଂସ ଝିଅକୁ ନାରୀରୂପ ଦେଇ କାମିନୀ ବୋଲି ନାମ ଦେଲେ ଏବଂ ହଂସକୁ କହିଲେ, ଏହାକୁ ନେଇଯାଅ ।

୧୩—ଏ କାଦମ୍ବିନୀ ସେ ସୁନ୍ଦରୀର ସଖୀ ହେବ । ମାଙ୍ଗଳୀ ନାମକ ରାଜକୁମାରଙ୍କ ସଙ୍ଗେ ଏହାଙ୍କୁ ଦେଖା କରାଇବ । ତହୁଁ ସେ ହଂସ ଓ କାଦମ୍ବିନୀ ଦୁହେଁ ବାଟରେ ଯାଉଁ ଯାଉଁ ଯାହା ସବୁ ଦେଖିଲେ ତାହା ଆଗରେ ବର୍ଣ୍ଣିତ ହେବ ।

ହେଠ-ମୁଖ ଅଶ୍ୱିନୀ-ସୁତ । ଶଶୀ ମାରୁଛି ହୃଦେ ହାତ ।
ମଘବା ମୁକୁରକୁ ଚାହିଁ । ହରଷ ହରସ ହୁଅଇ । ୧୪ ।
ଲବେ ଥଏ ନୋହେ ମରୁତ । ଭାବି ମୁଁ ଦଶ-ଗର୍ଭ-ଜାତ ।
ନରେଖେ କୁବେର ତନୁକୁ । ନୈଋତି ଚାହେଁ ଆସନକୁ । ୧୫ ।
ଦନ୍ତ ନେଉଛି ଘନ ଘୋଇ । ଯମ ପଦରେ ଲକ୍ଷ୍ୟ ଦେଇ ।
ବରୁଣ ପାଶେ ଦେଇ ଦୃଷ୍ଟି । ଏ ବୁଦ୍ଧି ହେବ ବୋଲି କଷ୍ଟି । ୧୬ ।
ସନ୍ନିକଟ ଦକ୍ଷିଣାୟନେ । କଥା ସେ ବେନ ହୁତାଶନେ ।
ବହିବାରୁ ଏ ତେଜନାମ । ହେଲୁଇ ସିନା ବିରୋଚନ । ୧୭ ।
କୁମାର ଏହି ଶଙ୍କା ଘୋର । ସବୁଣୁ ଊଣା ଶୋଭା ମୋର ।
ଆନଙ୍କ ଉପମା ସେ ଯୋଷା । ଜାନକୀ ରୂପକୁ ସଦୃଶା । ୧୮ ।
ଗଙ୍ଗା ଯେ ନଦୀ ଶମ୍ଭୁଙ୍କସ୍ଥ । କଣ୍ଠରେ ଆଦର ନକର ।
ସେହି ଲପନ କର୍ମେ ହେଲି । ମାଳୀ ଯେଣି ଗଣେଶ ଭାଳି । ୧୯ ।
ଆଉ ଦେବତାମାନେ ଯେତ । ଅନ୍ୱେତ ଏମାନଙ୍କ ଭୃତ୍ୟ ।
ଏମନ୍ତ ହେଲେ ଲୋଭତସ୍ୟ । ନ ତେଜେ ହୃଦୟ-ଦଳସ୍ୟ । ୨୦ ।

---

୧୪ – କୋଟିବ୍ରହ୍ମାଣ୍ଡ ସୁନ୍ଦରୀଙ୍କରେ ଅନୁରକ୍ତ ହୋଇଁ ଅଶ୍ୱିନୀକୁମାର ବିଚାର କଲେ ଆମ୍ଭେ ଯୋଡ଼ାମୁହଁ ଆମ୍ଭଙ୍କୁ ସେ କଣ ବରିବେ ? ଏହା ଭାବି ତଳକୁ ଚାହିଁ ଅଛନ୍ତି । ଚନ୍ଦ୍ର ସେହିପରି ଅନୁରକ୍ତ ହୋଇ ନିଜର କଳଙ୍କ ଥିବା ଭାବି ଛାତିରେ ହାତ ମାରୁଅଛନ୍ତି । ସେହିପରି ଇନ୍ଦ୍ର ଦର୍ପଣରେ ନିଜର ହଜାର ଅକ୍ଷି ଦେଖି ସେ ସୁନ୍ଦରୀକି ଦେଖି ପାଉ ନଥିବାରୁ ଆନନ୍ଦିତ ହେଉଅଛନ୍ତି । ଅକ୍ଷି ଗୁଡ଼ାକ ଯୋନି ନକେ ବିରୂପ ଥିବାରୁ ସେ ବରିବ ନାହିଁ ଭାବି ଦୁଃଖିତ ହେଉଅଛନ୍ତି ।

୧୫—ବାୟୁଦେବତା ସେହିପରି ନିଜର ଦୋଷ ଭାବି ବେଥିତ ହେଉଥାନ୍ତି । ଦଶ ଗର୍ଭରୁ ଜାତ ହୋଇଥିବାରୁ ମୋ ଅନ୍ତରଙ୍କର ଭାଇ, ଏହି ଦୋଷ ତାଙ୍କର ଅଛି । କୁବେର ସେହିପରି ନିରାଶ ହୋଇ ନିଜଦେହକୁ ଚାହୁଁ ଅଛନ୍ତି । ସେହେତୁ ସେ କୁ (କୁତ୍ସିତ) ବେର (ଶରୀର) ଅଟନ୍ତି । ନୈଋତ ମଧ୍ୟ ନିଜ ଆସନ ଶବକୁ ଦେଖି ନିରାଶ ହେଉଅଛନ୍ତି ।

୧୬—ଯମ ନିଜର ଗୋଡ଼ର ଗୋଡ଼କୁ ଲକ୍ଷ୍ୟ କରି ନିରାଶ ହୋଇ ଦୁଃଖରେ ଦାନ୍ତ କାମୁଡ଼ୁଅଛନ୍ତି । ବରୁଣ ମଧ୍ୟ ନିଜର ପାଶ ଅସ୍ତ୍ରକୁ ଦେଖି ବସିଛନ୍ତି, ଭାଳେ ସାପ ବୋଲି ସୁନ୍ଦରୀ ଡରିବ । ଏହା ବ କଷ୍ଟ ହେଉଅଛନ୍ତି ।

୧୭—ଦକ୍ଷିଣାୟନର ନିକଟବର୍ତ୍ତୀ ସୂର୍ଯ୍ୟ ଓ ଅଗ୍ନି ଦୁହେଁ କଥାବାର୍ତ୍ତା ହେଉଅଛନ୍ତି । ଆମ୍ଭେ ଦୁହେଁ ଏପରି ଅସହ୍ୟ ତେଜ ଧାରଣ କରିଥିବାରୁ ଅସୁନ୍ଦର ହେଲୁଁ ସିନା ? ବିରୋଚନ, ସୂର୍ଯ୍ୟ ଓ ଅଗ୍ନି ଏବଂ ଅରୁଣ କର ।

୧୮—ସେ ସୁନ୍ଦରୀ ରୂପରେ ସୀତାଙ୍କ ତୁଲ୍ୟ, ସୀତା ତ ରାବଣକୁ ସ୍ୱୀକାର କରି ନଥିଲେ । ମୁଁ ତ ରାବଣଠାରୁ ସୌନ୍ଦର୍ଯ୍ୟରେ ଊଣା, ମତେ ସେ ସୁନ୍ଦରୀ ବରିବ ନାହିଁ । ଏହି ଘୋର ଚିନ୍ତାରେ କାର୍ତ୍ତିକେୟ ପଡ଼ିଅଛନ୍ତି ।

୧୯—ଏଣେ ଗଙ୍ଗା ଶିବଙ୍କୁ ବରି ନଥିଲେ । ଗଣେଶ ଭାବିଲେ କପାଳକୁ ମୋଡ଼ି ହାତୀ ମୁହଁ, ମୋତେ ଏ ସୁନ୍ଦରୀ ବରିବ ନାହିଁ, ଏହା ମାଳା ଧରି ଭାବୁଅଛନ୍ତି ।

୨୦—ଅନ୍ୟ ଦେବତାମାନେ ନିଜକୁ ଏହି ଦେବତାମାନଙ୍କର ଚାକର ଭାବି ଡରୁଅଛନ୍ତି ତେବେ ସୁଦ୍ଧା କାହାରି ମନରୁ ଲୋଭ ଛାଡ଼ୁ ନାହିଁ ।

ବିରହ ନାମରେ ବିରସ୍ତ । ମନୁ ଜନମି ତାହା ଦହ ।
ସନ୍ତାପ ଅଙ୍ଗେ ଜାତ ହୋଇ । ମଦନ-ଜ୍ୱର ସେ ବୋଲାଇ । ୧୧ ।
ବଢ଼ାଇ ତୃଷ୍ଣା ଅତିଶୟ । ଦାହ-ଜନକ ଅପ୍ରମେୟ ।
କଣ୍ଠ କପାଳେ ସ୍ୱେଦ ଝାଳ । କମ୍ପ କ୍ଷଣ କ୍ଷଣକେ ଟଳ । ୧୨ ।
ନ ଲାଗେ ବେଳେ ବେଳେ ନାଡ଼ି । ପ୍ରଲାପ ଜାତ ଘଡ଼ି ଘଡ଼ି ।
ଫୁଟଇ ତନୁ ଖରଶ୍ୱାସ । ପାଣ୍ଡୁତ୍ୱେ କରଇ ଅଶ୍ଳେଷ । ୧୩ ।
ତା ଦେଖି କହି ଦେଲା ହଂସ । ନବୈଦ୍ୟ-ବ୍ୟାଧିକ ଯା ରସ ।
ସେତ ଦୁର୍ଲଭ ଏହାଙ୍କର । ଖଣ୍ଡିଲେ ଆମ୍ଭର ଆହାର । ୧୪ ।
କିଏ ପୁଚ୍ଛିଲା ସୁତା ତାର । କହେ ଶ୍ୱେତ ଗରୁଡ଼ବର ।
ପ୍ରେମମଞ୍ଜରୀ ବାଳା ନାମ । ଅଙ୍କୁରଏ ଚିତ୍ତରେ ପ୍ରେମ । ୧୫ ।
ସଂକଳ୍ପଭବ ନାମ କାମ । ସାର୍ଥେ ଏ କାଳେ ହେଲା କ୍ଷମ ।
ଏମନ୍ତ କଥା ହେଉଁ ହେଉଁ । ନଭେ ସହରେ ଯାଉଁ ଯାଉଁ । ୧୬ ।
ପ୍ରିୟ ଅପ୍ରିୟ ହେବା ଘେନ । ଏରୂପେ କଥା ବାମାଗଣ ।
ହେଲ ସନ୍ଧ୍ୟାଗାମୀ ମୁଁ ଶଚୀ । ହେମ ରୁଚ ଲୋକନ ରୁଚି । ୧୭ ।

---

୧୧—ବିରହାଗ୍ନି ସେମାନଙ୍କ ମନରୁ ଜାତ ହୋଇ ମନକୁ ପୋଡ଼ଇ । ଦେହରୁ ଜାତ ହେବା ସନ୍ତାପ, ଅର୍ଥାତ୍ କାମଜ୍ୱର ହେଲା । ବିରହୀ, ଅଗ୍ନି ।

୧୨—ବିରହରେ ସେମାନଙ୍କର ତୃଷ୍ଣା, ଦାହ, ସ୍ୱେଦ, କମ୍ପ, ହେଲା ।

୧୩—ସମୟ ସମୟରେ ନାଡ଼ୀ ଲାଗୁ ନଥିଲା । ପ୍ରଳାପ କରୁଥିଲେ, ଖରଶ୍ୱାସ ପକାଉଥିଲେ ଏବଂ ପାଣ୍ଡୁବର୍ଣ୍ଣ ଦିଶିଲେ ।

୧୪—ଏ ସବୁ ଦେଖି ହଂସ କହିଲା ଯେ ସ୍ତ୍ରୀମାନେ ରସରୋଗ ଏମାନଙ୍କର ବୈଦ୍ୟଙ୍କର ଅସାଧ୍ୟ ଏ ବିରହ ବ୍ୟାଧିକୁ ଉପାଦାନ ଅଟେ । ସେ ସ୍ତ୍ରୀ ଏମାନଙ୍କର ଦୁର୍ଲଭ । ଏମାନେ କେବଳ ଆମ୍ଭମାନଙ୍କ ଖାଦ୍ୟ ମୃଣାଳ ବୃଥା ଉଚ୍ଛନ୍ନ କଲେ । ବିରହମାନେ ତାପଶାନ୍ତି ପାଇଁ ମୃଣାଳ ଗୁଡ଼ିକ ହେବା କଥା ପ୍ରସିଦ୍ଧ ଅଛି । ରସ, ରସରୋଗ ଓ ଉପାଦାନ ।

୧୫—ହଂସ ଝିଅ କାହାକି "ସେ କିଏ" ବୋଲି ପଚାରିବାରୁ ସେ ହଂସ କହିଲା, ସେ ସ୍ତ୍ରୀର ନାମ ପ୍ରେମମଞ୍ଜରୀ । ସ୍ନେହରେ ପ୍ରେମ ଜନ୍ମାଏ । ଶ୍ୱେତଗରୁଡ଼, ହଂସ ।

୧୬—କନ୍ଦର୍ପ କଳ୍ପନାରୁ ଜାତ ହୁଏ ବୋଲି ତାର ଯାହା ସେ ନାମ ଥିଲା ଏବେ ଏ ସୁନ୍ଦରୀ ସେ ନାମକୁ ସାର୍ଥକ କଲା ଅର୍ଥାତ୍ ସମସ୍ତଙ୍କୁ କାମାସକ୍ତ କରାଇଲା । ଏପରି କଥା କୋହ ହୋଇ ଯାଉଁ ଯାଉଁ ଦେଖିଲେ ।

୧୭—ପ୍ରିୟ ମାନେ କାଳେ ସେ ସୁନ୍ଦରୀଠାରେ ଆସକ୍ତ ହୋଇ ଆଉ ଫେରିବେ ନାହିଁ, ଏହା ସେ ଦୁଇଜଣ ସ୍ତ୍ରୀ କଥାବାର୍ତ୍ତା ହେଉଥିଲେ । ଜଣେ କହୁଥିଲା, ମୁଁ ଶଚୀ ମୋ ସ୍ୱାମୀଙ୍କର ଶୋଭା ଦେଖି ଲାଜରେ ଲୁଚିକରି ରହୁଛି, ସନ୍ଧ୍ୟା ହେଲେ ଯାଏ ଅସ୍ତ କରୁଛି ।

ସୁସଙ୍ଗେ ହୋଇ ମୁଁ ସାରଦା । ଲକ୍ଷ କର ଦେଉଛୁ ବାଦ୍ୟ ।
ଶୁଣିଲୁ ବୋଇଲା ମରାଳ । ଯାହାଙ୍କ ସଙ୍ଗକ ଆକୁଳ । ୨୮ ।
ତାହାଙ୍କ ବାଳା ଦୁଃଖପାତ । କାହାଙ୍କ ହେବ କହ ତାତ ।
ସେ ଗାନ୍ଧର୍ବୀ ଗନ୍ଧର୍ବସନ୍ତୁ । ଷୋଡଶୀ ଏକ ସୁଶୋଭିତ । ୨୯ ।
ବିଧାତା ଅନୁକୂଳ ଥିବ । ସେ ଅନୁକୂଳ ପୁଂସ ହେବ ।
ଶୋଭା ଗୁଣ କୁଳ ବୟସେ । ସମେ ମିଳିବ ଭାଗ୍ୟବଶେ । ୩୦ ।
ବିଭାମଣ୍ଡପ ଭୂଲପାଣେ । ବସିବେ ସୀତା ରାମ ମତେ ।
ନୋହିଲେ ଥିବ ବହୁକାଳ । ଯଥା ରେବତୀ ଲଭେ ବଳ । ୩୧ ।
ଶୁଣି କହିଲେ ଦେବୀ ବେନି । ଆମ୍ଭର ଅଂଶଭବା ଯେଣି ।
ଯାଇ ଦିଅ ତା ସଙ୍ଗୀ କରି । ସେ ହେବେ ହୃଦ-ଶଙ୍କାହାରୀ । ୩୨ ।
କାଦମ୍ବ ସେ ସମ୍ମତ କଲା । ପ୍ରମଦ ଯୁଗ ଉପୁଜିଲା ।
ଶଚୀକଳା ବାଣୀଜା ସେହି । କାଦମ୍ବିନୀରେ ସଙ୍ଗ ହୋଇ । ୩୩ ।
ପ୍ରଥମା ଦ୍ୱିତୀୟା ଅପରା । ପ୍ରୟୋଗ ହୋଇବେ ରୁଚିରା ।
ଚମ୍ପାବତୀଶ କ୍ରୀଡେ ଜଳେ । ମହିଷୀ ସଙ୍ଗେ ଅନ୍ତୁ ମିଳେ । ୩୪ ।

---

୨୮— ଅନନ୍ତରେ କହୁଥିଲା. ମୁଁ ସରସ୍ୱତୀ ସେ ଗୁଣକନ୍ୟାର ସୌନ୍ଦର୍ଯ୍ୟରେ ହାର ତାକୁ ଲକ୍ଷ କରି ବାଦ୍ୟମାନ ଦେଉଅଛି । ଏହା ଶୁଣି ହଂସ କହିଲା ମୁଁ ତୁମ୍ଭ କଥାରୁ ତୁମ୍ଭ ଦୁହିଁଙ୍କ ଅକୁଳତାର କାରଣ ବୁଝିଲି ।

୨୯— ତୁମ୍ଭେ ଦୁହେଁ ଯାହାଙ୍କ ଦୁଃଖିତ ହେଉଛ । ରାଜକନ୍ୟାର ସେ ପତି କାହାଙ୍କ ଦୃଷ୍ଟିପାତ ହେବ । ତେଣ. ଏ ରାଜକନ୍ୟା ଗନ୍ଧର୍ବୀଠାରୁ ଜାତ ହେବାରୁ ଗନ୍ଧର୍ବ ପ୍ରକୃତି, ପୁଣି ଷୋଡଶବର୍ଷା, କନ୍ତୁ ତୁମ ପତି ବ୍ରହ୍ମା ଓ ଇନ୍ଦ୍ର ଦୁହେଁ ଦେବତା ଓ ବୟୋବୃଦ୍ଧ, ଏହାର ଯୋଗ୍ୟ ପାତ୍ର କି ?

୩୦।୩୧— ଯାହା ପ୍ରତି ଦୈବ ଅନୁକୂଳ ଥିବ । ସେ ଅନୁକୂଳ (ଏକାସକ୍ତ) ନାୟକ ହୋଇଥିବ । ସେ ଯୁବା ତଉଲରେ ପଡ଼ିଲା ପରେ ବିବାହ ବେଦିରେ ସୀତାରାମଙ୍କ ପରି ଏହା ସଙ୍ଗେ ବସିବ । ଏହା ନହେଲେ ଏ ଉପଯୁକ୍ତ ବର ଅପେକ୍ଷା କରି ରହିଥିବ । ଯେପରି କି ପୂର୍ବକାଳରେ କକୁଦ୍ମି ରାଜା ନିଜକନ୍ୟା ରେବତୀର ସଦୃଶ ବର ନମିଳିବାରୁ ଅନେକ ଯୁଗ ଅପେକ୍ଷା କରି ଦ୍ୱାପର ଶେଷରେ ଜନ୍ମିଥିବା ବଳଦେବଙ୍କୁ ବିବାହ ଦେଇଥିଲେ ।

୩୨ — ଏହା ଶୁଣି ସରସ୍ୱତୀ ଓ ଶଚୀ ଦୁହେଁ କହିଲେ, ଆମ୍ଭ ଅଂଶରୁ ଜାତ ଏହି କନ୍ୟା ଦୁହିଁଙ୍କୁ ନେଇ, ସେ ଯୁବତୀର ସଖୀ କରିଦିଅ । ତେବେ ଆମ୍ଭ ମନରୁ ଶଙ୍କା ଦୂର ହେବ ।

୩୩—ତହୁଁ ହଂସ ସ୍ୱୀକାର କଲା, ବାଣୀଜା ଓ ଶଚୀକଳା ନାମରେ ଦୁଇଟି ସ୍ତ୍ରୀ ଦୁଇ ଦେବୀଙ୍କଠାରୁ ଉତ୍ପନ୍ନ ହୋଇ କାଦମ୍ବିନୀ ସଙ୍ଗେ ମିଳିଲେ ।

୩୪—ଏହି ତିନି ସ୍ତ୍ରୀ ନାନା କାର୍ଯ୍ୟରେ ମନୋହାରିଣୀ ହେବେ । ଏଥିଉତ୍ତାରୁ ଚମ୍ପାବତୀ ଅଧିପତିଙ୍କର ରାଣୀଙ୍କ ସଙ୍ଗେ ଜଳକ୍ରୀଡ଼ା କରୁଥିବାବେଳେ ହଂସ ସେ କନ୍ୟା ତିନିଙ୍କୁ ନେଇ ପହଞ୍ଚିଲା ।

ସେ ¹ସାନନ୍ଦସର ²ସାରସରେ । ଦୃଷ୍ଟି ସୁଖଦ ସାରସରେ ।
ଲୋକନେ ନୃପ ପଚାରିଲ୍ । ଲୋକେଶବାହନ କହିଲ । ୩୫ ।

ହେ ଦେବଦେବ କନ୍ୟା ତନ । ସଙ୍ଗେ ମୁଁ ଆସିଅଛୁ ଯେନ ।
ତୁମ୍ଭ ନନ୍ଦନୀ କି ଇତର । ବୋଲିବା ତ୍ରିପୁରାଲଙ୍କାର । ୩୬ ।

ସେ କୋଟିବ୍ରହ୍ମାଣ୍ଡସୁନ୍ଦରୀ । ଏ ହେଲେ ତାହା ସହଚରୀ ।
କେତେ ବା ବର୍ଣ୍ଣିବ ଶୋଭନ । ମନୁଜାରୁ କି ପ୍ରୟୋଜନ । ୩୭ ।

ଭୂପତି ତୃପ୍ତିଙ୍କ ପାଇ । ସୁତାରେ ସଖୀ ସମର୍ପାଇ ।
କୌଶିକି ତଟର ବିପିନ । ଦେଲେ ବାଳାକୁ କ୍ରୀଡ଼ାସ୍ଥାନ । ୩୮ ।

କ୍ଷୀରେ ନୀର ମିଶିଲା ପରି । ସୁନ୍ଦରୀ ମନେ ସହଚରୀ ।
ନିଜ ମନକୁ ମିଶାଇଲେ । ରହସ୍ୟ ସବେ ରଚାଇଲେ । ୩୯ ।

ହଂସବଂଶରେ ଯେ ଠାକୁର । ପରମହଂସ ଅବତାର ।
ଯେ ମୁନି-ମାନସେ ବିହର । ଉପଇନ୍ଦ୍ର ଭଜ ସୁନ୍ଦର । ୪୦ ।



---

୩୫ — ସେହି ଉଲ୍ଲାସ କ୍ରୀଡ଼ାର ପୋଖରୀ ପଦ୍ମରେ ପୂର୍ଣ୍ଣଥିଲା ଓ ହଂସମାନଙ୍କ ଦ୍ୱାରା ମୁଖରିତ ହୋଇଥିଲା । ରାଜହଂସକୁ ଦେଖି ପଚାରିଲେ । ସେ ବ୍ରହ୍ମାଙ୍କବାହନ ହଂସ କହିଲା । ¹ସାରସର, ଉଲ୍ଲାସ ପୋଖରୀ, ²ସାରସ, ପଦ୍ମ ଓ ହଂସ ।

୩୬, ୩୭ — ହେ ମହାରାଜ, ମୁଁ ଏ କନ୍ୟା ସଙ୍ଗେ ଆସିଛି । ତୁମ୍ଭ ଝିଅ ଇତର ନୁହେଁ । ତ୍ରିଭୁବନର ଅଳଙ୍କାର ଏମାନେ ତାର ସଙ୍ଗୀ ହେଲେ ଅବଶ୍ୟ ବଡ଼ ଶୋଭା ହେବ । ମାନବୀ ସଖୀରୁ କି ପ୍ରୟୋଜନ ଅଛି ।

୩୮ — ରାଜା ସନ୍ତୁଷ୍ଟ ହୋଇ ନନ୍ଦିନୀଙ୍କୁ ଏ ସବୁ ସଖୀ ସମର୍ପଣ କରି କୌଶିକୀ ନଦୀତୀରସ୍ଥ ବନକୁ ତାର କ୍ରୀଡ଼ାସ୍ଥାନ କରିଦେଲେ ।

୩୯ — ସେହି ସଖୀମାନେ ଦୁଧରେ ପାଣିପରି ରାଜକନ୍ୟା ମନସହିତ ନିଜ ମନ ମିଳାଇ କ୍ରୀଡ଼ା କୌତୁକରେ ତାଙ୍କୁ ଅନୁରକ୍ତ କଲେ ।

୪୦ — ଯେ ଠାକୁର ପରମହଂସ (ପରବ୍ରହ୍ମ), ହଂସ (ସୂର୍ଯ୍ୟ) ବଂଶରେ ଅବତୀର୍ଣ୍ଣ ହୋଇ ମୁନିମାନଙ୍କ ମନ ରୂପ ମାନସସରୋବରରେ ହଂସପରି ବିହାର କରୁଅଛନ୍ତି, ଉପେନ୍ଦ୍ରଭଞ୍ଜ ସେହି ରାମଚନ୍ଦ୍ରଙ୍କୁ ସ୍ମରଣ କରୁଅଛନ୍ତି ।



## ଷଷ୍ଠ ଛାନ୍ଦ ।

### ରାଗ ବସନ୍ତ ।

( ବସନ୍ତକାଳ ବର୍ଣ୍ଣନା, ରାଜପୁତ୍ରର ନନ୍ଦନବନର ଏବଂ କୋଟିବ୍ରହ୍ମାଣ୍ଡସୁନ୍ଦରୀର ପ୍ରସଙ୍ଗ ଶ୍ରବଣ )

ଏତ ରସମୟ ବସନ୍ତ ସମୟ ସଜ୍ଜନ ୧ପ୍ରମେୟ ହାର ।
ମିବ ଅନଙ୍ଗଙ୍କୁ ପ୍ରବଳ କରାଇ ଆଚରେ ଚଚର୍ଚ୍ଚି- ବହାର ।
ଆଗତେ ଆବୋରିଲା ୨ ନାଗେଶ୍ୱରକୁ ।
ରକ୍ତ ରାଜ ପଦୁଁ ସେ ରଜ ଦେଖିଲା ଶୃଙ୍ଗ ପ୍ରଫୁଲ୍ଲ କେଶରକୁ । ୧ ।
୧ରୁଣ-ପବ ସ୍ପୃଷ୍ଟ ଆବରଣ ମଧ୍ୟେ ସାଧ୍ୱୀ ଗୁଣ ଦେଖ ପଶିଲା ।
ନବପୁଷ୍ପବତୀ ସେବତୀ ସଙ୍ଗତେ ରସି କ୍ରୀଡ଼ାକୁ ପ୍ରକାଶିଲା ।
ମନୋଜ ଶରପୂର ମଧ୍ୟ ଚହ୍ଲରେ ।
ଉଦ୍‌ବତ କରାଇ ରତି ଅନୁରାଗ ଅଙ୍କୁର ସେ ଖେଳେ ସହରେ । ୨ ।
ମଧୁ ବନ୍ଧୁପଣେ ମଳୟ-ଶଇଳ-କାଥିଲ ଅନିଳ ବହିଲା ।
ସଜ୍ଜଳେ ମଞ୍ଜି ପଦ୍ମିନୀ କୁମୁଦାଙ୍କ ୧ଦକ୍ଷିଣ-ସ୍ୱଭାବେ ମୋହିଲା ।
ତା ଜାଣି ବନ-ଭବନେ ଯେ ଆବେଶ ।
ତରୁ ଲତାଶ୍ରେଣୀ ତରୁଣ ତରୁଣୀ ସମସ୍ତେ ସୁମନ-ସୁବେଶ । ୩ ।

---

## ଷଷ୍ଠ ଛାନ୍ଦ ।

୧—ଅନେକ ଫୁଲ ଫୁଟିବାରୁ ବସନ୍ତକାଳ ମକରନ୍ଦପୂର୍ଣ୍ଣ ଓ ପ୍ରାଣିମାନଙ୍କ ଅନ୍ତର ଶୃଙ୍ଗାର ଭାବ ଉଦୟ ହେବାରୁ ମଧ୍ୟ ରସପୂର୍ଣ୍ଣ ହୋଇଅଛି । ତାର ଅନେକ ଅସ୍ପର୍ଦ୍ଧ କଥା ପ୍ରମାଣିତ କରିବାକୁ ଅଛି । ତେଣୁ, ସେ ରତ୍ନରାଜ ମିତ ଓ ଅଙ୍ଗହୀନ କନ୍ଦର୍ପକୁ ପ୍ରବଳକରି ପିଚକା (ଫଗୁ ପ୍ରଭୃତିରେ) ଖେଳକରିବାକୁ ଆସିଲା । ବସନ୍ତରେ ଲୋକେ ପିଚକାରେ ଫଗୁଖେଳ କରନ୍ତି । ରାଜପଥ ଥିବାରୁ ଆସିବାମାତ୍ରେ ହାତରେ ଚଢ଼ିଥିବା ନାଗେଶ୍ୱର ଗଛରେ ଅବୋରଣ କଲା । ଅର୍ଥାତ୍ ଆରମ୍ଭରୁ ନାଗେଶ୍ୱର ଗଛରେ ଫୁଲ ବସନ୍ତର ଚିହ୍ନ ଦେଖାଗଲା । ସେ ଗଛରେ ଫୁଟିଥିବା କେଶରକୁ ଦେଖି ତହିଁରୁ ଖେଳିବାକୁ ପରାଗ ଗ୍ରହଣ କଲା । ୧ପ୍ରମେୟ, ପ୍ରମାଣ କରିବା ଯୋଗ୍ୟ । ୨ନାଗେଶ୍ୱର ବୃକ୍ଷବିଶେଷ ଓ ହସ୍ତିଶ୍ରେଷ୍ଠ ।

୨—କେତକୀ ସ୍ୱଗୋପନିଅ ଥିବାରୁ ସ୍ତ୍ରୀମାନେ ଅବରଣରେ ଲୁଚିରହିଛ କଣ୍ଟକ ଆବରଣରେ ଥିଲା । କିନ୍ତୁ ସେ ବସନ୍ତ ନୂଆ ପୁଷ୍ପବତୀ ସେବତୀ ସହିତ କ୍ରୀଡ଼ା କଲା । କେତକୀ ଓ ସେବତୀ ଫୁଟିଲେ । କନ୍ଦର୍ପ ମଧ୍ୟ ଚଲାକମାନଙ୍କର ପଞ୍ଚରୂପକୁ ଘର ମଝି ଟେରଣାରେ ରତିଦେବୀଙ୍କର ଅନୁରାଗ ଜାତ କରାଇ (ପ୍ରକୃତରେ ସ୍ନେହ ଜନ୍ମାଇ) ଶୀଘ୍ର ଫଗୁଖେଳ କରୁଅଛି । ଅନୁରାଗକୁ କବିମାନେ ନାଲବର୍ଣ୍ଣନା କରୁଥିବାରୁ ଏଠାରେ ଅନୁରାଗ ଜନ୍ମାଇବାକୁ ଫଗୁଖେଳ ସହିତ ତୁଳନା କରାଯାଇଅଛି । ୧ରୁତପନ, କେତକୀ ।

୩—ମଳୟପବନ ବସନ୍ତର ବନ୍ଧୁଭାବରେ ଅତିକାପରି ବହିଲା । ପାଣିରେ ଥିବା ପଦ୍ମିନୀ କୁମୁଦିନୀ ପ୍ରଭୃତି ଚାରିଆଡ଼ ଲତାକୁ ମୁଗ୍ଧ କଲା । ଏ ସ୍ୱଭାବରେ ଦକ୍ଷିଣକୁ ବହୁଅଛି । ଅତଏବ ଏହାର ଦକ୍ଷିଣ ସ୍ୱଭାବ ଅଛି । ଯେପରିକି ଦକ୍ଷିଣ ନାୟକ ପଦ୍ମିନୀ, ଚିତ୍ରିଣୀ ପ୍ରଭୃତି ଶ୍ରୀରାଜାଦି ସ୍ତ୍ରୀମାନଙ୍କୁ ସମାନ ସ୍ନେହକରେ । ଏହା ଜାଣି ବନରୂପକ ଗୃହରେ ଥିବା ବୃକ୍ଷଲତାମାନେ ଯୁବକ ଯୁବତୀ ପରି ଫୁଲରେ ବେଶ ହେଲେ । ୧ଦକ୍ଷିଣ, ଦକ୍ଷିଣଦିଗରେ ଥିବା ଓ ଅନେକସ୍ତ୍ରୀଙ୍କଠାରେ ସମାନୁରାଗୀ ନାୟକ ।

ଶୋଭିତ କରବୀର ରସାଲ ପୁନ୍ନାଗ ପୁଗ ମଗ୍ନ ସେ ଅଭିଳାଷେ ।
ପୁନାଗ୍ନି ମାଧବୀ ମଲ୍ଲିକା ସେବତୀ ଚମ୍ପାନାମା ସହ ଉଲ୍ଲାସେ ।
ଏ ଭାବେ ବଉଳ ସଙ୍ଘାତ ହୋଇଲେ ।
୧ସନ୍ତତଗ୍ନି ଦାସୀ ଅସି ତହିଁ ମିଶି ଉନ୍ମତ୍ତ ପ୍ରଭା ଦେଖାଇଲେ । ୪ ।
କଲି ନଳୀ-କୋଷ-ମୁଠା ଫୁଟି କର ପଲ୍ଲବ-କର ପ୍ରସୃଲଲେ ।
ମକରନ୍ଦଗନ୍ଧ-ପିଚକା ପରାଗ ଫଗୁ ଅବରତେ ଖେଳିଲେ ।
ହେଲେ ଯେ ଅରଦ୍ର-ଶସ୍ତରେ ଝଲିତ ।
କଲେ ଖଞ୍ଜନ-ରଞ୍ଜନ ଈକ୍ଷଣକୁ କ୍ଷଣକୁ କ୍ଷଣ ଚଞ୍ଚଳିତ । ୫ ।
ବର୍ଣ୍ଣ ଅବ୍ୟକ୍ତରୁଁ ହାରିତ ୧କନକ-କଙ୍କଣ ନିଃସ୍ୱନେ ଦଶିଲେ ।
ମତ୍ତ ଭୃଙ୍ଗଶ୍ରେଣୀ ବାଜଣୀ କଙ୍କିଣୀ ରଣରଣ ପଦ ଘୋଷିଲେ ।
ଏତକ ମାତ୍ର ରହିଲା ବିବେଚନା ।
ପିକ କୁହୁକୁହୁ ଲେକ ହୁଁହୁଁ ହୁଁହୁଁ କଲେ ଉକ୍ତ ବଚ ରଚନା । ୬ ।
ବିକାଶ ହୋଇଲେ୧ କିଂଶୁକ ସାଧୁ ଯେ ପୂର୍ବ ବିଭୂତିକି ତେଜିଲେ ।
ଛୁରିକ କରତ କାଷ୍ଠ କଠୋରଙ୍ଗ ଉତ୍ଫୁଲ୍ଲ ପୁଲକ ଭଜିଲେ ।
ତା ଦେଖି ଦୀନ ହୃଷ୍ଟପୁଷ୍ଟ ଲଭିଲେ ।
ଉଡ଼ି ପଡ଼ିଲା ବିରଜମାନ ରଜ ବଶେ କେତେ ଅଙ୍ଗ ଶୋଭିଲେ । ୭ ।

---

୪—ଶୋଭିତ କରବୀର, ଆମ୍ବ, ପୁନ୍ନାଗ, ଗୁଆ ବୃକ୍ଷମାନେ ସୁନ୍ଦର ଶାଖା ରସିକ ପୁରୁଷଶ୍ରେଷ୍ଠ ହେଲେ । ପୁନାଗ୍ନି ମାଧବୀ ପ୍ରଭୃତି ଲତାମାନେ ସେହି ସେହି ନାମର ଉତ୍ତମ ସ୍ତ୍ରୀମାନେ ହେଲେ । ଏମାନଙ୍କ ସହିତ ସେମାନେ ମଧ ମେହୁପର ଫୁଲରେ ବେଷ ହୋଇ ପଡିବା ଦେଖିବା ଇଚ୍ଛାରେ ଉଲ୍ଲାସିତ ହେଲେ । ଏହି ପ୍ରକାରେ ବଉଳ ସମୂହ ମଧ୍ୟ ସଙ୍ଘାତ ହେଲେ । ଦାସବେଶ୍ୟା ଓ ଗଣିକା ହୁଏହିଁ ସଖୀ ଓ ଦାସୀପର ସେଥିରେ ସେ ଗଦଲେ । ହୁହୁଗ ସେଠାରେ ମନ୍ଦ୍ରୀଳ ଲୋଚନର ତୃପ୍ତ ପ୍ରକାଶ କଲା । ସନ୍ତତ, ଦମନ୍ତ ବେଶ୍ୟା ଓ ସଖୀ, ଦାସୀ, ଗଣଜାଣ ଓ ପେ ଘଲି ୨ଉନ୍ମତ୍ତ, ମାତାଳ ଓ ହୁହୁବ ।

୫—ସେମାନେ ପଲ୍ଲବରୂ କ ହସ୍ତମାନଙ୍କରେ ସ୍ତବକ ରୂପକ ମୁଠା ଘଟିଥିବା କଢ଼ିରୂପକ ପିଚିକା ନଳୀମାନଙ୍କୁ ଗ୍ରହଣ କଲେ । ମକରନ୍ଦ ରୂପକ ସୁଗନ୍ଧ ଜଳ ପଚିକା ଓ ପଦ୍ମରାଗ ରୂପକ ଫଗୁରେ ମତ୍ତ ହଲେ । ଖେଳବାଳୀମାନେ ନିଜର ଚଞ୍ଚଳ କଟ୍ରେ ଖଞ୍ଜନ ଚଢ଼ାଏ ସେଠାରେ ଉଡ଼ୁଥିବାରୁ ସେ ବୃକ୍ଷଲତାମାନଙ୍କର ଚଞ୍ଚଳ ଅକ୍ଷିପରି ହୋଇଥିଲା ।

୬—ଭ୍ରମର ନ ଦିସିବାରୁ ବର୍ଣ୍ଣ ଯାହା ନିଃଶେଷ ହୋଇଅଛି । ତେଣୁ ସେମାନଙ୍କ ଦେହ ବର୍ଣ୍ଣରେ ପଡ଼ା ପନ୍ନ ନ ଥିବାରୁ ହାରିଲେ ଓ ଭ୍ରମ ଉଡ଼ୁଥିବା ସୁନା କଙ୍କଣପର ଦଶିଲେ । ଅନ୍ୟ ମତ୍ତ ଭ୍ରମରମାନେ କାଞ୍ଚଣୀ ପର ଶବ୍ଦ କରୁଅଛନ୍ତି । ସେ ଖେଳରେ ଲୋକମାନେ ବାଚାଳତା କରି ହୁଁ ହୁଁ କରୁଥିବାରୁ ପିକମାନେ କୁହୁ କୁହୁ ଶବ୍ଦମାନ କରୁଥିଲେ । ୧କନକ, ସୁନା ଓ ଚମ୍ପା ।

୭—ପଳାଶ କଢ଼ି ଅବସ୍ଥାରେ ପାଉଁଶ ଥିଲା । ଏବେ ଫୁଟି ପାଉଁଶକୁ ଛାଡ଼ି ବୃକ୍ଷ ରହିଲେ । ଅତଏବ ଉତ୍ସବରେ ମାତ୍ର ସାଧୁ ଯେପରି ପାଉଁଶବୋଲି ହେବା ଛାଡ଼ି ଫଗୁରେ ଖେଳେ ସେହିପରି ଦିଶୁଥିଲା । ଛୁରିଆ ନାମକ କାଠରୂପକ କଠୋର ଅଙ୍ଗରେ କାଠ ବୋଲିବା ଦାଗ କାଠପର କଠୋର ଅଙ୍ଗରେ ଶବରେ ଶବଦପର ଫୁଲକଢ଼ିରୂପକ ରୋମାଞ୍ଚ ଧାରଣ କଲା । ଛୁରିଆ କାଠରେ ସୁନ୍ଦର ଫୁଟେ । ଉତ୍ସବରେ ଶବ୍ଦ ଲୋକର ସୁନ୍ଦର ରୋମ ଟାଙ୍କୁରେ । ଉତ୍ସବ ଦେଖି ଦରିଦ୍ରଲୋକ ସୁନ୍ଦର ହୃଷ୍ଟ ପୁଷ୍ଟ ହୁଏ । ଏବେ ବକସ ହୃଷ୍ଟ ପୁଷ୍ଟ (ବଢ଼) ଲୋକ ଖେଳରେ ଉଡ଼ ପଡ଼ୁଥିବା ଫଗୁ

କନକ କନ୍ଦର ଯେଣ ଧନେଶ୍ୱର ଚଇତ୍ରରଥରେ ରମନ୍ତେ ସେ ।
ଖେଚରମାନଙ୍କେ ଉମାଧବ ମାଧବ ପ୍ରତିମାରୁପରେ ଲୋକେ ସେ ।
ବିମାନ ଥିବେହି ସେ ରଙ୍ଗେ ଭ୍ରମିତ ।
ସେ କୈଲାସ କଇଳାସ ବଇକୁଣ୍ଠେ ହୋଇଥିବ ଶତ୍ରୁ ରମିତ । ୧୨ ।
ମୋହ ପାଉଇ ଜଗତ ଯେଉଁ ଗୀତ ଆଲଙ୍କିତ ସ୍ୱର ସପତ ।
ସ୍ଥକିତ ଲୋକିତ ଯହିଁରେ ପନ୍ନଗ ଅନଙ୍ଗ ତହିଁତ ଗୁପତ ।
ବିହଗ ପଶୁ ସ୍ୱରେ ସ୍ୱରେ ଧଇଲେ ।
ପ୍ରଶସ୍ତ କରି ବସନ୍ତ ରାଗ ଧରି ସର୍ବଲୋକେ ତାହା ଗାଇଲେ । ୧୩ ।
ସେ କର୍ଣ୍ଣକୁହରେ ପ୍ରବେଶେ ବାହାରେ ଅବରତେ ରହି ହୃଦରେ ।
ଜଲେ ଉଦ୍ଦୀପନ ଆଲମ୍ବନ ଅବଲମ୍ବନ ସେ ଅତି ଆଦରେ ।
ସମ୍ଭୋଗ ବିପ୍ରଲମ୍ଭ ବେନି ଶୃଙ୍ଗାର ।
ଯୋଗୀ ବିଯୋଗୀ ବିରଚନ କରନ୍ତି ଭାବ ବେଗେ କେଳି ଆକର । ୧୪ ।
ଯହିଁରେ ହୁଅଇ ଇନ୍ଧନ ଚନ୍ଦନ ବନ୍ଦନ ତାପ ବିନାଶରେ ।
ଲେଖ ଲେଖନ୍ତି ସ୍ୱର୍ଗଭୋଗ ମଧ୍ୟରେ ଅତ୍ୟନ୍ତ ସୁଖ ମାନସରେ ।
କୁମର-ବର ଏ ଋତୁ ଉପଗତେ ।
ଅଭ୍ରମ ଆଶ୍ରମକୁ ଗମେ ବେନି ମିଳି ରାଜହଂସ ସଙ୍ଗତେ । ୧୫ ।

---

୧୨—କୁବେର ଭଣ୍ଡାରୀ ଯେମନ୍ତ ନିଜର ଚୈତ୍ରରଥ ବଗିଚାରେ ବିହରନ୍ତି । ଶିବ ଓ ବିଷ୍ଣୁ ଖେଚରମାନଙ୍କରେ ପ୍ରତିମା ସ୍ୱରୂପରେ ସେ ଖେଳରେ ମାତନ୍ତି । ବ୍ୟୋମଯାନରେ ଚଢି ବୁଲୁଥିବା ଦେବତାମାନେ ମଧ୍ୟ ସେ ଖେଳରେ ମାତିଲେ । କୈଳାସ ଓ ବୈକୁଣ୍ଠରେ ସେ ଖେଳ ବଡ଼ ମନୋହର ହୋଇଥିବ ।

୧୩—ଯେଉଁ ଗୀତ ସାତପ୍ରକାର ସ୍ୱରରେ ଉଚ୍ଚାରିତ ହୋଇ ଜଗତ ମୋହିପାରେ । ଯାହାମଧ୍ୟ ଯେଉଁ ଗୀତହାର ଛନ୍ଦିତ ହେବାର ଦେଖାଯାଏ । କନ୍ଦର୍ପ ମଧ୍ୟ ସେଥିରେ ଗୁପ୍ତରେ ଥାଏ । ଅର୍ଥାତ୍ ତାହାରେ କାମୋଦ୍ଦୀପ ହୁଏ । ତାହା ପଶୁପକ୍ଷୀମାନେ ମଧ୍ୟ ଗାଇଲେ । ଅର୍ଥାତ ବସନ୍ତ ଆମୋଦରେ ମତ୍ତ ହୋଇ ଗୋବାଇଲେ । ସମସ୍ତ ଲୋକେ ବସନ୍ତ ଅନୁରାଗରେ ବସନ୍ତ ରାଗକୁ ପ୍ରଶସ୍ତ କରି ସେ ରାଗରେ ଗାନ କଲେ ।

୧୪—ସେ ଗୀତ କର୍ଣ୍ଣ ରନ୍ଧ୍ରରେ ପ୍ରବେଶ କରି ଲୋକମାନଙ୍କ ହୃଦୟରେ ରହିଗଲା । ସ୍ତ୍ରୀ ପୁରୁଷ ଉଭୟଙ୍କର ଶୃଙ୍ଗାର ଭାବ ଉଦ୍ଦୀପନ କଲା ଯେହେତୁ ଉକ୍ତ ଉଭୟ ଶୃଙ୍ଗାର ରସର ଆଲମ୍ବନ ଅର୍ଥାତ୍ ଆଶ୍ରୟ ଅଟନ୍ତି । ବସନ୍ତ ଉଦ୍ଦୀପନରୁ ଶୃଙ୍ଗାର ଭାବ ଉଦୟ ହେବାରୁ ଉଭୟଙ୍କ ଅନୁଭବ ସ୍ତ୍ରୀପୁରୁଷ ଏକଠାରେ ସମ୍ଭୋଗ ଓ ସ୍ତ୍ରୀ ବିଯୁକ୍ତ ହେଲେ ବିପ୍ରଲମ୍ଭ ବୋଲାଇଲା । ସେ ଉଭୟ ପ୍ରକାର ଆଦର କରି ଯଥାକ୍ରମେ ସମ୍ଭୋଗ ଓ ବିପ୍ରଲମ୍ଭ ( ବିରହ ) ଅନୁଭବ କଲେ ।

୧୫—ଯେଉଁ ବସନ୍ତରେ ସନ୍ତାପ ନିବାରଣ କରିବାକୁ ଚନ୍ଦନ କାଠ ଇନ୍ଧନ ହୁଏ ଏବଂ ଦେବତାମାନେ ଯେଉଁ ସମ୍ଭୋଗକୁ ସ୍ୱର୍ଗସୁଖ ମଧ୍ୟରେ ଉତ୍କୃଷ୍ଟ ସୁଖବୋଲି ମନେ କରନ୍ତି । ଏ ବସନ୍ତ କାଳ ଉପସ୍ଥିତ ହେବାରୁ ରାଜପୁତ୍ର ହରମିତ୍ର ଓ ସେ ଅଦ୍ଭୁତ ସୁନ୍ଦରୀ ଯେଉଁ ଜନଶୂନ୍ୟ ଆଶ୍ରମକୁ ଗଲେ ।

ତକବଦ ବାଗୀଶ୍ୱର ନାମ ବେଲ କବ ଭେଟାଇ ପ୍ରତିହାରୀ ।
ସୁରେଖା-ସୁତ ପୁଷ୍ପକାଳ ପ୍ରଶଂସି ହୋଇବାରୁ ବନବହାରୀ ।
ତରୁଏ ଏଥିକି ସୁମନେ ହସନ୍ତ ।
ଭୁହନ କାଳରେ ତାହ ବୋଲି ଧିକେ ଅତି ଉଚେ ଯେଣୁ ଭଷନ୍ତ । ୧୬ ।
ନିକଟେ ପ୍ରକଟ ସରସୀ ଦେଖିଇ ସଶିବ-ନନ୍ଦନ ଭାଷୁଛି ।
ନୃତନା ପଦ୍ମ-ମୁଖ ଅଳ ବିକାଶି ଏହି କଥା କହି ଆସୁଛି ।
ଯେ ଜଡ଼ ସେକ ମଧୁସଙ୍ଗେ ଲକ୍ଷିତ ।
ବୀରମଣି ଭଣି ଗ୍ରୀଷମ ବରଷା ଶରଦେ କ ନନ୍ଦା ବାଞ୍ଛିତ । ୧୭ ।
ଅଗ୍ରତରେ ଥିଲି ଅଦ୍ଭୁତ ପୁରୁଷ ପାଲଟିଲି ହୋଇ ଭଷିଲି ।
ବୃଦ୍ଧି ବଟବେକେ ଅଛୁ ପଛେ ପକାଇ ଅବଧାନଙ୍କୁ ନ ଆସିଲି ।
ନରେଶ-ସୁତ ସର୍ପିତେ ଅନାଇଲ ।
ସେହି ସମୟେ ସାବଧାନ କରାଇ କବଏ ମନ ମନାଇଲ । ୧୮ ।
ସୁରଭିପଣରେ ସୁରଭିଗୁଣରେ ସୁରଭି-ସୁରେଶ-ନନ୍ଦନା ।
ଯେମନ୍ତ ମଉକାଶିଆଙ୍କ ସୀମନ୍ତ-ମଣି-ଭୂଷା ହୋଇ ବନ୍ଦନା ।
ତେମନ୍ତ ସୁରଭି ଋତୁରେ ପ୍ରଧାନ ।
ନଦୀରେ ଗଙ୍ଗା ପୁରୁଷେ ମନସିଜ ଗଜେ ଇନ୍ଦ୍ରଗଜ ପ୍ରଧାନ । ୧୯ ।

---

୧୬—ଉପବନରେ ବହାର କରୁଥିବା ସୁରେଖାଙ୍କ ପୁତ୍ର ବଦ୍ୟାନାଥ ବସନ୍ତକୁ ପ୍ରଶଂସା କରିବାରୁ ବୃକ୍ଷମାନେ ପୁଷ୍ପ ବକାଶ ଦ୍ୱାରା ହସିଲେ କ ? ଯେହେତୁ ଲୋକମାନେ ଭୁହନ (ଶୀତକାଳ ପ୍ରତି) ତାହ ଅର୍ଥାତ୍ (ଭୁଷ୍ଟାନ) ବୋଲି ଅତି ଉଚ୍ଚ ସ୍ୱରରେ କହିଲେ କ ।

୧୭—ନିକଟସ୍ଥ ସରୋବର ତଟରେ ଥିବା ଲୋକଙ୍କ ଦେଖାଇ କହିଲା । ଏ ଯୋଷସ୍ତ ନୂତନା ସ୍ତ୍ରୀ ପରି ଅପଣାର ପଦ୍ମରୂପକ ମୁଖ ଉଠାଇ ପ୍ରକାଶ କରି ଏହି କଥା କହିବାକୁ ଆରମ୍ଭ କରୁଛନ୍ତ ? ଯେ ଜଡ ସେ ମଧୁସଙ୍ଗେ ଲକ୍ଷ୍ୟ ହେବକ ? ଅର୍ଥାତ୍ ଶୀତକାଳ ବସନ୍ତ କାଳ ସଙ୍ଗେ ସମାନ ହେବ କ ? ଜଳ ମଧୁସଙ୍ଗେ ସମାନ ହୋଇ ନପାରେ । ପଦ୍ମ ବୀରମଣି ରାଜପୁତ୍ର କହିଲେ ଗ୍ରୀଷ୍ମ ପ୍ରଭୃତି ନିଜକୁ ନନ୍ଦାକରିବାକୁ ଇଚ୍ଛା କରିବକ ?

୧୮—ସେ ଅଦ୍ଭୁତ ପୁରୁଷ ଆଗରେ ଥିଲା, ଲେଉଟି ବକ କହିଲା, ବର୍ଥୀତା ବରାର କରି ଅନ୍ୟ ଭୃତ୍ୟମାନଙ୍କ ପଛରେ ପକାଇ ଅଛି କି । ଏହା ଅବଧାନଙ୍କୁ ଅସୁନାହିଁ କାହିଁକ । ଏହା ଶୁଣି ରାଜପୁତ୍ର ବସିକରି ରହିଲା । ସେ ସମୟରେ କବଟଏ ସାବଧାନ କରି ଏହାଙ୍କ ମନକୁ ମନ୍ତୁଷ୍ଟ କଲା ।

୧୯—ସୁରଭି ସୁରେଶ ନନ୍ଦନା ( ସ୍ୱର୍ଗପୁରରାଜକନ୍ୟା ) କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ସୁଗନ୍ଧ ପଣରେ ଉତ୍ତମ ଗୁଣମାନଙ୍କ ଦ୍ୱାରା ସ୍ତ୍ରୀ ମାନଙ୍କର ଯେପରି ମଥାମଣି (ଅଗ୍ରଗଣ୍ୟା) ହୋଇଁ ପ୍ରଶଂସା ପାଉ ଅଛନ୍ତି । ସେହିପରି ଋତୁମାନଙ୍କ ମଧ୍ୟରୁ ବସନ୍ତ,ନଦୀମାନଙ୍କ ମଧ୍ୟରେ ଗଙ୍ଗା ପୁରୁଷମାନଙ୍କ ମଧ୍ୟରେ କନ୍ଦର୍ପ, ହାତୀମାନଙ୍କ ମଧ୍ୟରେ ଐରାବତ ପ୍ରଧାନ ହୋଇଅଛନ୍ତି । ସୁରଭି, ସୁଗନ୍ଧ ଓ ଉତ୍ତମ ଏବଂ ବସନ୍ତ । ମଉକାଶିନୀ, ସୁନ୍ଦରୀ ସ୍ତ୍ରୀ ।

ଶୋଭା ଆରମ୍ଭରେ ରମ୍ଭାରେ ପ୍ରୟୋଗ ବୋଧକର ଥିଲା ବୋଇଲା
ସେ ଅପସରା ବଃପୀ ଭ୍ରବ ଭଜ ତନୁକୁ ରମ୍ୟ ନ ପାଇଲା ।
ଯା ଶୋଭା ଯଶ ଜଗତରେ ପ୍ରସର
ହାର ହାର ହୋଇ ତରଲକୁ ଯେହ୍ନ ସୁର-ସରିତ ଅନୁସର । ୨୦ ।
ଜଗତ୍ତ୍ରୟ ଅର୍ଥୀ ତା ବଶ ମନ୍ମଥ ମୂର୍ତ୍ତିମନ୍ତ ହେବା କାରଣ ।
ଗଜକ ଇଚ୍ଛି କି ଚରଣତଳରେ ଶରଣ ପଶିଲା ବାରଣ ।
ନବଏ କରୁଁ ପ୍ରତ୍ୟୁତ୍ତର ଏସନ ।
କଡଏ ବୋଲେ କୁଡ଼ଲତ ଧଉଡ଼ିକ ଧରି ଯେ ବସନ୍ତ-ବସନ । ୨୧ ।
ହେ ଭଲ କହିଲ ବର କାହିଁ ଲକ୍ଷ୍ୟ ସୁକାନ୍ତକ ଅଉ ଭୁଲାଇ ।
ଯେ ବେଦ ବଚନ ରଚିତ ଉଚିତ ରତିକୁ ନେଲା ଯେ ଭୁଲାଇ ।
ଆଗୁରେ ବିଷୟ ବିଷୟ ଧ୍ୱଂସନ ।
ମାଧବୀ-ମଣ୍ଡପେ ସ୍ୱଜାମ୍ବୁଜ ବଜେ କଲା ମନ୍ତ୍ରୀସୁତ ଶ୍ରୁଣନ । ୨୨ ।
ହେ ଉଭେ କହ ତୁମ୍ଭେ କେଉଁ ଦେଶର କବିହ ଗୁରୁଣ ଆଦର ।
ଯାହା କହିଲ କି ସତ ସେହିରୂପେ ଜ ତ ହୋଇଅଛି ସୁନ୍ଦରୀ ।
ଶ୍ରବଣ କବା ଦ୍ରଷ୍ଟବ୍ୟ ସେ ଭାଷିଲେ ।
ମିଥ୍ୟା ପ୍ରକାର ଚମତ୍କାର ଯେତେକ ତା ହେଲେ ସତ୍ୟକୁ ଆସିଲେ । ୨୩ ।

---

୨୦—ସେଠାରେ ଘାଃ ଥିଲା କହିଲା, ସେ ରାଜକନ୍ୟା ସୌନ୍ଦର୍ଯ୍ୟରେ ରମ୍ଭା ଅପ୍ସରା ସଙ୍ଗେ କଣ ସମାନ ବୋଲି ପ୍ରୟୋଗ ହେବ ? ଭଟ୍ଟ କବି କହିଲେ । ସେ ରମ୍ଭା ରାଜକନ୍ୟା ସମାନ ହୋଇ ନପାରି ବୃକ୍ଷହୋଇ ସ୍ୱର୍ଗ ଭାଙ୍ଗିଲ ପରିକୁ ସମାନ ହେଉନାହିଁ । ଯେ ରାଜକନ୍ୟାର ସୌନ୍ଦର୍ଯ୍ୟଯଶ ଜଗତ ବ୍ୟାପ୍ତ । ତୋ ମଧ୍ୟ ସେ ଯଶର ଶୁକ୍ଳଭାରେ ହାର ଚନ୍ଦ୍ର ବ୍ୟବଧାନ ବରି ହାରରୂପେ ଅନୁଗତ ଅଛନ୍ତି । ୧ବୋଧକର, ଭ୍ରଃ । ୨ଵଃପ,, ବୃକ୍ଷ ।

୨୧—କନ୍ଦର୍ପ ଜଗତ୍ରୟ ଜିତ୍ବାକରି ଦେହଧାରୀ ହେବ ବୋଲି ସେ ନବ ପୃଥ୍ୱୀର ଅଧୀନ ହୋଇଅଛି । ଏବଂ ଐରାବତ ଏହାଙ୍କଠାରୁ ଚାଲି ଶିଖିବବୋଲି ପାଦରେ ଶରଣ ପଶି ଛି । ଜଣେ କବି ଏହା କହିବାରୁ ଅନ୍ୟ କବି କହିଲା ଅପଣ ବୃଦ୍ଧଗଲ । ଦେଖ ବସନ୍ତ ମଧ୍ୟ ବସନ୍ତ ଶାଢ଼ୀ ଦେଇ ଏହାଙ୍କ ଯନ୍ତ୍ରକି ଧରି ଶରଣ ପଶି ଛି ।

୨୨—ଅହେ ତୁମ୍ଭ ଭଲ କହିଲ, କିନ୍ତୁ ସେ ରାଜପୁତ୍ରୀ ରୂପରେ ତର କାହିଁ ବାଧ ପୋଷିବାକୁ ସେ କବିମାନେହିଁ ଯେଉଁ ଉଚିତ ବଚନରଚନା କଲେ ସେକଥା ମନ ଭୁଲାଇଲା ଓ ବିଷୟ ଜ୍ଞାନ ଧ୍ୱଂସ କଲା । ତେଣ ସ୍ୱଜାତୀୟ ମାଧବୀ ମଣ୍ଡପରେ ବଜେକଲେ; ମନ୍ତ୍ରୀପୁତ୍ର ପଚାରିଲେ ।

୨୩—ଅହେ କବିମାନେହିଁ କେଉଁ ଦେଶରୁ ଆସିଛ ତାଙ୍କରେ ଯାହା କହିଲ ସେ କଣ ସତ । ସେପରି ସୁନ୍ଦରୀ ଜାତହେବା କଥା ଶୁଣିବ ଓ ଦେଖିବ । ସେ ଦୁହେଁ କହିଲେ । ଯେତେପ୍ରକାର ଆଶ୍ଚର୍ଯ୍ୟ ଘଟନା ଅଛି । ତାହା ମିଥ୍ୟାପରି ଜଣାପଡ଼େ । କିନ୍ତୁ ଏ ସୁନ୍ଦରୀ ହେଉଛନ୍ତି ସତବୋଲି ମାନିବାକୁ ହେବ । କାରଣ ଏ ଗୋଟିଏ ଆଶ୍ଚର୍ଯ୍ୟରୂପ ଗୁଣବତୀ ।

ନୋହିଲା ହସ୍ତକର୍ମୀ ମସ୍ତୁ ପିତୁଳା ବିରଚନ ଚିତ୍ର ଲେଖନେ ।
ସୁସମେ ସଙ୍ଗେ ବାଲ୍ୟକାଳେ ଭବଲେ କେହି କର୍ମୀଣ ଏ ବଖଣେ ।
ହେଲା ଏ ଯୋଗେ କରୁ କରୁ କଳ୍ପନା ।
ଏ ଅଙ୍ଗ ସେ ଅଙ୍ଗ ଏସନ ତେସନ ପ୍ରସନ୍ନ କଳିବା ଅଳ୍ପ ନା । ୧୪ ।

ଯୌବନ ଏବେ ସେବନ କରି ତାକୁ ପ୍ରଶ୍ରମାନଙ୍କୁ ସେ ବଢ଼ାଇ ।
ଏକବି ଭାରତୀ ଅଗୋଚର ମାର୍ଗରେ କବି-ଭାରତୀକ କଢ଼ାଇ ।
ଜାତକ-ସ୍ଥାନୀ ଯେନ ଅମ୍ଭ ଭରସା ।
ମୃତକ ସ୍ଥାନେ ଯଥା ଥିଲା ମୁଦର ପ୍ରତିଦନ କଲେ ବରଷା ।। ୧୫ ।

ଯେଉଁ କାଶୀକ୍ଷେତ୍ର ପରମପବିତ୍ର ହିତେକ ମନ୍ତ୍ରଦ କାରଣେ ।
ମୋକ୍ଷ ଦାନରେ ସେ ଦକ୍ଷିଣ ଦକ୍ଷିଣକର୍ଣ୍ଣ ଜିହ୍ବା ହୁଏ ମରଣେ ।
ସେ ଧନ୍ୟ କ୍ଷେତ୍ର ଶିବ ତହିଁ ତାରକ ।
ଗୁଣ କୋଟି ସ୍ଥାନ ଧନ୍ବୀ ଧୂର୍ଜଟି ସେ ପାପ-ପରକୁ ବଦାରକ । ୧୬ ।

ମଦ ମଜ୍ଜନ ମୃତଜନ ରଞ୍ଜନ ଭୂଷାଞ୍ଜନ ରୁଦ୍ର ବହିଲା ।
ଦୁଷ୍କୃତ ଆଚରଣେ ହେଲା ସୁକୃତ ପୂର୍ଣ୍ଣକୃତରେ ରହିଲା ।

---

୧୪—ବାଲ୍ୟକାଳରେ ଏ ସୁନ୍ଦରୀର ଶୋଭା ତୁଳନାରେ ପିତୁଳା ଗଢ଼ିବାକୁ ଓ ଚିତ୍ର ଲେଖିବାକୁ ଦେବଶିଳ୍ପୀ ଓ ଅସୁର ଶିଳ୍ପୀ ଦୁହେଁ ଚେଷ୍ଟା କଲେ, କିନ୍ତୁ ହୋଇ ପାରିଲା ନାହିଁ ସେ ଶବଳେ ବଖାଣା ଯାଇ କାଳ ଗଲା । ଏ ବୋଧହୁଏ ଏଥର ସେ ଅଙ୍ଗ ଏଣୁ ତେଣୁ ଯୋଗକର ସୁଯୋଗରେ ଏ ସୁନ୍ଦରୀ ସ୍ୱତଃ ହୋଇପଡ଼ିଛି । କାରଣ ଏପରି ଅଳ୍ପ ଶ୍ରମ ପ୍ରସନ୍ନ ମୂର୍ତ୍ତି ଗଢ଼ିବା ନାହିଁ । ୧ବଖଳ, ବ୍ରହ୍ମା ।

୧୫—ଏବେ ତାକୁ ଯୌବନ ସେବା କରିବାରୁ ସେ ଗୁଣ ବଢ଼ାଇ ଅଛି । ସୂକ୍ଷ୍ମ ଓ ସରସ୍ୱତୀଙ୍କର ଅଗୋଚର ବର୍ଣ୍ଣନା ମାର୍ଗରେ କବିମାନଙ୍କ ବଚନକୁ ବାଟ କରି ଦେଉଛି । ଅର୍ଥାତ୍ କବିମାନେ ଏହା ସମ୍ବନ୍ଧେ ସେ ପ୍ରକୃତ ବର୍ଣ୍ଣନା କରୁଅଛନ୍ତି । ପୂର୍ବେ ସେପରି କେହି କେହି ନ ଥିଲା । କିନ୍ତୁ ଅମ୍ଭେ ସେ ସ୍ଥାନରେ ନୀରବ ହୋଇଥିବାରୁ ଭରସା ପାଉଅଛୁ । କିଛି କିଛି କହିବୁଁ । ଯେପରି ମୃତକ ଥିବା ସ୍ଥାନରେ ପ୍ରତିଦିନ ସେପରି ମେଘ ବର୍ଷିଲେ ଶୁଷ୍କ ମୃତକ କିଛି ସ୍ପନ୍ଦନ କରେ । ଶକ୍ତିଥିବା ୧କବି ଭାରତୀ, ଶୁକ୍ର ସରସ୍ୱତୀ ଓ କବିଙ୍କବଚନ, ମୁଦିର, ମେଘ ।

୧୬—ମହାଦେବ ତାରକ ମନ୍ତ୍ର ମରଣ ସମୟରେ ଦେଉଥିବାରୁ ସେ କାଶୀକ୍ଷେତ୍ର ଅତି ପବିତ୍ର । ଅତଏବ ସେ ମୋକ୍ଷ ଦେବାକୁ ସମର୍ଥ । ସେହିଠାରେ ଲୋକଙ୍କର ମରଣବେଳକୁ ଦକ୍ଷିଣ କାନ ଉପରକୁ ହୁଏ । ସେ କାଶୀକ୍ଷେତ୍ର ଧନ୍ୟ ଓ ତାରକମନ୍ତ୍ରଦାତା ଏବଂ କୋଟିଲିଙ୍ଗସ୍ଥାନ ଗୁଣ, ମହାଦେବ ଧନ୍ବୀ ହୋଇ ପାପମାନଙ୍କୁ ବିନାଶ କରୁଅଛନ୍ତି । ୧ଦକ୍ଷିଣ, ବାମେତର ଓ ସମର୍ଥ । 'ଧୂର୍ଜଟି' ମହାଦେବ ।

୧୭—ସେହିଠାରେ ମଦ୍ୟରେ ବୁଡ଼ିମରିଥିବା ଲୋକ ଶିବସ୍ୱରୂପ ଧାରଣ କରିଥିଲା । ଏପରି ପାପ ଚରଣରେ ସୁଦ୍ଧା ଏଡ଼େ ପୁଣ୍ୟ ହେଲା । ତା ପୁଣି ସ୍ୱର୍ଣ୍ଣରେ ବର୍ଣ୍ଣିତ ହେଲା । ସେହିଠାରେ

ଭୈରବୀ ବିନା ଅନ୍ୟ ନାହିଁ ଯହିଁରେ ।
ଅମର ଅମର ବାଞ୍ଛିତ ଅଛଇ ସେହୁ ସ୍ୱର୍ଗ ସମା ମହୀରେ । ୨୭ ।
ସେ ମୁକ୍ତିଦପୁରେ ମଣିକର୍ଣ୍ଣିକାରେ ତ୍ରିବର୍ଗ ଫଳରେ ସୋପାନ ।
ମୂର୍ଖମୁଖରେ ସଂସ୍କୃତ ଜାତ ଖରେ କରାଇ ଯହିଁ ପୟପାନ ।
ବରଦ ସାରଦା ଅନ୍ନପୂର୍ଣ୍ଣା ବେଶୀ ।
ଅଭକ୍ତ ବାଞ୍ଛନ୍ତି ବିଦ୍ୟାର୍ଥୀରେ ବିଦ୍ୟା କ୍ଷୁଧାତୁରକୁ ଅନ୍ନ ଦେଇ । ୨୮ ।
ଜପ ନାହିଁ ବଜ-ଭୁଣ୍ଡ ବନ୍ଧନରେ ଆନ ମନ୍ତ୍ରରେ କେବେଁ ଆଉ ।
ତପ ନାହିଁ ଆନ କାମନାରେ ସେହୁ ବାଳା ବର୍ଣ୍ଣନାକୁ ଧିଆଉ ।
ପଠ ହେ ମଠରୁ ଆଉ କି କାରଣ ।
ଗୀର ବୋଲେ ହୃଦକୁମୁଦକୁ ମୋକୁ ବଧୂ କାନ୍ତି ବିଧୂ-କିରଣ । ୩୦ ।
ଯେହୁ ତାରକ ପ୍ରବର୍ତ୍ତକ ଜଗତେ ତାରକ ସ୍ୱଭାବେ ସେହୁତ ।
ମହାଗୁରୁ ଭାବୁଁ ସେ କାଶୀଶ୍ୱରଙ୍କ ବନ୍ଦନା କରିବା ବିହିତ ।
ହୋଇଲୁ କବି ଉପଇନ୍ଦ୍ର ଭଞ୍ଜର ।
କାମ-ଦାୟକ ବିନାୟକ-ଜନକ ଏ ଭାବରେ ପୂଣି ଜର୍ଜର । ୩୦ ।



---

ଭୈରବୀ ( ଦୁର୍ଗାଙ୍କ ) ଠାରୁ ବଳିଛ ପଦାର୍ଥ ନାହିଁ । ଯେଉଁ ସ୍ଥାନକୁ ଦେବତାମାନେ ଇଚ୍ଛାକରୁଅଛନ୍ତି । ସେ ସ୍ଥାନ ପୃଥିବୀରେ ସ୍ୱର୍ଗତୁଲ୍ୟ । ୧ ବୃଷାଙ୍କନ, ଶିବ ।

୨୮—ସେ ମୋକ୍ଷପ୍ରଦ ପୁରରେ ମଣିକର୍ଣ୍ଣିକା ତୀର୍ଥରେ ତ୍ରିବର୍ଗ ( ଧର୍ମ ଅର୍ଥାତ୍ କାମ ) ଫଳଦାୟକ ପାବଚ ଅଛି । ଯେଉଁ ମଣିକର୍ଣ୍ଣିକା ଜଳ ପିଇଲେ ମୂର୍ଖ ସୁଦ୍ଧା ସଂସ୍କୃତଭାଷା କହିପାରେ । ଯେଉଁଠାରେ ସରସ୍ୱତୀ ବିଦ୍ୟାର୍ଥୀକୁ ବିଦ୍ୟାଦେବେ ବୋଲି ଏ ଅନ୍ନପୂର୍ଣ୍ଣା କ୍ଷୁଧାତୁରକୁ ଅନ୍ନଦେବେ ବୋଲି ପ୍ରସନ୍ନ ହୋଇ ଇଚ୍ଛାକରୁ ଅଛନ୍ତି ।

୨୯—ସେ କ୍ଷେତ୍ରରେ ଅମୃତ ବନ୍ଧନୂଣ୍ଡ ମନ୍ତ୍ର ବ୍ୟତୀତ ଅନ୍ୟ ଜପ ନ ଥିଲା । ସେ ସୁନ୍ଦରୀ ବର୍ଣ୍ଣନା ଧ୍ୟାନବ୍ୟତୀତ ଅନ୍ୟ ତପସ୍ୟା ନ ଥିଲା । ଏହା ଶୁଣି ବ୍ରାହ୍ମଣ କହିଲେ । ସେ ସୁନ୍ଦରୀର କୀର୍ତ୍ତିପାଠକର ଅନ୍ୟ କରନାହିଁ । ସେ କୀର୍ତ୍ତିଚନ୍ଦ୍ର କିରଣ ହୋଇ ମୋର ହୃଦୟ କୁମୁଦକୁ ଆନନ୍ଦ କରାଇ ।

୩୦—ଯେ ମହାଦେବ ତାରକ ମନ୍ତ୍ରଦାତା ଓ ସ୍ୱୟଂ ଉଦ୍ଧାର କର୍ତ୍ତା ଓ ମହାଗୁରୁ ହୋଇଥିବାରୁ କବି ଉପେନ୍ଦ୍ର ଭଞ୍ଜଙ୍କର ସେ କାଶୀନାଥ ବନ୍ଦନା କରିବା ଉଚିତ ହୋଇଅଛି । ହେ ଗଣେଶ ଜନକ ! ତୁମ୍ଭେ କାମନା ପୂର୍ଣ୍ଣକର । ମୁଁ ପୁଣି ଏଭାବରେ ଜଡ଼ିତ ହେଲି ଅର୍ଥାତ୍ ବନ୍ଦନା କରୁଅଛି ।

— ❋❋❋ —

## ସପ୍ତମ ଛାନ୍ଦ ।

### ରାଗ ରସକୋଇଲି ।

( ଜନପୁର ଅଗରେ କୋଟିବ୍ରହ୍ମାଣ୍ଡସୁନ୍ଦରୀର ଶୋଭା ବର୍ଣ୍ଣନା )

କୁମର ପ୍ରଶନେ କହୁଁଲେ ଦୁହେଁ । ସରସ୍ୱତୀ ତାର ମିହରେ ରହେ ।
ରଜନୀଚରୀ ଚରିତ ଶକ୍ତି । ପ୍ରୟାଗେ ନୈଃସପାତ ହୋଇଥିଲା ସେ ।
ଏଣୁ ତା ପ୍ରଥମ ଧରି ଚଳେ ।
ଭକ୍ଷିବା ଦଶିବା ବେଳ ଅଷ୍ଟମୀରୁ ବର୍ଣ୍ଣନା ବିଧି ଆଚରି ଦିଏ । ୧ ।
ବିଧି ନିର୍ମାଣ ଯହେଁ ଅହଲ୍ୟାକୁ । କରି ରହିଲା ଗଢ଼ିବ ବାଳାକୁ ।
କଲୁଁ ଦେଲା କାଳେ ଶିଳାପଦରୀ । ରାମା ଚରଣ-ଘଷା ଭଳ ହୁଏ ସେ ।
ଏହ ସିଦ୍ଧ ଅନୁମାନ ଯେ ।
ଯାହାକୁ ଏବେ ବୋଲୁଆଇ ବିଧାତା କ କରି କଲା ବିଧାନ ଯେ । ୨ ।
କରିବା ତାହାର ବର୍ଣ୍ଣନା ବିଧି । ଇତର କଥା ଭେଦିବ ର ବୁଦ୍ଧି ।
ଉପମା ପଦକ ହେବା ସମୟ । ପଡ଼ିଲା ଏଥିରେ କେଉଁ ସଂଶୟ ଯେ ।
କାହିଁକି ଲକ୍ଷ୍ୟେ ଲକ୍ଷଣା ଯେ ।
ଏହି ବଡ଼ କଥା ନୁହଇ ତାହାକୁ ହୋଇଲା ବୋଇଲେ ଉଣା ଯେ । ୩ ।

---

### ସପ୍ତମ ଛାନ୍ଦ ।

୧—ରାଜପୁତ୍ର ପଚାରିବାରୁ କବି ଦୁହେଁ କହିଲେ । ସରସ୍ୱତୀ ସେ ରାଜପୁତ୍ରଙ୍କର ମିତ୍ର ଭାବରେ ଅଛନ୍ତି ସୁତରାଂ ଅଧିକ କହିବା । ଅତଏବ ତାଙ୍କ ଦ୍ୱାରା କିଛି ପ୍ରୟୋଜନ ନାହିଁ ରାକ୍ଷସୀ ବଧକୁ ମନ ସ୍ମରଣ କର । ପୂର୍ବେ ସୁକାଣ୍ଡ ନାମ୍ନୀ ରାକ୍ଷସୀ ସୀତାଙ୍କୁ ଭବ ପ୍ରୟାଗରେ ଖାଇବେବ ମୀତ କରୁଥିଲା । ଏହ ସ୍ମରଣରୁ ନୃପକୁମାର ପ୍ରୟାଗ ତୀର୍ଥରେ ସେ ରାଜପୁତ୍ରକୁ ଭାବ ମନ ଉଦାସ ହେଲା । ଅତଏବ ସେ ରାଜପୁତ୍ରୀ ସଦୃଶ ହେଲା । ଅତଏବ ଅଗ୍ରେ ବହୁପାରିବା ଓ ଦେଖାଯିବା ଦଶପୃଷ୍ଠ ଶକ୍ତି କନ୍ୟାକୁ ବର୍ଣ୍ଣନା କରିବାକୁ ଆରମ୍ଭ କରୁଅଛନ୍ତି ।

୨—ବିଧାତା ଅହଲ୍ୟାଙ୍କ ଯତ୍ନରେ ତଥାପର ଏରାଜପୁତ୍ରୀଙ୍କୁ ଗଢ଼ିବାକୁ ଆରମ୍ଭ କଲା । ଏହାଙ୍କ ରୂପ କଳ୍ପନା କରନ୍ତେ ଅହଲ୍ୟାଙ୍କ ଏ ସ୍ତ୍ରୀର ଗୋଡ଼ ଘଷିବା ଯୋଗ୍ୟ ନୋହିବାର ପଥର କରି ଦେଲେ । ଏହା ଅନୁମାନ ହେଉଅଛି । ଯାହାକୁ ବିଧାତା କରୁଥାନ୍ତି ସେ ଏବେ ଏହାକୁ ଗଢ଼ି ଦେଲା ।

୩—ବର୍ତ୍ତମାନ ତାହାର ବର୍ଣ୍ଣନା କହିବା, ଅନ୍ୟକଥା ଅଲଗା ରହିବା ଦରକାର । ବର୍ତ୍ତମାନ ତନ୍ତ୍ର ପ୍ରଭୃତି ଉପମାନମାନଙ୍କର ଏହାର ସଙ୍ଗେ ତୁଳନା ହୋଇ ପଦକ ହେବା ଜାଣାପଡ଼ିଲା । ଏଥିରେ ସନ୍ଦେହ କଣ । ଲକ୍ଷ୍ୟବର୍ଣ୍ଣନାରୁ ଉପମାନ କେଉଁଠି ଅଛି କି । ଉପମାନ ତାକୁ ଉଣା, ଏକଥା କିଛି ବଡ଼ନୁହେଁ ।

ବଚନ ଲକ୍ଷ୍ୟକୁ ହୋଇଲେ ଯେଣୁ । ଶଙ୍ଖ ମୁଖେ ମେଲ ମୋହନବେଣୁ ।
କ୍ଳେଶ ସହି କଣ୍ଠ ଛବି ଧ୍ୟାଇଲା । ପୁରୁଷୋତ୍ତମ କମ୍ବୁପୁର କଲା ସେ ।
ନିଶ୍ୱାସ ତୁଳନା ସ୍ନେହେ ଯେ ।
ଧୀର ଗନ୍ଧ ଶୀତ ମରୁତ ଗର୍ଭସଞ୍ଜାତ ଦେବତା ଅପ୍ସରଦେହେ ସେ । ୪ ।

ଦଶନ ଲକ୍ଷ୍ୟକୁ ପାଇ ନ ପାଇ । ମୁକ୍ତ ହୋଇ ସିନା ମୁକ୍ତା ବୋଲାଇ ।
ମଧୁର ନୋହେ ମଧୁ ଓଷ୍ଠପରି । ୧ସରଘା-ଉଚ୍ଛିଷ୍ଟେ ସେ ଶବ୍ଦ ଧରି ସେ ।
ଦେବତା ପ୍ରତିଷ୍ଠା ବହି ଯେ ।
୨ଅରୁଣ ଅଧରେ ଅରୁଣ ଅଧର ଜବା ସବଂତଳେ ରହି ଯେ । ୫ ।

ହାସ ସଙ୍ଗେ ଚୂର୍ଣ୍ଣ ହେଲେ କର୍ପୂର । କରଇ ସମସ୍ତ ହୃଦରେ ପୁର ।
ଯେ ଦୁଇ ତନୁ ସ୍ୱର୍ଗବେଦ ନାମା । ଶୁକବାବୁ ବଳେ ହେବ ଉପମା କି ।
ଯାହାର ଅର୍ଣ୍ଣିତ ଭୂଷା ଯେ ।
ଗୁରୁ କବି ଛବି ଲୁଟି କରିବାରେ ପାଇଛି ଲୋକେ ପ୍ରଶଂସା ଯେ । ୬ ।

---

୪—ମୋହନବଂଶୀ ଏହାଙ୍କ ବଚନକୁ ସମାନ ହେବାକୁ କୃଷ୍ଣଙ୍କ ମୁଖ ଛାଡ଼ିଲା କି । ଶଙ୍ଖ ଅନେକ କଷ୍ଟସହି ଏହାଙ୍କ କଣ୍ଠଶୋଭା ଧ୍ୟାନ କରିବାରୁ ତହିଁ ତାହାର ପୁରୁଷୋତ୍ତମ କ୍ଷେତ୍ରରୂପେ ନଗର ସ୍ଥାନ କଲେ । ପୁରୁଷୋତ୍ତମ ଶଙ୍ଖକ୍ଷେତ୍ର ଅଟେ । ପବନମାନେ ଏହାଙ୍କର ନିଶ୍ୱାସ ସହିତ ସମାନ ହେବ ବୋଲି ବସନ୍ତ କାଳରେ ମନ୍ଦ ସୁଗନ୍ଧ ଓ ଶୀତଳ ହୋଇ ଅପ୍ସରମାତା ଗର୍ଭରୁ ଜାତ ହୋଇଥିଲେ ସୁଦ୍ଧା ଦେବତା ହୋଇଗଲେ ।

୫—ମୋତି ଏହାଙ୍କ ଦନ୍ତମାନଙ୍କୁ ସମାନ ହେବକି ନାହିଁ, କିନ୍ତୁ ମାଂ ପଣ୍ଡି, ଉକ୍ତାର ଲାଭକର ମୁକ୍ତା (ମୋକ୍ଷପ୍ରାପ୍ତ) ବୋଲାଉଛି । ମଧୁ (ଅମୃତ) ଏହାଙ୍କ ଓଷ୍ଠରେ ମଧୁର ନୁହେଁ, କିନ୍ତୁ ତା ସଙ୍ଗେ ତୁଳିତ ହେବା ମାହାତ୍ମ୍ୟରେ ମାଛି ଅଇଁଠାରେ (ମହୁରେ) ପୁଣି ସେ ମଧୁଶବ୍ଦ ପ୍ରଯୁକ୍ତ ହେବାରୁ ତାହାହାରା ଦେବତାମାନେ ପ୍ରତିଷ୍ଠିତ ହେଉଅଛନ୍ତି । ପ୍ରତିଷ୍ଠାବିଧିରେ ମହୁ ଲାଗେ । ବାଳ ସୂର୍ଯ୍ୟ ଏହାର ରକ୍ତବର୍ଣ୍ଣ ଓଷ୍ଠଠାରୁ ନକ୍ଷ୍ଟ, ହେବାରୁ ଓଷ୍ଠ ଅରୁଣାଧର ବୋଲାଉଅଛି ଏବ ଜବାଫୁଲ ଓଷ୍ଠସମାନ ନ ହୋଇ ସବୁତଳେ ରହିଲା, ଏହାଙ୍କ ପାଦକୁ ସମାନ ହେବ । ୧ ସରଘା, ମହୁମାଛି । ୨ ଅରୁଣ, ଲାଲ ଓ ସୂର୍ଯ୍ୟ । ଅଧର, ଓଷ୍ଠ ଓ ନକ୍ଷ୍ଟ ।

୬—ଏହାଙ୍କର ହାସ ଓ କାନ୍ତି ସଙ୍ଗେ ସମାନହେବ ବୋଲି କର୍ପୂର ଚୂନା ହେଲା, ତଥାପି ସମାନ ହୋଇ ନ ପାରି ଲୋକମାନଙ୍କ ହୃଦୟ ସ୍ଥାନକର ରହିଲା । ଯେଉଁ ଦୁଇଅଙ୍ଗ ସ୍ୱର୍ଣ୍ଣ ଓ ବେଦର ନାମ ଧାରଣ କରିଅଛି ଅର୍ଥାତ୍ ନାକ ଓ ଶ୍ରୁତି (କାନ) ଶୁକ ବାବୁ (ବଂଶ) ଙ୍କ ଦ୍ୱାରା ତାହାର ଉପମା ସମାନ ହୋଇ ପାରିବ କି । ଯେହେତୁ ଯେଉଁ ନାକ ଓ କାନକୁ ଅଳଙ୍କାର କରିଥିବା ଭୂଷଣ ବଡ଼ଗୁରୁ ଶୁକ (ତାରା) ଙ୍କର ଉଜ୍ଜ୍ୱଳତାକୁ ଲୁଣ୍ଠନ କରିବାରେ ପ୍ରଶଂସା ପାଉଅଛନ୍ତି ।

ଏତେକ ପଦ ଏକଲୟ ଥିଲା । ପରସ୍ପରେ ଛଳ ଉପୁଜିଗଲା ।
ନୟନେ ଅଛି ଇନ୍ଦ୍ରଜାଲ ମାୟା । ସ୍ତମ୍ଭନ ମୋହନ ବଶ ଆଶ୍ରୟା ସେ ।
ଅଞ୍ଜନ ଗୁଣ ସାକ୍ଷାତ ଯେ ।
ତ୍ରିଗୁଣ ତ୍ରିବେଣୀ ସଗୁଣ ସାରଣୀ ପରି ଦିଶେ ନାନାମତ ଯେ । ୭ ।

ସେ ନେତ୍ରେ ସଙ୍ଗ କୃଷ୍ଣ ରାମ ବେନି । ରଙ୍ଗସରି ଅନ୍ତେ ପ୍ରକଟ ଯେନି ।
କୁବଳୟ ଦର୍ପ ପକାଇ ଜାଣି । କାଣ୍ଡ ଗୁଳକାଣ୍ଡ ପରାୟେ ଦିଶି ସେ ।
ମୃଗ ଖଞ୍ଜନକୁ ହାସି ଯେ ।
ଦେଖିଲାର ଆଖି ଚକୋଇ ପକ୍ଷୀକି ଯେମନ୍ତ ପୀୟୂଷରାଶି ଯେ । ୮ ।

ଅର୍ଜୁନ ପଦବୀ ତହିଁ ପ୍ରସିଦ୍ଧ । କାଣ୍ଡ ଗୁଳକାଣ୍ଡ ତାଙ୍କ ଆୟୁଧ ।
କି କପାଳ ଧନୁ ଏ ଦୁଇ ଗୁଣ । କଜ୍ଜ୍ୱଳ ଭ୍ରୂଲତା ହୋଇ ପ୍ରମାଣ ସେ ।
ମନଭେଦୀ ୧ମନୋଜବ ଯେ ।
ଯୁବା ଧୃଷ୍ଟ-ଘଟ ଧୃତି ଟାଳି ଦେଇ ଏଥି କି ବିକଳ୍ପ ଭାବ ଯେ । ୯ ।

---

୭—ଏଠେ ପଦଯାଏ ଏକ ଲୟରେ ବର୍ଣ୍ଣିତ ହୋଇଥିଲା । ବର୍ତ୍ତମାନ ଉପମାନମାନଙ୍କ ମଧ୍ୟରେ ପରସ୍ପର ଛଳ ଛନ୍ଦିବାରୁ ସମସ୍ତେ ଆସି ଏଠାରେ ପଡ଼ିଲେଣି । ଦେଖ, ଏହା ଅକ୍ଷିରେ କୁହୁକ ଅଛି । ସେ ସ୍ତମ୍ଭନ ମୋହନ ଓ ବଶୀକରଣର ସ୍ଥାନ ହୋଇଅଛି । କଳା ଧଳା ରଙ୍ଗ ରକ୍ତବର୍ଣ୍ଣ ଥିବାରୁ ତ୍ରିଗୁଣ ( ସତ୍ତ୍ୱ, ରଜ ଓ ତମ ) ପରି ତ୍ରିବେଣୀ ( ଗଙ୍ଗା, ଯମୁନା, ସରସ୍ୱତୀ ) ପରି ପୁଣି କଜ୍ଜ୍ୱଳ ଗାର ଥିବା ହେତୁରୁ ଦ୍ୟୂତକ୍ରୀଡ଼ାର ସାରଣୀପରି ଦିଶୁଅଛି । ସାରଣୀ ମଧ୍ୟ ରକ୍ତ ଚନ୍ଦନରଙ୍ଗରେ ଚିତ୍ରିତ ଥାଏ ।

୮—କୃଷ୍ଣ ( କଳା ) ଓ ରାମ ( ଧଳା ) ଏହି ଦୁଇବର୍ଣ୍ଣ ସେ ନେତ୍ରରେ ଶ୍ରୀକୃଷ୍ଣ ଓ ବଳରାମ ସ୍ୱରୂପରେ ଅଛି । ସବୁ ଶେଷରେ ରକ୍ତବର୍ଣ୍ଣ ଅଛି । ରାମକୃଷ୍ଣ ଦୁହେଁ (ରଙ୍ଗ ସରି ଅନ୍ତେ) କଂସର ରଙ୍ଗସଭା-ମଧ୍ୟରେ ପ୍ରକଟ ହୋଇଥିଲେ ନେତ୍ର (କୁବଳୟ) ନୀଳୋତ୍ପଳ ଗର୍ବକୁ ନିଜ ଶୋଭାରେ ନଷ୍ଟ କରୁଅଛି । ଶର ଓ ବାଟୁଳି ପରି ଦେଖାଯାଉଅଛି । ସେହି ହେତୁରୁ ମୃଗ ଓ ଖଞ୍ଜନକୁ ଉପହାସ କରୁଅଛି । ଯାହାକୁ ଦେଖି ଲୋକର ଅକ୍ଷିରୂପକ ଚକୋର ଚକୋଇ ପକ୍ଷରେ ଚନ୍ଦ୍ରପରି ହୋଇଅଛି । ରାମକୃଷ୍ଣଙ୍କ ଶର ପ୍ରଭୃତି ଆୟୁଧ ଥାଏ ଓ ସେ ମଧ୍ୟ ଦର୍ପିତ କେଶୀ ଚାଣୂରାଦିଙ୍କୁ ଏବଂ କୁବଳୟା ପୀଡ଼ ନାମକ କଂସ ହାତୀକୁ ମାରିଥିଲେ ।

୯—ସେ ନେତ୍ରରେ ଅର୍ଜୁନ ( ମଧ୍ୟମ ପାଣ୍ଡବ ଓ ଶୁକ୍ଳ ବର୍ଣ୍ଣ )ର ସ୍ଥାନ ପ୍ରସିଦ୍ଧ ହୋଇଅଛି । ଶର ଓ ବାଟୁଳି ଅର୍ଜୁନଙ୍କର ଆୟୁଧ ହୋଇଥିଲା । ଏ ଲୋଚନମାନଙ୍କ କପାଳ ସେ ବାଟୁଳି ମାରିବା ଧନୁ ( ବାଟୁଳିଗଡ଼ା ) ହୋଇଅଛି । କଜ୍ଜ୍ୱଳଗାର ଓ ଭ୍ରୂଲତା ଦୁହେଁ ତହିଁରେ ଲମ୍ବିଥିବା ଗୁଣପରି ଦିଶୁଛନ୍ତି । ଶୀଘ୍ରଗାମୀ ଅର୍ଜୁନଙ୍କ ମନଭେଦଣର ପରି କଟାକ୍ଷ ହୋଇଅଛି । ସେ ଯୁବାମାନଙ୍କର ଓ କଠୋର ହୃଦମାନଙ୍କର ସ୍ଥିରତା ଧୈର୍ଯ୍ୟ ଟାଳି ଦେଉଅଛି ଏଥିରେ ସନ୍ଦେହ ନାହିଁ । ଅର୍ଜୁନ ମଧ୍ୟ ଷଣ୍ଢ ରହି ଧୈର୍ଯ୍ୟ ଧରିଥିଲେ । ୧ମନୋଜବ, ଶୀଘ୍ରଗାମୀ ।

ରବି-କର-କଞ୍ଜ ଛବି ବଦନ । ଦୁଇଗୁଣ କର ନାହିଁ ସଦନ ।
କମଳ-ଦର୍ପଣ-ଚନ୍ଦ୍ର-ବଦନା । ବୋଇଲେ ତେବେ ହେବ ସମ୍ଭାବନା ସେ ।
ଏ ଉପଲକ୍ଷଣା ଛନ୍ଦ ସେ ।
କେବଳ ସୁକୃତ ଥିଲାକୁ ଚରଣ ଅଗରେ ପଡ଼ିଛି ପଦ୍ମ ସେ । ୧୦ ।

ସେ ଦରପଣ ତା କ ବଡ଼ପଣ । ପୁରତେ କୁଏ ନିତ ସମର୍ପଣ ।
ପ୍ରତିବିମ୍ବକୁ କରଇ ଲୋକନ । ଶ୍ରୀମୁଖକୁ ଶ୍ରୀମୁଖ ତୋ ସମାନ ସେ ।
ଏ ଭାବେ ବିନୟ ହୋଇ ସେ ।
ଏତେକ ନ ହେଜ ଅନ-ନ ଶବଦ ବିଧାନ ହୋଇଛି ଯହିଁ ସେ । ୧୧ ।

ସଂପୂର୍ଣ୍ଣ ବିଧୁ ସମାନ ଧାଁଅଇ । ସୁଧାକଳା ପାଇ ନଭେ ଭ୍ରମଇ ।
ଏଣୁଟି ସୁଧାକର କଳାନିଧି । ପର୍ଯ୍ୟାୟେ କଲେ ବିବୁଧକେ ସିଦ୍ଧି ସେ ।
କ୍ଷୀଣ ଭଜ ବୃଦ୍ଧି ଶନ୍ତି ସେ ।
ତନୁକେ ଲଲାଟେ ସମ ନୋହି ପଦନଖେ ଦେଇ ରହେ ଜ୍ୟୋତିସେ । ୧୨ ।

ବର୍ଣ୍ଣିନୁ ଥାଇଛି ସୁରୁ ଚକୁର । ବିବନ୍ଧୁ ଯା ସମ ଶ୍ୟାମ-ଚାମର ।
ବନ୍ଧନ ଉଦ୍ୟମେ ଧରିବାବେଳେ । ମୟୁରପୁଚ୍ଛ ଲକ୍ଷ୍ୟ ତାହା ତୁଲେ ସେ
ଏ ଲକ୍ଷ୍ୟ ନ କଲେ ପଛ ସେ ।
ତେବେ ମୃଗ ଖଗ ବିବେକରୁ ଆମ୍ଭ ବିବେକ ହୋଇବ ତୁଚ୍ଛ ସେ । ୧୩ ।

---

୧୦—ଏହାଙ୍କର ମୁଖ ସୂର୍ଯ୍ୟଙ୍କ ହାତରେ ଥିବା ପଦ୍ମଠାରୁ ସର୍ବଦା ପ୍ରଫୁଲ୍ଲ । କିନ୍ତୁ ସେ ପଦ୍ମରେ ଏଠାର ଓ ଅହ୍ଲାଦ ଏହି ଗୁଣ ଯୋଡିକ ନାହିଁ । ତେବେ ଏହାକୁ ଖାଲି ପଦ୍ମବଦନା ନ କହି କମଳ ଦର୍ପଣ ଚନ୍ଦ୍ରବଦନା କହିଲେତ ସମ୍ଭବ ହୁଅନ୍ତା । ତଥାପି ଏ ଉପମା ଦେବା ଛନ୍ଦ ଅର୍ଥାତ୍ ଠିକ୍ ନୁହେଁ । ପୁଣ୍ୟବଳରୁ ପଦ୍ମ ଏହାଙ୍କ ପାଦ ଅଗରେ ପଡିଅଛି । ଏହାଙ୍କର ପାଦପଦ୍ମ ବୁଝାଯାଉଅଛି ।

୧୧—ଏମାନଙ୍କ ମଧ୍ୟରୁ ଦର୍ପଣର କ ବଡ଼ପଣ ଅଛି । ସେହି ଦରପଣ ଅର୍ଥାତ୍ ଭଦ୍ରାତ୍ମ ପଣ ଅଟଇ । କିନ୍ତୁ ସେ ଦର୍ପଣ ନିତ ଅଗରେ ରହି ପ୍ରତିବିମ୍ବ ଦେଖାଏ ଓ ବିନମ୍ରଭାବେ ଜଣାଏ ତୋ ଶ୍ରୀମୁଖକୁ ଲକ୍ଷ୍ମୀଙ୍କ ମୁଖ ସମାନବୋଲି ଯାହା ଭାବୁଛ ତାହା ନୁହେଁ । ମୁଖରେ ଅନନ୍ୟଶବ୍ଦ ବ୍ୟବହାର କରାଯାଇ ଅଛି ଏକଥା କାହିଁକି ହେଜୁନାହିଁ । ଅନନ ଅର୍ଥାତ୍ ଅନ୍ୟ କେହି ସମାନ ନୁହେଁ ଏହା ବୁଝା ଯାଉଅଛି ।

୧୨—ପୂର୍ଣ୍ଣଚନ୍ଦ୍ର ସମାନ ହେବାକୁ ବସୁଥିଲା । କିନ୍ତୁ ହୋଇ ନପାରି ଗାଲେକେ ଚୂନ ଓ ଖାଲେକେ କଳାପାଇଁ ଆକାଶରେ ବୁଲୁଛି । ସୁଧା ଓ କଳା ( ଅମୃତ ଓ ଷୋଳକଳା ) ପାଇବାରୁ ବିବୁଧକ ( ବୌଦ୍ଧ ଅମରସିଂହ ) ଗଣେଶ ପରି ତାକୁ ସୁଧାକର ଓ କଳାନିଧି ବୋଲି କୋଷରେ କହିଅଛନ୍ତି । ସେ ଚନ୍ଦ୍ର କ୍ଷୀଣ ହୋଇ ( ଏ କଳାରେ ରହି ) ଏହାଙ୍କ ତନୁକୁ ସମାନହେଲା ନାହିଁ, ବୃଦ୍ଧିପାଇଁ ( ଷୋଳକଳା ଧାରଣ କରି ) ଏହାଙ୍କ ଲଲାଟକୁ ସମାନ ହେଲା ନାହିଁ । ଅତଏବ ଏହାଙ୍କ ପାଦ ନଖରେ ଜ୍ୟୋତିଷ ସମର୍ପଣ କରି ଶରଣ ରହିଅଛି । ଏହାଙ୍କ ନଖ ଚନ୍ଦ୍ରପରି ।

୧୩—ବର୍ତ୍ତମାନ ସୁନ୍ଦରୀ କେଶ ବର୍ଣ୍ଣନା କରୁଅଛନ୍ତି । କେଶଫିଟିଥିବା ବେଳେ କଳାଚାମରର ସମାନ । ବାନ୍ଧିବାକୁ ଧରିବାବେଳେ ମୟୂର ପୁଚ୍ଛ ତା ସମାନ । ଏ ଉପମାନ ଦୁହିଙ୍କୁ ପଛକୁ କ ପକାଇଲେ ମୃଗ ଓ ମୟୂରଙ୍କଠାରୁ ଆମ୍ଭ ବିବେକ ଉଣାହୋଇଅଛି । ଯେହେତୁ ସେ ଦୁହେଁ ଚାମର ଓ ପିଚ୍ଛକୁ ନିଜର ପଛପଟେ ରଖି ଅଛନ୍ତି ।

ପୀୟୂଷ ପିଇ ଜୁଡ଼ା ଶୋଭା ଲଭି । ପୀଡ଼ା ନ ମାନନ୍ତି ହୁଣା ହୋଇଥିଲେ ।
ପରମ ବିବେକ ସିଂହିକାସୁତ । କି ହେଲା ରହିଲା ଏତିକି ମାତ୍ର ସେ ।
ଉପମା-ମାତଙ୍ଗ ସେହି ଯେ ।
ଏଣୁ ୧ପୁଷ୍ପବନ୍ତେ ଯୁକ୍ତ ହୋଇବାରେ ସମସ୍ତେ ସ୍ନାନକୁ ଧାଆନ୍ତି ଯେ । ୧୪ ।
ନୀଳ ଚିକ୍କଣ କୁଟିଳ କୋମଳ । ପ୍ରଲମ୍ବ ଗହଳ ସୁଗନ୍ଧସ୍ଥୂଳ ।
ଏମନ୍ତ କେଶେ କି ତୁଳ ସମ୍ଭାବ । ଏତେ ଗୁଣେ ଅଛି କାଳିନ୍ଦୀ ନୀର ସେ ।
ରମ୍ୟ ଭୟଙ୍କର ସ୍ଥାନ ଯେ ।
ଯେଣୁ ଛୁଇଁ ଘୁଞ୍ଚି ପାଇବ ଉତ୍ପତ୍ତି ଦେଖାଇ ଦେଉଛି ସୁଜନ ଯେ । ୧୫ ।
ଏ କାହିଁ ସମ ଗଣି କହେ ସଖ । ଅଚଳ ଜଣ ବୁଝାଇ ସୁଜନ ।
ମୁଁ ଯହିଁ ଗନ୍ଧ-ଶୋଭା ଇଚ୍ଛା କରି । ବିଦ୍ୟୁ ବକାଳୀ ଇନ୍ଦ୍ରଧନୁ ଧରି ଯେ ।
ହୋଇ ନ ପାରିଲେ ତୁଲ ଯେ ।
ଯେ ପ୍ରତିବନ୍ଧରେ ଏତେ ପ୍ରଶଂସିତ ତହିଁକି କି ଅଛି ତୁଲ ଯେ । ୧୬ ।
ଥୟ ନ ପାଇଁ ଦୃଷ୍ଟି ତହୁଁ ଖସି । ଉରଜ ଉପରେ ପଡ଼ିଲା ଆସି ।
ରୋମାବଳୀ ଦଣ୍ଡ ଅବଲମ୍ବନେ । ରହି କହିଲେ କେତେ ଅନୁମାନେ ସେ ।
ଏ ଅତି ଅଦ୍ଭୁତ ସ୍ଥଳୀ ଯେ ।
ବେନି ନାରିକେଳ ପୂଗ ଜନମିଛି ତମାଲ ଲତାକେ ଫଳି ଯେ । ୧୭ ।

---

୧୪—ରାହୁ ଏହାଙ୍କର ଜୁଡ଼ାସଙ୍ଗେ ସମାନ ହେବ ବୋଲି ଅମୃତପାନ କଲା । ହୁଣା ହେଲେ ସୁଦ୍ଧା ପୀଡ଼ା ଅନୁଭବ କଲାନାହିଁ । ଅତଏବ ତାର ବଡ଼ିଭ ଭଲ । ଏତେ କଥା କଲେ ସୁଦ୍ଧା କ'ଣ ସମାନ ହେଲାକି ? କିନ୍ତୁ ଏତିକି ମାତ୍ର ହେଲା । ସେ ଉପମା ଚଣ୍ଡାଳ ବୋଲାଇଲା । ଏହି ହେତୁ ସେ ଚନ୍ଦ୍ର ଓ ସୂର୍ଯ୍ୟଙ୍କୁ ଛୁଇଁଲେ ( ଗ୍ରହଣ କାଳରେ ) ଲୋକେ ଚଣ୍ଡାଳ ଛୁଆଁ ବୋଲି ଗାଧୁଅନ୍ତି । ୧ ପୁଷ୍ପବନ୍ତ, ଚନ୍ଦ୍ରସୂର୍ଯ୍ୟ ।

୧୫—ଏହାଙ୍କର କେଶକଳା, ଚିକ୍କଣିଆ, କୁଞ୍ଚୁଆ, କୋମଳିଆ, ଲମ୍ବା, ଗହଳିଆ ଓ ସୁବାସ ଅଟେ । ଏତେ ଗୁଣଥିବା କେଶକୁ କଣ ଉପମା ଅବା ଦିଆଯିବ । ଯମୁନାନଦୀରେ ଏ ଗୁଣଥିଲେ ସୁଦ୍ଧା ଭୟଙ୍କର ହୋଇ ଥିବାରୁ ଏ ମନୋହର କେଶ ସଙ୍ଗେ ସମାନ ହୋଇ ନ ପାରି ଉଦ୍‌ଘୋଷି ପାଉଛି, ଚୋର ଭଳି ପୁଳନ ( ପଣିପାଙ୍ଗ ଛୁଟିବା ) ପ୍ରକାଶ କରିଅଛି ।

୧୬—ଏ ଯମୁନା କପରି ତା ସଙ୍ଗେ ସମାନ ହେବ, ଏହା କେଉଁ ଗଣିଚିତ୍ର କହି ବୁଝିହାବ-ଶୋଭା କରିଦେଇ ପୁଳନକୁ ବୁଝାଇ ଦେଇଅଛି ଏବଂ କହୁଛି ଦେଖ, ମୁଁ ଯେଉଁଠି ମେଘ ହୋଇ ଗନ୍ଧ-ଶୋଭା ଇଚ୍ଛାକରି ବକୁଲୀ, ବକପଂକ୍ତି ଓ ଇନ୍ଦ୍ରଧନୁ ଧାରଣ କଲେ ସୁଦ୍ଧା ସମାନ ହୋଇ ପାରିଲି ନାହିଁ । ଯେ କେଶ ସହିତ ବନ୍ଧାଦିକରି ଏତେ ଉପମାକୁ ପ୍ରଶଂସିତ ହୋଇ ଅଛନ୍ତି । ତା ସାଙ୍ଗେ କିଏ ସରି ହେବ ।

୧୭—କବିଙ୍କ ଦୃଷ୍ଟି ସେ କେଶରେ କିଛି ଥୟ କରି ନ ପାରି ଖସି ସ୍ତନରେ ପଡ଼ିଲା । ରୋମାବଳୀ ରୂପ-ବାଡ଼ି ଅବଲମ୍ବନ କରି ରହି କେତେକ ପ୍ରକାର ଅନୁମାନ କଲା । ଏ ସ୍ଥଳ ବଡ଼ ଆଶ୍ଚର୍ଯ୍ୟଜନକ ଅଟେ । ତମାଳ ଲତାରେ ଯୋଡ଼ାଏ ନଡ଼ିଆ ଫଳିଛି । ପୁଣି ତହିଁରେ ଗୁଆ ଯୋଡ଼ାଏ ବାହାରିଛି । ରୋମାବଳୀ ତମାଳଲତା, ସ୍ତନ ନଡ଼ିଆ, ଚୂଚୁକ ଗୁଆପରି ।

ରହିବାକୁ ନିଷ୍ଟ ମନ୍ଦ ଲୋଚନ । ସଲଶେ ତ୍ରପ ଦ ବେଣି ରଚନ ।
ମାଳା-ଫେଲା କରିବାକୁ ବନ୍ଧାର । ଅବଗାହ ଅର୍ଥେ ଉଦର ସର ସେ ।
ତେଣୁ ନ ପାରିଲେ ଟେକ ଛେ ।
ଆନ ଆନ ବଗୁରଙ୍କୁ ପ୍ରସୂରଲେ ସେହୁ ରୁଚିରରେ ମଞ୍ଜି ହେ । ୧୮ ।
ହେମ-ଭୂ-ଶମ୍ଭୁ ଶମ୍ଭୁ ଯୁଗଳେ । ନୀଳମଣିରେ ନିର୍ମିତ ପ୍ରଣାଳେ ।
ପାଞ୍ଚ ପାଞ୍ଚ ଯୁକ୍ତ ସପ୍ତଲାବଳୀ । ପଙ୍କଜ-ଝୁମ୍ପା ଚମ୍ପାମାଳ ଝୁଲ ସେ ।
ନିଷ୍ଟସ୍ଥ କର ଏମନ୍ତ ହେ ।
ବେଦ ପ୍ରଜାପତି ଅର୍ଚ୍ଚନ ଅଶୋକେ ପ୍ରପଦେ ସେ ଅଲଙ୍କିତ ହେ । ୧୯ ।
ଯୌବନ-ସିନ୍ଧୁ ମନ୍ଥନ ବିଚକ୍ଷେ । ମେରୁ ମନ୍ଦର ଯୁକ୍ତ କଲ ପୂନେ ।
ଅଙ୍ଗ କେତକୀ ସୁଗନ୍ଧ ଫୁଟକ । ଜାତ ଅଦ୍ଭୂତ ପାରିଜାତକ ସେ ।
କରନ୍ତି ଶମ୍ପା ଅଶର ହେ ।
ଗତ ହଂସ ଜନ୍ମି ଗଙ୍ଗାରେ ବୁଡ଼ାଇ ଦେଇଥିଲ ନାଗେଶ୍ୱର ହେ । ୨୦ ।
ମନସିଜ ବେଣି କୁଟି ରଥାଇ । ପଦାବଳୀରେ ସର୍ତ୍ତନେ ଛୁଆଇଁ ।
ଭିଙ୍କିକ ଖ୍ୟାତ ନଳୀ ଅଙ୍କି ଯୋଖି । ମନୋହର ନାଭି ପଲ୍ଲ ଦେଖି ସେ
ମଧ୍ୟରେ କେଶରୀ ହୋଇ ହେ ।
ଭନେ ଶବ ଅଣ୍ଟା କାନ୍ଧ ଘଲାଇଛି ମୁହିଁ କଟିଦ୍ୱେଷୀ ଘାଲ ହେ । ୨୧ ।

---

୧୮—ମନ ଓ ନେତ୍ର ଦୁହେଁ ରହିବାକୁ ଲାଗିଲେ ବିହାର ଯୋଗ୍ୟ ଦେଖିଲ ଖୋଲା ହେଲାପରି ସ୍ୱଚ୍ଛସ୍ୱ ଦଶୁଛ । ସେ ଦୁହେଁ ଗାଧୋଇବାକୁ ଉଦର ରୂପ ପୋଖରୀ ଓ ତହିଁରେ ହୋଇ ଯିବାକୁ ରୋମାବଳୀ କୃଷ୍ଣବର୍ଣ୍ଣ ଭେଳା ହୋଇଅଛି । ଅତଏବ ସେ ଦୁହେଁ ତାକୁ ଛାଡ଼ି ପାରିଲେ ନାହିଁ ଏବଂ ତା ଶୋଭାରେ ମଜ୍ଜି କରି ଅନ୍ୟ ଅନ୍ୟ ବସ୍ତୁମାନ ଖଲେ ।

୧୯—ସ୍ୱର୍ଣ୍ଣଭୂମିରେ ଯୋଡ଼ିଏ ଶିବଲିଙ୍ଗ ବାହାରି ଅଛି । ପାଞ୍ଚପାଞ୍ଚୋଟି ଲେଖାଏଁ ନଅଟି କଡ଼ୀ ଲାଗି ପଦ୍ମ ଝୁମ୍ପା ଗୁଚ୍ଛା ଚମ୍ପା ମାଳ ଲାଗି ହୋଇ ଅଛନ୍ତି । ପ୍ରଜାପତି ( ବଧାତା ) ତାହାଙ୍କୁ ପୂଜା କରି ପକାଇଥିବା ଅଶୋକକଳି ପାଦ ପାଖରେ ଅଙ୍ଗୁଳି ରୂପରେ ଅଛି । ସ୍ୱର୍ଣ୍ଣଭୂମି; ଜଘ । ଶିବଲିଙ୍ଗ, ସ୍ତନ । ନୀଳମଣି ପ୍ରଣାଳୀମଞ୍ଚ, ରୋମାବଳୀ । ପଦ୍ମଝୁମ୍ପା, ପାପୁଲି । ଚମ୍ପାମାଳ, ବାହୁ । ସ୍ୱର୍ଣ୍ଣଭୂଲନା କରାଯାଇଅଛି । ୧୯ଟା, ନଅଟି ।

୨୦—ଯୌବନ ରୂପକ ସମୁଦ୍ର ଅଙ୍ଗପ୍ରତ୍ୟଙ୍ଗରେ ମନ୍ଥନ ହୋଇଅଛି । ମେରୁ ଓ ମନ୍ଦର ପର୍ବତ ଦୁଇ ସ୍ତନରେ ବନ୍ଧାହୋଇ ଅଛନ୍ତି । ( ସ୍ତନ ଓ ରୋମାବଳୀକୁ ଏପରି ତୁଳନା କରାଗଲା ) ଅଙ୍ଗ କେତକୀର ସୁଗନ୍ଧ ପାରିଜାତ ପୁଷ୍ପ ଓ ଦେହ ଫୁଟକ ଶ୍ରୀର ବଳୀଲାଞ୍ଛନ ପ୍ରକାଶ ପାଉଅଛି । ଗତ ହଂସ ରୂପେ ପ୍ରକାଶ ପାଉଅଛି ଏବଂ ନାଗେଶ୍ୱର ଅର୍ଥାତ୍ ଐରାବତ ରୂପେ ଗତ ମଧ୍ୟ ହେଲା । ସେ କି ଗଙ୍ଗାସ୍ରୋତରେ ବୁଡ଼ି ଯାଇଥିଲା ।

୨୧—କନ୍ଦର୍ପ ଯୋଡ଼ିଏ ଭୃଙ୍ଗଅଧର କରିଛି । ସେ ସ୍ତନ ତାକୁ ପଦ୍ମାବଳୀ ଅର୍ଥାତ୍ ଚକ୍ର ରଚନା ରୂପକ ପଦ୍ମ ସମୂହରେ ଛପରି କରିଛି । ସୁନ୍ଦର ନାଭିରୂପକ ଛୋଟ ପୋଖରୀ ଦେଖି ଜାଣିକି ତହିଁରେ ଭିଙ୍କିକପୁଷ୍ପନଳୀ ରୂପେ ରୋମାବଳୀ କ ଯୋଖି ରଖିଛି । କିନ୍ତୁ କେଶରୀ ଶବ୍ଦ କଟିରେ ଅନ୍ୟ ଅର୍ଥରେ ( କଏ କେ ସରି ) କଟିକି କିଏ ସମାନ, ଏହି ଅର୍ଥରେ ଅଛି । କିନ୍ତୁ ସିଂହ ବନ୍ଧୁଛନ୍ତି, ମୁଁ କଟୀ ଅର୍ଥାତ୍ ତୃତୀୟ ଦେଶୀ ଏହା ଭାବି କେଉଁ ଅଡ଼େ ପଳାଇଛି ।

ଲୋକେ ଅବଳା ଯେ ବାଳାକୁ କହି । ଅଦ୍ଭୁତ ଅଶୁଣା ବଳ ଦେଖାଇ ।
ବନ୍ଧାକଲୁ ତନ୍ତ୍ରବଲ୍ଲୀ ଏଥିକ । ମର୍କଟ ଧନୁକେ ବେନି ପୃଥ୍ୱୀକ ଯେ ।
ଦନ୍ତେ ଧରିଅଛୁ ଠେକି ଯେ ।
ଜଘନ ଉଦ୍ୱାସନ ଯେଣେ ହେଲାନ ବଳବନ୍ତେ ଅଭିଷେକ୍ଷା ଯେ । ୧୨ ।
ଚରମସ୍ଥଳ ସହଜେ ଅଗମ୍ୟ । ନ ସମ୍ଭବେ ପ୍ରଭ୍ରମାନଙ୍କ ରମ୍ୟ ।
ନିତମ୍ବ ଚକ୍ରବାଡ଼ ଅଛୁ ଯହିଁ । ଦୃଷ୍ଟିପଥ ଅନ୍ଧକାର କରଇ ଯେ ।
ଥିବ କୂପକ ଗହ୍ୱର ଯେ ।
ସୁସଞ୍ଚ ଝିଚ ସ୍ପର୍ଶ ଗଣ୍ଡ–ଶଇଲ ଆବରିଅଛୁ ଶରୀର ଯେ । ୧୩ ।
ଅଳକା ବର୍ଣ୍ଣନା ନୋହିଲା ସିନା । ସେ ଯେ ଶୋଭାଯଶ ଶ୍ଳୋକ କଳ୍ପନା ।
ଅଙ୍ଗୁଳି ତୁଳିକେ ସ୍ୱହସ୍ତେ ଲେଖି । ସମେ ଥୋଇଅଛୁ ତା ଅଷ୍ଟଆଖି ସେ ।
କି ଲେଖା କହ ବିଗ୍ରହ ଯେ ।
ହରିହର ଏକମୂର୍ତ୍ତି ହୋଇଲାକୁ ରମା ଉମା ସେହିପରି ଯେ । ୧୪ ।
କୋମଳେ ଲବଣୀ ନୋହି ସମାନ । ତରଳ ହେଲାଟି ହିମ୍ମଙ୍ଗନ ।
ପ୍ରେମ ପୀୟୂଷ ପିଣ୍ଡୁଳା ନିର୍ମାଣ । କାମ ଜୀବଦାନୁ ହେଲା ପ୍ରମାଣ ସେ ।
କଳାରେ କି ଶକ୍ତି କଲା ଯେ ।
ହରିତ ଶୁକ୍ଳକୁ କି କି ପରକାରେ ସ୍ଥାନେ ସ୍ଥାନେ ଦେଖାଇଲା ଯେ । ୧୫ ।

---

୧୨—ସ୍ତ୍ରୀକୁ ଅବଳା ବୋଲାଯାଏ । କିନ୍ତୁ ଏ ବାଳା ଅଦେଖା ଓ ଅଶୁଣା ବଳ ଦେଖାଇ ଅଛି । ବସ୍ତୁ ଗୋଟିଏ ବନ୍ଧକ ବାନ୍ଧିଥିଲେ ତାକୁ ଏ ତନ୍ତ୍ରବଲ୍ଲ (ତ୍ରିବଳି) କୁ ରଖିଅଛି । ଅର୍ଜୁନ ଧନୁ ହାତରେ ଗୋଟି ପୃଥ୍ୱୀ ଠେକିଥିଲେ । ତାକୁ ଏ ରୋମାବଳୀ ରୂପକ ମର୍କଟ ଧନୁରେ ସ୍ତନରୂପ ପୃଥ୍ୱୀଦ୍ୱୟ ଠେକି ଧରିଛି । ଏବେ ଜଘନରୂପ ସିଂହାସନ ଗ୍ରହଣକରି ବଳବାନ ଚକ୍ରବର୍ତ୍ତୀରୂପେ ଅଭିଷିକ୍ତ ହେଲଣି ।

୧୩—ପୃଷ୍ଠଭାଗ ସ୍ୱଭାବରେ ଉଚ୍ଚ ହୋଇଥିବାରୁ ତାର ଦୃଷ୍ଟିର ଅଗମ୍ୟ ହୋଇଅଛି । ସୁନାପ୍ରଭ ପ୍ରଭୃତି ଉପମାନଙ୍କ ଶୋଭା ସମ୍ଭବ ହେଉନାହିଁ । ଯେଉଁଠାରେ ନିତମ୍ବ ଚକ୍ରବାଡ଼ ( ଲୋକାଲୋକପର୍ବତ ) ରୂପେ ରହିଅଛି । ତାର ଅପର ପାଖକୁ କାହାର ଦୃଷ୍ଟିପଥ ନାହିଁ । ଉକ୍ତ ପର୍ବତର ଅପର ପାର୍ଶ୍ୱ ଅନ୍ଧକାରପୂର୍ଣ୍ଣ ଥାଏ । କେବଳ କୂପକ ( ନିତମ୍ବ ଭ୍ରମର ) ରୂପ ଗହ୍ୱର ଓ ସୁନ୍ଦର ପିଣ୍ଡରୂପ ଗଣ୍ଡ ଶୈଳଥିବ ଏହା ଅନୁମାନ ହେଉଅଛି ।

୧୪—ଏବେ ଅଳକା ( ଚୂର୍ଣ୍ଣ କୁନ୍ତଳା )ର ବର୍ଣ୍ଣନା ହେଲା ନାହିଁ । ସେ ଅଳକା ଏହାର ଶୋଭା ଯଶ ପ୍ରକାଶକ ଶ୍ଳୋକ । ବ୍ରହ୍ମା ଅଙ୍ଗୁଳି ରୂପକ କଲମରେ ନିଜହାତରେ ସମାନକରି ଲେଖି ରଖିଅଛନ୍ତି । ତେବେ ସେ କ'ଣ ଲେଖାଅଛି କହ । ହରିହର ଏକା ମୂର୍ତ୍ତି ହେବାରୁ ରମା ଉମା ଏକ ମୂର୍ତ୍ତି ହୋଇ ସେ ସୁନ୍ଦରୀରୂପେ ଅଛନ୍ତି ।

୧୫—ଲବଣୀ ଏହାର କୋମଳତାରେ ସମାନ ନ ହୋଇ ତରଳ ସନ୍ଦ୍ରବିତ ହେଲା । ବୋଧହୁଏ ବିଧାତା ଅମୃତ ଓ ପ୍ରେମରେ ପିଣ୍ଡୁଳା କଲା । ତହିଁରେ ବଶୀଭୂତ କନ୍ଦର୍ପର ଜୀବଦାନ କଲା । ଚଉଷଠି କଳାରେ ଚତୁର କଲା । କେଶ ଓ ହାସ ପ୍ରଭୃତି ସ୍ଥାନ ବିଶେଷରେ କୃଷ୍ଣ ଓ ଶୁକ୍ଳ ବର୍ଣ୍ଣକୁ କି ପ୍ରକାର ଦେଖାଇଲା ।

ସାରଭାଗ କଲ୍ପ ନୃପ-ନେମାକୁ । ଅସାର ଭାଗ କଲ୍ପ ଉପମାକୁ ।
ଏ କଥା ନଷ୍ଟେ ଅଁସିଲା ମନକୁ । କହ୍ନ ଉଚ୍ଚଲେ କବି ମଣ୍ଡନକୁ ସେ ।
ଶ୍ରୀରାମ ' ଦୂଷଣ-ହର ଯେ ।
ପୁରାଣେ ଅଛୁ ସୁମର ଗୀତ ରଚ ଉପେନ୍ଦ୍ର ଦୋଷହର ଯେ । ୨୭ ।

## ଅଷ୍ଟମ ଛାନ୍ଦ ।

### ରାଗ ଦେଶାକ୍ଷ ।


ଚକ ବର୍ଣ୍ଣିଲା କବିଙ୍କି ତହିଁ । ଅନେକ କନକ-ସ୍ନାନ କରାଇ ।
ବସନେ ବସନେ ଦେଇ ପ୍ରସନ୍ନେ । ସ୍ମରଣ ଭାବ ତା ହରଷମନେ ସେ ।
କହଇ ସତ ନୁହଇ ପର । ବଧି ବଧୀନେ ନୋହିଲ ବଧୀର । ୧ ।
ଉର୍ବଶୀରେ ବଶୀଭୂତ ଯେ ବସି । ସୁରସଭାରେ ସୁରପରେ ରସି ।
ସେ ପୁଣି ଏକାନ୍ତ ଏ କାନ୍ତ ଗୃହିଁ । କାନ୍ତ ହେବା ଇଚ୍ଛା ନ କଲ କେହି ।
ସମ୍ଭୂତ ଏକ ଅଦ୍ଭୁତ ହୋଇ । ଭୂତ ଭବିଷ୍ୟ ବର୍ତ୍ତମାନେ ନାହିଁ । ୨ ।
କବିଗୃରୁଷ୍ଟ ଏ ଚରୁଷ୍ଟ ମିଥ୍ୟା । ଶୁଣି ନୃପମଣି-ନନ୍ଦନ କଥା ।
ମସ୍ତକ ନୁହିଲ କରି ସମ୍ମତ । ନକର ସନ୍ଦେହ ସେ ଦେହିବନ୍ତ ।
ମାଳିନୀ-ପୁରେ ଲଳନା-ସାର । ରୂପ ଅନୁରୂପେ ନାମ ତାହାର । ୩ ।

---

୨୭—ଯଥାର୍ଥ ରାଜକନ୍ୟାକୁ ସାର ଓ ଉପମାନକୁ ଅସାର କରି ଏ କଥାମାନକୁ ଦାଇକ, କହି କବି ଭିନ୍ନହେଲେ । ହେ ଦୂଷଣ ରାକ୍ଷସନାଶୀ ଶ୍ରୀରାମ ଦୋଷ ଗ୍ରହଣକର । ପୁରାଣରେ ଥିବା କଥାମାନ ସ୍ମରଣକରି ଗୀତ ରଚନା କରୁଥିବା ଉପେନ୍ଦ୍ର ଭଞ୍ଜଙ୍କର ଦୋଷ ହରଣକରି ଓ ସନ୍ତୋଷ ପୂର୍ଣ୍ଣକର ।
୧ ଦୂଷଣ-ହର, ଦୂଷଣ ରାକ୍ଷସ ନାଶି ଓ ଦୋଷ ହରଣକର ।

—— ‡∗‡ ——

## ଅଷ୍ଟମ ଛାନ୍ଦ ।

୧—ରାଜପୁତ୍ର ସେ ସୁନ୍ଦରୀର ଶୋଭା ବର୍ଣ୍ଣନ କରୁଥିବା କବିଙ୍କୁ ଅନେକ ସ୍ୱର୍ଣ୍ଣମୁଦ୍ରା ଦେବା ଦ୍ୱାରା କନକ ସ୍ନାନ କରାଇ ପ୍ରସନ୍ନ ହୋଇ ବସ୍ତ୍ରଦାନ ଦେଇଥିଲେ କବିଙ୍କ ବର୍ଣ୍ଣନା ଦ୍ୱାରା ସେ ସୁନ୍ଦରୀକୁ ସ୍ମରଣକଲା ପରି ଆନନ୍ଦିତ ହୋଇ କହିଲେ, ଏ ସତନୁହେଁ ପର, ଯଥାର୍ଥ ଏହାକୁ ଗଢ଼ିଲାବେଳେ ବିଧି ଧୈର୍ଯ୍ୟ ହେଲାନାହିଁ ।
୨—ଯେ ଦେବ ସଭାରେ ବସି ଉର୍ବଶୀ ଅପ୍ସରାଠାରେ ଆସକ୍ତହୋଇ ସମ୍ଭୋଗ ଇଚ୍ଛା କରିଥିଲେ । ସେ ପୁଣି ଏକାନ୍ତ ସ୍ଥାନରେ ଏପରି କମନୀୟରୂପ ଦେଖି ପତି ହେବାକୁ କେହି ଇଚ୍ଛା ନ କଲେ । ଏ ଅଦ୍ଭୁତ ଅଦ୍ୱିତୀୟ ରୂପରେ ଜନ୍ମିଅଛି । ତିନି କାଳରେ ଏପରି କେହି ନାହିଁ ।
୩—ଏ କବି ଗୃରୁରୀ, ଏ ଗୃରୁରୀ କଥା ମିଛ, ଏପରି ରାଜପୁତ୍ରଙ୍କର କଥାଶୁଣି ଅଙ୍ଗୁଳ ପ୍ରବେଶ ସମ୍ମତ ପ୍ରକାଶକରି କହିଲେ "ସନ୍ଦେହ କରନାହିଁ । ସେ କବନ୍ତ ଅଛି, ମାଳିନୀ ନଗରୀରେ ସେ ପଦ୍ମ-ଶ୍ରେଷ୍ଠା ଅଛି । ରୂପ ଅନୁସାରେ ତାର ନାମ ହୋଇଅଛି ।"

କୋଟିବ୍ରହ୍ମାଣ୍ଡସୁନ୍ଦରୀ ଏ ପଦୁଁ । ବର୍ଣ୍ଣ ଗ୍ରହବର୍ଣ୍ଣ ଯେଣ ଆଦ୍ୟଁ ଆ
-କି ଯୋଗରୁ ଯୋଗ ଏକାସ୍ଥାନକେ । ଗୋଟିଏ ଗୋଟିଏ ଜାଣ କନ୍ୟକା
ପ୍ରମାଣ କଲେ ନିର୍ମାଣ ହେମା । ବନ୍ଦନ କଲେ ବନ୍ଦନ ଉପମା । ୪ ।
ସୁଷମା ସମାପତ ହେଲା ଯେନ । ଭୁବନ୍ତ ଭଜଥିବ ମଦନ ।
ପୁଣି ବେଦବତ ଜରତ ଯେଣୁ । ବିକାର କାରଣ ନୋହିଲା ତେଣୁ ।
ବନ୍ଧାଣିପଣବଦତକଲେ । ଲୋକେଙ୍କ ଲୋକେହୃଦେ ଉଦତହେଲେ । ୫ ।
ସୁମନା-କାମିନୀ-ଗଣ୍ଡ-ସୁମନା । ନାଗ-ନାଗରୀ-ଶିରୋମଣି ଦିନା ।
ମଣ୍ଡି-ମଣ୍ଡଳା ବଶଦ ତିଳକ । ମର୍ହମା ମହିମ କରେ ତୈଲୋକ୍ୟ ସେ ।
ଯାଉଛନ୍ତି ଟୀକା ସୁନ୍ଦରୀ ଯାକେ । ଟୀକା ହେଲାଣି ସଙ୍ଗୀତପୁସ୍ତକେ । ୬ ।
ଗତ ଆଗତ ହେଉଥିଲେ ଋଷି । ଯୁଗେ ଯୁଗେତ ଏ ଯୁଗେ ନ ଆସି ।
ରମଣୀମଣିକ ଯୋଗେ ଗୃହିଲେ । ଯୋଗ ଉଯୋଗ ହୋଇବ ଯିଇଲେ ।
ଏ ଅତଣସ୍ୱ ସଂଶୟ ହତ । ଏମନ୍ତ ମଉକାଣିକା କେମନ୍ତ । ୭ ।
ପନ୍ଦର-ବସ୍ତୁସୀ ଅଙ୍ଗ ଛୁଇଁଲେ । ସୁନ୍ଦରମାନେ ସୁନ୍ଦର ହୋଇଲେ ।
ବୋଲେ ସୁବୁଦ୍ଧି ଏ ବୁଦ୍ଧି ସମ୍ବାଦ । ହୃଦରେ କୁଭ-ଜତ-ମଧ୍ୟ ବାଧା ।
କୁବୁଜା କୁଜ ଭଜ କଲ୍ଲୁ । ଏ ଶୋଭକରେ ଅଶୋଭମାନଙ୍କୁ । ୮ ।

---

୪—କୋଟି ବ୍ରହ୍ମାଣ୍ଡସୁନ୍ଦରୀ, ଏ ପଦରୁ ଆଦ୍ୟ ଗ୍ରହ ଅକ୍ଷର ଧରିଲେ, କୋଟିବ୍ରହ୍ମା ହେଲେ । ସେମାନେ କ ଶୁଭଯୋଗରେ ଏକସ୍ଥାନରେ ମିଳ କଲେବେ ଗୋଟିଏ ଅଙ୍ଗ ପ୍ରମାଣକରି, ସେ ଧ୍ୟାନକନ୍ୟାକୁ ନିର୍ମାଣକଲେ କି ? ଅତଏବ ଉପମାମାନେ ବନ୍ଦିତ ହୋଇ ବନ୍ଦନକଲେ ଅଛନ୍ତି ।

୫—ପରମ ଶୋଭା ନିର୍ମାଣ କାର୍ଯ୍ୟ ଶେଷହେଲା ବୋଲି ବୋଧହୁଏ କନ୍ଦର୍ପ ପୋଡ଼ିଯାଇ ପ୍ରେତତ୍ୱ ପାଇଥିବ । ପୁଣି ବ୍ରହ୍ମା ବୃଦ୍ଧ ହୋଇଯାଇଥିବେ । ସେହି ହେତୁରୁ କନ୍ଦ ବିକାର ନାହିଁ । ତରୁଣୀ ଅବସ୍ଥା ବେଳେ ବ୍ରହ୍ମା ଯୁବା ଓ କନ୍ଦର୍ପ ଜୀବନ୍ତ ଥିଲା । ସେହି ହେତୁରୁ ବନ୍ଧାଣି ପଣିଆ ଦେଖାଇଲେ । ଛନ୍ଦ ଜଗତରେ ଲୋକମାନଙ୍କ ହୃଦୟରେ ପ୍ରଶଂସା ପାଇଲେ ।

୬—ଏ ସୁନ୍ଦରୀ ଦେବ ସ୍ତ୍ରୀମାନଙ୍କର ଗର୍ବ ଫଳସ୍ୱରୂପ । ଦେବ ସ୍ତ୍ରୀମାନଙ୍କର ମଥାମଣି ସ୍ୱରୂପ ଓ ଭୂଦେବୀର ମୁଣ୍ଡରେ ଶୋଭାପାଉଛି । ଅତଏବ ତ୍ରୈଲୋକ୍ୟର ମାହାତ୍ମ୍ୟ ଜୟ କରୁଅଛି । ସୁନ୍ଦରୀମାନଙ୍କ ମଧ୍ୟରେ ଟୀକା ହେଲାଣି । ସଙ୍ଗୀତ ଶାସ୍ତ୍ରର ଟୀକା ସ୍ୱରୂପ ହେଲାଣି । ମହିମା ଜୟ ।

୭—ପୂର୍ବ ଯୁଗରେ ଋଷିମାନେ ତପସ୍ୟାକୁ ଯିବା ଆସିବା କରୁଥିଲେ ଏହା ପ୍ରସିଦ୍ଧ ଅଛି । ଏବେ ଏ ସୁନ୍ଦରୀକ ଦେଖିଲେ ଯୋଗ ଭଙ୍ଗ ହେବ, ଏହାଭବ ଜାଣିକରି ଋଷିମାନେ ଏବେ ଆସୁ ନାହାନ୍ତି । ଏ କାହିଁଦେଲ କଥା । ସେ ସୁନ୍ଦରୀ କଣ ଏହିପରି ।

୮—ସେ ପନ୍ଦରବର୍ଷୀୟର ଅଙ୍ଗ ସ୍ପର୍ଶକରି ଅସୁନ୍ଦରମାନେ ସୁନ୍ଦର ଦେଖାଗଲେ । ସେ ସୁବୁଦ୍ଧି ଅବୁଝି ହୃଦୟରେ ଏହା ବର୍ଣ୍ଣନକରି କହିଲା । ଏ କବି ଚତୁର କାଳବୃନ୍ଦାବନୀ ଶ୍ରୀକୃଷ୍ଣ ସଙ୍ଗେ ବିବାଦ କରୁଅଛି । ସେ କୃଷ୍ଣ କୁବୁଜାର କୁଜ ସଳଖି ଥିଲେ । ଏ ଅସୁନ୍ଦରମାନଙ୍କୁ ସୁନ୍ଦର କରୁଅଛି ।

ଈକ୍ଷଣେ ଯେଉଁ କ୍ଷଣେ କରେ ମେଳ । କଜ୍ଜଳ କଳିତ ମହାଉଜ୍ଜ୍ୱଳ ।
ସିଂହାଣୀ ଗୃହ୍ନାଣିରେ ନକ୍ତ ଭୁଜ । ମନ ମୋହନ ବନ୍ଧନ କରାଇ ।
ମଧ୍ୟରେ କରୁଁ କୃଶକୁ ଗୃରୁ । ମଧ୍ୟମ କଲା ସେ ହେମ-ଡମ୍ବରୁ । ୯ ।
କୁଚେ କଠିନକୁ ଯେବଣମା ଯେନ । ସେ ଶମ୍ଭୁ ଥାଣି ଥାଣି ଶ୍ରକ୍ଷିଲାନ ।
ବସୁଧାରେ ସୁଧାକୋଷ ବୋଲାଇ । ଶ୍ରୀଫଳ ଫଳ ବିଫଳ କରାଇ ।
୧ରୁଚକ ନେତ୍ର-ରୁଚକ ନୋହ୍ନ । ଓଲଗି ଓଲଗି ଦନ ନଥାଇ । ୧୦ ।
ସଭବେ ଗୁରୁଭାବ ଅଙ୍ଗୀକାର । ମାଲାମ୍ବର ଲାଲା ପୁଣି ବସ୍ତାର ।
କବି ମଙ୍ଗଳ ଯେ ଯେଣ ଉତ୍ପୂତନ । ସତମସ ନ ଚନ୍ଦ୍ରରେ ଶବତେ ।
ଅପି ଯେ କୁମ୍ଭରାଶିରେ ଏବେ । ଷଡଗ୍ରହ ମହାବଗ୍ରହ ଭବେ ।୧୧।
ସୁଗତରେ ମନ୍ଦ ସଙ୍ଗତ କଲ । ଧରଣୀ ମଣ୍ଡିବା କରଣି ଦେଲ ।
ଶନ-ସ୍ୱରୂପା ସେ ଶନ ନୋହିବ । ଭବ ହୋଇଅଛ୍ର ଭାବ ମୋହବ ।
ଭାଷିଲ ମନ୍ତ୍ରୀସୁତ କ ଖ୍ରବ । ବାଳାରେ ବଚନ ରଚନା ହେବେ ।୧୨।
ସୁସ୍ୱର କର ବାଗୀଶ୍ୱର ଭଣି । ପ୍ରୟୋଜନ ଏହ ପ୍ରୟୋଗଶ୍ରେଣୀ ।
କେଳି-ପ୍ରବୀଣା ବୀଣା-ଜଣା-ବାଣୀ । ଖଞ୍ଜନ-ଗଞ୍ଜନ-ରଞ୍ଜନେକ୍ଷଣୀ ।
ସୁରସ-ନଧି, ୧ନିଧି-ପ୍ରତିମା । ୨ଗୁଣ-ନଗରୀ-ନାଗରୀ-ଉତ୍ତମା ।୧୩।

---

୯—ଦେଶ ବାଳୀର କଜ୍ଜଳ ଯେଉଁକ୍ଷଣି ତା ଆଖିରେ ଲାଗିଲା । ସେହିକ୍ଷଣରେ ବଡ଼ ଉଜ୍ଜ୍ୱଳ ଦେଖାଗଲା । ବକ୍ରତା ସେ ସିଂହାଣୀର ଗୃହାଁଣିରେ ରହି ମନ ମୋହୁଛି । କୃଶତାକୁ କଟିରେ ରଖି ସୁନ୍ଦର କରି ଦେବାରୁ ସେ ସୁନା ଡମରୁକୁ ( ମଧ୍ୟମ ) ନକୃଷ୍ଟ କଲା ।

୧୦—ସ୍ତନ କଠିନତାକୁ ଧାରଣ କରିବାରୁ ମହାଦେବଙ୍କ ଶେଷ ସ୍ୱର୍ଗ ସଣି । ପୃଥିବୀରେ ଅମୃତଭଣ୍ଡାର ହୋଇଥିବା ନଡଆ ବା ବେଲକୁ ବିଫଳ କରାଣି । ଚକ୍ର ଥିର ଅକ୍ଷିକ ରୁଚକାହିଁ । ଓଲଗିସାପର ଓହୋଳ ଓହୋଳ ଦାନ କହୁଅଛି । ୧ ରୁଚକ, ଚକ୍ର ।

୧୧—ଏହାଙ୍କ ସ୍ତନ ସ୍ୱଭାବରେ ଗୁରୁତ୍ୱ ଧାରଣ କରିଅଛି । ଏଠାରୁ ବୃହସ୍ପତି ଥିବାର ଜଣିସ । ପୁଣି ନୀଳବର୍ଣ୍ଣ ହାର ଶୋଭା ପ୍ରକାଶ କରୁଅଛି । ଅତଏବ ନୀଳାମ୍ବର (ଶନି) ଥିବା ଜଣିଲା । ତାହାର ବର୍ଣ୍ଣନରେ କବିମାନଙ୍କ ମଙ୍ଗଳ ହେଉଅଛି । ଏଥିରୁ (କବି) ଓ ଶୁକ୍ର ମଙ୍ଗଳ ଥିବାର ଜଣିଲା । ସେ ସ୍ତନମଧ୍ୟ ସତମସ (ଅନ୍ତରେ କୃଷ୍ଣତା ସହିତ ) ହୋଇଅଛି । ଅତଏବ (ତମ) ରାହୁଥିବାର ଜଣିଲା । ଏବେ ଏ ଛଅଟି ସ୍ତନରୂପକୁ କୁମ୍ଭ ( ରାଶି )ରେ ମହାବଗ୍ରହ ( ବଡ଼ଯୁଦ୍ଧ ) କରୁଅଛନ୍ତି । ଅତମଧ୍ୟ ମହାବଗ୍ରହ (ବଡ଼କାୟ) ଇଚ୍ଛା କରୁଅଛନ୍ତି ।

୧୨—ମନ୍ଦତା ସେ ସୁନ୍ଦରୀର ଗମନକୁ ଆଶ୍ରୟକରି ପୃଥିବୀକୁ ଶୋଭିତ କରିବାକୁ କ୍ଷମତା ପାଇଲା ସେହି ଅସ୍ଥିର୍ଯ୍ୟ ସ୍ୱରୂପାର ଏହା ଶନି ଅସ୍ଥିର୍ଯ୍ୟ ନୁହେଁ । ସେ ଏ ସଂସାରକୁ ବା ମହାଦେବଙ୍କୁ ମୋହିତ କରିବାକୁ ଜନ୍ମ ହୋଇଅଛି । ଏହା ଶୁଣି ମନ୍ତ୍ରୀପୁତ୍ର ବୁଦ୍ଧିସାଗର କହିଲା, ସେ ସୁନ୍ଦରୀ ପ୍ରତି କ ପ୍ରକାର ବାକ୍ୟ ବ୍ୟବହାର କରାଯିବ ।

୧୩-୧୪—ତାହା ଶୁଣି ବାଗୀଶ୍ୱର କବିର ଉତ୍ତମ ସ୍ୱରରେ କହିଲେ । ଏହିସବୁ ପ୍ରୟୋଗମାନ ସେ ସୁନ୍ଦରୀ ପ୍ରତି ଦରକାର । ଯଥା । କେଳି ପ୍ରବୀଣାଠାରୁ ସକଳ ଗୁଣବନ୍ତ ଉତ୍ତମ ହାସ୍ୟା ପର୍ଯ୍ୟନ୍ତ ଏହିସବୁ ସମ୍ବୋ-

୩ସୁସାର-ସାର-ଲାବଣ୍ୟ-ସଦନା । କୁନ୍ଦ-ସ୍ମିତା କୁନ୍ଦ-ଜାତ-ରଦନା ॥
୪ସଦ୍‌ବକାଶ-କାଶ-ନନ୍ଦିତ-ହାସୀ । ରଜତ-ରଜବ-ଜିତ ସୁହାସୀ ।
ନଖଜାଠାରେ ଏ ବଚନା ଉକ୍ତି । ଶୋଭିତ ଲୋଭିତ କେବେ ନୁହନ୍ତି ॥୧୪
ମହାକୋବଦ ତର୍କବଦ କହି । ଚନ୍ଦ୍ର ମୁଖଚନ୍ଦ୍ର ହୋଇ ଏ ଦୁଇ ।
ଇନ୍ଦୁରେ ବହୁରେ ଯେଉଁ ହରିଣ । କାଳିକ କଳଙ୍କ ବୋଲାଇ ପୁଣ ।
ମୃଗେନ୍ଦ୍ର କେଶ-କୁରଙ୍ଗ ରଙ୍ଗ । ଜନ ରଞ୍ଜନକୁ ପ୍ରକାଶେ ବେଗ ।୧୫॥
ଶମ୍ପା ରୂଚ-ଶମ୍ପା ଏହି ପ୍ରକାର । ସେ ଅଧର ଏତ ଶର ରୁଧର ।
ରମ୍ଭା ଉରୁ-ରମ୍ଭା ଏ ଏହିମତ । ଅଭିନ୍ନ ଚରିତ ଏହିଠାରେ ତ ।
ଏମନ୍ତେ ଭିନ୍ନ ସମସ୍ତେ ଥିବ । ବଧୂ-ମୁଖୀ ବଧୂ-ହାସୀ ବୋଲିବ ।୧୬॥
ରୂପକ ଯମକ ବ୍ୟାପକ ବଳେ । କବି କବିତ୍ୱରେ ରକ୍ଷା ପାଇଲେ ।
ଯେବେ କବ କଳ୍ପ-କଳ୍ପନା ଥିବ । ଉପମାକୁ ଉପଯୋଗ ହୋଇବ ।
୧ମାଗଧ ବିଦଗଧ ବୋଇଲା । ନୃପଜ ଶୁଣି ମନ ମନ୍ଥାଇଲା ।୧୭।
ବାଞ୍ଛା କରି ଲଭିବା ଦୁର୍ଲ୍ଲଭ । ପ୍ରସନ୍ନ ଦର୍ଶନ ବଡ ସୁଲଭ ।
୧ଅମର-ଦୃଷ୍ଟିକ କୁମର ପାଇ । ଶବ ପ୍ରାୟେ ଶବ-ସ୍ୱଂସେ ଅନାଇ ।
ପ୍ରବର କଲା ଗୁରୁ ବଧାନ । ହିତ-ବାଣୀ ପୁରୋହିତ-ନନ୍ଦନ ।୧୮।

---

ଓଣମାନଙ୍କ ବ୍ୟତୀତ ଅନ୍ୟତ୍ର କେବେ ଶୋଭା ପାଉନାହାନ୍ତି । ୧ନୟସ୍ୱରୂପା । ୨ଗୁଣବତୀ ଶ୍ରେଷ୍ଠ । ୩ଉତ୍କୃଷ୍ଟ ଲାବଣ୍ୟବତୀ । ୪ଫୁଟିଥିବା କାଶଫୁଲ ତୁଲ୍ୟ ହାସ ଯାହାର । ୫ପ୍ରଶସ୍ତ ରୂପ ପଦ ନନ୍ଦିତା ।

୧୫—ଚନ୍ଦ୍ର ବଡ ପଣ୍ଡିତ ତର୍କଶାସ୍ତ୍ରଜ୍ଞ କହିଲେ । ଅକାଶର ଚନ୍ଦ୍ର ଓ ଏ ସୁନ୍ଦରୀଙ୍କ ମୁଖଚନ୍ଦ୍ର ଏପରି ଦୁଇଗୋଟି ସୁନ୍ଦର ପଦାର୍ଥ । ଦେଖ ଚନ୍ଦ୍ରଙ୍କ ଯେ ହରିଣ ଅଛି । ସେ ସର୍ବଦା କଳଙ୍କ ବୋଲାଉଅଛି । ଆଉ ମୁଖ ଚନ୍ଦ୍ରର କେଶରେ ଯେଉଁ ହରିଣ ଶୋଭା ଅଛି ସେ ଲୋକମାନଙ୍କ ରଞ୍ଜିତ କରୁଅଛି ।

୧୬—ବିଜୁଳି ଓ ଏହା ଦେହ ଶରୀରରୂପ ବିଜୁଳି ମଧ୍ୟ ଏହିପରି । ଦେଖ, ବିଜୁଳି ଚଞ୍ଚଳ, ଓ ଏ ଦେହ ବିଜୁଳି ସ୍ଥିର ସୁନ୍ଦର । ରମ୍ଭା ଓ ଏ ଉରୁମ୍ଭାଙ୍କ ତୁଳନା ଏହିପରି । ଅର୍ଥାତ୍ ରମ୍ଭା କେବଳ ଏହାଙ୍କର ଉରୁରେ ଦୂରିତ ହୋଇଅଛି । ଏ ସ୍ତ୍ରୀ ରମ୍ଭାଠାରୁ ଉତ୍ତମ (ଅଧିକ) । ସମସ୍ତେ ଏପରି ସମାନ ହୋଇ ଦେଲେ ନୂଆ ସବୁପ୍ରକାରେ ବଢ଼ିଲ ଅଛନ୍ତି । ତେବେ ଏହାଙ୍କୁ ବଧୂମୁଖୀ ଓ ବଧୂହାସୀ କହ ।

୧୭—କବି ରୂପକ ଯମକ ପ୍ରଭୃତି ଅଳଙ୍କାରରେ ବ୍ୟାପକ ଥିବାରୁ କବିତା ହେଉଥିବା ରକ୍ଷା ପାଇଗଲେ । ଯେବେ କବିର କଳ୍ପବ୍ୟାପୀ କଳ୍ପନା କଳ୍ପବୃକ୍ଷପରି ହେବ । ତେବେ ଏହାଙ୍କର ଉପମାମାନଙ୍କୁ ଉପଯୁକ୍ତ ଭାବେ ଯୋଗାଇବ । ଚତୁର ଭାଟ ଏହା କହନ୍ତେ ରାଜପୁତ୍ର ଶୁଣି ମନ ମଜାଇଲା । ୧ମାଗଧ, ଭାଟ । ଦେଖ, ଚତୁର ।

୧୮—ସେ ସୁନ୍ଦରୀଙ୍କ ଗାର୍ଦ୍ଦ୍ୟାବର ପାଇବା ଦୁର୍ଲ୍ଲଭ ହେଲା, କିନ୍ତୁ ପ୍ରସନ୍ନଭାବେ ତାଙ୍କ ଦେଖାଦେବା ସୁଲଭ ହେବନାହିଁ । ରାଜକୁମାର ଏହା କହି ଦେବପ୍ରତିମା ପ୍ରାୟ ଅପଲକ ଚକ୍ଷୁରେ ସେ ଅଦ୍ଭୁତ ପୁରୁଷକୁ ଚାହିଁରହିଲେ । ଏହା ଶୁଣି ପୁରୋହିତ ପୁତ୍ର ଭଲ ବିଧାନ କଲା । ହିତବାଣୀ ପ୍ରକାଶ କଲା । ୧ ଅନିମିଷ ଦୃଷ୍ଟି, ନିର୍ନିମେଷ ଚକ୍ଷୁ ।

କି ଶ୍ୱେତର ଶ୍ୱେତ କଲ ଗୋସାଇ । ପତି ଉତ୍ପତ୍ତି ହୋଇଛନ୍ତି କାହିଁ ।
ଶ୍ରୀପତି-କୁମର ଥିଲେ ସମର । ହୁଅନ୍ତେ ହୁଅନ୍ତେ ବର-ବାରନାର ।
କହିଲା ଦେଇ ଶ୍ଳେଷ ଅଶ୍ଳେଷ । ଶୁଣି କି ଗୁଣିଶିର ରହସ୍ୟ । ୧୯ ।

ଚତୁର କହିଲା ଅତୁରବଶ । କି କରି କରିବା ଲୋକନ ଭାଷ ।
ଉତ୍ତର କଲା ସେ ସେବକ ଇତର । କଲ କର ଦାନ ପୁଣ୍ୟ-ନିକର ।
ଏ ଶିବ ଅର୍ଥେ ଶିବଙ୍କୁ ତୋଷ । ପଦ୍ମ ମଦ୍ମ କରି ପଦ୍ମ ମନାସ । ୨୦ ।

ହେ ଶୂର ବନ୍ଧୁ ଭୂ-ସୁର ଅଣାଅ । ଚଣ୍ଡୀ ଦର୍ଶନକୁ ଚଣ୍ଡୀ ଗୁଣାଅ ।
କର ଭଜନ ମଜ୍ଜନ-ରଭସରେ । ଅଭିରାମ ରାମ ଅବିରତରେ ।
ସୁଗ୍ରୀବ ବାଲିସଙ୍ଗେ ସେ ଭଲେ । ସୁନ୍ଦରୀ ତାରା ମନ୍ଦୋଦରୀ ଦେଲେ । ୨୧

ଉପଇନ୍ଦ୍ର ଭଞ୍ଜ ଶଙ୍କା-ଭଞ୍ଜନ । ରାମଭଦ୍ର ପଦ କୋପଦ-ଘନ ।
ଏଣୁ ପରମ ମନୋରମ ପଦ । ଛନ୍ଦରେ ପ୍ରସନ୍ନେ କୃଶଳେ ଆସ୍ପଦ ।
ଏ ଗୀତ ବର୍ଣ୍ଣନା କଥି । ଉଚିତେ ସୁଣିଥିବେ ବୁଝି ସୁବୁଦ୍ଧି । ୨୨ ।



---

୧୯—ହେ ଗୋସାଇଁ ଅପଣ କହିବା କଥାକୁ ସତ କରି ପାରୁଛ । ଯେବେ ଏ ସ୍ତ୍ରୀର ପତି ବୈକୁଣ୍ଠରେ ଜନ୍ମିଥାନ୍ତି ଯେବେ ଶ୍ରୀକୃଷ୍ଣ ପୁତ୍ର କାମଦେବ ଥାନ୍ତେ ତେବେ ଏ ସୁନ୍ଦରୀର ସମାନ ବର ହୋଇଥାନ୍ତେ । ତେବେ କଣ ହେବ । ଏହା ଶ୍ଳେଷ ଅଶ୍ଳେଷ କରି ପଣ୍ଡିତଙ୍କୁ ଅଭିପ୍ରାୟ ଜଣାଇ ଏ ମନ୍ତ୍ର କହିଲେ ।

୨୦—ଚତୁର ରାଜପୁତ୍ର ଅତୁର ହୋଇ କହୁଛ, ଆମ୍ଭେ ତାକୁ କପରି ଦେଖିବା ଓ କଥାବାର୍ତ୍ତା କରିବା ତହୁଁ ସେ ପୁରୁଷ ଉତ୍ତର କଲେ, ସେ କଥା କଣ ସାମାନ୍ୟ ହୋଇଅଛି ? । ଦାନ ପୁଣ୍ୟ କରି ଏହି ମଙ୍ଗଳ ସକାଶ ପଦ୍ମ, ପଦ୍ମଫୁଲ ମାନସିକ କରି ମହାଦେବଙ୍କୁ ସନ୍ତୁଷ୍ଟ କର ।

୨୧—ଅହେ ବୀର ଅନେକ ବ୍ରାହ୍ମଣ ଡକାଅ । ସେ ଚଣ୍ଡୀ ରାଜକନ୍ୟାକୁ ଦେଖିବାକୁ ଚଣ୍ଡୀପାଠ କରାଅ । ସୁନ୍ଦର ରାମଚନ୍ଦ୍ରଙ୍କୁ ଲଗି ରହି ସର୍ବଦା ଭଜନ କର । ସେ ସୁଗ୍ରୀବଙ୍କୁ ତାରା ଓ ବଳିଷଣ୍ଠକୁ ମନ୍ଦୋଦରୀ ଦାନ କରିଥିଲେ ।

୨୨—ଶ୍ରୀ ରାମଚନ୍ଦ୍ରଙ୍କର ପାଦପଦ୍ମ ବିପଦ (ଘ) ନାଶକ, ଅତଏବ ଉପେନ୍ଦ୍ର ଭଞ୍ଜଙ୍କ ଶଙ୍କା ଦୂର କରୁଅଛି, ଏହି ହେତୁରୁ ପ୍ରସନ୍ନ କୁଶଳଙ୍କ ଘରେ ମନୋହର ପଦ ଛନ୍ଦରେ ପ୍ରକାଶ ପାଉଅଛି ଏ ଗୀତ ଉଚିତ ବର୍ଣ୍ଣନା ବଖାଣ କରୁଅଛି । ପଣ୍ଡିତମାନେ ସୁଚିତ୍ତରେ ଉଚିତ ଭାବେ ବୁଝନ୍ତୁ ।



## ନବମ ଛାନ୍ଦ ।



### ରାଗ ମଙ୍ଗଳ ।


ଣ ଜନେ ଗୁଣ ମନେ ଏଥି ରହସ୍ୟ । ନେଶ କେତେ ରଙ୍ଗେ
ବିଦୂଷକ ପ୍ରବେଶ । ୧ ।
ଲୋହିତ-ଅମ୍ବର ପିନ୍ଧି କି ଆଡ଼ମ୍ବର । ତାମ୍ବୁଳ-ବୋଳରେ ଜରଜର ଅଧର ।୨।
ପ୍ରଲମ୍ବ ପ୍ରବାଳମାଳ ଅବଲମ୍ବରେ । ହୃଦୟ ଶୋଭା ଉଦୟ ଅତିଶୟରେ । ୩ ।
ତରୁଣ ଅରୁଣ-ପଦ୍ମ ଗୋଟିଏ ତହିଁ । ସେହି ସୂତ୍ର ସହିତେ ଗଳାରେ ଗଳାଇ ।୪
ସଙ୍ଗତରେ ଆଗତ ତା୧ ପୋଟା ଗୋଟିଏ । ବୀର ସନ୍ନିକଟ ହୋଇ ପ୍ରକଟ ହୁଏ ॥
୧ଇଙ୍ଗିତେ ଭାଷିଲା ଅଳ୍ପ ହସିଲା ହୋଇ । ତୁମ୍ଭର କଲା ବିଗ୍ରହ ଶୁଣିଲି ମୁହିଁ ।୬।
ମୋ ବଳାରେ ସେ ନବୀନା ଦରଶନକୁ । କେ ଦେବ ହେ ବୋଲି ଦେବ ଆଣ
ମନକୁ । ୭ ।
ଠାରେ ସେଠାରେ ପ୍ରକାଶି ଦେଖ ବୋଇଲା । ମଣ୍ଡପମଣ୍ଡଣୀ ନେଇ ଆଗ ଲୁଚାଇଲା
କାହିଁଛି କାହିଁଛି ବୋଲି ବିରାଟ ଦେଶ । ଖୋଜ ହେଜ ଜଳାଗେ ହୋଇଛି ପ୍ରକାଶ

---

### ନବମ ଛାନ୍ଦ ।

୧—ଅହେ ଲୋକମାନେ ଶୁଣ, ଏହାର ରହସ୍ୟ ମନେ ମନେ ଗ୍ରହଣ କର । ବିଦୂଷକ କେତେ ପ୍ରକାର ବେଶହୋଇ ପହଞ୍ଚିଲା । ରଜାଙ୍କ ପାଖରେ ହାସ୍ୟ କରାଇବା ଓ ଶୃଙ୍ଗାର ବଢ଼ ଲଗାଇଦେବା ଓ ଅପ୍ରାପ୍ତବସ୍ତୁ କରାଇବାକୁ ଥିବାଲୋକକୁ ବିଦୂଷକ କହନ୍ତି ।

୨—ରଙ୍ଗଲୁଗା କେତେ ଅଡ଼ମ୍ବରରେ ପିନ୍ଧିଥିଲା । ଓଷ୍ଠ ପାନ ବୋଳରେ ଜରଜର ହୋଇଥିଲା ।

୩—ଲମ୍ବମାନ ପୋହଳା ମାଳା ଧାରଣ କରିଥିବାରୁ ଛାତି ଅତିଶୟ ସୁନ୍ଦର ହୋଇଥିଲା ।

୪—ନୂଆନାଲି ପଦ୍ମଟିଏ ସେହି ପୋହଳା ସୂତାସଙ୍ଗେ ଗଳାରେ ଲଗାଇଥିଲା ।

୫—ସ୍ତ୍ରୀ ଓ ପୁରୁଷ ଲକ୍ଷଣବନ୍ତିଏ ସ୍ତ୍ରୀ ଗୋଟିଏ ସେ ବିଦୂଷକ ସାଙ୍ଗେ ଆସି ରାଜପୁତ୍ର ନିକଟରେ ପ୍ରବେଶ କଲା । ୧ପୋଟା, ସ୍ତ୍ରୀ ପୁଂସଲକ୍ଷଣା ।

୬—ସେ ଅଳ୍ପ ମୃଦୁହସପର ହୋଇ ହସ୍ତାଦିଦ୍ୱାର ସୂଚନା କରି କହିଲା, ହେ ବୀର ପ୍ରକାଶ କରି ଯାଇଥିବା ଆପଣଙ୍କର ବିଗ୍ରହ ମୁଁ ଶୁଣିଲି । ୧ଇଙ୍ଗିତ, ହସ୍ତାଦିଦ୍ୱାର ଭାବ ।

୭—ହେ ଦେବ ? ମୋ ବିନା କିଏସେ ନବୀନାର ଦର୍ଶନ କରାଇ ପାରିବ ଏହା ଜାଣ ।

୮—ସେ ସେଠାରେ ମଣ୍ଡପ ମଣ୍ଡଣୀ (ପତାକା)କୁ ଠାରରେ ଲକ୍ଷ୍ୟକରି ଦେଖ, ବୋଲି କହିଲା । ଆଗକରି ଅକ୍ଷିକି ଲୁଚାଇଲା । ପତାକାରେ ମୀନର ସାଦୃଶ୍ୟ ଥିବାରୁ ବାଳାର ମୀନନେତ୍ର ଦେଖିବୋଲି ଠାରିଲା ।

୯—ବିରାଟ ଦେଶ (ମତ୍ସ୍ୟଦେଶ) କାହିଁ ଅଛି, ବୋଲି ଖୋଜ ହେଜ ପୋଖରୀରେ ଅଛି ବୋଲି କହିଲା । ଅର୍ଥାତ୍ ପୋଖରୀରେ ଥିବା ମୀନପରି ତା ଚକ୍ଷୁ ଏହା ଠାରିଲା ।

ପୋଷା ନଃ ଖଞ୍ଜନଃ କୁରଙ୍ଗ ଅଣି । ସୁରଙ୍ଗ ନୟନଯୁଗ୍ମ ହେଲା ସେ ପୁଣି ।୧୦
୧ଇନ୍ଦିରା-ମନ୍ଦିର ଇନ୍ଦୀବର ଅଣାଇ । ଇନ୍ଦ୍ରସ୍ଥରେ ଅଙ୍ଗୁଳି ଦେଖାଇ ଅଣାଇ ୧୧।
ଅଙ୍ଗେ ଅଙ୍ଗେ ଦେଖାଇବି ମୁଁ ଏହିମତେ । ତେ ତହିଁ ହସିଲେ ପରଶଂସିଲେ
କେତେ । ୧୨ ।

ସ୍ତ୍ରୀ-ପୁଂସ-ଲକ୍ଷଣା ଯହିଁ ୧ଲକ୍ଷଣାଗଣ । ୨ମାର୍ଗଣ ହେଲେ ତା ତନୁତନୁଙ୍କ
ସ୍ଥାଣ । ୧୩ । ପୁଣ ପ୍ରତିଗୁଣ କଷ୍ଟ କଷ୍ଟ ପାଇଲେ । ଅନନ୍ୟ ଉପମାରେ ଅନୁଗତ
ହୋଇଲେ । ୧୪ । ଦୟା-ହୃଦୟା ସେ ରମା ଯେଣ ମନକୁ । ଗ୍ରହ ଚେତ
ଅନୁଗ୍ରହ କଲା ତାହାଙ୍କୁ । ୧୫ । ଏ ଅନୁମାନ ସେ କର ସୁବୁଦ୍ଧି । ବିରୋଧୀତ
ଏ ବଧିରେ କରନ୍ତି ସିଦ୍ଧି ।୧୬। ବନ୍ଧୁକ-ବନ୍ଧୁ-ଅଧର ପ୍ରୟୋଗ ଖ୍ୟାତ । ସୁନ୍ଦର
ଦର-ସୋଦର-ହାସୀ କହନ୍ତ । ୧୭ । ଶୋଭା-ଯଶ ପ୍ରସ୍ତୁରନ୍ତ ସତ ଗତର ।
ଧ୍ୟାନେ ଦର୍ଶନେ ଏସନେ ହୋଇଲେ ଦ୍ୱାର । ୧୮ । ଅନୁଚିତ ବଚନେ କ
ଶତ୍ରୁକୁ ଅଣ । ଶତ୍ରୁବନ୍ତକୁ ସୁଜାଣ ବୋଲ୍ଲଣ ଜାଣ । ୧୯ । ଶ୍ରବଣରେ ଚଞ୍ଚଳ
ଗଲା ଦବଣ ହୋଇ । ମାର ମାରଣ ଉଦ୍ୟମ ଆରମ୍ଭି ତହିଁ । ୨୦ । ଶିଳୀମୁଖ

---

୧୦—ପୋଷାହୋଇଥିବା ନଃ ଖଞ୍ଜନ ପକ୍ଷୀ ଓ କୁରଙ୍ଗ (ମୃଗ)କୁ ଆଣି ସୁରଙ୍ଗ (ଚଞ୍ଚଳ) ନୟନ ଯୁଗ୍ମ ହେଲା । ତାଙ୍କ ଚକ୍ଷୁ ଏପରି ଚଞ୍ଚଳ ବୋଲି ସୂଚନା କଲା ।

୧୧—ପଦ୍ମ ଓ ନୀଳୋତ୍ପଳ ଆଣି ମୁଖ ଓ ଚକ୍ଷୁ ଉଦ୍ଦେଶ୍ୟରେ ଅଙ୍ଗୁଳି ଦେଖାଇ ଠାରିଲା । ମୁଖ ପଦ୍ମପରି ଓ ଚକ୍ଷୁ ନୀଳୋତ୍ପଳ ବୋଲି ସୂଚନା ଦେଲା ୧ଇନ୍ଦିରା ମନ୍ଦିର, ଲକ୍ଷ୍ମୀଙ୍କର ସ୍ଥାନ (ପଦ୍ମ) ।

୧୨—ପୁଣି ସେ କହିଲା, ମୁଁ ଏପରି ପ୍ରତିଅଙ୍ଗ ଦେଖାଇବି । ଏହା ଶୁଣି କେତେକେତେକ ହସିଲେ, କେତେକ ପ୍ରଶଂସା କଲେ ।

୧୩—ସେ ସ୍ତ୍ରୀପୁଂସ ଲକ୍ଷଣା କହିଲା । ଉପମାସମୂହ ସେ ସୁନ୍ଦରୀର ପ୍ରତିଅଙ୍ଗରେ ଶୋଭା ମାଗିଲେ ଜାଣ । ୧ଲକ୍ଷଣା, ଉପମା । ୨ମାର୍ଗଣ, ମାଗିବା ଲୋକ ।

୧୪—ମାଗିବାରୁ ପୁଣି କଷ୍ଟ କଷ୍ଟ ଗୁଣ ପାଇ ଅନନ୍ୟମାନଙ୍କ ଉପମାଦର୍ପଣରେ ଅନୁଗତ ହେଲେ ।

୧୫—ସେ ସ୍ତ୍ରୀର ଦୟାବତୀ, ଅତଏବ ଅନୁଗ୍ରହ କରି ସେ ଉପମାନମାନଙ୍କୁ ଅନୁଗ୍ରହ କଲେ ଏହା ଜାଣ ।

୧୬—ପଣ୍ଡିତମାନେ ମନରେ ଏହି ଅନୁମାନକରି ବିରୋଧ ଉପମାନଙ୍କୁ ଏ ବିଧିରେ ତୁଳନାରେ ସିଦ୍ଧ କରିଅଛନ୍ତି ।

୧୭—ବନ୍ଧୁକ ବନ୍ଧୁ ଅଧର ବୋଲି ପ୍ରୟୋଗ କରିବା ଖ୍ୟାତ ହୋଇଅଛି ଏବଂ ସୁନ୍ଦର ଦର ସୋଦର (ଶଙ୍ଖ ସଦୃଶ) ହାସୀ ବୋଲି ମଧ୍ୟ କହନ୍ତି ।

୧୮—ଉପମାନମାନେ ଏହିପରି ସତତର ଶୋଭା ଯଶ ପ୍ରସ୍ତୁତ କରୁଅଛନ୍ତି । ଯେବେ ସେ ସୁନ୍ଦରୀର ଶୋଭାକୁ ଧ୍ୟାନଦ୍ୱାରା ଦେଖିବାର ଦ୍ୱାର ହୋଇଅଛନ୍ତି । ଏହି ଉପମାନମାନଙ୍କ ତୁଳନାରେ ସେ ସୁନ୍ଦରୀର ଶୋଭା ଧ୍ୟାନକରି ଦେଖିବାକୁ ହେବ ।

୧୯—ଏହାକୁ ଅନୁଚିତ ବୋଲି ସେ କହିଲେ, ଏହା ଯଦି ବିଚାର କରୁଅଛ । ତାହାହେଲେ ସେ ଶତ୍ରୁବନ୍ତ ବନ୍ଧୁକରୁ ବଳବୋଲି ଜାଣ ।

୨୦—ଏହା ଶୁଣିବାରେ ମନ ଚଞ୍ଚଳଗଲା । ସେଠାରେ କନ୍ଦର୍ପ ମାରିବା ଉଦ୍ୟମ ଆରମ୍ଭ କଲା ।

ଗୁଣେ ଶିଲୀମୁଖ ଖୋଇଲା । ଭଞ୍ଜନ୍ନ ଅଞ୍ଜନ ସେ କୁମର ହୋଇଲା ॥ ସ୍ୱଗୁଣଙ୍କୁ ଷଡ଼ଭଳ ଜାଣୁ କି ଭୁବ ॥ ଉଚାରିଲା ସେ ବାଣୀକି ଶୁଣିଛୁ ମୁହିଁ ।୨୨। ବାମନଙ୍କ ଦର୍ଶନେ ମୁଁ ନିଅ ଗମନ କଲି । ଉଚ୍ଛିସ୍ଥିଳୀଠାରେ କାତ୍ୟାୟିନୀ ଦେଖିଲି । ୨୩ । ସେହି ସେହିଠାକୁ କରୁଥିଲା ଗମନ । କହି କହି ଗଲା ଯବ୍ୟ ସିମା ଶୋଭନ ।୨୪। ସେ ଧନକୁ ଯଉବନ ସେବନ ତାକୁ । କରୁଥିଲା ନ ଥିଲା ଉପମା ଦେବାକୁ ॥ କି କହିଲ ସେ ଉକ୍ଷାସେ ମନ୍ତ୍ରୀ-ଜ ଭଣି । ସୁଲକ୍ଷଣା ସେ ଲକ୍ଷଣା ଶୁଣିମା ପୁଣି ॥ ପୋଝା ରସାବେଶେ ରସାଇଲା ମାନସ । ରତି ପେଣ ଉଚିତେ ତା ଛନ୍ଦେ ପ୍ରବେଶ । ୨୭ । ମନୋଭବ ସ୍ୱର୍ଣ୍ଣ ଭାବ ଉବଜାୟୁକୁ । ଯୌବନ-ଶିଳ୍ପୀ ଫଡ଼ସୁ ଶସ୍ତଚଯ୍ୟକୁ । ୨୮ । ଉସମୟ୍ୟ-ସମୟକୁ ଅଙ୍କୁର ରତେ । ସମା କୁଚ ସମାନୁଜ ବାଟକ୍କା ହସ୍ତେ । ୨୯ । ସୁମରିଲ ସୁମତିରେ ପଦ୍ମଭାକାର । ହୋଇବ ଦଇବ କୃତ୍ୟ ଅଛୁ ଏଥିର । ୩୦ । ରଞ୍ଜନ ଧୈର୍ଯ୍ୟ-ଭଞ୍ଜନ ଗଦା ରୋମାଳୀ । ଅର୍ଦ୍ଧଚନ୍ଦ୍ର ଶିର ଭଳି ଅଲକ ଝଳି ।୩୧। ପରଶୁ ପରମରମ୍ୟ ଭ୍ରୂ ଧରୁଛି । ମନ ବାନ୍ଧନକୁ କେଶ ପାଶ କରୁଛି ।୩୨। ହୋଇଛି ନିତମ୍ବ-ବିମ୍ବ ଚକ୍ର ପ୍ରକାଶ । ପଦକ ପଦକ

---

୨୧—କନ୍ଦର୍ପ ନନ୍ଦର ଭ୍ରମରମୟ ଧନୁର୍ଗୁଣରେ ବାଣ ବସାଇଲା । ଶିଳୀମୁଖ, ବାଣ ଓ ଭ୍ରମର ।

୨୨—ଗଜପୁଷ୍ପ ବଶ୍ୱରବଳା, ତୁ ଜାଣୁ କି ବୋଲି ପଚାରିଲା । ସୋକ୍ଷ କହିଲା ମୁଁ ଶୁଣିଛି ।

୨୩—ମୁଁ ବାମନଙ୍କୁ ଦେଖିବାକୁ ଯାଉଥିଲି । ଉଚ୍ଛିସ୍ଥିଳ ନଗରରେ ଗୋଟିଏ ବିଧବା ସ୍ତ୍ରୀକୁ ଦେଖିଲି । କାତ୍ୟାୟିନୀ, କାଷାୟ ବସ୍ତ୍ରଧାରିଣୀ ବିଧବା ସ୍ତ୍ରୀ ।

୨୪—ସେ ବିଧବା ମଧ୍ୟ ସେ ବାମନଙ୍କ ପାଖକୁ ଯାଉଥିଲା । ସେ ସମା ସବୁ ସୌନ୍ଦର୍ଯ୍ୟ କହି ଯାଉଥିଲା ।

୨୫—ସେ ଧନକୁ ତାଙ୍କ ଯୌବନ ହୋଇଥିଲା । ତାକୁ କହି ଉପମା ଦେବାକୁ ନଥିଲା । ନିରୂପମା ହୋଇଥିଲା ।

୨୬—ମନ୍ତ୍ରିପୁତ୍ର ଆନନ୍ଦିତ ହୋଇ ପଚାରିଲା ସେ ବିଧବା କଣ କହୁଥିଲା ହେ ସୁଲକ୍ଷଣା ? ସେ ବର୍ଣ୍ଣିବା ଶୁଣିବା କହ ।

୨୭-୨୮—ପୋଝା ସରସ କଥାବାର୍ତ୍ତା ଏହାଙ୍କ ମନ ରଞ୍ଜାଇଲା । କନ୍ଦର୍ପ ଯୌବନ କାରିଗର ଦାସ ସହିତ ଶସ୍ତ୍ରମାନଙ୍କୁ ତା ଅଙ୍ଗରେ ଦେଖି ଶିବଙ୍କ ବା ସଂସାରକୁ ଜୟ କରିବାକୁ ଉଚିତ ବିଚାରକରି ରତି ଦେବୀଙ୍କ ସେ ସୁନ୍ଦରୀର ଅଙ୍ଗରେ ପ୍ରବେଶ କରିଅଛି । ତା ମନରେ ଶୃଙ୍ଗାର ଭାବ ଉଦୟ ହେଲାଣି ।

୨୯—ସେ ସୁନ୍ଦରୀର ସରସ ଋତୁ ସମୟକୁ ସେ ହୃଦୟାରମାନଙ୍କର ଅଙ୍କୁର ପ୍ରଥମାରମ୍ଭ କଲା । ସେତେବେଳେ ସେ ସୁନ୍ଦରୀର ସ୍ତନ ଉରଡବାଟକ ପରି ହୋଇଥିଲା ।

୩୦—କନ୍ଦର୍ପ ସୁମତିରେ ସ୍ମରଣ କରୁଥିଲା । କମେ ଏ ସ୍ତନ ପଦ୍ମପରି ହେବ । ଦୈବ ଏହା ସ୍ୱୀକାର କରିବ ।

୩୧—ରୋମାବଳୀ ଅନୁରକ୍ତି ଲୋକର ଧୈର୍ଯ୍ୟ ଭାଙ୍ଗିବାକୁ ଗଦାପରି ହୋଇଅଛି ଚୂର୍ଣ୍ଣକୁନ୍ତଳ ଅର୍ଦ୍ଧ ଚନ୍ଦ୍ରାକାର ବାଣପରି ଶୋଭିତ ହୋଇଅଛି ।

୩୨—ଭ୍ରୂଲତା ପାରେସାର ଶୋଭା ଧାରଣ କରୁଅଛି ! କେଶପାଶ ମନକୁ ବାନ୍ଧିବାକୁ ପାଶପରି ହୋଇଅଛି ।

କରେ ସୁମଧ୍ୟଦେଶ । ୩୩ । ଈକ୍ଷଣ-ଶର କଟାକ୍ଷ ତୀକ୍ଷଣ ବନ୍ଧ । କପାଳଙ୍କାର
ସାରଙ୍ଗ ନିକଟ ତହିଁ ।୩୪। ପ୍ରଫୁଲ୍ଲ କଜ୍ଜଳଗୁଣ କରି ସଂଯୋଗ । ୧ସବ୍ୟସାଚୀ
ଶୀକ୍ଷା ଶିକ୍ଷା କରେ ଅନଙ୍ଗ । ୩୫ । ବାଜଲାନ୍ତ ଲୋକାତୁର ତୂର ନୂପୁର ।
୧ରଣରଣ କନ୍ଦୁଛନ୍ତି ସେ ନିରନ୍ତର । ୩୬ । ଯେତେକ କହୁଛି ମୁଁ ତେତେକ
କହିଲି । ମଉନ ହୋଇଲ୍ଲ ପୋଟା ଏତେକ ବୋଲି ।୩୭। ଅଲପ କି କଲପତରୁ
ସେ ତରୁଣୀ । ସୁମନା ଲକ୍ଷ୍ୟ କାମନା-ସିଦ୍ଧ-କାରିଣୀ ।୩୮। ଚିନ୍ତାଂସ
ବୋଲୁଁ ଯାର ବରରେ ଭାଷା । ସୁଭାବ ଭାବନା ଆମ୍ଭ ଲୋଚନ ଆଶା । ୩୯ ।
ସଫଳ ନ କରି ଏହା କରିବ ଠିକ । ଅର୍ଥିକ ଆମ୍ଭେ ତୁମ୍ଭେ ସେ ପଥ ପଥିକ ।୪୦।
ଦେଖାଅ ୧ସରଣି ଆନ ଶରଣ ନାହିଁ । ଉସ୍ଥିତ ନାଶିବା ବୋଲି ସସଂଚ
ହୋଇ । ୪୧ । ଆମ୍ଭ ଆସ୍ଥାଭ ଏତେକ ଦର୍ଶନ ଦେବା । ତୁମ୍ଭ ଉଦ୍ୟମ ଉଦୟୁ
ପ୍ରସନ୍ନ ହେବା । ୪୨ । ସୁମନ୍ତ୍ର-ଶିଷ୍ୟ କହିଲେ ମନ୍ତ୍ରବଲରେ । ଜବନରେ
ନେବୁଁ ରମା କେଲିବନରେ ।୪୩। ସତବର ସୁତା ବୋଲେ ଏମନ୍ତ ହେଲେ ।
ଶଚୀ-ବରପଦ ଭୁକ୍ତ କରିବେ ଭଲେ ।୪୪। ଯେଉଁ ଅଭିରାମ ରାମ ବାମନମୂର୍ତ୍ତି ।

---

୩୩—ନାଭିମ୍ନ ତଳପର ହୋଇଅଛି । କଟି ବନ୍ଧ (କଟିସୂତ୍ରରେ ଥିବା ମଣି ବିଶେଷ) ରୁ ପରିତୁ କରୁଅଛି ।

୩୪—ଅକ୍ଷି ଶରପରି ହୋଇଅଛି । ସେ କଟାକ୍ଷରୂପକ ତୀକ୍ଷ୍ଣତା (ଧାର) ଧାରଣ କରଅଛି । ତା ପାଖରୁ ଭଲତା ଲଲାଟ ଶାର୍ଙ୍ଗ ଧନୁପରି ଅଛି । କନ୍ଦର୍ପ ତହିଁରେ କଜ୍ଜଳଗାର ରୂପକ ଗୁଣ ଚଢ଼ାଇ ଅର୍ଜୁନପରି ଦୁଇହାତରେ ଶର ମାରିବା ଶିକ୍ଷା କରୁଅଛି । ୧ସବ୍ୟସାଚୀ, ଅର୍ଜ୍ଜୁନ ।

୩୫—ବର୍ତ୍ତମାନ ନୂପୁର ତୂଳବାଦ୍ୟ ସବୁ ଲୋକମାନଙ୍କୁ ଅତୁର କରି ବାଜିଲଣି । ସେବାଜା ସବୁବେଳେ ରଣରଣ ଧ୍ୱନିକରି । କନ୍ଦର୍ପ ନାମ ପ୍ରକାଶ କରୁଅଛନ୍ତି । ୧ରଣରଣ କନ୍ଦର୍ପ ଓ ରଣ ଧ୍ୱନି ।

୩୬—ସେ ବିଷୟ ଯାହା କହୁଥିଲ ? ମୁଁ ତାହାସବୁ କହିଲି । ପୋଟା ଏହା କହି ତୂନି ହେଲା ।

୩୮-୩୯—ସେ ସୁନ୍ଦରୀ ସାମାନ୍ୟ ନୁହେଁ । ସେ କଳ୍ପଲତା ପରି । ଦେବତାପରି ବାଞ୍ଛାପୂରଣକାରିଣୀ ଅଟେ । ଏହା ଅଦ୍ଭୁତ ପ୍ରବନ୍ଧ କହିବାରୁ ରାଜପୁତ୍ର କହିଲେ । ତାଙ୍କୁ ଦେଖା ହେବାରୁ ଆମ୍ଭର ପ୍ରକୃତରେ ଭାବନା ହେଉଅଛି ।

୪୦—ଆମ୍ଭର ଏ ରତ୍ନ ସଫଳ ନକରି ଅବଶ୍ୟ ଏ କାର୍ଯ୍ୟ କରିବ ଏ ବିଷୟରେ ଆମ୍ଭେ ପ୍ରାର୍ଥୀ ହୋଇଅଛୁଁ ତୁମ୍ଭେ ସେ ବାଟର ପଥିକ ହୋଇଅଛ ।

୪୧—ସେ ବାଟ ଦେଖାଅ, ଅନ୍ୟ କେହି ଶରଣ ନାହିଁ ଶୁଣିକରି ସେ ବିଷୟ ଜଣ୍ଣିତ ଦେଖିକରି ତାହା ଦୂର କରିବା ୧ସରଣି, ବାଟ ।

୪୨-୪୩—ଅଦ୍ଭୁତ ପ୍ରବନ୍ଧ କହନ୍ତେ, କେବଳ ଦେଖା କରାଇଦେବା ଆମ୍ଭର ଅଧୀନ । କିନ୍ତୁ ସେ ଅନୁରକ୍ତ ହେବା ତୁମ୍ଭ ଉଦ୍ୟମରେ ହେବ । ଆମ୍ଭେ ମନ୍ତ୍ରବଳରେ ତୁମ୍ଭଙ୍କୁ ସେ ସୁନ୍ଦରୀ ବଗିଚାକୁ ବେଗରେ ନେଇଯିବୁଁ ।

୪୪—ମନ୍ତ୍ରିପୁତ୍ର କହିଲେ, ଏହା ହେଲେ ଏ ରାଜପୁତ୍ର ଇନ୍ଦ୍ରପଦକୁ ଅକ୍ଳେଶରେ ତୁଚ୍ଛ କରିବେ ।

ଉପେନ୍ଦ୍ର ଭଞ୍ଜର ସକଳ ସମ୍ପତ୍ତି ।୪୫। ପଦ ଧ୍ୟାନେ ମୋର ଗୀତ ପଦ ସ୍ଫୁରିତ ।
ଶିବ ନୋହେ ପୂର୍ଣ୍ଣ କରିବାରେ ଏ ଗୀତ । ୪୬ ।



## ଦଶମ ଛାନ୍ଦ ।



### ରାଗ କଉଶିକ ।

ବୃଦଭୀର ବନବିହାର ।

ହି ଭବେ ସେ ମଧୁର ମଧୁ-ମାସେ ମଧୁର ମଧୁ-କଣ୍ଠ-ଭାଷୀ ।
ସୁଧାଂଶୁ-ପ୍ରଭ ସୁଧା-ସୁଧେ ବସୁଧା-ମଣ୍ଡନା ସୁଖେ ଥିଲା ବସି ।
ଚାହିଁ ସ୍ତନକୁ । କି ଯେନ ମର୍ଦ୍ଦଳ ବଜାଇ ।
ଖେଳିବା ଗୋ ପଶା ଚପଳା-ଭଙ୍ଗିମାକୁ ଚାହିଁ ବୋଲଇ ! ୧ ।
ଶଚୀ-କଳା-କଳା ଲାଳସୀ ସୁନ୍ଦରୀ-କଳାପେ ପ୍ରକାଶିଲା ଛଳ ।
ଜଗତେ ଯୁଗତେ ପ୍ରାବୃଟ ଆଗତେ ପ୍ରକଟ ହୁଅଇ ସେ ଖେଳ ।
ଏକାକାର ସେ । ବର୍ଦ୍ଧିତ ୧ମିଥୁନ ହେବାରେ ।
୨କରୀ-ଦ୍ୱିଜର କାଠି କରେ ଆନନ୍ଦ ଦାନତ ପାଣି ଢାଳିବାରେ । ୨ ।

---

୪୫—ଯେଉଁ ମନୋହର ମୂର୍ତ୍ତି ରାମଚନ୍ଦ୍ର ବାମନ ଅବତାର ଧାରଣ କରିଥିଲେ । ଏବେ ତାହା ଉପେନ୍ଦ୍ର-ଭଞ୍ଜଙ୍କର ସର୍ବସ୍ୱ ଅଟନ୍ତି ।

୪୬—ତାହାଙ୍କର ପାଦପଦ୍ମ ଧ୍ୟାନକରି ମୋର ଗୀତ ରଚନାରେ ପଦମାନେ ପୂର୍ଣ୍ଣ ଅଛନ୍ତି । ଅତଏବ ଏ ଗ୍ରନ୍ଥ ପୂର୍ଣ୍ଣକରିବାକୁ କଷ୍ଟ ବୋଧ ନହେଁ ।



## ଦଶମ ଛାନ୍ଦ ।

୧—ଏହି ସମୟରେ ମନୋହର ଚୈତ୍ର ମାସରେ କୋକିଳପରି ମଧୁର ଭାଷିଣୀ ଚପଳାବତ୍‌କାରିଣୀ ସେହି ଭୂମଣ୍ଡଳା ଚନ୍ଦ୍ରଧବଳ ସୌଧର ଉପରେ ବସିଥିଲା । ସ୍ତନକୁ ଚାହିଁ କାହିଁକି ମାଦଳ ବଜାଇ ସଖୀକୁ କହିଲା । ଅଗୋ ସଖୀ ପଶା ଖେଳିବା । ପଶାସାର ଓ ମର୍ଦ୍ଦଳର ସ୍ତନ ସାମ୍ୟଥିବାରୁ ଉକ୍ତିରେ ସ୍ତନମର୍ଦ୍ଦନ ପ୍ରକାଶ କଲା ।

୨—ଗାଇବା ବଜାଇବା ପ୍ରଭୃତି ଚଉଷଠି କଳା ବା କାମକଳା ସ୍ନେହୀ ଶଚୀକଳା ସଖୀ ସ୍ତ୍ରୀସମୂହରେ ଥାଇଁ ଛଳରେ କହିଲା । ବର୍ଷାକାଳ ହେଲେ, ଏ ଜଗତରେ ଉଚିତ ମତେ ସେ ପଶାଖେଳ ପ୍ରକଟ ହୁଏ । ତେଣୁ ସେ ଖେଳ ଓ ବର୍ଷାକାଳ ଏକାପରି । ଖେଳ ଦୁଇ ଜଣରେ ହୁଏ ଓ ନରମାନେ ହାତଗୁଡିବା ହାତ ତାଡକାଗ୍ରର କାଠିରେ ଦାନ ପକାଇ ଆନନ୍ଦିତ ହୁଅନ୍ତି । ବର୍ଷାକାଳ ମିଥୁନମାସ ହେଲେ ହୁଏ । କାଠିନରେ ( ନକ୍ଷତ୍ର ସ୍ୱରରେ ) ପାଣି ଢାଳିବା ଦ୍ୱାରା ଦ୍ୱିଜର ( ପକ୍ଷିମାନଙ୍କର ) ଆନନ୍ଦକୁ ଦାନକରେ ( ଖଣ୍ଡନ କରେ ) ୧ମିଥୁନ, ଅଷାଢ଼ମାସ ଓ ଦୁଇଜଣ । ୨କରୀ ଦ୍ୱିଜତ, ହାତୀ କାନ୍ତର ଓ କରେ ପକ୍ଷିମାନଙ୍କର ।

ଦେଖୁଁ ଦେଖୁଁ କରେ ୧ସୁମନା ଉତ୍ଫୁଲ୍ଲ ପୁନଃପୁନଃ ଶବ୍ଦ ପ୍ରଚୁର ।
କେତେବେଳେ ସେହୁ ଅଚଳ ଭଜଇ ଚଳ ପ୍ରଚଳ ଘନ-ସାର ।
ମାର ପ୍ରତାପ । ଘୋଷ ଅଧିକରେ ପ୍ରକାଶ ।
ସେ କାଳ ହୋଇଲେ ସେ ଖେଳ ଖେଳିବା ନ୍ୟାସ୍ତବଳେ ହୁଅ ଆବେଶ । ୩ ।
ବସନ୍ତେ ହୁଏ ଦ୍ୱିଗୁଣ ଏକ ପ୍ରାୟେ ସମସ୍ତ ସଜା ହୋଇ ଜାତ ।
ପାଞ୍ଚ ମନୋଭବ ଅଧିକ ହୁଅଇ ୧ଶଚୀ-ବରେ ସେ ପ୍ରଶଂସିତ ।
ଏତେ ସୁଖଦ । ୨ଗନ୍ଧର୍ବ ଲୀଳାମାନ ରଚ ।
୩ତରଣୀ ପ୍ରଭ ୪ ନାଗେଶ୍ୱର ଶୋଭାକୁ ବଢ଼ାଇ ୫ ପଦଗରେ ରୁଚ । ୪ ।
ବାଳା କହିଲା ହେଲାପରେ ତରସ ବୀର-ରସ ପିନ୍ଧା ସେ ସନ୍ଧ ।
ବାଣୀ ବାଣୀଜା ଭଣିଲା ମୁଁ ହେଜୁଛି ଯୋଷା ଈର୍ଷ୍ୟା ଅଛି ତହିଁ ।
ଶୁଣି ରମଣୀ । ବେଗ ଅଧୋମୁଖୀ ହୋଇଲା
ଏ କାଳେ ମିଳ କାଦମ୍ବିନୀ ନବୀନ-ନିତମ୍ବିନୀ ଆଗେ ବୋଇଲା । ୫ ।

---

୩—ଖେଳ ଦେଖୁଁ ଦେଖୁଁ ବିଳାସିମାନେ ଆନନ୍ଦିତ ହୁଅନ୍ତି । ବହୁ ଶବ୍ଦ ଦାନ ପ୍ରଚୁର ହୁଏ । ସାଙ୍ଗସବୁ ଘନ ଘନ ଚଳପ୍ରଚଳ ହୁଏ । ପୁଣି କେତେବେଳେ ସେସବୁ ଅଚଳ ହୁଅନ୍ତି । ମାରମାରବୋଲି ପ୍ରତାପ ଓ ଶବ୍ଦ ଅଧିକ ପ୍ରକାଶ ହୁଏ । ବର୍ଷାକାଳରେ ଦେଖୁଁ ଦେଖୁଁ ମାଳତୀ ଫୁଟେ । ବର୍ଷାତ ହୁଏ । ବଡ଼ ବଡ଼ ମେଘ ଚଳପ୍ରଚଳ ହୁଅନ୍ତି । ପୁଣି କେତେବେଳେ ସ୍ଥିର ହୁଅନ୍ତି । କନ୍ଦର୍ପର ପ୍ରତାପ ଓ ଘଡ଼ଘଡ଼ି ଅଧିକ ହୁଏ । ଅତଏବ ସେ କାଳ ହେଲେ ସେ ଖେଳ ଖେଳିବା । ବର୍ତ୍ତମାନ ନ୍ୟାସ୍ତବଳ ଖେଳରେ ପ୍ରବେଶ ହୁଅ । ୧ସୁମନା ଓ ମାଳତୀ । ଉତ୍ଫୁଲ୍ଲ, ଆନନ୍ଦିତ ଓ ପ୍ରସ୍ଫୁଟିତ ।

୪—ବସନ୍ତ କାଳରେ ନ୍ୟାସ୍ତବଳ ଖେଳ ହୁଏ । ସେ କାଳ ଓ ସେ ଖେଳ ଦୁହିଁଙ୍କର ଏକାପରି ରୀତି ହୁଏ । ଖେଳରେ ରଜାସାରର ସମସ୍ତ ପଦେ ମାନସିକ ବିଚାର ଅଧିକ ହୁଏ । ମନ୍ତ୍ରୀ ସାର ଦ୍ୱାରା ସେ ଖେଳ ଅଧିକ ପ୍ରଶଂସିତ ହୁଏ । ଘୋଡ଼ାସାର ନାନାପ୍ରକାର ଗତି କରେ । ନୌକାସାରର ଶୋଭା ଓ ହସ୍ତୀ ସାର ଶୋଭା ଏବଂ ପାଇକ ସାରର ଶୋଭା ବଢ଼ାଏ । ବସନ୍ତରେ ସମସ୍ତ ସଜାହୋଇ ପ୍ରକାଶ ପାଏ । କନ୍ଦର୍ପର ପାଞ୍ଚବାଣ ଅଧିକ ହୁଏ । ଏକାଳ ଇନ୍ଦ୍ରଙ୍କଦ୍ୱାରା ପ୍ରଶଂସିତ ହୁଏ । ଇନ୍ଦ୍ର ବସନ୍ତୋତ୍ସବରେ ମାତନ୍ତି । କୋକିଳ ବିଳାସ ପ୍ରକାଶ କରେ । ସୂର୍ଯ୍ୟଙ୍କ ତେଜ ନାଗେଶ୍ୱର ବୃକ୍ଷର ଶୋଭା ଏବଂ ପାଦ ଗମନ ( ଭ୍ରମଣ ) ରେ ସ୍ପୃହାକୁ ବଢ଼ାଏ । ଏତେ ପ୍ରକାରେ ସୁଖକର ହୁଏ । ୧ଶଚୀବରେ, ଇନ୍ଦ୍ରଙ୍କ ଦ୍ୱାରା ଓ ମନ୍ତ୍ରୀଦ୍ୱାରା । ୨ଗନ୍ଧର୍ବ, ଘୋଡ଼ା ଓ କୋକିଳ । ୩ତରଣି, ସୂର୍ଯ୍ୟ ଓ ନୌକା । ୪ନାଗେଶ୍ୱର, ବୃକ୍ଷବିଶେଷ ଓ ହସ୍ତିଶ୍ରେଷ୍ଠ ୫ପଦଗରେ ରୁଚ, ପାଦଗମନରେ ସ୍ପୃହା ଓ ପାଇକର ଶୋଭା ।

୫—ସେ ରାଜବାଳା ତରସ ହେଲାପରେ କହିଲା । ସତ୍ୟ, ସେ ଖେଳରେ ବୀର ପୁରୁଷମାନଙ୍କର ଅନୁରାଗ ଥାଏ । ଏତଦ୍ୱାରା ସ୍ତନ ମର୍ଦ୍ଦନରେ ପୁରୁଷଙ୍କର ଆଗ୍ରହ ଥାଏ ବୋଲି ସୂଚନା କଲା । ବାଣୀଜା ସଖୀ କହିଲା, ମୁଁ ଜାଣୁଛି ସେଥିରେ ସ୍ତ୍ରୀମାନଙ୍କ ଈର୍ଷା ଅଛି । ଏହା ଶୁଣି ରାଜକନ୍ୟା ମୁହଁକୁ ତଳକୁ ପୋତିଲା । ଏ ସମୟରେ କାଦମ୍ବିନୀ ସଖୀ ଆସି ସେ ନବଯୁବତୀ ଆଗେ ପଦ୍ୟ କହିଲା ।

କଉଶିକୀ ତଟ ନିକଟ ଅଟବି ମଧ୍ୟେ ବ୍ରଜଲୀଳା ହେଉଛି ।
ଗୁଣ-ନିଧାନ ସାବଧାନୀ ହୁଅରେ ଦେଖି ଯିବାକୁ ମୁଁ କୁହୁଛି ।
କହ କେମନ୍ତ । ମତ୍ତକାଶିନୀ ପଚାରିଲା ।
ଚତୁର ସଖୀ ବହୁତ ଚାତୁରୀରେ ତୁରିତେ ବାଣୀ ଉଚ୍ଚାରିଲା । ୬ ।
ଶୁଣରେ ୧ରୁଚିରାଧିକା ଚନ୍ଦ୍ରାବଳୀ ବିରାଜିତ ଅନୁକ୍ରମରେ ।
କୁଞ୍ଜରେ ୨ଲଳିତା ବିଶାଖା କ୍ରୀଡ଼ିତ ୩ଇନ୍ଦୁରେଖା ଶଶୀ ରମ୍ୟରେ ।
ଅଛି ୪ସୁଦେବୀ । ପୁଣ ୫ତୁଙ୍ଗଭଦ୍ୟା ନିପୁଣେ ।
ଭ୍ରମନ୍ତି ୬ରଙ୍ଗଦେବୀ ଚମ୍ପକଲତା ମଧୁସୂଦନର ଭ୍ରମଣେ । ୭ ।
ମଞ୍ଜରୀ-ବାର ସେବିତ ଭଦ୍ରନ୍ତର ଅଶେଷ ଗୋପୀରେ ସେ ଶୋଭେ ।
ମଦନ ତହିଁ ମୂର୍ତ୍ତିମନ୍ତ ହୋଇଛି ଦଇବେ ବେଣୁଧ୍ୱନି ଶୁଭେ ।
ଆମ୍ଭ ପ୍ରବେଶେ । ସୁମନ ସୁଦାମ ହୋଇବ ।
କିଙ୍କିଣୀ ପ୍ରବଳ ବଳ ହୋଇ କରି ନାନା ବିଳାସ ପ୍ରକଟିବ । ୮ ।

---

୬—କୌଶିକ ନଦୀ କୂଳସ୍ଥ ବନରେ ବ୍ରଜଲୀଳା ହେଉଅଛି । ହେ ଗୁଣବତି, ମୁଁ କହୁଅଛି ସେଠାକୁ ଯିବାକୁ ସାବଧାନ ହୁଅ । ସେ ସୁନ୍ଦରୀ ପଚାରିଲା, କିପରି ଲୀଳା ଲାଗିଛି, କହ । ଚତୁର ସଖୀ ଅନେକ ଚାତୁର୍ଯ୍ୟରେ ଶୀଘ୍ର କହିଲା ।

୭—ଅଗୋ ସୁନ୍ଦରୀ ! ଶୁଣ, ବ୍ରଜରେ ରାଧିକା ଓ ଚନ୍ଦ୍ରାବଳୀର ଯୋଗ୍ୟ ଅନୁପମଭାବେ ବିରାଜିତ ଥାଏ । କୁଞ୍ଜମାନଙ୍କରେ ଲଳିତା ବିଶାଖା ଇନ୍ଦୁରେଖା ଓ ଶଶୀ ସଖୀମାନେ ମନୋହର ଭାବରେ କ୍ରୀଡ଼ା କରୁଥାନ୍ତି । ସୁଦେବୀ ଓ ତୁଙ୍ଗଭଦ୍ରା ସଖୀ ନିପୁଣଭାବେ ଅଛନ୍ତି । ରଙ୍ଗଦେବୀ ଓ ଚମ୍ପକଲତା ସଖୀ ଶ୍ରୀକୃଷ୍ଣଙ୍କର ଭ୍ରମଣ ଭାବନା କରୁଥାନ୍ତି । ବନରେ ଅତି ସୁନ୍ଦର କାମ୍ପିଲ୍ଲବୃକ୍ଷସମୂହ ବିରାଜିତ ଅଛି । ବୃକ୍ଷମାନଙ୍କରେ ଅତି କୋମଳ ଶାଖାମାନ ସୁନ୍ଦରରୂପେ କ୍ରୀଡ଼ା କଲାପରି ଦୋହଲୁ ଅଛନ୍ତି । କୋମଳଲତା ଓ ଲତା ଗଛ ମଧ୍ୟ ମନୋହର ଭାବେ ଅଛନ୍ତି । ଫିରଙ୍ଗ, ପୁନ୍ନାଗ ଓ ଅପରାଜିତାମାନେ ଅଛନ୍ତି । ଗନ୍ଧଶେଫାଳୀ ଓ ଚମ୍ପା ବୃକ୍ଷମାନେ ଭ୍ରମର ଭ୍ରମଣ ବେଷ୍ଟିତ ହୋଇଅଛନ୍ତି । ୧ରୁଚିରାଧିକା, ଶୋଭା ରାଧିକା ଓ ଅଧିକ ସୁନ୍ଦର । ଚନ୍ଦ୍ରାବଳୀ, ଗୋପୀ ବିଶେଷ ଓ କାମ୍ପିଲ୍ଲ ବୃକ୍ଷସମୂହ । ୨ଲଳିତା ବିଶାଖା ଗୋପୀଦ୍ୱୟ ଓ କୋମଳ ଶାଖା । ୩ଇନ୍ଦୁରେଖା ଶଶୀ ଗୋପୀଦ୍ୱୟ ଓ କୋମଳଲତା ଲତା । ୪ସୁଦେବୀ, ଗୋପୀ ବିଶେଷ ଓ ଫିରଙ୍ଗ ବୃକ୍ଷ । ୫ତୁଙ୍ଗଭଦ୍ରା, ଗୋପୀ ବିଶେଷ ଓ ପୁନ୍ନାଗ, ଅପରାଜିତା । ୬ରଙ୍ଗଦେବୀ ଚମ୍ପକଲତା, ଗୋପୀଦ୍ୱୟ ଓ ଗନ୍ଧଶେଫାଳୀ ଚମ୍ପା । ମଧୁସୂଦନ, ଶ୍ରୀକୃଷ୍ଣ ଓ ଭ୍ରମର ।

୮—ବ୍ରଜ ସର୍ବଦା ଅପ୍ରାପ୍ତ ଯୌବନା ସଖୀ ସମୂହଦ୍ୱାରା ସେବିତ ଅନେକ ଗୋପୀମାନଙ୍କ ଦ୍ୱାରା ଶୋଭିତ ହୋଇଥାଏ । ସେଠାରେ କନ୍ଦର୍ପ ମୂର୍ତ୍ତିମନ୍ତ ହୋଇଥାଏ । ଦୈବାତ୍ ବଂଶୀଧ୍ୱନି ଶୁଣାଯାଏ । ବନ କୋମଳ କେଶ୍ରାମାନଙ୍କ ଦ୍ୱାରା ସର୍ବଦାଯୁକ୍ତ ଶ୍ୟାମାଲତାମାନଙ୍କ ଦ୍ୱାରା ଶୋଭା ପାଉଅଛି । ସେଠାରେ ମଦନକ ବା ଦମନକ ଗଛ ମୂର୍ତ୍ତିମନ୍ତ ହୋଇଅଛି । ଦୈବାତ୍ ସଚ୍ଛିଦ୍ର ବାଉଁଶମାନଙ୍କର ଶବ୍ଦ ଶୁଭୁଅଛି । ଆମ୍ଭେ ପ୍ରବେଶ କଲେ, ଫୁଲମାଳାମାନ ହେବ ଓ ସେ କିଙ୍କିଣୀର ସାହାଯ୍ୟରେ ନାନା ଶୋଭା ପ୍ରକାଶ କରିବ । ବ୍ରଜରେ ସୁମନ ସୁଦାମ ସଖା ଥାନ୍ତି କିଙ୍କିଣୀ ନାମକ ସଖା ଓ ପ୍ରବଳ ବଳ ଦେବଙ୍କର ନାନାପ୍ରକାର ବିଳାସ ପ୍ରକାଶ ହେଉଥାଏ ।

ଶ୍ରୋତରେ ସେ ସୁଖ-ସରିତ ସ୍ରୋତରେ ସତ୍ୱରେ ଚିତ୍ତ ମଜ୍ଜାଇଲ ।
୧ର ସଖୀ କର ଧନ୍ୱନୀ-ଶୋଭା ଯେ ଉଭା ତହିଁର ଶୋଭା କଲା ।
କେହି ମୟୂର । ପୁଚ୍ଛ ଚାମର କେ ଢ଼ାଳିଲେ ।
କେ ତହିଁ ପହଣ୍ଡ ମଣାଇ ଜଣାଇ ଅଣାଇ ବୀଣା କେ ବାଇଲେ । ୯ ।
ପୁଷ୍ପରାଗ ପତନରେ ସୁସତନ ଯେଉଁ ସରଣି ହୋଇଥିଲେ ।
ଛତ୍ରର ଅନୁରୂପ ସୁକୁମାରିକ ସେ ଦଗେ ବନେ କରାଇଲେ ।
ବଚନ ଜବନେ । ମିତ୍ରୁ ବୋଇଲ ଦବ୍ୟବାଲା ।
ବାଟପ ବାଟପୀ ଏଥିତ ବହୁତ କହୁଁତ ଥିଲୁ ଆନ ଲୀଳା । ୧୦ ।
ବାଣୀଜା କଲା ପ୍ରମାଣ ମାଣବକ-ମୃଗ-ଜତ-ନେହା ଉତ୍ତର ।
ଏଥିରେ ବାଲା କାଳାନ୍ତରେ ଅଛୁ ରେ ଏହି ବିହାର ବ୍ୟବହାର ।
ଥିବା ବେଳରେ । ୧ସୁମନା-ବଳୀ ମନୋହରେ ।
୨ପ୍ରକର ବରଞ୍ଜି ଲଲସ ୩ଗଣିକା ପ୍ରଭେ ୪ସୁବାସ ହରିବାରେ । ୧୧ ।
ଶଚୀକଲା କଲା ସେ କଥା ସମ୍ମତ ଏମନ୍ତ କହିଲା ସେଥିରେ ।
ଇନ୍ଦ୍ର ତପସ୍ୱିନୀ ସେନ ବନ୍ଧୁନେହ ଶୋଭା ହୋଇଥିଲା ଏଥିରେ ।
ଯାହା ପ୍ରେଷିତ । ସେ ଭବେ ଦେଖାଇଲା ଛନ୍ଦେ ।
କେ କେଉଁ ମସ୍ତାରୂଢ଼ ଲତା ଅନାଇ ଚହ୍ଲାଉଥିବ ରାମା ବୋଲେ । ୧୨ ।

---

୯—ସେ ରାଜକୁମାରୀ ଏହା ଶୁଣିବାରୁ ସେ ବନବିହାର ସୁଖ ରୂପକ ନଦୀ ସ୍ରୋତରେ ମନ ବୁଡ଼ାଇଲେ । ଅର୍ଥାତ୍ ବନବିହାର ସୁଖ ଇଚ୍ଛା କଲେ । ସେହି ଭୂମନଶ୍ରନା ସଖି ହାତଧରି ଠିଅହେବାରୁ ଅଗଣା ଶୋଭିତ ହୋଇଗଲା । କିଏ ମୟୂର ପିଚ୍ଛ ଚାଳିଲେ, କିଏ ତହିଁରୁ ପକାଇଲେ କିଏ ବାଟ କଢ଼ାଇଲେ, କିଏ ବୀଣା ବଜାଇଲେ ।

୧୦—ଯେଉଁ ବାଟ ଫୁଲ ପତ୍ରର ପଡ଼ିବାରେ ପରିଷ୍କୃତ ହୋଇଥିଲା, ସଖୀମାନେ ଦର୍ଶ୍ଚିକ କରି ସେ ସୁକୁମାରୀଙ୍କ ସେହି ଦିଗରେ ବନେକରାଇଲେ । ବନରେ ଶୀଘ୍ର ପହଞ୍ଚିଲାରୁ ସେ ସୁନ୍ଦରୀ କହିଲା । ଏଠାରେତ ଅନେକ ଶାଖା ଓ ବୃକ୍ଷ ଅଛନ୍ତି ଭୂତ ଅନ୍ୟ ଲୀଳା ଥିବା କଥା କହୁଥିଲୁ ।

୧୧—ବାଣୀଜା ସଖି ମେହି ବାଳମୃଗନେତ୍ରା କଥାକୁ ସ୍ୱୀକାର କରି କହିଲା । ଏହି ବନରେ ଏ ବାଟପ ଓ ବାଟପୀ ବ୍ୟବହାର ଅଛି ଓ କାଳାନ୍ତରରେ ମଧ୍ୟ ଥିଲା । ଦେବତାମାନେ ଥିବାବେଳେ ସ୍ୱର୍ଗ ବ୍ରହ୍ମା ବେଶ୍ୟା ଉର୍ବଶୀଠାରେ ଆସକ୍ତ ହୋଇ ବସ୍ତ୍ରହରଣ କରିବାକୁ ପ୍ରକର ( କର ବଢ଼ାଇଥିଲେ) । ଏ ବନରେ ପୁଷ୍ପମାନେ ମନୋହରଭାବେ ସମଷ୍ଟି ରଚନା କରିଥିବାବେଳେ ଜୂଇଲତାର ସୁଗନ୍ଧ ହରଣ କରିବାରେ ଦବଲାଳସୀ ହୋଇଅଛି । ୧ପୁଷ୍ପାବଳୀ ପୁଷ୍ପ ସମୂହ ଓ ଦେବବୃନ୍ଦ । ୨ପ୍ରକର, ପ୍ରକୃଷ୍ଟକର ଓ ସମଷ୍ଟି । ବିରଞ୍ଚି; ବ୍ରହ୍ମା ଓ ରଚନାକାରୀ । ୩ଗଣିକା, ବେଶ୍ୟା ଓ ଜୂଇ । ୪ସୁବାସ, ସୁଗନ୍ଧ ଓ ସୁବସ୍ତ୍ର ।

୧୨—ଶଚୀକଲା ସଖୀ ସେକଥା ସମ୍ମତ କରି ଓ ସେ ବିଷୟରେ ଏପରି କହିଲା । ପୂର୍ବେ ଏଠାରେ ଇନ୍ଦ୍ର ତପସ୍ୱିନୀ ଅହଲ୍ୟାଙ୍କୁ ସେବିବାରୁ ତାଙ୍କର ବନ୍ଧୁନେହ ଶୋଭା ହୋଇଥିଲା । ବର୍ତ୍ତମାନ ଏ ବନ

କଳିନ୍ଦିଜା ତଟ ନିକଟ ଅଟବି ମଧ୍ୟେ ବ୍ରଜଲୀଳା ହେଉଛି ।
ଗୁଣ-ନିଧାନି ସାବଧାନି ହୁଅରେ ଦେଖି ଯିବାକୁ ମୁଁ କୁହୁଛି ।
କହ କେମନ୍ତ । ମତ୍ତକାଶିନୀ ପଚାରିଲା ।
ଚତୁର ସଖୀ ବହୁତ ଚାତୁରୀରେ ତୁରିତେ ବାଣୀ ଉଚାରିଲା । ୬ ।
ଶୁଣରେ ୧ରୁଚିରାଧିକା ଚନ୍ଦ୍ରାବଳୀ ବିରାଜିତ ଅନୁକ୍ରମରେ ।
କୁଞ୍ଜରେ ୨ଲଳିତା ବିଶାଖା କ୍ରୀଡ଼ନ୍ତି ୩ଇନ୍ଦୁରେଖା ଶିଖା ରମ୍ୟରେ ।
ଅଛି ୪ସୁଦେବୀ । ପୁଣ ୫ତୁଙ୍ଗବିଦ୍ୟା ନିପୁଣେ ।
ଭାବନ୍ତି ୬ରଙ୍ଗଦେବୀ ଚମ୍ପକଲତା ମଧୁସୂଦନର ଭ୍ରମଣେ । ୭ ।
ମଞ୍ଜରୀ-ବାର ଯେବତ ତରନ୍ତର ଅଶେଷ ଗୋପୀରେ ସେ ଶୋଭେ ।
ମଦନ ତହିଁ ମୂର୍ତ୍ତିମନ୍ତ ହୋଇଛି ଦଇବେ ବେଣୁଧ୍ୱନି ଶୁଭେ ।
ଆମ୍ଭ ପ୍ରବେଶେ । ସୁମନ ସୁଦାମ ହୋଇବ ।
କିଙ୍କିଣୀ ପ୍ରବଳ ବଳ ହୋଇ କରି ନାନା ବିଳାସ ପ୍ରକଟିବ । ୮ ।

---

୬—କାଳିନ୍ଦୀ ନଦୀ କୂଳସ୍ଥ ବନରେ ବ୍ରଜଲୀଳା ହେଉଅଛି । ହେ ଗୁଣବତି, ମୁଁ କହୁଛି ସେଠାକୁ ଯିବାକୁ ସାବଧାନ ହୁଅ । ସେ ସୁନ୍ଦରୀ ପଚାରିଲା, କପରି ଲୀଳା ଲାଗିଛି, କହ । ଚତୁର ସଖୀ ଅନେକ ଚାତୁର୍ଯ୍ୟରେ ଶୀଘ୍ର କହିଲା ।

୭—ଅଗୋ ସୁନ୍ଦରି ! ଶୁଣ, ବ୍ରଜରେ ରାଧିକା ଓ ଚନ୍ଦ୍ରାବଳୀର ଶୋଭା ଅନୁପମଭାବେ ବିରାଜିତ ଥାଏ । କୁଞ୍ଜମାନଙ୍କରେ ଲଳିତା ବିଶାଖା ଇନ୍ଦୁରେଖା ଓ ଶିଖା ସଖୀମାନେ ମନୋହର ଭାବରେ କ୍ରୀଡ଼ା କରୁଥାନ୍ତି । ସୁଦେବୀ ଓ ତୁଙ୍ଗବିଦ୍ୟା ସଖୀ ନିପୁଣଭାବେ ଅଛନ୍ତି । ରଙ୍ଗଦେବୀ ଓ ଚମ୍ପକଲତା ସଖୀ ଶ୍ରୀକୃଷ୍ଣଙ୍କର ଭ୍ରମଣ ଭାବନା କରୁଥାନ୍ତି । ବନରେ ଅତି ସୁନ୍ଦର କାମ୍ୟ ବୃକ୍ଷସମୂହ ବିରାଜିତ ଅଛି । ବୃକ୍ଷମାନଙ୍କରେ ଅତି କୋମଳ ଶାଖାମାନ ସୁନ୍ଦରରୂପେ କ୍ରୀଡ଼ା କଲାପରି ଦୋହଲୁ ଅଛନ୍ତି । ସୋମଲତା ଓ ଲତା ଗଛ ମଧ୍ୟ ମନୋହର ଭାବେ ଅଛନ୍ତି । ପିଆଳ, ପଲାଶ ଓ ଅପରାଜିତାମାନେ ଅଛନ୍ତି । ଗଙ୍ଗଶିଉଳୀ ଓ ଚମ୍ପା ବୃକ୍ଷମାନେ ଭ୍ରମର ଭ୍ରମଣ କରିବା ଭାବୁଅଛନ୍ତି । ୧ରୁଚିରାଧିକା, ଶୋଭା ରାଧିକା ଓ ଅଧିକ ସୁନ୍ଦର । ଚନ୍ଦ୍ରାବଳୀ, ଗୋପୀ ବିଶେଷ ଓ କାମ୍ୟ ବୃକ୍ଷସମୂହ । ୨ଲଳିତା ବିଶାଖା ଗୋପୀଦ୍ୱୟ ଓ କୋମଳ ଶାଖା । ୩ଇନ୍ଦୁରେଖା ଶିଖା ଗୋପୀଦ୍ୱୟ ଓ ସୋମଲତା ଲତା । ୪ ସୁଦେବୀ, ଗୋପୀ ବିଶେଷ ଓ ପିଆଳ ବୃକ୍ଷ । ୫ତୁଙ୍ଗବିଦ୍ୟା, ଗୋପୀ ବିଶେଷ ଓ ପଲାଶ, ଅପରାଜିତା । ୬ରଙ୍ଗଦେବୀ ଚମ୍ପକଲତା, ଗୋପୀଦ୍ୱୟ ଓ ଗଙ୍ଗଶିଉଳୀ ଚମ୍ପା । ମଧୁସୂଦନ, ଶ୍ରୀକୃଷ୍ଣ ଓ ଭ୍ରମର ।

୮—ତୁଲ୍ୟ ସବିତା ଅପ୍ରାପ୍ତ ଯୌବନା ସଖୀ ସମୂହଦ୍ୱାରା ଯେବତ ଅନେକ ଗୋପୀମାନଙ୍କ ଦ୍ୱାରା ଶୋଭିତ ହୋଇଥାଏ । ସେଠାରେ କନ୍ଦର୍ପ ମୂର୍ତ୍ତିମନ୍ତ ହୋଇଥାଏ । ଦୈବାତ୍ ବଂଶୀଧ୍ୱନି ଶୁଣାଯାଏ । ବନ କୋମଳ କେଶରମାନଙ୍କ ଦ୍ୱାରା ସର୍ବଦାଯୁକ୍ତ ତମାଳଲତାମାନଙ୍କ ଦ୍ୱାରା ଶୋଭା ପାଉଅଛି । ସେଠାରେ ମରୁବକ ବା ଦୂଦୂର ଗଛ ମୂର୍ତ୍ତିମନ୍ତ ହୋଇଅଛି । ଦୈବାତ୍ ସଛିଦ୍ର ବାଉଁଶମାନଙ୍କର ଶବ୍ଦ ଶୁଭୁଅଛି । ଅମ୍ଭେ ପ୍ରବେଶ କଲେ, ଫୁଲମାଳାମାନ ହେବ ଓ ସେ କିଙ୍କିଣୀର ସାହାଯ୍ୟରେ ନାନା ଶୋଭା ପ୍ରକାଶ କରିବ । ବ୍ରଜରେ ସୁମନ ସୁଦାମ ସଖା ଥାନ୍ତି କିଙ୍କିଣୀ ନାମକ ସଖା ଓ ପ୍ରବଳ ବଳ ଦେବଙ୍କର ନାନାପ୍ରକାର ବିଳାସ ପ୍ରକାଶ ହେଉଥାଏ ।

ଶ୍ରୋତରେ ସେ ସୁଖ-ସରିତ ସ୍ରୋତରେ ସଭ୍ୟରେ ଚିତ୍ତ ମଜ୍ଜାଇଲ୍ଲ ।
ଧରି ସଖୀ କର ଧନ୍ଦନୀ-ଶୋଭା ଯେ ଉଭା ଚହିର ଶୋଭା କଲ୍ଲ ।
କେହି ମୟୂର । ପୁଚ୍ଛ ଚାମର କେ ଢ଼ାଳିଲେ ।
କେ ତହିଁ ପହଣ୍ଡ ମଣାଇ ଜଣାଇ ଅଣାଇ ବୀଣା କେ ବାଇଲେ । ୯ ।
ପୁଷ୍ପରାଗ ପଡନରେ ସୁଯତନ ଯେଉଁ ସରଣି ହୋଇଥିଲେ ।
ଛତ୍ରୀର ଅନୁଗୃହୀ ସୁକୁମାରୀକି ସେ ଦଗେ ବନେ କରାଇଲେ ।
ବଚନ ଜବନେ । ମିତ୍ରୁଁ ବୋଇଲ୍ଲ ଦିବ୍ୟବାଳା ।
ବିଟପ ବିଟପୀ ଏଥିତ ବହୁତ କହୁଁ ତ ଥିଲୁ ଆନ ଲୀଳା । ୧୦ ।
ବାଣୀଜା କଲ୍ଲ ପ୍ରମାଣ ମାଣବକ-ମୃଗ-ଜତ-ନେତ୍ରା ଉତ୍ତର ।
ଏଥିରେ ବାଲା କାଳାନ୍ତରେ ଅଛି ରେ ଏହି ବିହାର ବ୍ୟବହାର ।
ଥିବା ବେଳରେ । ୧ସୁମନା-ବଳୀ ମନୋହରେ ।
୨ପ୍ରକର ବରଞ୍ଜି ଲଲସ ୩ଗଣିକା ସ୍ତବେ ୪ସୁବାସ ହରିବାରେ । ୧୧ ।
ଶଚୀକଳା କଲ୍ଲ ସେ କଥା ସମ୍ମତ ଏମନ୍ତ କହିଲ୍ଲ ସେଥିରେ ।
ଇନ୍ଦ୍ର ତପସ୍ୱିନୀ ଯେନ ବହୁନେତ୍ର ଶୋଭା ହୋଇଥିଲ୍ଲ ଏଥିରେ ।
ଯାହା ପ୍ରେଷିତ । ସେ ସ୍ତବେ ଦେଖାଇଲ୍ଲ ଛନ୍ଦେ ।
କେ କେଉଁ ମହୀରୁହ ଲତା ଅନାଇ ଚାହାଁଉଥିବ ରାମା ବୋଲେ । ୧୨ ।

---

୯—ସେ ରାଜକୁମାରୀ ଏହା ଶୁଣିବାରୁ ସେ ବନବିହାର ସୁଖ ରୂପକ ନଦୀ ସ୍ରୋତରେ ମନ ବୁଡ଼ାଇଲେ। ଅର୍ଥାତ୍ ବନବିହାର ସୁଖ ଇଚ୍ଛା କଲେ । ସେହି ଭୁମନଶ୍ରୀ ସଖୀ ହାତଧରି ଠିଆହେବାରୁ ଅଗଣା ଶୋଭିତ ହୋଇଗଲା । ଜଣେ ମୟୂର ପିଚ୍ଛ ଚଳିଲେ, ଜଣେ ଚାମର ପକାଇଲେ ଜଣେ ବାଟ କଢ଼ାଇଲେ, ଜଣେ ବୀଣା ବଜାଇଲେ ।

୧୦—ଯେଉଁ ବାଟ ଫୁଲ ପତ୍ରର ପଡ଼ିବାରେ ପରିଷ୍କୃତ ହୋଇଥିଲା, ସଖୀମାନେ ଦଣ୍ଡ ଧରି ସେ ସୁକୁମାରୀକି ସେହି ବାଟରେ ବଜେଇଲେ । ବଚନରେ ଶୀଘ୍ର ପହଞ୍ଚିଲାରୁ ସେ ସୁନ୍ଦରୀ କହିଲା । ଏଠାରେତ ଅନେକ ଶାଖା ଓ ବୃକ୍ଷ ଅଛନ୍ତି ଓ ତ ଅନ୍ୟ ଲୀଳା ଥିବା କଥା କହୁଥିଲୁ ।

୧୧—ବାଣୀଜା ସଖୀ ସେହି ବାଳମୃଗନେତ୍ରା କଥାକୁ ସ୍ୱୀକାର କରି କହିଲା । ଏହି ବନରେ ଏ ବିଟପ ଓ ବିଟପୀ ବ୍ୟବହାର ଅଛି ଓ କାଳାନ୍ତରରେ ମଧ୍ୟ ଥିଲା । ଦେବତାମାନେ ଥିବାବେଳେ ସ୍ୱର୍ଗ ବୃକ୍ଷ ବେଶ୍ୟା ଉର୍ବଶୀଠାରେ ଆସକ୍ତ ହୋଇ ବସ୍ତ୍ରହରଣ କରିବାକୁ ପ୍ରକର ( କର ବଢ଼ାଇଥିଲେ) । ଏ ବନରେ ପୁଷ୍ପମାନେ ମନୋହରଭାବେ ସମଷ୍ଟି ରଚନା କରିଥିବାବେଳେ କୁଇଲତାର ସୁଗନ୍ଧ ହରଣ କରିବାରେ ଲାଳସୀ ହୋଇଅଛି । ୧ସୁମନାବଳୀ ପୁଷ୍ପ ସମୂହ ଓ ଦେବବୃନ୍ଦ । ୨ପ୍ରକର, ପ୍ରକୃଷ୍ଟକର ଓ ସମଷ୍ଟି । ୩ଗଣିକା, ବେଶ୍ୟା ଓ ଜୁଇ । ୪ସୁବାସ, ସୁଗନ୍ଧ ଓ ସୁବସ୍ତ୍ର ।

୧୨—ଶଚୀକଳା ସଖୀ ସେକଥା ସମ୍ମତ କରି ଓ ସେ ବିଷୟରେ ଏପରି କହିଲା । ପୂର୍ବେ ଏଠାରେ ଇନ୍ଦ୍ର ତପସ୍ୱିନୀ ଅହଲ୍ୟାଙ୍କୁ ସେବିବାରୁ ତାଙ୍କର ବହୁନେତ୍ର ଶୋଭା ହୋଇଥିଲା । ବର୍ତ୍ତମାନ ଏ ବନ

ପୁନ୍ନାଗ ନାଗର ଦେଖରେ ବୋଲି କେ ଦେଖାଉଁ ଅଙ୍ଗୁଳିରେ କର ।
ଏହୁତ ତରୁ ତରୁଣ-ଶ୍ରେଷ୍ଠ ନୋହେ ତରୁଣୀ-ରତନ ପରୁଷ ।।
ମଲ୍ଲୀ ବୋଲନ୍ତେ । କାହିଁକି ବୋଲି ସେ ହସଇ ।
ମାଧବୀକି ଚାହିଁ ମାଧବୀ ବୋଲନ୍ତେ ଏହି ମଧୁପୁର ବସଇ । ୧୩ ।

ଅଣିମି ଭଣି ମୁଦ୍ଧରେ ନାଗେଶ୍ୱରେ ତାର ସନ୍ନିଧେ ଯାଉଁ କେହି ।।
ମଥାକୁ ଚାଳି ଏ କଥା ପୁଚ୍ଛା କଲି ୧କଥା-ପ୍ରସଙ୍ଗ ହେଲୁ କେହି ।।
ସେହି ବୋଇଲା । ଅଣିମି ୩ସୁପର୍ଣ୍ଣେ ଭରସା ।
ଭାଷାକୁ ଭାଷା ମିଶିବାକୁ ହେଲା ଯେ ଏତିକ ଭାଷିଲା ସୁଦୃଶା । ୧୪ ।।

ଚମ୍ପା କହନା ଜଗତ-ବନ୍ଦନାକୁ ସମ୍ଭାବବ ସିନା ଏସନ ।
ଆମ୍ଭ ନଗର ୧ନଗରୂପ ହେଲା କି ବୋଲିଯେ କହିବ କହନ ।
ବୋଲି କେ ଚହିଁ । ହୋଇ ଏ ମୌଗ୍ଧ୍ୟ ପ୍ରକାଶିଛି ।
କେ କହେ ନୋହେ ଏ ପରମପଣ୍ଡିତା ମନକୁ ନାନାର୍ଥ ଆଣୁଛି ।। ୧୫

---

ତୃଟକ ଓ ଜଷ୍ଟମାଂସୀ ଯେନ ବହୁକ୍ଷେତ୍ରର ଶୋଭାକର ହୋଇଅଛି । ଯେ ସଖୀ ଯେଉଁ ଦେବତାଙ୍କ ହାସ ପ୍ରେରଭ ହୋଇଥିଲେ । ସେ କପଟରେ ସେହି ଭାବ ଦେଖାଇଲେ । ତତ୍ପରେ ରାଜକୁମାରୀ କହୁଛ,"କିଏ କ ଗଛ ଓ କଏ କ ଲତା" ଅଜାଇ ମୋତେ ଦନ୍ଧାଉ ଥିବ ।

୧୩—ହେ ନାଗର ? ପୁନ୍ନାଗ (ବୃକ୍ଷ) ଦେଖ, ବୋଲି କେଉଁ ସଖୀ ଅଙ୍ଗୁଳୀ ନିର୍ଦ୍ଦେଶ କରି ଦେଖାଇବାରୁ ତରୁଣୀ ରତ୍ନ ସେ ରାଜକନ୍ୟା କହୁଛ, ଏତ ତରୁ ଅଟେ, କିନ୍ତୁ ପୁରୁଷ ଶ୍ରେଷ୍ଠ ନୁହେଁ ଏହା ପରୁଷ ଏ ମଲ୍ଲୀ ବୋଲି କେଉଁ ସଖୀ ଦେଖାଇବାରୁ ସେ ରାଜକନ୍ୟା "କାହିଁକି ମଲ୍ଲବୋଲି କହୁ ହସିଲା ।" ମାଧବୀ ଲତାକୁ ଚାହିଁ କେଉଁ ସଖୀ "ଏ ମାଧବୀ ବୋଲି ଦେଖାଇବାରୁ ସୁନ୍ଦରୀ କହୁଲା । ଏ ବଣ ମଧୁପୁର ଏଠାରେ ମାଧବୀ (ଲକ୍ଷ୍ମୀ) ଅଛନ୍ତି ।

୧୪—ମୁଁ ନାଗେଶ୍ୱର ଅଣିମି, ଏହା ସ୍ୱରରେ କହି କୌଣସି ସଖୀ ତା ନିକଟକୁ ଯାଆନ୍ତେ । ନାଗେଶ୍ୱରକୁ ବଡ଼ ସ୍ୱାପ ବୁଝି ଅନ୍ୟସଖୀ ମଥାକୁ ଚାଳ ଏକଥା ପଚାରି । ତୁ କଣର ସାପୁଅ କେଳା ହେଲୁ । ତହିଁ ସେ କହୁଲା, ମୁଁ ନିଶ୍ଚେ ଅଣିମି । ସୁନ୍ଦର ପନରେ ମୋର ଭରସା ଅଛି । ଗରୁଡ଼ଠାରେ ମୋର ଭରସା ଅଛି ଏହା ସୂଚନା କଲା । କଥାକୁ କଥା ମିଶିବାକୁ ସେ ସୁନ୍ଦରୀ "ହେଲା ଯେ" ଏତିକ ମାତ୍ର କହୁଲା । କଥା ପ୍ରସଙ୍ଗ, ସାପୁଅ କେଳା । ୨ନାଗେଶ୍ୱର ୨ବୃକ୍ଷବିଶେଷ ଓ ସର୍ପଶ୍ରେଷ୍ଠ । ୩ସୁବର୍ଣ୍ଣ ଗରୁଡ଼ ଓ ସୁନ୍ଦର ପତ୍ର ।

୧୫—କେଉଁ ସଖୀ କହୁଲା, ଜଗତବନ୍ଦନାକୁ "ଏ ଚମ୍ପା" ବୋଲି କହ ନାହିଁ । ଯେହେତୁ ସେ ଏପରି ଭାବିବ । ସେ ଆମ୍ଭ ନଗରୀ ଚମ୍ପା କଣ ଗଛ ସ୍ୱରୂପ ଧାରଣ କଲାକି ଏହା ଶୀଘ୍ର କହିବ । ଅନ୍ୟ କେଉଁ ସଖୀ କହୁଲା ଏ ଇନ୍ଦ ମୁଗ୍ଧଭାବ (ନବଯୌବନ) ଓ (ନ ଜାଣିବାପଣିଆ) ପ୍ରକାଶ କରୁଅଛି । କେହି କହୁଲା, ଏ ପରମ ପଣ୍ଡିତା ହୋଇଥିବାରୁ ମନକୁ ନାନା ଅର୍ଥ ଆଣୁଛି । ୧ନଗ, ବୃକ୍ଷ ।

ଏମନ୍ତ ରହସ୍ୟ ବଶ ହସ ହସ ହଂସପନ୍ତି ପ୍ରାୟେ ଗମନ ।
ସମସ୍ତେ ସୁବେଶ ପ୍ରବେଶ ହୋଇଲେ ମାଙ୍ଗଲ୍ୟାଙ୍କ ଥିଲା ଉପବନ ।
କାଦମ୍ବିନୀ ଯେ । ଯତନେ କଢାଇ ନେଉଛି ।
ବିଧିରେ ବିଧିଙ୍କର ଅଜ୍ଞା ଅବଜ୍ଞା ନୋହିବ ଏ ହେତୁ ହେଉଛି । ୧୬ ।

ସେ ବନ ଧନ୍ୟ ସମାନ ନାହିଁ ଅନ୍ୟ ସେବିତ ପୁଣ୍ୟବନ୍ତ ଜନ ।
ଶୁକ ପିକଯୂଥ କଥଯନ୍ତି ୧ଚୈତ୍ରରଥ ନନ୍ଦନର ଜନମ ।
ସତ ଏ କଥା ୨ପ୍ରସବ ସୁଲକ୍ଷଣ ଅଛି ।
ଫୁଲ ପତନ ସ୍ତନ-ନାରିକେଳରେ ପୟ ପରିପୂର୍ଣ୍ଣ ହୋଇଛି ॥ ୧୭

୧ଉପକୁଲ୍ୟା ଆଦି ଉପକରଣକୁ ଅଛି ଏ ଗର୍ଭଗତ କରି ।
ତମାଲ-ଦଲ କୁନ୍ତଳ ବାନ୍ଧ ନାହିଁ ଅତପ-ସ୍ନେହୀ ସ୍ନାନ ସାରି ।
୨ଦିବ୍ୟ ବାସରେ । ଅଛି ସେ ଆଚ୍ଛାଦନ ହୋଇ ।
ଜଡେ ପୁଷ୍ପରଜ ବ୍ୟାଜ ନିଜ ଦେହି କୁଙ୍କୁମ ଥିଲା ଉଚ୍ଛୁଟାଇ ॥ ୧୮

---

୧୬—ସେ ସମସ୍ତ ସ୍ତ୍ରୀମାନେ ସୁବେଶ ହୋଇ ଏହିପରି ରହ କଥାବାର୍ତ୍ତାରେ ହସ ହସ ହୋଇ ମାଙ୍ଗଲ୍ୟ ଥିବା ବନରେ ପ୍ରବେଶ କଲେ । କାଦମ୍ବିନୀ ଯତ୍ନ ପୂର୍ବକ ଯଥାବିଧିରେ ବାଟ କଢ଼ାଇ ନେଉଥିଲା । ସ୍ୱଜନବନ୍ଧ୍ୟାକୁ ମାଙ୍ଗଲ୍ୟାଙ୍କ ସହିତ ଭେଟ କରାଇବ ବୋଲି ବ୍ରହ୍ମାଙ୍କର ଆଜ୍ଞା ଯେପରି ଅବଜ୍ଞା ନହେବ । ଏକଥା ମନେଅଛି । ୧ହେତୁ ସ୍ମରଣ ।

୧୭—ସେ ବନ ଧନ୍ୟ ଅଟେ, ଅନ୍ୟବନ ତାସଙ୍ଗେ ସମାନ ନୁହେଁ । ପୁଣ୍ୟଜନ୍ମ ଲୋକମାନଙ୍କର ଆଶ୍ରୟ ଅଟେ । ଶୁଆ ଓ କୋଇଲିମାନେ ବୋବାଇବାଦ୍ୱାରା କହି ଦେଉଅଛନ୍ତି । କୁବେରଙ୍କ ଉପବନ ଓ ଇନ୍ଦ୍ରଙ୍କ ଉପବନକୁ ଏ ବନ ଜନ୍ମ କରାଇଛି କି ? ଏକଥା ସତ ହୋଇଅଛି । ଯେହେତୁ ପ୍ରସବ ଲକ୍ଷଣ (ଫଳପୁଷ୍ପ ଲକ୍ଷଣ) ଦେଖାଯାଉଅଛି । ପ୍ରସବ କଲେ ଫୁଲ ପଡ଼େ । ଏଠାରେ ପୁଷ୍ପ ସବୁ ପଡ଼ିଅଛି । ସ୍ତନପରି ନାରିକେଳ ଫଳରେ ପାଣି ଦୁଗ୍ଧପରି ପୂର୍ଣ୍ଣ ହୋଇଅଛି । ୧ଚୈତ୍ରରଥ, କୁବେର ଉପବନ । ନନ୍ଦନ, ଇନ୍ଦ୍ର ଉପବନ । ୨ପ୍ରସବ ସୁଲକ୍ଷଣ, ଜନ୍ମକରିଥିବା ଲୋକ ଓ ଫଳ ଫୁଲ ଲକ୍ଷଣ ।

୧୮—ପ୍ରସବ କରିଥିବା ସ୍ତ୍ରୀ ପିନ୍ଧୁଲୀ ଆଦି ସାମଗ୍ରୀମାନ ଗର୍ଭସ୍ଥିତ କଲାପରି ଏ ବନ ସେହି ବୃକ୍ଷମାନଙ୍କୁ ମଧ୍ୟସ୍ଥିତ କରିଅଛି । ସେହିପରି ତମାଳ ପତ୍ର ରୂପକ କେଶମାନଙ୍କୁ ମୁକୁଳା ରଖିଛି । ପୁଣି ସ୍ନାନ କଲାପରେ ଶରୀରେ ସ୍ନେହ କଲାପରି ଦିଶୁଛି । ପ୍ରସୂତ ସ୍ତ୍ରୀ ଉତ୍ତମ ବସ୍ତ୍ରରେ ଆଚ୍ଛାଦିତ ହୋଇଥାଏ । ଏ ବନ ସୁଗନ୍ଧରେ ଆଚ୍ଛାଦିତ ହୋଇଅଛି । ପ୍ରସୂତ ସ୍ତ୍ରୀ ନିଜ ଦେହରୁ ଲଗାଇଥିବା କୁଙ୍କୁମ ପୁଷ୍ପ ପରାଗ ବ୍ୟାଜରେ ଉଚ୍ଛୁଟାଉଛି । ୧ ଉପକୁଲ୍ୟା, ପିପଳି । ୨ଦିବ୍ୟବାସ, ଉତ୍ତମ ବସ୍ତ୍ର ଓ ସୁଗନ୍ଧ ।

ଏ କଥା ବୃଥା ହୋଇଥିବଲେ ଶୋଭିତ ଲଭିଥାନ୍ତା କାହିଁ ସେ ସ୍ଥଳେ ।
ଭସ୍ମ ଦ୍ୱିରଦ-ରଦ-ଚୂର୍ଣ୍ଣ ଛଳବେ ନାଭି କୁରଙ୍ଗ-ନାଭି-ଛଳେ ।
ଯକ୍ଷ ଅମରେ । ପୁଟରେ ଘେନଗଲେ ଏ ବର୍ଣ୍ଣି ।
ରଘୁପତି ପ୍ରିୟବଧୂ ସୁବଧୂ ଏ ପାଳିତ ନ ପାରିବ ଶିଶୁ । ୧୯ ।
ତହିଁ ସୃଷ୍ଟି ଘୋଷ୍ଟ ଶ୍ୟାମଳା ଅଚଳା ମେଳା ତପସ୍ୱିନୀ ତର୍କ ।
ଅବନୀ-ବନିତା ଗଣ୍ଡ ଶୋଭେ ପୀତ ନୀଳ ଅମ୍ଳାନ-ମାଳାରେ କି ।
ଅଭ୍ର ମଧ୍ୟରେ । କେତକୀ-ଦଳ ଝୁରିଏତ ।
ଯେହୁ ସୁବାସରେ ପାଶକୁ ଭ୍ରମରଶ୍ରେଣୀ ହେଉଛନ୍ତି ଆଗତ । ୨୦ ।
ସେକ୍ଷଣି ମିଳି ସୁଲକ୍ଷଣା ମିତଣୀ ସଙ୍ଗେ ମାଙ୍ଗଲ୍ୟାଙ୍କୁ ଓଳଗି ।
କଲ୍ୟାଣ କଲେ ସେ ଭଣିସେ ହୁଅ ତୁ ସୁଭଗୀ ତାହାର ଶୋଭାଙ୍କି ।।
ଯେହୁ ଜନ୍ମିବ । ଜାଣି ଗର୍ବହତେ ମଦନ ।
ତ୍ରିନେତ୍ର-ନେତ୍ର-ଜାତ-ଜାତବେଦରେ ଦହନ ହୋଇଲା ବହନ । ୨୧ ।
ପୃଚ୍ଛା କଲା କେହ ବାଞ୍ଛାଦ୍ରୁମ ହୋଇ ତୁମ୍ଭେ ବାଞ୍ଛା ପୂର୍ଣ୍ଣ କରିବ ।
କହିବ ସେ କାହିଁ ଜନ୍ମିଛି କି ନାହିଁ କି ଦେବ ଦାନବ ମାନବ ।
ହେଲେ ବଞ୍ଚନ । ନେମା ଜାଣିମ ମିଥ୍ୟା ଭାବ ।
ସେ ଭଣି ଆମ୍ଭ ମନେ ଏତ ଅଭ୍ରସି ଏ ପୁଟରେ ଅବଶ୍ୟତ ଥିବ । ୨୨ ।

---

୧୯—ଏକଥା ଯଦି ମିଥ୍ୟା ହୋଇଥାନ୍ତା, ତାହାହେଲେ ସେ ସ୍ଥଳ ଏପରି ଶୋଭା କାହିଁ ଧାରଣ କରନ୍ତା । ହାତୀଦାନ୍ତ ଚୂର୍ଣ୍ଣ ବ୍ୟାଜରେ ପାଉଁଶ ଓ କସ୍ତୁରୀ ବ୍ୟାଜରେ ନାଭି ଦେଖା ଯାଉଅଛି ? ରଘୁପତି ବନ୍ଦଜ୍ରର ଏ ବନ ଅତି ପ୍ରିୟା ସ୍ଥଳୀ, ଏ ପିଲ ପାଳିପାରିବ ନାହିଁ । ଏହି ହେତୁରୁ ଯକ୍ଷ ଓ ଦେବତାମାନେ ନିଜ ନିଜ ପୁରକୁ ( ଅଳକା ଓ ଅମରାବତୀକୁ ) ବେଶ ଭଳି ଓ ଚନ୍ଦନକୁ ନେଇଯାଇ ଅଛନ୍ତି କି ?

୨୦—ତପସ୍ୱିନୀ ମାଙ୍ଗଲ୍ୟା ସେଠାରେ ଶୋଭା ଓ କାଳୀ ସ୍ତ୍ରୀମାନଙ୍କର ସମୂହକୁ ଦେଖି ବର୍ଣ୍ଣନା କଲେ । ବୋଧ ହୁଏ ପୃଥ୍ୱୀ ରୂପକ ସ୍ତ୍ରୀର ଗଣ୍ଡ ହଳଦିଆ ଓ କଳା ଫୁଲର ଅମ୍ଳାନମାଳାରେ ଶୋଭିତ ହୋଇଅଛି କି ? ଏ ଶ୍ୟାମଳ ବନକନ୍ୟା ତା ମଧ୍ୟରେ କେତକୀ ଫୁଲ ହୋଇଅଛି । ଭ୍ରମର ଶ୍ରେଣୀ ସେହି ସୁବାସ ହେତୁରୁ ପାଖକୁ ଆସୁଅଛନ୍ତି । ଏହାହାସ ପୃଷ୍ଠକେତୁ ଅମୁଥିବାର ସୂଚନା କରୁଅଛି ।

୨୧—ସୁଲକ୍ଷଣା ଭକ୍ତପୂର୍ଣ୍ଣ ସେହିକ୍ଷଣରେ ସଖୀମାନଙ୍କ ସଙ୍ଗରେ ମାଙ୍ଗଲ୍ୟାଙ୍କୁ ଓଳଗି ହେଲ । ଯେଉଁ ସୁନ୍ଦର ପୁରୁଷ ଜନ୍ମ ହେବ, ବୋଲି ଜାଣି କନ୍ଦର୍ପ ଗର୍ବ ଛାଡ଼ି ମହାଦେବଙ୍କ ତୃତୀୟ ନେତ୍ରରୁ ଜାତ ହୋଇଥିବା ଅଗ୍ନିରେ ଶୀଘ୍ର ପୋଡ଼ି ମରିଛି । ହେ ସୁନ୍ଦରୀ ? ତୁ ସେ ପୁରୁଷର ପ୍ରିୟା ହୁଅ । ମାଙ୍ଗଲ୍ୟା ଆନନ୍ଦରେ ଏହା କଲ୍ୟାଣ କଲେ ।

୨୨—କୌଣସି ସଖୀ ପଚାରିଲା । ହେ ମାତଃ ? ଆପଣ ବାଞ୍ଛା କଳ୍ପଦ୍ରୁମ ରୂପେ ବାଞ୍ଛା ପୂର୍ଣ୍ଣ କରିବ । ସେ ପୁରୁଷ ଦେବତା କି ଅସୁର କି ମନୁଷ୍ୟ, କେଉଁଠାରେ ଜନ୍ମ ଅଛି କି ନାହିଁ । କହ । ଠକାଇଲେ ଭଳ-କନ୍ୟା ଆପଣଙ୍କର ମିଥ୍ୟା ଭାବ ଥିବାର ଜାଣିବ । ସେ ମାଙ୍ଗଲ୍ୟା କହିଲେ, ଆମ୍ଭ ମନରେ ଏହା ପ୍ରକାଶ ହେଉଅଛି । ସେ ପୁରୁଷ ଏହି ମର୍ତ୍ତ୍ୟପୁରରେ ଅବଶ୍ୟ ଥିବ ।

ଥିବ କପାଁ ଅଛୁ ଅଷ୍ଟୁଦ୍ରେ ଏ ପୁରେ ଜାଣୁଆଇ ଏଣୁ ଉପମା ।
ଅପମାନ ମାନୁ କରେ ୧ତନୁ ତନୁ ସକଳ କଳଙ୍କର ସୀମା ।
ସେହି ହୋଇବ । ବୋଇଲେ ଅବଧୂତ ଥିଲେ ।
ଯା ଯେଣୁ ସୁନ୍ଦର କୁଳେ ଅଶ୍ୱମୁଖା ୨ଶକ୍ର-ତନୁଜ ବୋଲାଇଲେ । ୧୩ ।
ପୁଷ୍କରତୀର୍ଥେ ଭାସ୍କର ଉପରାଗେ ସଘନେ ସ୍ନାନ ଦାନ ଅର୍ଥେ ।
ଥିଲି ସେ ଯାଇ ସର୍ବଶରୀ ମଜ୍ଜାଇ ନେଲା ଅନୁପମ ପଦାର୍ଥେ ।
ହାହା ଶୋଭୁଛି । ପୁଷ୍ପକେତୁ ନାମ ତାହାକୁ ।
ପାଟଳୀପୁତ୍ର ନୃପତିପୁତ୍ର ହେବ ଦମ୍ପତି ଲଭିଲେ ଏହାକୁ ।·୧୪ ।
ବୋଲି ଦେଖାଇଁ ସେ କରକୁ କରଜ-ଖଞ୍ଜ-ଦ୍ୱିଜତ-ଦଶନାର ।
ପୁଲକ ଅଙ୍କୁରେ ମୁକୁରେ ଯେ ଧିକ କରେ କପୋଳ ତତପର ।
କ୍ଷପ-କୋରକ । ଧଇଲା କି ରସଲତିକା ।
କୃମ୍ଭାରେ ଅଧର ଏହି ଶୋଭା ଧରେ ଫୁଟେ ଅବା ଜବା-କଳିକା । ୧୫ ।
ଦ୍ୱିଗୁରୁ କୃତାସ୍ୟା ପ୍ରମଦା ପ୍ରୀତିସ୍ୟା ହୋଇଲା ଶୁରୁ ସବୁଜନ୍ତି ।
ଭଲ୍ୟାଣୀ ବଦନ୍ତି ଶୁଣ ଗୋ ସୁଦନ୍ତ କଲ୍ୟାଣ ସତ ହୋଇଲାନ୍ତି ।
ପ୍ରତିଉତ୍ତର । କଲେ କି ହେବ ସତ ହୋଇ ।
ପୁନରୁକ୍ତି ହେଲା କି କି ପରକାରେ ବାରେ ଦେବା ଆମ୍ଭେ ଦେଖାଇ ।୧୬।

---

୧୩—ଥିବ କଥଂ, ଏ ମହିରେ ନସ୍ତେ ଅଛ, ଏହା ଜାଣି ଅଛୁଁ । ଏହି ହେତୁରୁ ସମ୍ପୂର୍ଣ୍ଣ ଚନ୍ଦ୍ର କଳଙ୍କର ଆଧାର ହେବାରୁ ଏହି ପୁରୁଷ ସଙ୍ଗେ ସମାନ ନହେବା ଅଭିମାନରେ ଦେହକୁ କ୍ଷୀଣ କରୁ ଅଛନ୍ତି ? ମାଗଳ୍ୟାଙ୍କ ସଙ୍ଗେ ଥିବା ଅବଧୂତ କହିଲେ । ବୋଧହୁଏ ସେ ହେବ । ଅଶ୍ୱିନୀ କୁମାର ଯାହା ସୌନ୍ଦର୍ଯ୍ୟ ଯୋଗୁଁ ସୁନ୍ଦର ପୁରୁଷମାନଙ୍କର ମଧ୍ୟରେ ଘୋଡ଼ା ମୁହାଁ ହୋଇଗଲେ ।
୧ତନୁ, ଦେହ ଓ କ୍ଷୀଣ । ୨ଶକ୍ର ତନୁଜ, ଅଶ୍ୱିନୀ କୁମାର ।
୧୪—ସେ ପୁରୁଷ ସୂର୍ଯ୍ୟୋପରାଗ ସମୟରେ ସ୍ନାନ ଦାନ କରିବାକୁ ପୁଷ୍କର ତୀର୍ଥକୁ ଯାଇଥିଲେ । ସମସ୍ତଙ୍କର ମନ ମଜାଇ ନେଲେ । ସେ ଏକ ଅନୁପମ ପଦାର୍ଥ । ଅହାହା ୨ ପୁଷ୍ପକେତୁ (ସୁନ୍ଦରମାନଙ୍କ ମଧ୍ୟରେ ପତାକା) ନାମ ତାକୁ ଏକା ଶୋଭା ପାଉଅଛି । ସେ ପାଟଳି ପୁତ୍ର ରାଜାଙ୍କ ପୁଅ ଏହାକୁ ପାଇ ଦମ୍ପତି ହେବେ ।
୧୫—ଏହା କହି ରାଜକନ୍ୟା ଅଙ୍ଗୁଳି ହାତ ଦେଖାଇ ଦନ୍ତରେ ସେହି ଦାଡ଼ିମ ବୀଜ ପଙ୍କ୍ତିର ଗଣ୍ଡସ୍ଥଳ ପ୍ରେମ-ଅଙ୍କୁର ହେବାରୁ ଦର୍ପଣକୁ ଧିକ୍କାର କଲା । ରସଲତା କଦମ୍ବ କଢ଼ିମାନଙ୍କୁ ଧାରଣ କରିଛି ? ଅବା ଯବାକଢ଼ି ପକ୍ତି ଯାଉଛି, ହାଇହାସ ଓଠ ଏହିପରି ଶୋଭା ଧାରଣ କଲା । ୧କରକ, ଦାଡ଼ିମ ।
୧୬—ଏହି ଶୁଣୁ ସବୁକଥା ରାଜକନ୍ୟା ସୁନ୍ଦର ପୁରୁଷରେ ପ୍ରିତସ୍ୟା ହେଲା । ଏହା ଭୃଗସ୍ୟା ବାଣୀରେ ସଖୀ ବଚନ କରୁ କରୁ କଲ୍ୟାଣୀ ମାଗଳ୍ୟା କହିଲା । ଅଗୋ ସୁନ୍ଦର ଶୁଣ, ମୋ ଆଶୀର୍ବାଦ ସତ ହେଲା । ସଖୀମାନେ ପ୍ରତ୍ୟୁତ୍ତର କଲେ । ସତହେଲେ କଣ ହେବ ? ପୁଣି ମାଗଳ୍ୟାଙ୍କର ଉକ୍ତି ହେଲା । ଆମ୍ଭେ ଯେ କୌଣସି ପ୍ରକାରେ ଅରେ ହେଲେ ସେ ପୁରୁଷକୁ ଦେଖାଇ ଦେବା ।

ଦେଖାଇବ ଏକା ଲେଖାଇବ ନାହିଁ ତିଆରୁ ବନସ୍ପତିର ।
ଲେଖାଇବ ଯେବେ ବନସ୍ପତି ପତ୍ରିକା ରଖାଇବ ଏକା ଶାଣର ।
ସାକ୍ଷୀ ଦେଲା ଯେ । କୃତାର୍ଥ କରିବ ତାହାଙ୍କ ।
ବନ ସଙ୍ଗିନୀ ଇଙ୍ଗିତ ଉକ୍ତି ଯେଣ ଭାଷିଲେ କୋହବ କାହିଁକ । ୧୭ ।

ବିଦ୍ୟା-ବିଶାରଦା ସାରଦା ଏକାଲେ ମାଙ୍ଗଲ୍ୟା ଶତହଂସ ମନେ ।
ପ୍ରବେଶ ଆଦେଶ କରାଇଲେ ମାୟାରଚନେ ବେନି ଦରଶନେ ।
ସେହି ଦୁହିଙ୍କି । ଶୁଭିଲା ଦଇବ ବଚନ ।
ବାଳକ ପ୍ରଥମପଢା ଗୁରୁବର୍ଣ୍ଣ ମନୋରଥ ପଛେ ବିଧାନ । ୧୮ ।

ଅଷ୍ଟଯିଂ ପୁରୁଷ ଏ କାର୍ଯ୍ୟେ ଲାଳସ ଯୋଗରେ ଜାଣିଲେ କଲ୍ୟାଣୀ ।
କଲ୍ୟାଣୀ ଉଦ୍ୟମ ଉଦୟ କଲାକ ଏହା ଅଦ୍ଭୁତପୁଂସ ଜାଣି ।
ମୂର୍ତ୍ତିମନ୍ତ ଯେ । ସେ କାର୍ଯ୍ୟ ବିଧାତା ସମ୍ମୁଖେ ।
ଏଣୁ ସେ ବେନି ହୃଦୟ ଆଦରଶେ ଆଦରେ ପ୍ରତିବିମ୍ବ ସୁଖେ । ୧୯ ।

କାଳ-କାନ୍ତ-ହର କାଳୀ-କାନ୍ତ ହର କାଲି କରିଲେ ଏ ଉତ୍ସବ ।
ଦେଖା ଦେଖି ହୋଇ ଲେଖା ଲେଖି ହୋଇ ନୟନେ ନୟନେ ରଖିବ
ବୋଲି ନୃପଜା । ନୃପଜ ପୁରେ ପଠିଥାଇ ।
ଦୀନବନ୍ଧୁ ନାମ ଧିଆଉଁ ଧିଆଉଁ ଦିନବନ୍ଧୁ ଦେଖା ନ ଯାଇ । ୨୦ ।

---

୧୭—ସଖୀମାନେ କହିଲେ, କେବଳ ସେ ପୁରୁଷକୁ ଦେଖାଇବ, କିନ୍ତୁ ବନସ୍ପତି ପତ୍ରିକା ଲେଖାଇବ ନାହିଁ । ଯଦି ଲେଖାଇବ ତେବେ ପାଖରେ ରଖିବ । ଅନ୍ୟସଖୀ କହିଲା ଯେ ସାକ୍ଷୀଦେଲା, ସେ କିଣ କୃତାର୍ଥ କରିବ ନାହିଁ । ଅନ୍ୟ ସଖୀ କହିଲା ହିଁ ତାହାଙ୍କ ତ ହେବ । ଏହି ପଦ ବନସଖୀ ଇଙ୍ଗିତରେ କହିଲେ ।

୧୮—ଏହି ସମୟରେ ପରମ ପଣ୍ଡିତା ସରସ୍ୱତୀ ମାଙ୍ଗଲ୍ୟା ଓ ଅଦ୍ଭୁତ ପୁରୁଷଙ୍କ ମନରେ ପ୍ରବେଶ କରିଲେ । ମାୟା ରଚନା ଦ୍ୱାରା ଏ ରାଜପୁତ୍ର ଓ ରାଜକନ୍ୟା ଦୁହିଙ୍କୁ ଦେଖା କରାଇବାକୁ ଇଚ୍ଛା କଲାଇଲେ । ସେ ଦୁହିଙ୍କ ଦୈବବାଣୀ ଶୁଣାଗଲା । ମନୋରଥ ଶବ୍ଦ ଉଚ୍ଚାରୁ ପିଲାମାନଙ୍କର ପ୍ରଥମେ ପଢିବା ଗୁରୁ ଅକ୍ଷର (ସିଦ୍ଧିରସ୍ତୁ) ଅର୍ଥାତ୍ ମନୋରଥ ସିଦ୍ଧହେଉ ଏହା ଶୁଭିଲା ।

୧୯—ମାଙ୍ଗଲ୍ୟ ଜାଣିଲେ, ଅଦ୍ଭୁତ ପୁରୁଷ ଏ କାର୍ଯ୍ୟରେ ଲାଳସ ହେଲେଣି । ଅଦ୍ଭୁତ ପୁରୁଷ ଜାଣିଲେ, ମାଙ୍ଗଲ୍ୟା ଏ ବିଷୟରେ ଉଦ୍ୟମ କଲେଣି ଅତଏବ ସେ କାର୍ଯ୍ୟ ବିଧାତା ଆଗେ ମୂର୍ତ୍ତିମନ୍ତ ହେଲା । ଏହି ହେତୁରୁ ମାଙ୍ଗଲ୍ୟା ଓ ଅଦ୍ଭୁତପୁଂସ ଦୁହିଙ୍କ ମନରୂପକ ଦର୍ପଣରୁ ଦୁହିଁଙ୍କର ପ୍ରତିବିମ୍ବ ଅନ୍ୱେଷଣରେ, ଆଦର କଲା ।

୨୦—କାଳକାନ୍ତହର ( କନ୍ଦର୍ପ କାନ୍ତିହାରକ ) ବିଷ୍ଣୁ ଓ କାଳୀଦେବୀଙ୍କ କାନ୍ତ ଶିବ କାଲି ଏ ଉତ୍ସବ ବିଧାନ କରିବେ । ଦୁହେଁ ଦେଖାଦେଖି ହୋଇ ଅକ୍ଷିରେ ଲେଖାଲେଖି ହେଲାପରି ପରସ୍ପର ମନେ ରଖିବ । ଏହା କହି ମାଙ୍ଗଲ୍ୟା ରାଜକନ୍ୟାଙ୍କୁ ଓ ଅଦ୍ଭୁତପୁଂସ ରାଜପୁତ୍ରଙ୍କୁ ନିଜ ନିଜ ଘରକୁ ପଠାଇ ଦେଲେ । ସେ ଦୁହେଁ ବାଞ୍ଛାପୂର୍ଣ୍ଣ ହେବବୋଲି ଦୀନବନ୍ଧୁ ନାମ ଧ୍ୟାନ କରୁକରୁ ଦିନବନ୍ଧୁ ସୂର୍ଯ୍ୟ ଦେଖା ନ ଯିବା ( ଦିନ ଶେଷ ହେବା ) ଜାଣିପାରିଲେ ନାହିଁ ।

ବହିଲା ତାପର ପ୍ରଶଂସା ଶଶାଙ୍କ ବହିଲା କଳା [1]ଅପଘନ ।
ଲୋକନେ [2]ମନୀଷା କଶା [3]ବ୍ରହ୍ମନଶା କଷାୟିତ ନୋହେ ଲୋଚନ ।
ସେଥୁ ହେତୁରେ । ବିଶେଷକର୍ମୀ ରଘୁନାଥ ।
ତାଙ୍କ ଧ୍ୟାନରେ ଉପଇନ୍ଦ୍ର ବିଶେଷ ଚରିତ ରଚନେ ସମର୍ଥ । ୩୧ ।



## ଏକାଦଶ ଛାନ୍ଦ ।



ରାଗ ଶଙ୍କରାଭରଣ ।

( ଦର୍ଶନାନୁରକ୍ତା )

ଶୁଣ ରସିକ ସୁଜାଣ ଆଣ ମାନସକୁ । ଚତୁର ବୋଧି ଦର୍ଶନ ଶୁଭୁଷା ରସକୁ ।
ଅତି ଚତୁଷ୍ଟା ଚତୁର । ବସି ବାଣି କେଉଁଛନ୍ତି ଲୋକନେ ଆତୁର । ୧ ।
କରୁ ଏଥରେ ହେବ ପୁଣି ସେ ରୂପ ଦର୍ଶନ । ଅନୁମାନ ଅଗୋଚର ତନୁଙ୍କ ପ୍ରସନ୍ନ ।
ନାହିଁ ଯହିଁକି ବଚନ । କେତେ ପୁଣ୍ୟ କରିଥିବ କେବଣ ଲୋଚନ । ୨ ।
ଯୁବାଜନ ଗଣଦାତା ବୈକୁଣ୍ଠ ପ୍ରକାର । ବାଟ ଦେଖାଇବା କଥା ବଡ଼ ଚମତ୍କାର
ସ୍ଥାନ ପରମାନନ୍ଦର । ଦୂର କରି ପାରଇ ମାନସ-ଭବ ଦର । ୩ ।

---

୩୧—ସନ୍ଧ୍ୟାରେ ଚନ୍ଦ୍ର ସୂର୍ଯ୍ୟପରି ପ୍ରଶଂସା ପାଇଲା, ଅର୍ଥାତ୍ ତାପପ୍ରଦ ହେଲା । ରାଜକନ୍ୟା ଓ ରାଜପୁତ୍ର ଦୁହିଁଙ୍କ ଶରୀରକୁ ଦହନପରି କଲା । ଦେଖା ଦେଖି ହେବାକୁ ଇଚ୍ଛା ବଢିବାରୁ ସର୍ବ କଳ୍ପତୁଲ୍ୟ ବୋଧ ହେଲା । ଆଖି କଷା ହେଲା ନାହିଁ । ସେଥିନିମିତ୍ତ ବାନ୍ଧିଥିବାରୁ ରାମଚନ୍ଦ୍ର ବନ୍ଦନୀୟକର୍ମା ଅଟନ୍ତି । ଉପେନ୍ଦ୍ରଭଞ୍ଜ ତାଙ୍କୁ ଧ୍ୟାନକରି ବଡ଼ତ୍ତ୍ୱ ଚରିତ ରଚନା କରିବାକୁ ସମର୍ଥ ହୋଇ ଅଛନ୍ତି । [1]ଅପଘନ, ଦେହ; [2]ମନୀଷା, ବୁଦ୍ଧି; [3]ବ୍ରହ୍ମ ନଶା, କଳ୍ପ ।

### ଏକାଦଶ ଛାନ୍ଦ ।

୧—ଆଗ୍ରହ ଦକ୍ଷ ରସିକମାନେ ଏହିପ୍ରକାର ଦର୍ଶନରୂପକ ଅନୁରାଗ ବର୍ଣ୍ଣନାକୁ ମନକୁ ଆଣ (ଶୁଣ) । ସେ ଚତୁର ଚତୁରା ଦୁହେଁ ଦେଖାଦେଖି ହେବାକୁ ଉତ୍କଣ୍ଠିତ ହୋଇ ବସି ରାତି କଟାଉଅଛନ୍ତି । ସାକ୍ଷାତରେ ସ୍ୱପ୍ନରେ ଚିତ୍ରପଟରେ ଓ ଶ୍ରବଣରେ ଦର୍ଶନ ଏହିପ୍ରକାର କାବ୍ୟାଦିରେ ବର୍ଣ୍ଣିତହୁଏ ।
୨—ସେ ରୂପଦର୍ଶନ କେଉଁଠାରେ ହେବ । ଦେହଶୋଭା ଅନୁମାନର ଅଗୋଚର ହୋଇଅଛି । ଅର୍ଥାତ୍ ଅନୁମାନ କରିହୋଇ ପାରୁନାହିଁ । ଯେଉଁ ରୂପ କହିହେବ ନାହିଁ । ସେପରି ପୁଣ୍ୟ କେଉଁ ଆଖି କରିଛି ଯେ ଦେଖିବ ।
୩—ସେ ପ୍ରିୟଜନ ଯୁବା ଲୋକମାନଙ୍କର ଗତି ଦାୟକ ଅତଏବ ବୈକୁଣ୍ଠଲୋକ ପରି । ଯେ ହେତୁ ବୈକୁଣ୍ଠ ସେବକସମୂହଙ୍କର ଗତି ଦାତା ଅଟେ । ବୈକୁଣ୍ଠକୁ ଓ ସେ ପ୍ରିୟଜନକୁ ବାଟ ଦେଖାଇବା କଥା ଅତି ଚମତ୍କାର ଅଟେ । ବୈକୁଣ୍ଠ ପରମାନନ୍ଦ (ବିଷ୍ଣୁ) ଙ୍କର ସ୍ଥାନ । ପ୍ରିୟଜନ ଅଧିକ ଆନନ୍ଦର ସ୍ଥାନ ହୋଇଅଛି ବୈକୁଣ୍ଠ ମନରେ ଜାତଭୟକୁ ନାଶକରେ । ପ୍ରିୟଜନ ମାନସଭବଦର ( କାମଭୟ ) ଦୂରକରିପାରେ ।

କୋଟି ଅମ୍ବୁଜକୁ ନିନ୍ଦୁଥିବ ସେ ଲପନ । ଚଳନେ କଣ୍ଟିବା ସିନା ଦମ୍ଭକୁ କମ୍ପନ ।
ତୋଳା ଜ୍ଞାନ ବୁଡ଼ାଇବ । ଶିଳୀମୁଖ ଟଳିବା ଶୋଭକୁ ଛଡ଼ାଇବ । ୪ ।
ମନ୍ଦ ଦଶିବ ସୁହାସ ଅଳପ ପ୍ରକାଶରେ । ବାନ୍ଧ ନେବ ନୟନକୁ ମୋହନ-
ପାଶରେ ।
ଭାଲ-ତିଳକ ରମ୍ୟକୁ । ଶ୍ରୁତିରେ ଖୋଜିଲେ ନ ପାଇବ ତା ସମକୁ । ୫ ।
ରତି-ବର-ଶୋଭକୁ ଛୁଇଁବ ନାହିଁ ଶିର । ଗୃହୁଁ ଥିଲେ ଭଙ୍ଗୀମାନ କଞ୍ଜିତ କଞ୍ଜିତ
ଏ ଭାଗ୍ୟକୁ ଅର୍ଜିବ କି । ଯେନମତ ଜାଣିଲି ଷଣି ମୁଁ ହେବ ବକ । ୬ ।
ବକ ହୋଇଲେଣି କଲି ନେଲକୁ ଶ୍ରବଣ । ଯାହା ଶୋଭା ଗୃହୁଁ ଶିଳା
ହୋଇବ ଦ୍ରବଣ ।
ଭବେ ମୁହିଁ ମାନୁଷତ । ତରଳିଲି ଘୃତ ମତ ବହି ଯିବ ସତ । ୭ ।
କଟାକ୍ଷ ଅମୃତ ଶୀତଳକୁ ପାଇବାରେ । ସୁକୃତକୁ ପୁଣି ଭଜୁଥିବ ବାରେ ବାରେ
ତହିଁ ଲାଭ ଅଛି ଏତେ । ଭଲ କରି ଦେଖିବ ପଲକ ଅନାସ୍ତୃତେ । ୮ ।
ମୋର କର୍ଣ୍ଣ ମନ ନେତ୍ର ସୁକୃତ-କେଶରୀ । ଅପୂର୍ବ ପଦାର୍ଥେ ଏତେରୂପ
ଅନୁସରି ।
ଶୁଣି ତୋଷ କେ ସ୍ୱଭବେ । କେ କଲି ସଦନ କେ ସଦନ ହେବ ଭବେ । ୯ ।

---

୪-୫—ତାହାର ମୁଖ କୋଟିଏ ପଦ୍ମ ବା ଚନ୍ଦ୍ରକୁ ନିନ୍ଦାକରୁଥିବ । ଚଳିଗଲେ ଦମ୍ଭକୁ କମ୍ପାଇବ । ତୋଳା ଜ୍ଞାନ ବୁଡ଼ାଇଦେବ । ଭ୍ରମର ଟଳିବା ଶୋଭାକୁ ଛଡ଼ାଇବ । ମନ୍ଦହାସ ଅଳ୍ପ ପ୍ରକାଶ ହୋଇ ଚକ୍ଷୁକୁ ମୋହନ ପାଶ ବାନ୍ଧିଦେବ । ଲଲାଟ ତିଳକର ଶୋଭାକୁ ସମାନ ହେବାକୁ ଖୋଜିଲେ ବେଦରେ ମଧ୍ୟ ମିଳିବ ନାହିଁ ।

୬—ପୁରୁଷ ବର୍ଣ୍ଣୁଛନ୍ତି ସେ ସ୍ତ୍ରୀର ଭଙ୍ଗୀମାନଙ୍କୁ ଦେଖିଥିଲେ । ମନ ରତିଦେବୀଙ୍କର ଉତ୍କୃଷ୍ଟ ଶୋଭାକୁ ଛୁଇଁବ ନାହିଁ । ସ୍ତ୍ରୀ ବର୍ଣ୍ଣୁଛନ୍ତି ସେ ପୁରୁଷର ଭଙ୍ଗୀମାନଙ୍କୁ ଦେଖିଥିଲେ କନ୍ଦର୍ପର ଶୋଭାକୁ ମନ ଛୁଇଁବ ନାହିଁ । ଏବେ ମୁଁ ଏପରି ଭାଗ୍ୟକୁ ପାଇବି ? ଯିବାର ଜାଣିବା ମାତ୍ରେ ମୁଁ ତା ପାଖରେ ବକ ହେବି ( ଅଧୀନ ହେବି ) । ରତିବର ଶୋଭା ରତିଦେବୀଙ୍କର ଉତ୍କୃଷ୍ଟ ଶୋଭା ଓ କନ୍ଦର୍ପ ଶୋଭା ।

୭—ଶୁଣିବା ଦିନରୁ ମୁଁ ବକ ହୋଇଣି । ଯାହାର ଶୋଭା ଦେଖିଲେ ପଥର ତରଳି ଯିବ । ମୁଁ ତ ମନୁଷ୍ୟ ଘିଅପରି ତରଳି ବହିଯିବ ନିଶ୍ଚୟ ।

୮—ତାର ଦୃଷ୍ଟିପାତ ରୂପ ଅମୃତର ଶୀତଳତାକୁ ଅନୁଭବ କରି ଥରକୁ ଥର ଅଦ୍ଭୁତ ହୋଇ ଯାଉଥିବ । ସେଥିରେ ଏତିକି ମାତ୍ର ଲାଭ ଅଛି । ପିଛୁଡ଼ା ନ ପଡ଼ିବା ପରି ଭଲକରି ଦେଖିବ ।

୯—ମୋର କାନ ମନ ଓ ଆଖି ସେ ଅପୂର୍ବ ପଦାର୍ଥକୁ ଏତେ ପ୍ରକାର ଅନୁସରଣ କରି ସୁକୃତ ଶ୍ରେଷ୍ଠ ଅଛନ୍ତି । କିଏ (କାନ) ଶୁଣି ସନ୍ତୁଷ୍ଟ ହୋଇଅଛି । କିଏ ( ମନ ) ତାଠାରେ ଘରକଲା (ରହିଲା) । କିଏ ( ଆଖି ) ଭବିଷ୍ୟତ ମାତାବସ୍ଥାନ ହେବ ।

ମନ-କଳ୍ପିତ ସମ୍ପତ୍ତି ସାକ୍ଷାତ ହୋଇବ । ମୁହିଁ ଭଲା ଭାଗ୍ୟବନ୍ତ ଭଲାରେ ଦଇବ
ଏତେ କାଳ ସହିବ କି । ଏଥକୁ ତାଙ୍କୁ ଜଣାଣ ଯେ ମାଇଲେ ବଙ୍କା ।୧୦।
ଦେତେବେଳ ଯାଏ ପଞ୍ଚଶର ନ ନାଶିବ । ଦୁଇଥର ବୋଲଥିବ ଉଚ୍ଚେ
ଶିବ ଶିବ ।
ବସ୍ତୁତକୁ ଅବକାଶ । ରହୁ ନାହିଁ ବଚନେ ସେ କଥା ପରକାଶ । ୧୧ ।
ଦରଶନ କଲା ବେଳେ ସେ ଶୋଭାଶ୍ରେଣୀକ । ଯେଣିକ ମୁଁ ଗୃହ୍ଣି
ଦେଉଥିବଟି ତେଣିକ ।
ଦିଶି ଯାଉଥିବ ମୋତେ । ନିଶି-ନିଦ୍ରା ବେଳେତ ଦେଖିବ ସେହିମତେ ।।
ଗୁଣିବା ଶୁଣିବା ହୋଇ ହେବ ସେ ଚରିତ । ଭଣିବାକୁ ସେହି କଥା
ହୋଇବ ହରିତ ।
ହା ହା ତନମୟ- ରସ । ବେଳେ ବେଳେ ଜାତ କରୁଥିବ ସେ ହରଷ ।।
ନୋହୁଁ ଦରଶନ ଏଣ୍ଡେ ମନକୁ ହରୁଛି । ମନ୍ଦ-ମୂର୍ତ୍ତି କର ତାକୁ ବିଧାତା
କରୁଛି ।
ଅଣ୍ଟୁ ତହିଁରେ ଧିଆନ । ସିଦ୍ଧ କର ନ ପାରଇଁ କର୍ମବନ୍ଧୁ ଆନ । ୧୪ ।
ସ୍ୱରୂପ ପୀୟୂଷ ହୋଇ ହୁଏ ଅନୁମାନ । ସମସ୍ତ ମତରେ ନାହିଁ ମଧୁରେ ସମାନ ।
ଲଭ୍ୟ ପଦାର୍ଥ ନୁହଇ । ଯିବା ଜୀବ ରଖିବା କରଣିକ ବହଇ । ୧୫ ।

---

୧୦—ମନରେ କଳ୍ପନା କରୁଥିବା ସମ୍ପତ୍ତିକୁ ସାକ୍ଷାତରେ ପାଇବ । ମୁଁ ଧନ୍ୟ ଓ ଦୈବଧନ୍ୟ, ଏତେକାଳ ବିଳମ୍ବ ସହ୍ୟ ହେବନାହିଁ । ଏବର୍ତ୍ତମାନରେ ତାହାଙ୍କୁ ଜଣାଉଅଛି । ସେ ପ୍ରଭୁ ପୂଚନାରୁ ମାଉଥିଲେ ।
୧୧—ଦେଖା ହେବାବେଳଯାଏ କନ୍ଦର୍ପ ମାରି ପକାଇ ନଥିବ । ଦୁଇବାର ଉଚ୍ଚସ୍ୱରରେ ଶିବ' ବୋଲଥିବ । କଥାରେ ବସ୍ତୁତ ସେ ଶିବ' ଉଚ୍ଚାରଣ କରିବାକୁ ଅବସର ରହୁନାହିଁ ।
୧୨—ତାର ଶୋଭା ଶ୍ରେଣୀକି ଦେଖିଲା ବେଳେ ମୁଁ ଯେଣିକି ଗୃହ୍ଣିବ, ତେଣେ ଦେଖା ଯାଉଥିବ ରାତିରେ ଶୋଇଲା ବେଳେ ମଧ୍ୟ ସେପରି ସ୍ୱପ୍ନରେ ଦେଖିବ ।
୧୩—ତାହାର ଚରିତ କେବଳ ସବୁବେଳେ ଗୁଣିବାକୁ ଓ ଶୁଣିବାକୁ ହେବ । ତାର କଥା କହିବାକୁ ହେବ । ଅହା ଶୁଣି ଗୁଣି ଦେଖି ତନ୍ମୟ ହେବା ସାବୁ ବେଳେ ବେଳେ ହର୍ଷ ଜନ୍ମଉଥିବ ।
୧୪—ଦେଖା ନ ହେଉଁ ମନକୁ ଏପରି ହରଣ କରୁଛି । ଅତଏବ ମନ୍ଦ ପରି ତହିଁରେ ସର୍ବଦା ଧ୍ୟାନ ଅଛି । କିନ୍ତୁ ଅଦୃଷ୍ଟ ଦୋଷରୁ ମୁଁ ତାହା ସିଦ୍ଧ କରିପାରୁ ନାହିଁ । ଅନ୍ୟଥା ହେଉଅଛି ।
୧୫—ତାର ସ୍ୱରୂପ ଅମୃତ ବୋଲି ଅନୁମାନ ହେଉଅଛି । କିନ୍ତୁ ସବୁ ପ୍ରକାର ମାଧୁର୍ଯ୍ୟରେ ସମାନ ନୁହେଁ । ସ୍ୱାଦୁରେ ସମାନ ହେଲେ ମଧ୍ୟ ସୌନ୍ଦର୍ଯ୍ୟରେ ସମାନ ନୁହେଁ । ଅମୃତ କିଣିହେବା ପଦାର୍ଥ, କିନ୍ତୁ ଏ ମିଳିବା ପଦାର୍ଥ ଅଟେ । ଅମୃତ ପରି ଯିବା ଜୀବନକୁ ରଖିବାକୁ କ୍ଷମତା ଅଛି ।

ମନ-କୃପଣକୁ ହେଉଁ ଚଉକ ରତନ । ଗଣି କରୁ ଥୋଇଅଛୁ କରି କ ଯତନ ।
ମାର-ତସ୍କର ଭୟରେ । ଦକ ଦକ ହେଉଅଛୁ ମାଙ ହୃଦୟରେ ।୧୬।
ଫନ୍ଦାକରିବାର କଷ୍ଟ ହେଲାଣି ତାହାର । ବସ୍ତୁରଇ ଦୁଃଖ-ଦଶା କରିବ ସଂହାର
ସବୁ ଗଲ-ବନ୍ଧାବଳୀ । ଅଜ ଯାଏ କେହ ତାହା ପାଶ ନାହିଁ ବଳି ।
ଭେଟୁଁ ବୁଡ଼ିବ ହେବ ଯେ ପ୍ରମୋଦ-୧ଅକୂପାର । ବ୍ୟକ୍ତ ହୋଇବେ ଉପମା-ରତନ ଅପାର ।
ଅଣିମାକୁ କାହିଁ ଡର । ୨ପ୍ରଳୟ-ସୂଚକ-ଘାଟ କରିବେ କ ତର ।୧୮।
ଏ ହୋଇଲେ ନବ-ସୃଷ୍ଟି ହେବ ଯେ ଉଦିତ । ୧ସଲ୍ଲଳ ବିହାର ତହିଁ ହୋଇ ଯେ ଉଚିତ ।
ସେହି ରସ ଜଗଜରେ । କୋହ୍ଵ ଲାଲସ ଆଉ ଅନ କାରଣରେ ।୧୯।
ବିବିଧ ବଶୀକରଣ ବୋଲନ୍ତି ସଂସାର । କ ମନ୍ତ୍ର କ ମଣି କେଉଁ ଔଷଧିସାର ।
ସସ୍ୱରନ୍ତି କେ ଉପାୟୀ । ଯେଣୁ ଥାନ୍ତି ତାହା ଚତୁର୍ବାକ୍ଷ ବେଲ ପାଇ ।୨୦।
ଭଣାଅଧିକେ ସଯୋଗ ପୂର୍ବରୁ ହୋଉଛନ୍ତି । ଶଶ ରହି ଚନ୍ଦ୍ରେ ସନ୍ତୁ ପୀୟୂଷ ପିଉଛନ୍ତି ।
ଗଲା ଏକଳୟ ପଦ । ଉକ୍ତି ପରଚୟ ଏହିଠାରୁ ଆସପଦ ।୨୧।

---

୧୬—ଯାହାର ଉଚିତ ମନ ରୂପକ ଦରିଦ୍ର ରତ୍ନ ହୋଇଅଛି । ମନ ତାକୁ କ ଯତ୍ନରେ ଗଣି କରି ରଖିଚି । କନ୍ଦର୍ପ ରୂପକ ଚୋର ଭୟରେ ହୃଦୟ ଦକ ଦକ ହେଉଅଛି ।

୧୭—ବର୍ତ୍ତମାନ ତାକୁ ଫନ୍ଦା କରିବାକୁ ପଡ଼ିଲାଣି । ତାହା ବାଗ ଦୁଃଖ ଦୁର୍ଦ୍ଦଶା ଦୂର କରିବାକୁ ବଚାରୁଛି । କିନ୍ତୁ ସବୁ କଥା କପାଳ ଲେଖା ଅକ୍ଷର ଯାହାର ଅଧୀନ ଅନ୍ନ ପର୍ଯ୍ୟନ୍ତ ସେ କପାଳକୁ କେହି ବଡ଼ ନାହାନ୍ତି ।

୧୮—ପଚାରର ଭେଟ ହେଲେ ଅନନ୍ଦ ସମୁଦ୍ର ବଢ଼ିବ । ପ୍ରତି ଅଙ୍ଗର ଉପମାମାନେ ଉଚ୍ଚତର ପ୍ରକାଶ ପାଇବେ । ସେ ଉପମା ରତ୍ନମାନଙ୍କୁ ଗ୍ରହଣ କରିବାକୁ ଅବସର ହେବ ନାହିଁ । ତେଢା ବୁଡ଼ିଯିବା ଲକ୍ଷଣ କଡ଼ଚାଦମାନେ ପ୍ରଳୟକାଳର ସଂକେତମାନଙ୍କପରି କର୍ମ ମୋତେ କାତର କରିପକାଇବେ ।
୧ ଅକୂପାର, ସମୁଦ୍ର । ୨ ପ୍ରଳୟ, ତେଢା ବୁଡ଼ିଯିବା ଓ ସହାର ।

୧୯—ଏ ତେଢା ବୁଡ଼ିଯିବା ରୂପକ ପ୍ରଳୟ ହେଲେ, ପୁଣି ନୂଆ ସୃଷ୍ଟି ଅରମ୍ଭ ହେବ । ନୂଆ ସୃଷ୍ଟି ହେଲେ ଉଚିତ ରୂପେ ଜଳମାନଙ୍କର ବଶେଷରେ ହରଣ ହୋଇଯାଏ । ଅମ୍ଭର ମଧ୍ୟ ବିହାର ଉଚିତ ହେବ । ମୁଁ ସେହି ରସରେ ଜର ଜର ହେବାରେ ଅନ୍ୟ କାର୍ଯ୍ୟମାନଙ୍କରେ ଅସକ୍ତ ହେବନାହିଁ ।
୧ସଲୀଳ ବିହାର୨ ଜଳମାନଙ୍କର ବିଶେଷ ରୂପେ ହରଣ ଓ ଲୀଳା ସହିତ ବିହାର ।

୨୦—ଅନେକପ୍ରକାର ବଶୀକରଣ ଉପାୟ ଅଛି ବୋଲି ସଂସାର ଲୋକେ କହନ୍ତି । କେଉଁ ମଣି କେଉଁ ମନ୍ତ୍ର ଓ କେଉଁ ଔଷଧ ସାର (ଶ୍ରେଷ୍ଠ) ଅଛି, କୌଣସି ଉପାୟ ଜାଣିବା ଲୋକକୁ ପଚାରନ୍ତି । ତା ସବୁ ଚତୁରକ୍ଷ ଲେକକୁ ରଖିଥାନ୍ତି ।

୨୧—ଅମ୍ଭ ଦୁହିଙ୍କର ଭେଟ ଥିଲେ କିଛି ଅଳେଇ ସଂଯୋଗ ହେବନାହିଁ ଏହା ଭାବ କନ୍ୟଅଛି । ପୂର୍ବକାଳରୁ ସୂର୍ଯ୍ୟ ଅଧିକ ଓ ଭଣାର ମିଳନ ରହିଅଛି । ଦେଖ ଚନ୍ଦ୍ରରେ ଠେକୁଆ ରହିଅଛି । ସେହିମଧ୍ୟ ଅମୃତ ପିଉଅଛି । ଏକ ପ୍ରକାର ଲୟରେ ତାନଥିବା ପଦମାନ ଗଲା । ଏବେ ଏଠାରୁ ବଦ୍ଧଦମାନେ ସ୍ତ୍ରୀ ଓ ପୁରୁଷ ଦୁହିଙ୍କର ଉକ୍ତିର ପରିଚୟ ଥାନକଲା ।

କୁମାରୀ ବସ୍ତ୍ରେ ମୁଁ ତ କମଳା ଅଟଇ । ପୁଂସ-ବଧୂ ଜାନୁ-ଲୀଳା ମୋତେ ସେ ଘଟଇ ।
ଗୁଣ-ଗର୍ବିତା ଲକ୍ଷଣ । ଉତ୍କଣ୍ଠା ବଶରୁ କରି ହେଲା ବିଚକ୍ଷଣ । ୧୨ ।

ପୁନଃପୁନଃ ଭାବନା କରଇ ସୁରସିକ । ହୋଇବେ ବଡାଇସ୍ଥାନ ଏବେ କଉଶିକ
ତପ ବଳେ ଅନାୟାସେ । ବ୍ରହ୍ମପଦ ସୁଖ ମୋର ଜାତ ହେଉ ଆସେ । ୧୩ ।

ଗନ୍ଧର୍ବ-ସହ୍ୟା ଭାବଇ ଫୁଲ ଚମ୍ପା ପରି । ଭ୍ରମର ମୋହିତ ତହିଁ ନୋହେ ପରମ୍ପରି ।
କେବା ହେଲେ ସେତିକିରେ । ଏ ଜୀବ ଯିବାର ହେବ ନ ରହି ଶରୀରେ । ୧୪ ।

ନାଗର ଭାବେ ପଦ୍ମିନୀ ସୁରଭି-କଳସ । ମୁଦ୍ରିତ କରି ନ ରଖେ ସୁଧାକରେ ଲସ
କି କରିବଟି ତେମନ୍ତେ । ଦଗ୍ଧ ହେବ ନରତେ ସଗର-ସୁତ ମତେ । ୧୫ ।

ବାଳୀ ରୂପ-ଗର୍ବେ ଭଳ ବୋଲନ୍ତି ଜଗତେ । ନାହିଁ ତ ମୋ ତୁଲ୍ୟ ଶୋଭା ବର୍ତ୍ତମାନ ଗତେ ।
ଆଉ ଆଗତେ ନୋହିବ । ଏମନ୍ତ ସ୍ୱରୂପ ଯୁବା ଚିତ୍ତ ନ ମୋହିବ । ୧୬ ।

---

୧୨—କୁମାରୀ ବିଚାରି କହୁଅଛି । ମିତ କମଳା ( ପଦ୍ମିନୀ ଓ ଲକ୍ଷ୍ମୀ ) ଅଟେ, ତେବେ ମୋର ପୁରୁଷଚନ୍ଦ୍ରଙ୍କ ଜାନୁରେ ଲୀଳା କରିବା ଉଚିତ ହୋଇଅଛି । ଲକ୍ଷ୍ମୀଙ୍କର ( ବଧୂ ) ବିଷ୍ଣୁଙ୍କ ଜାନୁରେ ଲୀଳାହୁଏ । ଅତେ ପଣ୍ଡିତମାନେ କୁମାରୀର ଉତ୍କଣ୍ଠା ହେତୁରୁ ଗୁଣ ଗର୍ବିତା ଲକ୍ଷଣ ହେଲା ।

୧୩—ସେ ରସିକ ରାଜପୁତ୍ର ପୁନଃ ପୁନଃ ଭାବନା କରୁଅଛି । ଏବେ ( କୌଶିକ ) ବିଶ୍ୱାମିତ୍ର ବଡାଇସ୍ଥାନ ହେବେ । ସେ କଠୋର ତପସ୍ୟାରେ ଯାହା ପାଇଥିଲେ ସେ ବ୍ରହ୍ମପଦର ସୁଖ ମୋର ବିନା ତପସ୍ୟାରେ ଅକ୍ଲେଶରେ ହେଲା ।

୧୪—ଗନ୍ଧର୍ବ ସହ୍ୟା କୁମାରୀ ଭାବୁଛି । ମୁଁ ଚମ୍ପାଫୁଲ ପରି । ତହିଁରେ ଭ୍ରମର ଆସକ୍ତ ହୁଏ ନାହିଁ । ଏହା ପରମ୍ପରା ଅଛି । ସେ ପରି ପୁରୁଷର ଆସକ୍ତି ଯଦି ମୋଠାରେ ନ ହେବ । ତେବେ ଏ ଜୀବନ ଶରୀରରେ ନରହି ଚାଲିଯିବ ।

୧୫—ନାଗର ରାଜପୁତ୍ର ଭାବୁଅଛି । ସେ ସୁନ୍ଦରୀ ସୌରଭରର କଳସ ପଦ୍ମିନୀ ଅଟେ । ଦେବତା ମୁଖ ମୁଦ୍ରିତ କରି ଚନ୍ଦ୍ରଙ୍କଠାରେ ଆସକ୍ତି ରଖେ ନାହିଁ । ଏ ପଦ୍ମିନୀ ସେହିପରି ମୋଠାରେ ଆସକ୍ତି ନ ରଖିଲେ, ମୁଁ କଣ କରିବ । ସଗର ପୁତ୍ରମାନଙ୍କ ପରି ସର୍ବଦା ଦଗ୍ଧହେବ । କପିଳ ଶାପରେ ସଗର ପୁତ୍ରମାନେ ସବୁବେଳେ ଜଳୁଥିଲେ ।

୧୬—ବାଳୀ ସ୍ୱରୂପତି ସୌନ୍ଦର୍ଯ୍ୟ ଗର୍ବରେ ଭାବୁଅଛି । ମୋପରି ଶୋଭା ଏ ଜଗତରେ ବର୍ତ୍ତମାନ ନାହିଁ । ପୂର୍ବେ ନ ଥିଲା, ଓ ହେବ ନାହିଁ । ଏହା ସମସ୍ତେ କହୁଅଛନ୍ତି; ଅତଏବ ଏପରି ସୌନ୍ଦର୍ଯ୍ୟ କ'ଣ ଯୁବାର ଚିତ୍ତ ମୋହିତ କରିବନାହିଁ ?

ପୁରୁଷ ଭାବେ ପୂତନା-ମର୍ଦ୍ଦନ-ନନ୍ଦନ । ହୋଇ କାହିଁ-ଈର୍ଷ୍ୟା କି ସମ୍ଭବ
ମଦନ ।

ଛନ୍ନ କରିବ ତା ଲୀଳ । ସ୍ତନ ବ୍ୟଞ୍ଜେ ଅଷ୍ଟ ପୁଣି ଶମ୍ଭୁକୁ ସମ୍ଭାଳ । ୨୭ ।

ଭାମା ଚିନ୍ତା ଥାଉ ଉର କଠିନ ପାଷାଣ । ରସିକ ନୋହିବେ ପରା ସେ
ହେମର-ଶାଣ ।

ଗୁଣୀ କଷ ତା ତହିଁରେ । ହେମ-ଅଙ୍ଗୀ ବୋଲି ମୋତେ ସମସ୍ତେ କହନ୍ତି ॥

ସିହାଣ ବର୍ତ୍ତରେ ମୋତେ ନ କରିବ ଦୟା । ଗିରି ପରରେ କଠୋର ହୃଦଜ
ଉଦୟା ।

ଏଥିଁ ଭରସା ହୁଅଇ । ଭଲ କଣ୍ଠ ନାରିକେଳ ଉପମା ଦିଅଇ । ୨୯ ।

ଆରୁ ଦୁହେଁ ହୋଇଲେ ନର୍ମ୍ମଳ-ଭାବ ଦଶା । ଦେଖି ସୁଖୀ ବୃଦ୍ଧି ଥିଲ ଭେଟ
ହେବା ଆଶା ।

ବେନି ଗଲେ ନିତ ଅଣେ । କାବ୍ୟ ସର୍ଗ ଭଙ୍ଗେ ଯଥା ଆନ ବୃତ୍ତି ବସେ । ୩୦ ।

ଏତ ପରାକୃତ କାବ୍ୟ ଖ୍ୟାତ ପ୍ରାନ୍ତ ସତ । ଦୃଷ୍ଟି ଦୃଷ୍ଟାନ୍ତର ଏଥି ଅଛି ବିଶେଷତ

ଯେନ ନୈଷଧ ପରାୟେ । ଉପଇନ୍ଦ୍ର କହେ ବୁଧ ପ୍ରମୋଦ କରାଏ । ୩୧ ।

---

୨୭—ପ୍ରଭୁଙ୍କ ଭାବୁଅଛି । କନ୍ଦର୍ପ ପୂତନା ମର୍ଦ୍ଦନ କୃଷ୍ଣଙ୍କର ପୁତ୍ର ହୋଇଥିବାରୁ ସ୍ତ୍ରୀଠାରେ ଈର୍ଷ୍ୟା କରିବା ସମ୍ଭବ ? ପୁଣି ସେ ସୁନ୍ଦରୀ ସ୍ତନବ୍ୟାଜରେ ମହାଦେବଙ୍କୁ ସମ୍ଭାଳଛି । ଅତଏବ ତାହା ଲୀଳା କନ୍ଦର୍ପ ଅବଶ୍ୟ ଲୁପ୍ତ କରିବ ।

୨୮—ଭାମ ଚିନ୍ତା କରୁଅଛି ସେହିଙ୍କ ହୃଦୟ ପଥର ପରି କଠିନ, ଅତଏବ ମୋଠାରେ ରସିକ ନାହିଁ ପରା ? କିନ୍ତୁ ଏହା ନୁହେଁ । ପଥର ସୁନାର ପରୀକ୍ଷାସ୍ଥଳ, ଗୁଣିମାନେ ତାକୁ ( ସୁନାକୁ ) ତହିଁରେ କଷ କରନ୍ତି । ମୋତେ ସମସ୍ତେ ହେମାଙ୍ଗୀ ବୋଲି କହନ୍ତି । ସେ ପ୍ରଭୁଙ୍କର ଗୁଣୀ, ଅବଶ୍ୟ ମୋତେ ହୃଦୟରେ କଷିବେ ।

୨୯—ତରୁଣ ରାଜପୁତ୍ର ବିଚାର କରୁଅଛି । ପର୍ବତପରି କଠିନସ୍ତନ ଜାତହୋଇଥିବାରୁ ସେ କଠୋର ହୃଦୟା କୁମାରୀ ମୋତେ ଦୟା କରିବ ନାହିଁ । କିନ୍ତୁ ଭଲ କବିମାନେ ସ୍ତନକୁ ନଡ଼ିଆ ଉପମା ଦିଅନ୍ତି ନଡ଼ିଆ ଉପରେ ଟାଣ ଭିତର ସରସ, ଏହି ହେତୁରୁ ମୋର ଭରସା ହେଉଅଛି ଦୟା କରିବ । ୧ନଡ଼ିଆ, ସ୍ତନ ।

୩୦—ଦୁହେଁ ଏପରି ଭାବୁ ଭାବୁ ଚିତ୍ତନିର୍ମ୍ମଳ ହେଲେ, ଅର୍ଥାତ୍ ରାତ ପାହିଲା ଦେଖି ସୁଖୀ ହେଲେ । ଆଜି ଭେଟ ହେବ ଏହି ଆଶା ବଢ଼ିଲା । ଦୁହେଁ ନିତ କରାଇବାକୁ ଗଲେ । ଯେପରି କାବ୍ୟରେ ସର୍ଗ ଶେଷରେ ଅନ୍ୟପ୍ରକାର ବୃତ୍ତ ବ୍ୟବହାର ହୁଏ । ସେହିପରି ଅନ୍ୟ ବ୍ୟାପାର ଅବଲମ୍ବନ କଲେ । ୧ ଅଣା, ଦଶ ଓ ତୃଷ୍ଣା । ୨ବୃତ୍ତ, ବୃତ୍ତ ଓ ବ୍ୟାପାର ।

୩୧—ଏପ୍ରାନ୍ତ ଛନ୍ଦ ପ୍ରାକୃତ କାବ୍ୟ ଅଟେ, ଏଥିରେ କବିଭୁଣକ୍ତିରେ ଦୃଷ୍ଟାନ୍ତମାନ ବିଶେଷରୂପେ ଅଛି । ଏ ଛନ୍ଦ ନୈଷଧପରି ପଣ୍ଡିତମାନଙ୍କର ଆନନ୍ଦ ଜାତ କରୁଅଛି । ଅତଏବ ଏହାକୁ ସେହିପରି ଗ୍ରହଣ କର । ଉପେନ୍ଦ୍ରଭଞ୍ଜ କହୁଅଛନ୍ତି ।

——§——

## ଦ୍ୱାଦଶ ଛନ୍ଦ ।

### ରାଗ ବରାଡ଼ି । ଆଷାଢ଼ଶୁକ୍ଳ ବାଣୀ ।

( ସୁନ୍ଦରୀ ବେଶ ରଚନା )



ଳ [୧]ବାଳଜଣେ ଏ କଥାପ୍ରସଙ୍ଗ । ତାଙ୍କ ଶତ୍ରୁ କାହିଁ ସୁଗୀତେ ସଙ୍ଗ ।
ଯେ କବି ଅର୍ଥୀ ପଣ୍ଡିତ ସୁହୃଦ । ରସିକ ଯେହୁ ଯେନମେ ଏ ଛନ୍ଦ ।।
ବ୍ୟସ୍ତ ଅଲଙ୍କାର । ମଣ୍ଡନ ବଧୂ ନିର୍ଦ୍ଦୋଷ ବିଗ୍ରହ । ୧ ।
ଉତ୍ପ୍ରେକ୍ଷା ଉପମା ରୂପକ ଭିନ୍ନ । ବକ୍ରୋକ୍ତି ଶ୍ଳେଷ ଅଭିପ୍ରାୟ ଯେଣ ।
ଦତ୍ତ ଚ୍ୟୁତାକ୍ଷର ଉଦୟ କାହିଁ । ବୁଝି [୧]ସଖ୍ୟାବାନ ଆୟତ୍ତ ନାହିଁ ।
ନାଡ ସାରିବାକୁ । ସଖୀଗଣେ ବେଢ଼ି ନୃପ-ନନ୍ଦିନୀକୁ । ୨ ।
ସୁଭଗଜା-ବଳୀ ଭଲ ଏ ବାଳା । ବର୍ଣ୍ଣିବ ହେମ ପୂରଟ ପିତୁଳା ।
ଦିବ୍ୟ ପୀଠ [୧]ଭୁଲ-ପାଟରେ ବସାଇ । ହରିଦ୍ରା ଲେପ ଦେଇ ଉଦ୍ଧୁଳାଇ ।
ପତନ ସେ ରେଣୁ । କର-କରତେ ଘରଷଣ ଯେଣୁ ।।
ନୂତନେ ଦହିତ ବିରହା-ନଳେ । ହେବରୁ ଜାଣି ମଜ୍ଜାଇଲେ ଜଳେ ।
ତୈଳ-ଯୋଗ-ଚେଲ ଛଳ ରସାଣ । ପାଇ କାନ୍ତି ମହୋଜ୍ଜ୍ୱଳ ଦ୍ୱିଗୁଣ ।
ତହୁଁ ନେଇ ପୁରେ । ବସାଇ ବେଶ କରିବା ବିଗ୍ରହେ । ୪ ।

---

## ଦ୍ୱାଦଶ ଛନ୍ଦ ।

୧—କବି ଦୁର୍ଜନ ଓ ମୂର୍ଖ ଲୋକମାନଙ୍କ ପକ୍ଷରେ ଏହି କଥା ପ୍ରସ୍ତାବ କରୁଅଛନ୍ତି ଯେ ସେମାନଙ୍କର ହୃଦୟ ଉତ୍ତମଗୀତରେ କାହିଁ ଆସକ୍ତ ହେବ । ଯେ କବି ଓ ଅର୍ଥଜ୍ଞ ପଣ୍ଡିତ ଏବଂ ସରସ ହୃଦୟ ଲୋକ ହୋଇଥିବେ । ସେ ଏ ଛନ୍ଦ ଗ୍ରହଣ କରିବେ । ଏ ଛନ୍ଦରେ ଉପରବାକୁ ବକ୍ଷ୍ୟ ଅଳଂକାର-ମାନଙ୍କଦ୍ୱାରା ମଣ୍ଡନ ବଧୂ ନିର୍ଦ୍ଦୋଷ ଭାବେ ବର୍ଣ୍ଣିତ ଅଛି । ବିଗ୍ରହ କର । ୧ବାଳଜଣ, ମୂର୍ଖ ।

୨—ଏ ଛନ୍ଦରେ ଉତ୍ପ୍ରେକ୍ଷାରୂପକ ଓ ଉପମା ଅଳଙ୍କାରମାନେ ଅଛନ୍ତି । ଭଲ ଅଭିପ୍ରାୟ ସହିତ ବକ୍ରୋକ୍ତି ଓ ଶ୍ଳେଷ ଅଳଂକାର ମଧ୍ୟ ଅଛି । କେଉଁ କେଉଁଠାରେ ମଧ୍ୟ ଦତ୍ତାକ୍ଷର ଚ୍ୟୁତାକ୍ଷର ପ୍ରଭୃତି ଅଛି । ପଣ୍ଡିତମାନେ ବୁଝ । ଅନ୍ୟର କ୍ଷମତା ନାହିଁ । ସଖୀମାନେ ନାଡ ସାରିବାକୁ ସେ ରାଜପୁତ୍ରୀକୁ ବେଢ଼ିଲେ । ୧ସଖ୍ୟାବାନ୍, ପଣ୍ଡିତ ।

୩—ସୁନ୍ଦରୀ ସଖୀମାନେ ଭାବଲେ, ଏ ବାଳା ବର୍ଣ୍ଣିବ ସୁବର୍ଣ୍ଣ ଘଟିତ ପୂର୍ଣ୍ଣାଙ୍ଗ ପିତୁଳା ଅଟେ, ଅତଏବ ତାକୁ ଉତ୍ତମ ଆସନ ରୂପକ ନିକଟରେ ବସାଇଲେ, ଉଷାଣିଲାପରି ହଳଦୀ ବୋଳି ଉଦ୍ଧୁଳାଇଲେ, ହାତରୂପକ କରତରେ ଘସିବା ହେତୁରୁ ସ୍ୱର୍ଣ୍ଣରେଣୁପରି ମଳକୁ ପଡ଼ିଲା । ୧ଭୁଲପାଟ, ନିତ୍ତଡ ।

୪—ସୁନା ପିତୁଳାକୁ ନିଆଁରେ ପୋଡ଼ି ପାଣିରେ ପକାଇଲାପରି, ନୂଆ ବିରହରୂପ ଅଗ୍ନିରେ ଦଗ୍ଧ ହୋଇଥିବାର ଜାଣି ଜଳରେ ସ୍ନାନ କରାଇଲେ । ତୈଳ ଯୋଗ ଚେଲ ( ଗାମୁଛା ) ଦ୍ୱାରା ପୋଛିଦେବା ଛଳରେ ରସାଣିଲେ । ସେ ରସାଣ ପାଇ କାନ୍ତି ଦୁଇଗୁଣ ଉଜ୍ଜ୍ୱଳ ହେଲା । ତହୁଁ ଉତାରୁ ଘରକୁ ନେଇ ବସାଇ ବେଶ କରିବାକୁ ବସିଲେ ।

ଶିଳ୍ପକାରିକାଏ କହିଲ ତହିଁ । ମହା ମଣ୍ଡନଗତି-କୁମାରୀ ତୁହି ।
ନନ୍ଦା ଅଲଙ୍କାରେ ହେବାକୁ ଶୂନ୍ୟ । ଅଲଙ୍କାରେତ ହୋଇଛୁନ ଧନ୍ୟ ।
ଅଲଙ୍କାରେ ତୋତେ । ଅଲଙ୍କାର କରି ଲେଖୁଁ ସମସ୍ତେ ॥
ତଥାପି ଭୂଷଣ ନୋହେ ଦୂଷଣ । ତୁହି ଚନ୍ଦ୍ରମା ସେ ରଜନୀ ଜାଣ ।
ପରସ୍ପର କରେ ଶୋଭା ଅଧିକା । ସୁକୁମାରି ବୋଲି ନ କର ଶଙ୍କା ।
ଏଥୁଁ ହେବ ଭାରୀ । ପୟୋଧର ନୋ ଧରାଧର ପରି । ୬ ।
ତାର ଏମନ୍ତ କହୁଁ ଭୃଙ୍ଗା-ଆଳୀ । ବେଶ ସମ୍ଭାରମାନ ଘେନି ମିଳି ।
କେ କରେ ମୁକୁର ଦେଖାଇ । ମୁଖାବିମ୍ବ ଧରି ବିମ୍ବ ବୋଲାଇ ।
ବୋଇଲା ଯେ ଜଣେ । ଦରପଣ ଯିନା ବହେ ଇଷଣେ ॥
ଏ କଥା କହିବାର ତାତପର୍ଯ୍ୟ । ଅଧିକ ବଳି ବାସେ ଶିରୋଧାର୍ଯ୍ୟ ।
ଫେଇ ସୁଗନ୍ଧ ଧୂମେ ଧୂପ ଦେଇ । ଗଜଦନ୍ତ-କଙ୍କତିକା ଚଳାଇ ।
ସେ ଏମନ୍ତ ଦିଶି । ଜଳଦ ପରେ ଧାମେ ଅର୍ଦ୍ଧଶଶୀ । ୮ ।
କଲ ଭଲ ବେଣୀ ହେଲ ଏ ଦୃଷ୍ଟି । କୁରୁଣ୍ଟକ ଗଣ୍ଠି କହ୍ଲାର ଫୁଟି ।
ରାଜହଂସପନ୍ତି ମୋତି-ସୀମନ୍ତ । ସ୍ୱର୍ଣ୍ଣ-ପିହାଣିଆ ଅଗ୍ରରେ ତଥି ।
ବଣା ଏକ ହଂସୀ । କାଳିନ୍ଦୀ ସ୍ରୋତେ ଯାଉଅଛି ଭାସି । ୯ ।

---

୫—ସେଠାରେ ବେଶକାରିଣୀମାନେ କହିଲେ, ହେ ସୁନ୍ଦରି ତୁମ୍ଭେତ ମହା ସ୍ୱକନ୍ୟା ଅଳଙ୍କାର ଶାସ୍ତ୍ରରେ ଦକ୍ଷ ହେଲଣି, ଅଳଙ୍କାରଶୂନ୍ୟ ହେବା ତୁମ୍ଭ ପକ୍ଷରେ ନିନ୍ଦା, ଆମ୍ଭେ ସମସ୍ତେ କୁବେର-ପୁରୀରେ ଥିବା ତୁମ୍ଭକୁ ସ୍ତ୍ରୀମାନଙ୍କର ଅଳଙ୍କାର ବୋଲି ଲେଖାକରୁଁ ।

୬—ତେବେମଧ୍ୟ ଅଳଙ୍କାର ତୋତେ ଦୂଷଣ ନୁହେଁ । ତୁମ୍ଭେ ଚନ୍ଦ୍ର, ଅଳଙ୍କାର ସବୁ ରାତି । ଅତଏବ ପରସ୍ପରରେ ଅଧିକ ଶୋଭା ଅଛି । ତୁମ୍ଭେ କୋମଳାଙ୍ଗୀ ଅଳଙ୍କାର ଭାରି ହେବବୋଲି ଶଙ୍କା କର ନାହିଁ । ତୋ ସ୍ତନତ ପର୍ବତପରି । ଏହା ଅପେକ୍ଷା ଅଳଙ୍କାର କ'ଣ ଅଧିକା ଭାରିହେବ ।

୭—ସେ ବେଶକାରିଣୀ ଏପରି କହୁଁ କହୁଁ ଚତୁର ସଖୀ ବେଶ ସାମଗ୍ରୀମାନ ଘେନି ପହଞ୍ଚିଲେ କୌଣସି ସଖୀ ହାତରେ ଦର୍ପଣ ମାତ୍ର ଦେଖାଇକରି କହିଲା । ମୁଖର ପ୍ରତିବିମ୍ବ ଧରିବାରୁ ଏ ଦର୍ପଣ କାହିଁ ନାମ ଧାରଣ କରିଅଛି କି ? ଅନ୍ୟଜଣେ କହିଲା ଦେଖିବା ମାତ୍ରେ (ଦରପଣ) ଈଷତ୍ପଣ ହେବାରୁ ଦରପଣ ନାମ ବହିଅଛି କି ?

୮—ମୁଖ ସ୍ୱଗନ୍ଧରେ ଅଧିକହେବାରୁ ଝଳିଥିଲେ ମୁଁତ ସେ ଦରପଣ ନାମକୁ କହିଲ । ଏକଥାର ଏହା ତାତ୍ପର୍ଯ୍ୟାର୍ଥ ଅଟେ । ସଖୀମାନେ ଶିରୋଧାର୍ଯ୍ୟ [କେଶ] ମାନଙ୍କୁ ଫିଟାଇ ସୁଗନ୍ଧ ଧୂମରେ ଧୂପଦେଇ ହାତୀଦାନ୍ତ ପାନିଆ ଚଳାଇଲେ । ମେଘଉପରେ ଅର୍ଦ୍ଧଚନ୍ଦ୍ର ଉଦିତ ହୋଇଲାପରି ସେ ଦେଖାଗଲା । ୧କଙ୍କତିକା, ପାନିଆଁ ।

୯—ବେଶକାରିଣୀ ଭଲବେଣୀ କଲା । ତହିଁରେ ଏହି ଅନୁମାନ ହେଉଅଛି । ସେ ବେଣୀ ଯମୁନା ସ୍ରୋତ ତହିଁରେ କୁରୁଣ୍ଟକ ( ଦାସକେରେଣ୍ଟ ) ଫୁଲଗେଣ୍ଠି ସବୁ ନାଲି କହ୍ଲାରପରି ଦିଶୁଛି । ମୁକ୍ତାସୀମନ୍ତ ରାଜହଂସ ଧାଡ଼ିପରି ହୋଇଅଛି । ସେ ବେଣୀଶେଷରେ ଯେ ସ୍ୱର୍ଣ୍ଣପିହାଣିଆ ଅଛି, ତାହା ଗୋଟିଏ ହଂସ କଣାହୋଇ ସେ ସ୍ରୋତରେ ଭାସିଗଲାପରି ଦିଶୁଛି । ୧କହ୍ଲାର, ନାଲିକଇଁ ।

ସୁନାସୀମାନେ ଝିଲିମିଲିମାଳୀ । ବେଢ଼ା ପାଶେ କଲେ ଉତ୍ତଂସ ଝୁଲି ।
କଲେ ଅଳକା-ଦାଣ୍ଡେ ହାଟ ପରି । ପ୍ରସରାଇ ସ୍ୱର୍ଣ୍ଣ ରତ୍ନପସରି ।
ଚନ୍ଦ୍ର-ଝୁମ୍ପା ତହିଁ । କାହା ମାନସ ହରି ନେଉ ନାହିଁ । ୧୦ ।

ଭୁରୂ ନୟନ ହାବ ଅଳଙ୍କାର । ବଶୀକରଣ ମଣି ତୋଳା ତାର ।
ଅସ୍ତ ଘଟେନ ଦେଲେ କଜ୍ଜଳ ଆଣି । କେଡ଼େ ଅପୂର୍ବ କଲେ ସଖେ ଜାଣି ।
ସେ ମହା ଉଜ୍ଜ୍ୱଳ । ହେଲା ମୋହିବ ଭୁବନ-ମଣ୍ଡଳ । ୧୧ ।

ଯେତେକଲେ ଦ୍ୱିଜ-ଶୋଭନୀ ଏ ବାମା । ସର୍ବ-ରତ୍ନ ପର୍ବ-ପୂଜା-ପ୍ରତିମା ।
କଲେ ମଲ୍ଲୀକଢ଼ି ଫୁଲେ ଅର୍ଚ୍ଚନା । କର୍ଣ୍ଣ-ତାଡ଼ଙ୍କ ଅଲତ ରଚନା ।
ସୁବାସ ଚନ୍ଦନ । ଗନ୍ଧ ମିଶ୍ରିତ ତିଳକେ ବନ୍ଦନ । ୧୨ ।

କରି ସେ ଅତି ଜ୍ୟୋତି-ମୋତି ଗୁରୁ । ନାସା ଛୁଇଁମାରୁ ହୋଇଲେ ଗୁରୁ ।
ପାଣି ଅଞ୍ଜଳି କରି ମୁଦ୍ରାମାନ । ଦେଖାଇ ଅଙ୍ଗୁଳି ଧଇଲେ ପୁନ ।
ଭୋଗ କରି ତହିଁ । ତାମ୍ବୁଲ ବଟିକା ହରଷେ ଦେଇ । ୧୩ ।

---

୧୦—ସୁନାସି (ଉତ୍ତମ) ସଖୀମାନେ ସୁନାର ବଣିଅପରି ଝିଲିମିଲି ମାଳତି ଦୁଇପାଖରେ ଉଜ୍ଜ୍ୱଳ ଭୂଷଣ କଲେ । ଚୂର୍ଣ୍ଣକୁନ୍ତଳା ରୂପକ ଦାଣ୍ଡରେ ହାଟ ବସାଇଲେ କି ? ତହିଁରେ ସୁନା ଓ ରତ୍ନପସରା ପକାଇଲେ, ଅର୍ଥାତ୍ ରତ୍ନ ଖଚିତ ସ୍ୱର୍ଣ୍ଣ ଅଳଙ୍କାର ଦେଲେ । ସେଠାରେ ଥିବା ଚନ୍ଦ୍ରଝୁମ୍ପା କାହାର ମନହରଣ ନ କଲା ! ଉତ୍ତଂସ, କର୍ଣ୍ଣ ଓ ଶିରୋଭୂଷଣ ।

୧୧—ଉଦ୍ଧଶୀଳା ରଜପୁତ୍ରୀର ଭ୍ରୂଭଙ୍ଗୀ ପ୍ରଭୃତିମାନେ ଚକ୍ଷୁର ଅଳଙ୍କାର ହୋଇଥିଲେ ତୋଳା ବଶୀକରଣ ମଣି ହୋଇଥିଲା । ସଖୀମାନେ ଏ କାମାସ୍ତ୍ର ବୋଲିହିବ କଜ୍ଜଳରୂପକ ବିଷ ଯୁକ୍ତ କଲେ । ସେ ମହାଉଜ୍ଜ୍ୱଳ ହେଲା ଭୁବନ ମୋହିବ ।

୧୨—ଦ୍ୱିଜଶୋଭନା ( ଦନ୍ତଦ୍ୱାରା ଶୋଭିତା ଓ ବ୍ରାହ୍ମଣପରି ଶୋଭମାନା ) ସଖୀମାନେ ଭାବିଲେ ଏ ରାଜକନ୍ୟା କନ୍ଦର୍ପର ଅର୍ଚ୍ଚନିଜଙ୍କରେ ପୂଜା ପ୍ରତିମା ଅଟେ । ଅତଏବ ମଲ୍ଲୀକଢ଼ି ଅଳଂକାର ରୂପକ ଫୁଲରେ ପୂଜାକଲେ । ତଡ଼ିକା ଉଦ୍ଭରିବା ହାର ଅଳତରେ ବନାଇଲେ । ସୁଗନ୍ଧଚନ୍ଦନ ଦେଲେ । ସେ ଚନ୍ଦନରେ ପୂଜାକଲାପରି ହେଲା ।

୧୩—ସେ ସଖୀମାନେ ଅତିଉଜ୍ଜ୍ୱଳ ମୋତିକୁ ଗୁନ୍ଥି କଲେ ( ବଡ଼ପଣ୍ଡା କଲେ ) ସେ ମୋତି ନାସାରେ ଲଗା ହେବାରୁ ଅତି ସୁନ୍ଦର ହେଲା । ପୂଜା ପଣ୍ଡାମଧ୍ୟ ନାସାଛୁଇଁଲେ ଅର୍ଥାତ୍ ତେଣିକି ଅତି ମନୋହର ଦେଖାଗଲା । କୌଣସି ସଖି ହାତ ଅଞ୍ଜଳିକରି ମୁଦ୍ରମାନ ଦେଖାଇ ଉଠାଇବାକୁ ପୁଣି ଅଙ୍ଗୁଠିମାନ ଧଇଲା । ତାହା ପୂଜାରେ ମୁଦ୍ରା ଦେଖାଇବା ବେଳେ ଅଙ୍ଗୁଠି ଧଇଲାପରି ହେଲା । ଅନନ୍ତରେ ପାନବିଡ଼ିଆ ସେଠାରେ ନୈବେଦ୍ୟରୂପେ ଦେଲେ ।

ଉରଜେ ମହେଶ ଉନ୍ନତି ପାଇ । ଗାଳ-ଚେଳ ଗଜ-କୁମ୍ଭି ଘୋଡ଼ାଇ ।
ହାର ଦେଉଁ ଗଙ୍ଗାଧର ହୋଇଲା । କେ ବୋଲୁଁ କେବୋଲେ କେବେଁ ନୋହିଲା
ଏ ଭୁଜଂଗ-ମାଳା । ସମ୍ବୃତ ଯହିଁ ଚହିଁ ରହିଲା । ୧୪ ।
କଣ୍ଠ କମ୍ବୁ ଯେନ ବକୁଳ ମାଳୀ । ପୁଣି ସନ୍ନିଧ୍ୟେ କରାଇଲେ ଝଳି ।
କେ ଭାଷେ ଏ ଶମ୍ଭୁଭଲେ ବାନ୍ଧିତା । ଭଲଝାଇଛି ଜଘନ-ପାନ୍ଥୀତା ।
ବାନ୍ଧିବା କି ପୃଚ୍ଛେ । ଏହା ଡମରୁ ମଧ୍ୟେ ଘଣ୍ଟିସୁତଚ୍ଛି । ୧୫ ।
ଜ୍ୟୋତିର୍ବିଦା ଭାଷି ଏ ଶୋଭା-ରାଶି । ନକ୍ଷତ୍ର-ମାଳା ଯୋଗେ ଶୋଭା ଦିଶି ।
ପୁଣି ଚନ୍ଦ୍ର ଭୋଗ କରେ ଏ ହୃତ୍ୟ । ଶଉରି ସଙ୍ଗରେ ସଭେଦ କୃତ ।
ଦେବ ତାଡ ଭୁଜେ । ଉଦିତ ହେବ କବ ଦୃଷ୍ଟି ଉଜେ । ୧୬ ।
କି ଦୃଷ୍ଟି ବୋଲି ପଚ୍ଚରିଲା କେହି । କୋଲେ ମରକତେ ନିର୍ମିତ ସେହି ।
ଘନାଳିଙ୍ଗନେ ଶମ୍ପା ସ୍ଥିର ପରି । ଦିଶି ହୋଇବ ଯେ ନୟନ-ହାରି ।
ଝଟ କରି ଦେଲେ । ସେହି ଶୋଭାକୁ ପ୍ରତ୍ୟକ୍ଷେ ଦେଖିଲେ । ୧୭ ।

---

୧୪—କୌଣସି ସଖୀ ରାଜପୁତ୍ରୀର ସ୍ତନରେ ମହାଦେବଙ୍କର ପରି ଉଚ୍ଚତା ଦେଖି କହୁଅଛି ଗଜରୂପକ ଗଜ ଚର୍ମରେ ଆଚ୍ଛାଦନ କରି । ତହିଁରେ ମୁକ୍ତାମାଳା ଦେବାରୁ ମହାଦେବ ଗଙ୍ଗା ଧରିଲାପରି ହେଲା । ଏହା କେହି ସଖି କହିବାରୁ ଅନ୍ୟ କେହି ସଖୀ କହୁଛି, କେବେ ହେଉନାହିଁ । ଯେଉଁଠାରେ ପୁଷ୍ପଶ୍ରେଣୀ ମାଳାରୂପେ ସମ୍ବାବଦ୍ଧ । ସେଠାରେ ସେହି ଭୁଜଂଗମାଳା ( ସର୍ପମାଳା ) ରହୁଛି । ମହାଦେବ ସର୍ପମାଳା ଧାରଣ କରନ୍ତି ।

୧୫—ପୁଣି ଶିବଙ୍କ ନିକଟରେ ବକୁଳମାଳୀ ଶଙ୍ଖ ଯେନ ଶୋଭା ପ୍ରକାଶ କରୁଥାନ୍ତି । ବକୁଳମାଳା ଏହାଙ୍କର କଣ୍ଠରୂପକ ଶଙ୍ଖରେ ଯେନା ହୋଇଥିବାରୁ ଶୋଭା ପ୍ରକାଶ କଲେ । କେହି ସଖୀ କହିଲା ଏ ସ୍ତନ ଶମ୍ଭୁଙ୍କଲେ ବାନ୍ଧିତା ନନନ୍ଦାପାତ୍ରୀ ଠିକଣାର ରଖିଲାପରି ଜଘନ ହୋଇଅଛି । ଅନ୍ୟ କେହି ପଚାରିଲା ଏହା ଡମ୍ବରୁ ଦୁଇ ମଧ୍ୟଦେଶରେ ଘଣ୍ଟିସଦୃଶ ବାନ୍ଧିଛ ?

୧୬—ଜ୍ୟୋତିଷ ଶାସ୍ତ୍ରଜ୍ଞ କହିଲା, ଏ ରାଜକନ୍ୟା ଶୋଭାରାଶି ଅଟେ, ଦ୍ୱାଦଶରାଶିପରି ହୋଇଅଛି । ସୁତରାଂ ସତେଇଶିଗୋଟି ତାରା ଗୁନ୍ଥାମାଳା ନକ୍ଷତ୍ର ସମୂହପରି ରହିବାରୁ ଶୋଭା ଦେଖା ଯାଉଅଛି ଚନ୍ଦ୍ର ଶନିସଙ୍ଗରେ ଏରାଶି ଚନ୍ଦ୍ର ଭୋଗକରେ । ଏଠାରେ ଦନ୍ତ୍ୟ ଓ ତାଳବ୍ୟ ଭେଦରେ ସଉରି ( ଉରସହିତ ) ଅର୍ଥାତ୍ ସ୍ତନସଙ୍ଗରେ ଚନ୍ଦ୍ର (ହାର)କୁ ଭୋଗକରେ । ରାଶି ଚକ୍ରରେ ଦେବତା ତ(ରକ୍ତ) ଓ ଭୁଜଙ୍ଗମଗଳଠାରେ (କବ) ଶୁକ୍ରର ଦୃଷ୍ଟି ଉଚ୍ଚ ଉଦିତ ହୋଇଥାଏ । ଏହାର ଭୁଜରେ ତାଡ ଦେବ । ଏଠାରେ ବ୍ୟଞ୍ଜନର "ଜ" ବ୍ୟତ ଓ ତାଡ଼ଶବ୍ଦରେ "ନ"ଦନ୍ତ ହେବାରୁ ଭୂରେ (ପୃଥିବୀରେ) ତ ତନ ଦେବ ଓ ଏବଂ ମାଗଙ୍କର ବର୍ଣ୍ଣନାଦୃଷ୍ଟି ଉଚ୍ଚଭାବରେ ଉଦିତ ହେବ ।

୧୭—କେହି ସଖୀ କି ଦୃଷ୍ଟି ହେବ ବୋଲି ପଚାରିଲା । ଅନ୍ୟ ଜଣେ ଉତ୍ତରକଲା ସେହି ଗଡ଼ ମରକତ ମଣିରେ ତିଆରି ହୋଇଅଛି । ଲଗାଇଲେ ମେଘକୁ ଆଲିଙ୍ଗନକରି ବିଜୁଳୀ ସ୍ଥିର ହେଲାପରି ଚକ୍ଷୁ ଅକ୍ଷିରୁ ବନ୍ଦୀକରିବ । ଶୀଘ୍ର ତାଡ଼ଲଗାଇଲେ ପୂର୍ବୋକ୍ତ ଶୋଭା ଦର୍ଶନକଲେ ।

ସୁମନାମାନେ ମାନସେ ବିଚାରି । ଲାବଣ୍ୟ-ସିନ୍ଧୁ ନିଶ୍ଚେ ଏ ନାଗରୀ ।
କରି ମକରୀ ଭୂଷଣେ ଖଚିତ । ¹ଭ୍ରମ-କଣ୍ଠକେ କଲେ ସଂଯୁତ ।
ପୁଣି ସେ ସତ୍ୱର । ²ପଦ୍ମରେ ଲୀଳା ଦେଇ ³ହଂସକର । ୧୮ ।
ବୋଇଲେ ଧୂନିମେଳ ହେବା ବେଳେ । ଦେବଯୁବା-ଧୈର୍ଯ୍ୟ ବୁଡ଼ାଇ ହେଲେ
ଗମ୍ଭୀର-ଗୁଣ-ନିପୁଣା ଏ ପୁଣି । ମୀନ ନୟନ ତରଙ୍ଗ ଶ୍ରେଣି ।
କଳାପୁ ଶିରୀ । ସବୁ ପ୍ରକାରେ ଅଛୁ ଜାତ କରି । ୧୯ ।
ଚତୁରୀ ସଖୀଏ ମଞ୍ଜୁ ମଞ୍ଜିର । ଖଞ୍ଜି ପାଦେ ବୋଇଲେ ¹ଅନ୍ଦୁ ଏହାର ।
ହେମ-କରିଣୀ ଏ ତରୁଣୀ ସତ୍ୟ । ଯଉବନ-ମଦେ ହୋଇଲା ଏ ମତ୍ତ ।
ଲଜ୍ଜା-ଅଙ୍କୁଶରେ । ଶାନ୍ତ ଭଜିବ ସିନା ଅବଶରେ । ୨୦ ।
ଦେଇ କେ କହେ ଏ ¹ମୃଦର ନାଦେ । ²ନୀଳକଣ୍ଠ ବଶ ହେବେ ପ୍ରମୋଦେ ।
ଯୋଗ ବିନା ଭୋଗେ କରିବେ ମତି । ଉଦ୍ଦୀପନକାରୀ କାଳର ରୀତି ।
ଆଲମ୍ବନ ଭାବ । ଛୁଇଁଛୁ କେମନ୍ତେ ଦମ୍ଭ ରହିବ । ୨୧ ।

---

୧୮—ପରେ ତା ସଖୀମାନେ ବିଚାରିଲେ, ଏ ନାଗରୀ ନିଶ୍ଚେ ଲାବଣ୍ୟ ସମୁଦ୍ର, ଅତଏବ ଗଳାରେ ମକରୀ ଚିହ୍ନ କଣ୍ଠି ଓ ସ୍ୱର୍ଣ୍ଣ କଙ୍କଣ ଯୁକ୍ତ କଲେ, ପୁଣି ଶୀଘ୍ର ପାଦରେ ପାହୁଡ଼ ଦେଇ ତାର ଶୋଭା ବଢ଼ାଇଲେ । ସମୁଦ୍ରରେ ମଗର ଥାନ୍ତି, ଜଳଭ୍ରମି ରୂପେ ଲଗ୍ନ ଥାଏ, ପଦ୍ମରେ ଜଳରେ ହଂସର ସଙ୍ଗ ହୋଇଥାଏ । ¹ଭ୍ରମ, ସ୍ୱର୍ଣ୍ଣ ଭ୍ରମ, ଭ୍ରମୀ । ²ପଦ୍ମରେ, ଜଳରେ ଓ ପାଦରେ । ³ହଂସକ, ପାଦକଟକ ଓ ହଂସ ।

୧୯—ପୁଣି କହିଲେ ସମୁଦ୍ରରେ (ଧୂନି) ନଦୀ ଯୋଗ ହେଲା ବେଳେ (ବର୍ଷାକାଳରେ) ସବୁ ବୁଡ଼ାଇ ଦିଏ । ସମୁଦ୍ରରେ ଗମ୍ଭୀରତା ଗୁଣ ଅଛି, ମୀନ ଓ ତରଙ୍ଗ ଅଛନ୍ତି ଏବଂ ଲକ୍ଷ୍ମୀ ମଧ୍ୟ ଥିଲେ । ଏ ସୁନ୍ଦରୀଠାରେ ଧୂନି ନାମକ ପାଦାଭରଣ ଯୋଗ ହେଲା ବେଳେ ଏ ଯୁବା ଧୈର୍ଯ୍ୟକୁ ବୁଡ଼ାଇଦେବ । ଏ ପୁଣି ଗାମ୍ଭୀର୍ଯ୍ୟ-ଗୁଣଯୁକ୍ତା ଓ ମୀନନୟନା ଏବଂ ଏହାର ଚାହାଣି ତରଙ୍ଗପରି, ଏହାଠାରେ ସୌନ୍ଦର୍ଯ୍ୟ ଲକ୍ଷ୍ମୀ ଅଛି । ଅତଏବ ସବୁ ପ୍ରକାରରେ ସମୁଦ୍ରଶୋଭା ଜାତ କରିଅଛି ।

୨୦—ଚତୁରୀ ସଖୀମାନେ ଏହାଙ୍କ ପାଦରେ ନୂପୁର ଖଞ୍ଜି କହିଲେ । ଏ ସୁନ୍ଦରୀ ନିଶ୍ଚେ ସ୍ୱର୍ଣ୍ଣମୟ ହସ୍ତିନୀ ଅଟେ, ଏହାର ଏ ନୂପୁର ବନ୍ଧନ ଶିକୁଳି ହୋଇଅଛି । ଏ ଯୌବନ ମଦରେ ମତ୍ତ ହୋଇଅଛି । କିନ୍ତୁ ଲଜ୍ଜା ରୂପକ ଅଙ୍କୁଶରେ ସର୍ବଦା ଶାନ୍ତକୁ ପାଇବ । ¹ଅନ୍ଦୁ, ଗଜ ବନ୍ଧନ ଶୃଙ୍ଖଳା ।

୨୧—କେହି ସଖୀ ଚିହ୍ନାଇଦେଇ କହେ, ମେଘ ଶବ୍ଦରେ ମୟୂର ବଶ ହୋଇ ଆନନ୍ଦିତ ହେଲାପରି ଏ ମୃଦର ଶବ୍ଦରେ ଶିବ ବଶ ହୋଇ ଆନନ୍ଦ ଲାଭ କରିବେ । ଯୋଗ ଛାଡ଼ି ଭୋଗରେ ମନ ଦେବେ । ବର୍ଷାକାଳର ରୀତିପରି ଏହା ଏ ଯୌବନ କାଳର ରୀତି ଉଦ୍ଦୀପନକାରୀ ଅର୍ଥାତ୍ କାମୋଦ୍ରେକକାରୀ ଅଟେ । ଆଲମ୍ବନଭାବ ଏହାକୁ ଛୁଇଁଅଛି, ଅତଏବ କିପରି ଦମ୍ଭ ରହିବ । ରସଶାସ୍ତ୍ରରେ ଚନ୍ଦ୍ର ଚନ୍ଦନ ପିକ ଭ୍ରମରାଦିମାନେ ଉଦ୍ଦୀପନ ଓ ଯାହାକୁ ଆଶ୍ରୟ କରି ରସ ଉତ୍ପନ୍ନ ହୁଏ । ସେ ସ୍ତ୍ରୀ ଓ ପୁରୁଷ ଆଲମ୍ବନ ବିଭାବରୂପେ ନିର୍ଦ୍ଦିଷ୍ଟ ହୋଇଅଛି । ¹ମୃଦର, ମୃଦୁ ବାଦ୍ୟ ଓ ମେଘ । ²ନୀଳକଣ୍ଠ, ଶିବ ଓ ମୟୂର ।

ପଶ୍ଚିମା ବେଶ ଯଥୋଚିତ ବାସ । ପିନ୍ଧାଇ ସଜନୀ ହୋଇଲେ ତୋଷ ।
ବୋଇଲେ ଦେଖିଲା ଜନ ନୟନ । ହେଉଛି [1]ନରତନ-ନିକେତନ ।
ଛଳିଲା କେ ଭାବେ । ରସିକା [2]ଲାସିକା ହୋଇଲା ତେବେ । ୧୨ ।

କୋହିଲ କର୍ଣ୍ଣା ସେ କହିଲା ଭାବେ । ନୂପୁର ବାନ୍ଧିଛି ଚରଣ-ଯୁଗେ ।
ଲୋଡୁଅଛି ଶତେ ରହସ୍ୟ-ସ୍ଥଳ । ଚେଳି-ଖୋଳେ ରଖି କୁଚ ମର୍ଦ୍ଦଳ ।
ଜାଣି ଭାଗ୍ୟବନ୍ତ । ସଙ୍ଗୀତ-ଦ୍ରବାଣେ କରିବ ଦଉ । ୧୩ ।

ଏ ବିଧି ରସବନ୍ଧି ବେଶ ସାରି । ନିଜ ବ୍ୟାପାରେ ଗଲେ ଶିଳ୍ପକାରୀ ।
ଏ କାଳେ ଦ୍ୱିଜେ ଭାଷି [1]ରାମ ଘୋଷ । [2]ବନ ବିହାରେ ହୋଇଲେ ଲାଳସ ।
ଉପଇନ୍ଦ୍ର ଘୋଷେ । ଶ୍ରୀରାମ [3]ଇନ ଅଘ-ତମ ନାଶେ । ୧୪ ।

—:*:—

---

୧୨—ସଜନୀମାନେ ପଶ୍ଚିମାବେଶରେ ବସ୍ତ୍ରକୁ ଯଥୋଚିତରୂପେ ପିନ୍ଧାଇ ସନ୍ତୁଷ୍ଟ ହେଲେ ଏବଂ କହିଲେ, ଦେଖିବାଲୋକର ଅକ୍ଷି ନାଟଘର ହେବ । ଅନ୍ୟ କେହି ସଖି ଛଳନାକରି କହିଲା । ତେବେ ଏ ରସିକା ନର୍ତ୍ତକୀ ହେଲା । [1]ନର୍ତ୍ତନ ନିକେତନ, ନାଟଶାଳା । [2]ଲାସିକା, ନର୍ତ୍ତକୀ ।

୧୩—ସେ ସଖୀ ରଙ୍ଗରେ କହିଲା । ଏ ନର୍ତ୍ତକୀ ନହେଲା କେବେ କାହିଁକି ? ଏ ନର୍ତ୍ତକୀପରି ପାଦ ଦ୍ୱୟରେ ନୂପୁର ବାନ୍ଧିଅଛି । ନାଟସ୍ଥଳପରି ଏକାନ୍ତ କ୍ରୀଡ଼ାସ୍ଥାନ ମନେ[1] ଲୋଡ଼ୁଛି । ସ୍ତନରୂପକ ମର୍ଦ୍ଦଳକୁ କାଞ୍ଚୋଳ ରୂପକ ଖୋଳରେ ରଖିଛି । ନର୍ତ୍ତକୀ ଯେମନ୍ତ ଲୋକଦେଖି ସଙ୍ଗୀତଜ୍ଞଲୋକକୁ ମାଦଳ ଧରାଇ ନାଚନ୍ତିପରି ଏ ଭାଗ୍ୟବନ୍ତ ସଙ୍ଗୀତଜ୍ଞ ରସିକଯୁବକକୁ କୁଚ ମର୍ଦ୍ଦଳ ଧରାଇ ନୃତ୍ୟ କରିବ ।

୧୪—ବେଶ କାରିଣୀମାନେ ଉକ୍ତନିଧି ରାଜକୁମାରୀର ଏ ବିଧିରେ ବେଶ ସାରି ନିଜ[1] କାର୍ଯ୍ୟରେ ଗଲେ । ଏ ସମୟରେ ପକ୍ଷିମାନେ ରମଣୀୟଧ୍ୱନିକରି ବନରେ ବୁଲିବାକୁ ଚେଷ୍ଟା କଲେ ଏବଂ ବ୍ରାହ୍ମଣମାନେ ରାମନାମ ଉଚ୍ଚାରଣ କରି ଜଳ ବିହାର ( ସ୍ନାନ ) କରିବାକୁ ଇଚ୍ଛା କଲେ । ଉପେନ୍ଦ୍ର ଭଞ୍ଜ କହୁଅଛନ୍ତି । ପ୍ରଭୁ ରାମଚନ୍ଦ୍ର ପାପରୂପକ ଅନ୍ଧାର ନାଶିବାକୁ ସୂର୍ଯ୍ୟ ଅଟନ୍ତି । [1]ରାମଘୋଷ, ରମଣୀୟ ଧ୍ୱନି ଓ ରାମ ଶବ୍ଦ । [2]ବନ ବିହାର, ଜଳକେଳି ଓ ବନ କେଳି । [3]ଇନ, ପ୍ରଭୁ ଓ ସୂର୍ଯ୍ୟ ।



## ତ୍ରୟୋଦଶ ଛାନ୍ଦ ।

### ରାଗ କାମୋଦୀ ।

( ସାକ୍ଷାତ୍ ଦର୍ଶନ )

ରସିକେ ରସି କର ଏଥି ପଦନିକର ସୁଧାଂ-ଶୀକର ପାନ ତୋଷେ ।
ପ୍ରାତେ ନବବୟସୀ ବୟସୀ ପାଶେ ବସି ବଶୀଭୂତ ଦର୍ଶନ ଆବେଶେ ସେ
ଅନୁପମା । ଯେସନେ ଦୀନଜନ ମତି । ଧନ ଲଭିବା ଲୋଭ ଅତି ।
ଜନ୍ମାନ୍ଧଁ ଘନଘନ ଆସଇ ପୁନଃପୁନଃ ଦେଖଇ ଅନ ଅନ ଜାତି ସେ । ୧ ।
ଅରୁଣା-ଧର ଧର-ଭୂଷା ପଞ୍ଜର-ଧର ଶାରୀ- ପର କରେ ଲୋଚନ ।
ବୋଲେ ରମଣୀ ମନ-ନନ୍ଦଦାୟିନୀ ଅନା ନଭେ ଶୋଭେ ଶମଶାନକଲେ
କାଦମ୍ବିନୀ । କାଷ୍ଠା-ବଳୀରେ ଚିତା ଜଳେ । କେ ଦଗ୍ଧ ହେବ ଦେଖେ ଥିଲି ।
ଅନୁରାଗୀ ପଦ୍ମିନୀ ଅନୁରାଗକୁ ଯେହ୍ନ ଅନୁସରଣେ ଭାନୁ ମିଳେ ସେ ॥
କିସ ବୋଲୁରୁ ରୂପ-ଶୀଳା ଭାଗ୍ୟବଶରୁ ପ୍ରକୃତେ ଏପରି ଉତ୍ସବ ।
ହୋଇବ ଚାହିଁ ଚାହିଁ ଅନ୍ତରେ ସହି ସହିଥାଅ କଷ୍ଟ କଷଣ ଭାବରେ ।
ଅନୁପମା । ମଧୁର ମଧୁ-କଣ୍ଠ-ରବ । ଏଣିକି ବଜ୍ରପାତ ହେବ ।
ସୂର୍ଯ୍ୟେ ଅନଳ ବୃଷ୍ଟି କି କଥା କଳାନିଧି ତଥିରେ ସେ ତଥି ବାଧିବରେ । ୩ ।

---

### ତ୍ରୟୋଦଶ ଛାନ୍ଦ ।

୧—ଅହେ ରସିକମାନେ ଏ ଛାନ୍ଦରେ ଥିବା ପଦସବୁ ଅମୃତ କଣାପରି । ଅତଏବ ରସିକର ସନ୍ତୋଷରେ ପାନ କର । ସକାଳେ ସେହି ଅନୁପମା ନବବୟସୀ ରାଜକୁମାରୀ କୁମାର ଦର୍ଶନ ଆଶାର ଅଧୀନ ହୋଇ ସଖୀମାନଙ୍କ ପାଖରେ ବସିଥିଲେ । ଯେପରି ଦରିଦ୍ର ଲୋକର ମନ ଧନ ପାଇବାକୁ ଉତ୍କଣ୍ଠା ସେବା କରିଥାଏ । ବାରମ୍ବାର ଘନ ଘନ ହାଇ **ଆସେ** । ଅନ୍ୟପ୍ରକାର କଥା କହୁଥିଲେ । ୧ସୁଧାଂଶୀକର, ଅମୃତ କଣା ।

୨—ରକ୍ତୋଷ୍ଠୀ ଭୂମଣ୍ଡନା ସେହି ରାଜକନ୍ୟା ପଞ୍ଜରରେ ଥିବା ଧଳାଶାରୀପରି ଛନଛନ ହୋଇ ରହିଁଥିଲେ । ମନର ଆନନ୍ଦଦାୟିନୀ ସେହି ସୁନ୍ଦରୀ ରମଣୀ ହୋଇ କହୁଛି । ହେ କାଦମ୍ବିନୀ । ଦେଖେ । ଅକାଶରେ ଶ୍ମଶାନ ଶୋଭା ପାଉଅଛି । କାଠସମୂହରେ ଚିତା ଜଳଜଳ ଦିଗମାନଙ୍କରେ ଅଗ୍ନି ଜଳୁଅଛି । କିଏ ଦଗ୍ଧ ହେବ କି ? । ସଖୀ କହୁଛି । ଏ ଚିତାଗ୍ନି ନୁହେଁ । ଏ ସୂର୍ଯ୍ୟ ଅନୁରାଗିଣୀ ପଦ୍ମିନୀ ନାୟିକା ସ୍ନେହରେ ତାର ଅନୁସରଣରେ ଆସୁଅଛନ୍ତି । ୧କାଷ୍ଠା ସମୂହ ଓ ଦିଗସମୂହ ।

୩—ଅରେ ରୂପଶୀଳା ! କ'ଣ ବୋଲୁଅଛୁ । ସୁଭାଗ୍ୟ ହେତୁରୁ ପ୍ରକୃତରେ ତୋର ଏହିପରି ଉତ୍ସବ ହେବ । ଯେପରି ପଦ୍ମିନୀ ସ୍ନେହରେ ସୂର୍ଯ୍ୟ ଆସୁଅଛନ୍ତି । ଏହା ବିଧାତା ବିଧାନ କରିଅଛନ୍ତି । ରେ ସଖୀ ! ତଥ କଷ୍ଟଭାବ ସହି କରିଥାଅ । ଅରେ ଅନୁପମା ? ଏଣିକି ମଧୁର କୋକିଳ ଧ୍ୱନି ତୋ ପକ୍ଷରେ ବଜ୍ରପାତ ତୁଲ୍ୟ ହେବ । ସୂର୍ଯ୍ୟଙ୍କଠାରେ ଅଗ୍ନି ବୃଷ୍ଟି ହେବା କି ଆଶ୍ଚର୍ଯ୍ୟ କଥା ଦୈବ ହେତୁରୁ ଚନ୍ଦ୍ର ମଧ୍ୟ ସେହି ଅଗ୍ନିପରି ବାଧା ଦେବ । ୧କଳାନିଧି, ଚନ୍ଦ୍ର ।

ସୁଖ ଜନକ ଅଳସୈ ମୃଦୁଳ ଶଶୁ ଭବତ ମାଙ୍ଗଲ୍ୟା ବଚନ ।
ମିଳେ ଏକ ଜଟିଳା ଅର୍ଦ୍ଧଚନ୍ଦ୍ର-୧ନିଟିଳା-ଦଶାଭ୍ରମୀ ନର ବିକଳ୍ପକନ ସେ ।
ବିସ୍ମୟକ୍ତ । ଜବାଧର ଧରଣୀ-ଶ୍ରିୟ । ଧନ୍ୟ ଏହାର ଶିଳ୍ପକାର୍ଯ୍ୟ ।
ସୁବେଶକୁ ସୁବେଶ ଯେହ୍ନେ ତାକୁ ସୁବେଶ କଲେ କି ଅନୁମାନ କର ସେ ।୪।
କି ଗୁଣେ ସେ କି ଗୁଣେ ଗୁନ୍ଥିଲେ ଗ୍ରନ୍ଥିଗୁଣେ ରଖିଲେ ଗୁରୁ କୁରୁଣ୍ଟକେ ।
ବେଣୀ-ନଳୀ ଝଟଟକ ଗୁଣା କନ୍ଦ ହାଟକେ ମୁଠା ବାନ୍ଧିଲେ କଣ୍ଠକେ ସେ
ପିନ୍ଧାଣିଆ । ଶ୍ମା କି ରଜତ-ନକସ । କାହାଁକୁ ଜିଣି ନେବ ଯଶ ।
ମନୁଜ ଦନୁଜରେ ୧ଅଦଗ୍ଧ-ତନୁଜରେ କେ ନୋହିଅଛି ଏହା ବଶ ସେ ।୫।
ଏ ଛବି ବନ୍ଦେ ଅଦ୍ଭୁତ କବି ଲକ୍ଷ୍ୟ ଦେଇ ଦ୍ୱେଷ କରି କି ବାଳା ହେଲେ ।
ଭୁଜଙ୍ଗ ହେବ କି ୧କାଳବ୍ୟାଳ କି ଲକାଳ ୨ବଳଟରେ ଲୁଚିଲା ଯେ ଲଜେ ସେ
ଗୁଣ ଯୋଗ । ନ କଲ୍ପ କି ଯଶ ଶୁମର । ଯେହ୍ନେ ନିଷଭ ତାକୁ ମାର ।
ମନୋରମ ତରମଦେଶେ ୩ଡରଛୁଝାମସିଦେବ ଦାମ୍ଭିକେ ଦେଖି କରିସେ ।୬।
ପୁଣି ମୁଖ ବୃହିଁଲ୍ଲ ଗୁଣି ସୁଖ ପାଇଲି ପଞ୍ଚିଲି ଚନ୍ଦ୍ର-ରଥ ଏହୁ ।
ତାଙ୍କ ଚନ୍ଦବେନ୍ଦ ବଣ୍ଟର ଗୃହ ଯେନ କପୋଳ-ବିମ୍ବ ବିମ୍ବ ଗୃହୁଁ ସେ ।

---

୪—ଜାତ୍ୟନ୍ଧ ଭାବରେ, ମାଙ୍ଗଲ୍ୟାଙ୍କ କହିବା ଅନୁସାରେ ଏହି ନାୟିକାଙ୍କ ଦର୍ଶନର ପ୍ରଭାବ ଏକଚିତ୍ତରେ ପ୍ରତି ସ୍ନେହ ଜନ୍ମିବଣି । ଏହି ସମ୍ବନ୍ଧରେ ଅଧିକ ପ୍ରତିବନ୍ଧ କର । ଯାହାର ଭାଲ ଅର୍ଦ୍ଧ ଚନ୍ଦ୍ରପରି ସେହି ସୁନ୍ଦରୀକୁ ଦେଖି ବିସ୍ମିତ ହେଉଅଛି । ଏ ଜବାଧର ଭୂଲୋକର ଲକ୍ଷ୍ମୀ ଅଟେ । ଏହାର ବେଶ କାରଣୀମାନେ ଧନ୍ୟ । ସେହି ସୁନ୍ଦରୀ ସୁବେଶକୁ ସୁବେଶ ପରି । ତାକୁ କି ଅନୁମାନରେ ବେଶ କଲେ ।
୧ ନିଟିଳ, ଭାଲ ।

୫—ବେଶ କାରଣୀମାନେ କି ହେତୁରେ କି ପ୍ରକାରେ ଗୁନ୍ଥିଲେ । ବେଣୀରେ ଗଣ୍ଠି ଯୋଗେ ସୁନ୍ଦର ବାସ କେରେଣ୍ଟା ଫୁଲ ଖଞ୍ଜିଲେ । ଏହାଙ୍କର ବେଣୀ ବନ୍ଧୁକପରି ଝଟକୁଛି । ସେ ବନ୍ଧୁକରେ ଗୁଣା କଲ ସୁନାର ମୁଠା କେଉଁ ଶୋଭାରେ ବାନ୍ଧିଲେ । ପୁଣି ସ୍ୱଭାବ ପିନ୍ଧାଣିଆ ରୂପା ନକସ ପରି ହୋଇଅଛି । ଏହାହାଣ୍ଡ ଏ ସୁନ୍ଦରୀ କାହାକୁ ଜିଣି ଯଶ ନେବ । ମନୁଷ୍ୟ ଅସୁର ଓ ଦେବତାମାନଙ୍କ ମଧ୍ୟରେ କିଏ ଏହାର ୧ଅଧୀନ ନ ହୋଇଅଛି । ୧ଅଦଗ୍ଧ ତନୁଜ, ଦେବତା ।

୬—ସର୍ପ ଏ ବେଣୀ ଶୋଭା ଧାରଣ କରିଅଛି । ଏହା କେଉଁ କବ ତୁଳନା କରେ । ଏହି କଥା ଏ ସୁନ୍ଦରୀ ଦୃଢ଼ରୂପେ ଭାବୁଅଛି । କଳାସାପ ଏ ବେଣୀଠାରୁ ନିକୃଷ୍ଟ ହେବାରୁ ଲଜରେ କାଳେ କାଳେ ହେଲା ଗାତରେ ଲୁଚିଛି କି ? । ସେ ଦୁର୍ବଳ, ତାକୁ ମାରି କି ଯଶ ହେବ । ଏହା ସ୍ମରଣ କରି ଏ ସୁନ୍ଦରୀ ବେଣୀ କଟରେ ଗୁଣ ଯୋଗ କଲାନାହିଁ । ସେ କଟକ ମନୋହର ପିଠିରେ ଭେଦ ରହିଅଛି । ଧୈର୍ଯ୍ୟଶାଳୀ ଲୋକମାନେ ଦେଖିଲେ ଧୈର୍ଯ୍ୟ ନ ରହିବ । ୧କାଳବ୍ୟାଳ, କଳାସାପ । ୨ବିଳ, ଗାତ । ୩ବଚନ, ପୃଷ୍ଠ ।

୭—ସେ ନାୟକ ପୁଣି ସୁନ୍ଦରୀର ମୁଖକୁ ଚାହିଁଲା ଭାବ ଆନନ୍ଦ ଅନୁଭବ କଲା । ବଣ୍ଟିକଲା ଏ ମୁଖ ଚନ୍ଦ୍ରରଥ ହୋଇଅଛି । ତହିଁରୁ ଦୁହିଁଙ୍କୁ ଯୋଡ଼ାଏ ଚକବୋଲି ଭାବିଲା । ପୁଣି ଗଣ୍ଡମଣ୍ଡଳରେ ତାଙ୍କର ପ୍ରତିବିମ୍ବ ଦେଖି ଗୃହ ରେଖା ତକବୋଲି ଜାଣିଲା । ତାପସର ମାନର ସ୍ୱରୂପର ଦେବପର

ରୂପସଖୀ । ହାସ ଠେକର ପରି ରଙ୍ଗ । ଝଲକା ଘୁମଣ୍ଡି ହେଜ ।
ଜର'ସ ଝିଲମିଲିମାଲୀ ଏମନ୍ତ ଝଲ ଯେମନ୍ତ ଶୋଣାଦ୍ୱାର ସାଜ ସେ ।୭।
ମୋତି-ସୀମନ୍ତ କଇଁଜସ୍ଥଳୀ ବିରାଜନ୍ତ ସିନ୍ଦୂର ଚନ୍ଦନ କସ୍ତୁରୀ ।
ଏ ବରନକେ ରଞ୍ଜିତ, ଲଲାଟକେ କି ବଣିବ ସ୍ୱପ୍ନବେ ଦର୍ପଣ ଶୋଭ ପରି ସେ ।
ମଲ୍ଲୀକଢ଼ୀ । ଶେଖର କଲସ ପୁଟଳେ । ନାସା-ମୋତି ଗେହ୍ୱଣୀ ଟକାରେ
ନୀଳା-ଚେଳ ତମାଳବନ ଗହ୍ୱଳସ୍ଥଳ କୁଚ-ପୂର୍ବାଦ୍ରି-ଚୂଳେ ମିଳେ ସେ ।୮।
ନୋହିଲ ବାଣ୍ଡ ବାଶ୍ରୁହାସୀ ୧ପାନବାଟ-ମୋହନୀ ଅଭ ଅଙ୍ଗଭୂଷା ।
ସେ ଜଟିଳା ପ୍ରବେଶ ସଜ ହୋଇ ଅବେଶ ପ୍ରକାଶ କଲ ଏହ ଭାଷା ସେ ।
ଅନୁପମା । କଲ୍ୟାଣୀ ହୋଇ ତୋଷମତି । ଯାହା କରୁଛ ରଚନ୍ତ ।
୨ମାଧବରେ ସଲଳେ ମାଧବର ସଙ୍ଗଳେ ଚନ୍ଦନୋତ୍ସବ ଯେ ସ୍ୱମତିରେ ।୯।
ଭାବରେ ସରତରେ ନାବରେ ସରତରେ ଆନ ସେ ଉତ୍ସବକୁ ନାହିଁ ।
ଜଗଜ୍ଜନ-ମୋହନ-ରୂପେ ମିଳି ବହନ ବିହାର କରିବେ ଯେ ତହିଁ ସେ ।
ଅନୁପମା । ସଖୀ ସହିତ ହୋଇଥିବେ । ନୟନ-ଦୁଃଖକୁ ମଣ୍ଡିବେ ।
ତୋଷିବାର ଇଚ୍ଛନ୍ତି ମୋତେ ପେଷିଅଛନ୍ତି ମୋ ସଙ୍ଗେ ବିଜେ କର ଏବେ ।୧୦

---

ଶୋଭା ପାଉଅଛି । ଝଲକାକୁ ଉପର ମଣ୍ଡଣୀ କଢ଼ ହେଉଛି । ଜର୍ଣ୍ଣାବର୍ଣ୍ଣସ ସହିତ ଝିଲମିଲି ମାଳୀ ଏପରି ଝଟକୁଅଛି, ଯେପରିକି ଉପରେ ବର୍ଣ୍ଣ ଦ୍ୱାର ସଜା ହୋଇଅଛି ।

୮—ମୁକ୍ତାସୀମନ୍ତ ଟେକାପରି ଶୋଭା ପାଉଅଛି । ସିନ୍ଦୂର ଓ ଚନ୍ଦନ ଏବଂ କସ୍ତୁରୀ ଏହି ଚନ୍ଦନବର୍ଣ୍ଣରେ ରଞ୍ଜିତ ହୋଇଥିବା ଲଲାଟ ଦର୍ପଣପରି କି ବର୍ଣ୍ଣନ ହୋଇଅଛି. ତାହା ଉପରେ ଚନ୍ଦ୍ରପରି ଦିଶୁଅଛି । କାନର ମଲ୍ଲିକଢ଼ୀ ଉପ ଅଗ୍ରର ଥିବା କଳସପରି ସ୍ଥୂଳ ଦିଶୁଛି । ନାସାର ମୋତି ତଳ୍ଳକୋଣରେ ଗେହ୍ୱଣୀ ନକ୍ଷତ୍ରପରି ହୋଇଅଛି । ନୀଳାଚେଳା ତମାଳ ବନ ଗହ୍ୱଳ ସ୍ଥଳ ହୋଇଅଛି । କୁଚ ପୂର୍ବ ପର୍ବତ ଅଗ୍ରରେ ସେ ଚନ୍ଦ୍ରର ଉଦୟ ମିଳିଅଛି କି ? । ¹ ଚନ୍ଦ୍ରକ, ଲଲାଟ ଫଳକ ।

୯—ପଦ୍ମନେତ୍ରୀ ଓ ଦେବ ମୋହନ ସେ ସ୍ୱଦରୀର ପରି ଅଙ୍ଗର ଅଳଙ୍କାରମାନ ବାରହେବ ନାହିଁ । ସଜହୋଇ ଅବେଶ କରିଥିବା ( ବସିଥିବା ) ସେ ଯୁବତୀ ଜଟିଳା ପ୍ରବେଶକରି ଏହିକଥା କହିଲା । ହେ ଅନୁପମ ? ମାଙ୍ଗଲ୍ୟା ସନ୍ତୁଷ୍ଟହୋଇ ସଙ୍ଗପ୍ରଭୃତି ସହିତ ତୁମ୍ଭର ସାକ୍ଷାତ୍କାରକୁ ଗୋଟିଏ ଯାତାହରି ରଚନାକରି ଅଛନ୍ତି । ବୈଶାଖ ମାସରେ ଜଳରେ ଶ୍ରୀକୃଷ୍ଣଙ୍କର ଲୀଳା ସହିତ ଯେପରି ଚନ୍ଦନ ଯାତ୍ରା ହୁଏ ସେପରି ।

୧ ପାନବାଟ, ଦେବତା, ୨ ମାଧବ, ବୈଶାଖ ଓ ଶ୍ରୀକୃଷ୍ଣ ।

୧୦—ଚନ୍ଦନଯାତ୍ରା ଭାବରେ (ଭକ୍ତିରେ) ନଦୀରେ ନୌକାରେ ହୁଏ । ସେ ଉତ୍ସବକୁ ଅନ୍ୟ ଉତ୍ସବ ସରି ନୁହେଁତ । ସେ ଯାତ୍ରାରେ ବସ୍ତ୍ର, ଜଗତଲୋକମାନଙ୍କର ମୋହନକାରି ରୂପରେ ଶୀଘ୍ର ପ୍ରବେଶକରି ବିହାର କରିବେ । ସେହିପରି ଶୃଙ୍ଗାରଭାବରେ ସେବାରେ ( ସେ ପରିକୁ ) କେହି ସରି ନାହିଁତ । ସେ ମିଳନୋତ୍ସବରେ ଜଗଜ୍ଜନ ମୋହନରୂପରେ ଶୀଘ୍ର ପ୍ରବେଶକରି ବିହାର କରିବେ । ଚନ୍ଦନ ଯାତ୍ରାରେ କୃଷ୍ଣଙ୍କ ସଙ୍ଗରେ ଥିବାପରି ଏ ରଜପୁତ୍ରଙ୍କସଙ୍ଗେ ସଖୀମାନେ ଥିବେ ବସ୍ତ୍ର,କପଡ଼ ସେ କୁମାର ସମସ୍ତଙ୍କର ଦର୍ଶନରେ ତୁମ୍ଭର ନୟନକଷ୍ଟକୁ ନାଶ କରିବେ । ଅତଏବ ମାଙ୍ଗଲ୍ୟା ତୋ ଯିବାକୁ ଇଚ୍ଛାକରି ମୋତେ ପଠାଇଅଛନ୍ତି । ଏବେ ମୋ ସଙ୍ଗେ ବିଜେକର ।

ଏମନ୍ତ କହୁଁ କହୁଁ ସମସ୍ତେ ବୁହୁଁ ଗୃହୁଁ କେମନ୍ତ କପଟ ସୁରଙ୍ଗେ ।
ମଠ ବନ ଜଗତୀ ମଧ୍ୟ ପୀଠ ଜଗତୀ–ଶୋଭିନୀ ତିନି ସଖୀ ସଙ୍ଗେ ସେ ।
ପ୍ରବେଶିତ । ଅଧିକା ନିଦ୍ରା ବଶ ପରି । ମଣ୍ଡିଅଛନ୍ତି ସେହି ପୁରୀ ।
ଉପାଧ୍ୟାୟୀ ତହିଁରେ ଉପାୟ ପ୍ରଭାବରେ ବାହାରେ ଦେଖିଲେ ସେ ନାରୀ ।୧୧
କିଂଭୂତ ଅଦଭୁତପୁଂସ କଲା ସମ୍ଭୂତ ମାୟା ଭୂତ–ଭବିଷ୍ୟଜ୍ଞାତା ।
ନୃପ–ସୁତ ସହିତ ମନ୍ତ୍ରୀ–ଜ ପୁରୋହିତ–ସୁତ ବିମାନେ କରି ସ୍ଥିତା ସେ ।
ଚପଳରେ । ସେ ବନେ କଲା ପରବେଶ । ଜନ ଯଥା ମାଦକ ବଶ ।
ସ୍ୱପୁରେ ଥିଲା ପୋଖରୀ ଗୋଟାକ ଭେଟାଇଲା ବୋଇଲା ସେ ଏମନ୍ତ ଭାଷ ।୧୨
ହୈମବତୀ ରେବତୀ ବଧୂଙ୍କ ପ୍ରିୟବତୀ ଶଚୀ ସଞ୍ଜିତ ଏକମୂର୍ତ୍ତି ।
ଏକାନନେ ଯୁବତି ଅଛି ବୟସ ବତିଶାବ୍ଦରୁ ଊଣାପରି ମତି ସେ ।
ନୃପ–ସୁତ । ଶିବପ୍ରମୋଦ–ଜାତ–ସ୍ଥାନୀ । ସେ ରମ–ନୟନ–ଶୋଭିନୀ ।
ହରି ଆନନ୍ଦ–ଦାନୀ ମଧ୍ୟେ ଗୁଣ–ନିଧାନୀ ବିବେକ କରି ଏହା ସେନି ହେ ।୧୩
ଏହି ସମୟ ମୟ–ମାୟା ଉପାୟ ପ୍ରାୟ ମିଳିତ ହୋଇଲା ବିମାନ ।
ଅଟବି ଅମ୍ବୁନିଧି–ପ୍ରତିମା ରସି–ନିଧି ସନ୍ନିଧି ସେ ଭାବିଲେ ମନ ସେ ।

---

୧୧—ଏହାପରେ କହୁଁ କହୁଁ ସମସ୍ତେ ଗହୁଁ ଗହୁଁ ସେ ଜଗତୀ ଶୋଭିନୀ ରାଜପୁତ୍ରୀ କ ମାୟା ପ୍ରଭାବରେ ତିନିସଖୀଙ୍କ ସହିତରେ ମାନଙ୍କଙ୍କ ମଠବନ ଅଧିକା ପୀଠରେ ପ୍ରବେଶକଲେ । ସେ ସ୍ତ୍ରୀମାନେ ଅଧିକ ନିଦ୍ରାରେ ସ୍ୱପ୍ନପରି ଦେଖିଲେ । ଉପାଧ୍ୟାୟୀ ମାଙ୍କଲ୍ୟାଉପାୟ ପ୍ରଭାବରେ ସେ ପୁର ମଣ୍ଡି ଅଛନ୍ତି ଓ ତହିଁରେ ବିହାର କରୁଅଛନ୍ତି ।

୧୨—ତେଣେ ଭୂତଭବିଷ୍ୟଜ୍ଞାତା ଅଦ୍ଭୁତ ପୁରୁଷ କିଂ ଭୂତ ମାୟାକାତ କଲା । ସେ ରାଜପୁତ୍ରଙ୍କୁ ମନ୍ତ୍ରୀ ଓ ପୁରୋହିତ ପୁତ୍ରଦୁହିଙ୍କ ସଙ୍ଗେ ଆକାଶଯାନରେ ବସାଇ ଶୀଘ୍ର ସେବନରେ ପ୍ରବେଶ କରାଇଲା ସେମାନେ ମଦକବଶ ଲୋକପରି କିଛି ଜାଣି ପାରିଲେ ନାହିଁ । ନିଜ ନଗରରେ ଥିବା ପୋଖରୀଟାକୁ ମଧ୍ୟ ଭେଟାଇଲା । ସେ ଏପରି କହିଲା ।

୧୩—ପାର୍ବତୀ ରେବତୀ ଚନ୍ଦ୍ରପତ୍ନୀ ରୋହିଣୀ ଓ ଶଚୀଙ୍କର ଶୋଭା ସଞ୍ଚିତ ହୋଇ ଏକମୂର୍ତ୍ତି ହେଲାପରି ଏକ ଯୁବତୀ ଏ ବନରେ ଅଛି । ତାର ବୟସଷୋଳ ବର୍ଷରୁ ଊଣାପରି ଜଣାଯାଏ । ହେ ରାଜପୁତ୍ର ? ପାର୍ବତୀ ଶିବଙ୍କର ଆନନ୍ଦଜାତ ହେବାର ସ୍ଥାନ ଅଟନ୍ତି । ଏ ଯୁବତୀ ମଙ୍ଗଳ ଓ ଆନନ୍ଦ ଜାତ ହେବାର ସ୍ଥଳ ଅଟେ । ରେବତୀ ବଳରାମଙ୍କର ଚକ୍ଷୁ ପ୍ରୀତିକାରିଣୀ । ଏ ଯୁବତୀରମ (ମୃଗ) ପରି ନେତ୍ରଦ୍ୱାରା ଶୋଭାପାଉଅଛି । ରୋହିଣୀ ଓ ଶଚୀ (ହରି) ଚନ୍ଦ୍ର ଓ ଇନ୍ଦ୍ରଙ୍କର ଆନନ୍ଦ ଦାୟିନୀ । ଏ ଯୁବତୀ [ହରି] ପୁରୁଷସିଂହଙ୍କର ଆନନ୍ଦଦାୟିକା ଅଟନ୍ତି ମଧ୍ୟମଲୋକରେ ( ମର୍ତ୍ତ୍ୟରେ ) ଏ ପ୍ରଧାନ ଗୁଣବତୀ । ତୁମ୍ଭେ ଏ ଯୁବତୀ କି ସେନି ଶିବ ( ମଙ୍ଗଳଯୁକ୍ତ ) ରମ ( ସୁନ୍ଦର ) ହରି ( ଚନ୍ଦ୍ରପରି ଉଜ୍ଜ୍ୱଳ ) ଓ ( ଇନ୍ଦ୍ରପରି ସୁଖଭୋଗୀ ) ହେବ ଏହା ବିବେକ କର ।

୧୪—ଏହି ସମୟରେ ମୟ ରାକ୍ଷସର ମାୟାଉପାୟ ପରି ରାଜପୁତ୍ରଙ୍କର ବିମାନ ସେଠାରେ ପ୍ରବେଶକଲା । ରାଜପୁତ୍ର ସୁନ୍ଦରୀଙ୍କ ନିକଟରେ ଦେଖି ମନରେ ଭାବିଲେ ଏ ସେଇଠି ରାଜକୁମାରୀ ଏ ବନରେ ଅମ୍ବୁନିଧି ପ୍ରତିମା ଅଟନ୍ତି ଏବଂ ଚିତ୍ତପୁଂସଠାରେ ଇନ୍ଦ୍ରଜାଲକୁ ବୁଝି କଲେ । ଇନ୍ଦ୍ରଜାଳକ

ଚନ୍ଦ୍ରମୁଖୀରେ । ଇନ୍ଦ୍ର ଜାଲିକ ବୁଦ୍ଧି କଲେ । ଅର୍ଜନେ ଆଣି ଯାହା ଛଳେ
ଚମତ୍କାର ପ୍ରକାର ଦେଖାଇ କି ଆକାର କାରଣ ତାରକ ଏ ତୋଳେ ସେ ।୧୩।
ଏ ନୋହୁଛି ନୋହିବ ଏ ଉତ୍ସବ ବାହ୍ୟ ସଜୀବ ରାଜୀବ-ଲୋଚନ ।
ଏଥି ମୂଳ ମନ୍ତ୍ର କରିଅଛି ଅନ୍ତରଗତର ମାତର ଭାବନ ସେ ।
ଅନୁପମା । ହୃଦରେ ଆବର ଉଚ୍ଛନ୍ନ । କିଏ ସେ ଭୂପତି-ନନ୍ଦନ ।
ରାମା-ରତନ ରମ୍ୟ ଯତନରେ ପତନ ସେ ତାଳେ କୁମାର କମ୍ପନ ସେ ।୧୪।
ହାଟେ ଧନଦା-ଚଳେ ଚଳେ କିଛି ଚଞ୍ଚଳ ସ୍ଥାନ କି ଶଙ୍କା ସଙ୍କାଦରୁ ।
ଝଟକ ଉଜ୍ଜ୍ୱଳାଇ ଝଟିତ ମିଶିଯାଇ ଆଖି ବୁଜ ହୋଇ ଯାଉଛି ସେ ।
ଅନୁପମା । ଶରପ୍ରଭା ପୁଣି ସହଜେ । ଅସିଦ୍ଧ ପୂର୍ବରୁ ସେ ଭଜେ ।
ଗଣ-ଈଶ୍ବର ସ୍ବରଭଙ୍ଗ ହୋଇ ପାଟଣାର ଉପମା ହେବ ଏ ଅଷ୍ଟପ୍ରୀୟ ସେ ।୧୫
ସେ ନଗେ ଜାତଂଜାତରୁପ-ସର ଉଚିତ ମୋ ଚିତ୍ତ-ହଂସ କଣ ହୋଇ ।
ସ୍ବର୍ଣ୍ଣ-ସାରସ ରସ-ପୂର୍ଣ୍ଣ ସୁବାସ-ବାସ ମତ୍ତ ରୋଲମ୍ବ ଚୁମ୍ବ ଦେଇ ସେ ।
ଚକ୍ରଯୁଗ । ବୁଡ଼ି ଉଠେ ଶୈବଳ ଯେଣ । ପୁଣି ତରଙ୍ଗ ରଙ୍ଗସ୍ଥାନ ।
ମୁଖ ଚବୁକ-ଛଟା ସ୍ତନ ନୀଳ-ଶୈଳତା ଅଙ୍ଗଭଙ୍ଗ ଏ ଅନୁମାନ ସେ ।୧୬।

---

ଉପାର୍ଜନ ନିମିତ୍ତ ଚମତ୍କାର ପ୍ରକାରମାନ ଦେଖାଇବାପାଇଁ ଏ ଯାତ୍ରାକପଟରେ ଅମ୍ଭକୁ ଆଣି ଚମତ୍କାର ପ୍ରକାର କାରଣ ସ୍ବରୂପ ବ ଆକାର (ରୂପ) ଏ ତୋଳାରେ ଦେଖାଇଲା ।

୧୪—ପଦ୍ମଲୋଚନ ବସ୍ତୁକର ଏପରି ଉତ୍ସବ କୌଣସି ଅବତାରରେ ହୋଇନାହିଁ ପୁଣି ସେ ଅବନ୍ତ ଅବତାର ବହୁଲେ ସୁଦ୍ଧା ଏପରି ଉତ୍ସବ ହେବ ନାହିଁ । ଏ ମୂଳ ନଷ୍ଟେ ମନ୍ତ୍ର ପ୍ରୟୋଗବଳର ଅଛନ୍ତି । ଏହା ମନ ମୋର ଅନ୍ତର୍ଗତରେ ଭାବନା ହେଉଅଛି । ଏହି ସମୟରେ ଅନୁପମା ସଙ୍ଗୁଆରୀ "ସେ ରାଜପୁତ୍ର ଏହି କି ?" ବୋଲି ମନରେ ଅତର୍କ ଓ ଉତ୍କଣ୍ଠା ବହୁଳେ । ସେ ସମୟରେ ମଧ୍ୟ ରାଜକୁମାରଙ୍କର ଅକ୍ଷି ସେ ସ୍ତ୍ରୀ ରତ୍ନ ଶୋଭାରେ ପତ୍ରରେ ପଡ଼ଲା ।

୧୫—ଆକାଶରେ ସୁନାଭାବ ଦେଖି ସହପୁଷ୍ପ ଘଡ଼ଲେ । ଏ ବଜୁଳି କୈଳାସ ପର୍ବତରେ ଅବସ୍ଥାନ କରିତ ଏବ ଅଳ୍ପ ଚଞ୍ଚଳହୋଇ ଚଳୁଛି । ଅତଏବ ଝଟକନାଉ କରୁଅଛି । ସେ ଝଟକ ଅକ୍ଷିରେ ମିଶିଯିବାରୁ ଅକ୍ଷି ବୁଜ ହୋଇ ଯାଉଛି । ଏ ଅନୁପମା ସୁନ୍ଦରୀ ଶରପ୍ରଭା ଓ ବଜୁଳି ଅତିକ୍ରମ ଅତଏବ ସ୍ବଭାବରେ ପୂର୍ବରୁ ବଜୁଳି ତୁଳନା ଅସିଦ୍ଧ ହୋଇଅଛି । ଏ ଅଷ୍ଟପ୍ରୀୟଜନକ ଦର୍ଶନରେ ଗଣେଶଙ୍କର ସୁଦ୍ଧା ସ୍ବରଭଙ୍ଗ ହେବ । ଉପମାମାନ ପାଶୋର ହୋଇଯିବ ।

୧୬—ସେହି କୈଳାସ ପର୍ବତରେ ଜାତହୋଇଥିବା ସୁନା ପୋଖରୀପରି ଏ ସୁନ୍ଦରୀ ହୋଇଅଛି । ଅତଏବ ମୋ ଚିତ୍ତରୂପକ ହଂସତାର ଅଧୀନହେବା ଉଚିତ ହୋଇଅଛି । ପୋଖରୀ ଜଳରେ ପୂର୍ଣ୍ଣ ଏ ଶୃଙ୍ଗାର ରସପୂର୍ଣ୍ଣା । ପୋଖରୀରେ ସ୍ବର୍ଣ୍ଣ ପଦ୍ମଥାଏ ଏହାର ମୁଖ ସେ ଶୋଭା ଧାରଣ କରୁଅଛି । ପୋଖରୀରେ ପଦ୍ମସୁବାସର ସ୍ଥାନ ହୋଇଥିବାରୁ ଭ୍ରମର ମତ୍ତହୋଇ ତହିଁରେ ବସିଥାଏ । ଏହାର ଚବୁକରେ ଚିତ୍ରିତ ଭ୍ରମର ମଧ୍ୟ ସେହିପରି ହୋଇଅଛି । ପୋଖରୀରେ ଚକ୍ରବାକ ଯୁଗଳ ବୁଡ଼ିଉଠିଲା ବେଳକୁ ଶୈବାଳରେ ଆବୃତ ହୋଇଥାଏ । ଏହାର କଳା କାଞ୍ଚୁଲାରେ ଆବୃତସ୍ତନ ସେହିପରି ହୋଇଅଛି ପୁଣି ପୋଖରୀ ଲହଡ଼ୀ ମାନଙ୍କ ସ୍ଥାନ ହୋଇଥାଏ । ଏହାଙ୍କର ଅଙ୍ଗଭଙ୍ଗୀମାନ ସେହିପରି ଅନୁମିତ ହେଉଅଛି । ୧ଜାତରୂପ, ସୁବର୍ଣ୍ଣ, ୨ରୋଲମ୍ବ, ଭ୍ରମର, ୩ଚକ୍ରଦ୍ୱୟ, ଚକ୍ରବାକ ଦ୍ୱୟ ।

୧ଯାମିନୀଶ ଭାମିନୀ ଅବଶରେ ଏ ଯେଣ ପାର୍ବତୀ-ବନୀ ଗୁଣ ଧରେ ।
ମୁଁ ହେଲି ପସ୍ତ ନାସ୍ତି ନାରିକେଳ ସ୍ତବସ୍ତ ଭୁବନେ କୁଚ ଜନ୍ମି ଉରେ ଯେ ।
ହେଲେ ଶୁଭ । ଶୋଭନାହିଁ ଏ ସେବା ଦେବାସୁ-ପଦ୍ୟ ଲେଖା ଲେଖାଇବ
ପ୍ରଶଂସି ପୁନଃପୁନଃ ଅନୁଗ୍ରହାଲିଙ୍ଗନ ଦେଇଁ ଗାତ୍ର ପବିତ୍ର ହେବ ସେ । ୧୮ ।
ମନେ କଲି ଏ ଦେବସଭା ମୋତେ ତ ଦେବ ଗତ ଜଗତୀ ବ୍ୟାଜ ମେରୁ ।
ଖେଳାଇ ମନୋରମା ତୋଳା' ନୋହି ଉପମା ନସୃଇ ଚିତ୍ରରେଖା ଭ୍ରୂରୁ ସେ
ଗୁପ୍ତ ବାସ । ପିଧାନେ ରମ୍ଭା କରହେରୁ । ପାରିଜାତକ ଗନ୍ଧଭରୁ ।
ସୁଖ ଅନେକନେତ୍ରେ ଦେଇଅଛି ବଶେ ମୁଁ ମିଳେ କି ଭାଗ୍ୟବଶରୁ ସେ ।୧୯।
ନେତ୍ର ବୃନ୍ଦୁଁ ଦଶିଲି ଗୁରୁଶୀଳା ଅସିଲି ନଦ୍ଧ୍ୟସ୍ତତମାରୁପେ ପାଶେ ।
କୁନ୍ତଳ ଇନ୍ଦ୍ରନୀଳ ଅବଧ କି ମଞ୍ଜୁଳ ମୁଖ ମହାପଦ୍ମ ବିକାଶେ ସେ ।
ଗଣ୍ଡଶର୍ବ । ମକର ଶୋଭା ଖର ଅତ । ଈକ୍ଷଣ ପଦ୍ମ ଯେ ଚଳନ୍ତି ।
କଣ୍ଠ ଶଙ୍ଖ ସୁଦନ୍ତ୍ୟମୁକୁନ୍ଦ ମତମତ ପାଦପର କଚ୍ଛପାକୃତି ସେ ॥

---

୧୮—ଏବକ ପୃଷ୍ଠଭାଗେ ପାର୍ବତୀଙ୍କ ଉପବନର ଗୁଣ ଧାରଣ କରିଅଛି କି । ପାର୍ବତୀଙ୍କ ଉପବନରୁ ପ୍ରତ୍ୟକ୍ଷରେ ଲକ୍ଷ୍ମୀ ହୁଅନ୍ତି । ସେହିପରି ଚନ୍ଦ୍ର ଏ ବନରୁ ଅମି ଶ୍ରୀ ହୋଇ ଅଛନ୍ତି କି ? ସ୍ତନଦ୍ୱୟଟିରେ ଏ ଅନୁମାନ ହେଉଅଛି । ତେବେ ମୁଁ ମଧ୍ୟ ନାରିକେଳ ତୁଲ୍ୟସ୍ତନ ଯଥରେ ଜନ୍ମାଇ ନାରୀ ହୋଇ ଯିବାପରି ଏହାହେଲେ ମଙ୍ଗଳ । କଷ୍ଟ ଦୁଃଖ ନାହିଁ, କାରଣ ଏ ସୁନ୍ଦରୀ ମୋତେ ସେବାରେ ନିଯୁକ୍ତ କରିବ ମୋ ହାତରେ ଦୂତପତ୍ର ରଚନା ଲେଖାଇବ । ଚିତ୍ତଭଲ ହେଲାବୋଲି ବାରମ୍ବାର ପ୍ରଶଂସାକରି ଅନୁଗ୍ରହରେ ଅଲିଙ୍ଗନକଲେ ମୋ ଦେହ ପବିତ୍ର ହୋଇଯିବ । ୧ ଯାମିନୀଶ, ଚନ୍ଦ୍ର ।

୧୯—ମନେକଲି, ଏ ଦେବସଭା ଅଟେ । ମୋତେ ଗତଦେବ ( ମୋକ୍ଷଦେବ ) ଦେଖ ମେରୁପର୍ବତ ଆଧାରରେ କପଟରେ ଅଛି । ମେରୁରେ ଦେବସଭା ଥାଏ ଏ ସୁନ୍ଦରୀ ଜଗତରେ ଅଛି । ଦେବସଭାରେ ମନୋରମା ନାମ ଅପ୍ସରା ଥାଏ । ଏ ତୋଳାକୁ ମନୋରମା କରିଅଛି ଓ ଅନୁପାମରୂପେ ଖେଳାଉ ଅଛି । ଦେବସଭାରେ ଚିତ୍ରଲେଖା ନାଚୁଥାଏ । ଏହାଚିତ୍ରରେ ରେଖାତୁଲ୍ୟ ଭ୍ରୂଲତାକୁ ଜଣାଉଅଛି ସେଠାରେ କୁଇଳେରୁ (ସୁନ୍ଦରୀ) ରମ୍ଭା ଅପ୍ସରାଥାଏ । ଏ ରମ୍ଭାକର ହୋଇକି ଅର୍ଥାତ୍ କଦଳୀ ଜଙ୍ଘ ଓ ଦନ୍ତି ଶୁଣ୍ଡପରି ଉରୁକୁ ବସ୍ତ୍ରଅଚ୍ଛାଦନରେ ଗୁପ୍ତ ରଖି ଅଛି । ସେ ପାରିଜାତ ଫୁଲର ସୁଗନ୍ଧ ହେତୁରୁ ଅନେକନେତ୍ର (ଇନ୍ଦ୍ର) ଙ୍କୁ ସୁଖଦ । ଏ ସୁନ୍ଦରୀ ପାରିଜାତ ଫୁଲପରି ଗନ୍ଧାଢ଼ୟ ହେତୁରୁ ନେତ୍ରକୁ ଅନେକ ସୁଖ ଦେଉଅଛି । ମୁଁ ଭାଗ୍ୟବଳରୁ ଏଠାରେ ପହୁଞ୍ଚିଅଛି ।

୨୦—ନେତ୍ର ବୃନ୍ଦଙ୍କୁ ଗୁରୁଶୀଳା ସ୍ତନଦ୍ୱୟୀ ନିତମ୍ବଧ୍ୱ ପ୍ରତିରୂପେ ପାଖକୁ ଅସିଲାପରି ଦିଶୁଅଛି । ଏହାର କେଶ (ଅବଧ) ପୋତାହୋଇ ନ ଥିବା ଇନ୍ଦ୍ରନୀଳମଣିପରି ବିମଣ୍ଡିତ ହୋଇଅଛି । ଅତଏବ ନୀଳନ୍ଧ୍ୟ ଓ ଅବଧ ନଧ୍ୱ ଦୁହେଁ ରହିଲେ । ମୁଖ ମହାପଦ୍ମପରି ବିକଶିଅଛି ଅତଏବ ମହାପଦ୍ମନିଧ୍ୟ ରହିଲେ । ଗଣ୍ଡସ୍ଥଳରେ ଚିତ୍ରିତ ମକର ଶୋଭା ପାଉଅଛି ଏଥିରେ ଶର୍ବନଧ୍ୟ ଓ ପଦ୍ମନିଧ୍ୟ ରହିଲେ. କଣ୍ଠ ଶଙ୍ଖପରି ଓ ଦନ୍ତ କୁନ୍ଦପରି ପାଦ ଓ ପାଦ କଚ୍ଛପପରି ସ୍ଥିତ ହୋଇ ଅଛି । ଅତଏବ ଶଙ୍ଖନିଧ୍ୟ ଓ କୁନ୍ଦନିଧ୍ୟ ଓ କଚ୍ଛପନିଧ୍ୟ ।କେ ରହିଲେ ।

ପାଣି ଧରି ଅଣିମା ବୋଲେ ନଷ୍ଟେ ଅଣିମା ଗର୍ବ ନୋହିଲୁ ହ୍ରସ୍ୱଭାବ ।
ଲଘିମ ଭଜ ତାପ ଯିବ ସୁଖଜଲାନ ପ୍ରକାଶ ପ୍ରକାଶ ସର୍ଜିବ ସେ ।
ପ୍ରାପ୍ତି ହୋଇ । ମହିମା ନଷ୍ଟଲେ ରହିବ । ଈଷିତାଭାବ ଜନ୍ମୁଥିବ ।
ନିରତ ବଶିତାରେ କାମାବଶାୟିତାରେ ଐଶ୍ୱର୍ଯ୍ୟ ପୂର୍ଣ୍ଣ ହେବ ଶିବ ସେ ।୧୧।
ଶତେଓ ସେହି ଆଦର ଦରିଦ୍ର ଦଶା ହରି ହରିଲେ ଏହି ଭେଟାଇଲେ ।
ପୁଣି ଗୃହିଁଲ ସେହିମତେ ରହିଲ ମନ୍ତ୍ରୀମନ୍ତ୍ରନା ମନ୍ଦଲା ନଷ୍ଟଲେ ସେ ।
ଯେତେ ସ୍ୱପ୍ନ । ଦେଖିଲି ମେଡ଼େ ଅଛି ଯେତେ । ପିତୂଳା ସେ ଅବଳାନୋହି
କ ଅଭିରାମ ରାମ ଭାର୍ଯ୍ୟା ସୀତା ଏ ଭ୍ରମ ଏଠାରେ ଗଲେ କଣ୍ଠାଂ ଥୋଇ ସେ ।୧୨।
ପ୍ରତିମାରୂପେ ଦାସନନ୍ଦାରକାଙ୍ଗା ଦ ସହିତେ ଦାଶରଥି ଉତ୍ସବ ।
ଛତିବରବେଷେ ରସେ ରସିବୁଁ ବେଳ ବଣେ କାହାକୁ ବର ଦେଇଥିବେ ସେ ।
ଯୁବାବର । ପାଶ୍ୱେ ରାମମୂର୍ତ୍ତି କାହିଁଛି । ଏ କଥା ନୁହଇ ଯେ କଛି ।
୬ଭୋଜବିଦ୍ୟା-ବିଦ୍ୟକ-ବୃନ୍ଦଙ୍କ କଉତୁକ କପଟ ଲମ୍ପଟ ଜାରୁଛି ସେ ।୧୩।

---

୧୧—ହାତଧରି ବୋଲିଲୁ ଅଣିମା ତାରି ଅଣିମା ଐଶ୍ୱର୍ଯ୍ୟ ଗର୍ବବନ୍ତ ହେବନାହିଁ ଯେହେତୁ ଅଣିମା ହେଉଅଛି । ସନ୍ତାପ ଲଘିମା (ଲଘୁତ୍ୱ)କୁ ପାଇବ ଅତଏବ ଲଘିମା ଐଶ୍ୱର୍ଯ୍ୟ ହେବ । ସୁଖସମୂହ ପ୍ରକାମ ( ଯଥେଷ୍ଟ ) ରୂପେ ପ୍ରକାଶ ହେବ । ଅତଏବ ପ୍ରାକାମ୍ୟ ଐଶ୍ୱର୍ଯ୍ୟ ହେବ । ତାର ପ୍ରାପ୍ତି ହୋଇଲେ ମୋର ମହିମା ( ମହତ୍ତ୍ୱ ) ନଷ୍ଟକ ରହିବ । ଅତଏବ ପ୍ରାପ୍ତି ଓ ମହିମା ଐଶ୍ୱର୍ଯ୍ୟଦ୍ୱୟ ହେବ । ଇଚ୍ଛୋପଭୋଗ ଈଶ୍ୱରତ୍ୱର ଅଭାବ ଜନ୍ମୁଥିବ । ଅତଏବ ଈଶିତା ଐଶ୍ୱର୍ଯ୍ୟ ହେବ । ମୁଁ ବଶିତାରେ (ବଶକରିବାରେ) ନିରତହେବ । ଅତଏବ ବଶିତା ଐଶ୍ୱର୍ଯ୍ୟହେବ । କାମାବଶାୟିତାରେ କାମକ୍ରୀଡ଼ା ହାସ୍ୟ ବଶ କରିବାରେ ମଧ୍ୟ ନିରତ ହେବ । ଅତଏବ କାମାବଶାୟିତା ଐଶ୍ୱର୍ଯ୍ୟ ହେବ, ଏପରି ଅଷ୍ଟ ଐଶ୍ୱର୍ଯ୍ୟ ପୂର୍ଣ୍ଣହେବା ହାରି ମୁଁ ସାକ୍ଷାତ୍ ଶିବହେବ । ଅର୍ଥାତ୍ ମଙ୍ଗଳଯୁକ୍ତ ହେବ । ଶିବଙ୍କର ଅଷ୍ଟ ଐଶ୍ୱର୍ଯ୍ୟ ଅଛି ।

୧୨—ସେ ଏହିକଥା ତତ୍ତ୍ୱରେ ଅବଧରିଲେ । ତହିଁ ମୋର ଏ ଦରିଦ୍ର ପର ଦୁର୍ଦ୍ଦଶାକୁ ହରଣ କଲେ । ଏ ନଷ୍ଟ ଓ ଐଶ୍ୱର୍ଯ୍ୟ ସ୍ୱରୂପାକୁ ଭେଟ କରାଇଲେ । ପୁଣି ସେ ମନ୍ତ୍ରୀ ମନ୍ତ୍ରନା ସୁନ୍ଦରୀ ଲୋମରଙ୍କ ଗୃହିଁଲ ସେହିପରି ନଷ୍ଟଳ ହୋଇ ରହିଲ । ପ୍ରତ୍ୟେକ ବସ୍ତୁର ଯେ ମୁଁ ଜନ (ମେଡ଼) ଧ୍ୟାନକାରେ ଅଛି । ସ୍ୱପ୍ନ ଦେଖିଲି ଅଥବା ଏ ଭୋଜବେ ପିତୂଳା, ସ୍ତ୍ରୀ ନୁହେଁ କ ରାମଚନ୍ଦ୍ରଙ୍କର ସୁନ୍ଦର ସୁବର୍ଣ୍ଣସୀତା ସେ ଭ୍ରମରେ ଏଠାରେ କାହିଁକି ଥୋଇଦେଇ ଗଲେ ।

୧୩—ଧୀବରର ବ୍ରାଣଦାସ ଦାଶରଥି ରାମଚନ୍ଦ୍ରମାନଙ୍କମଙ୍ଗଳ ନମିତ୍ତ "ପ୍ରତିବର୍ଷ ଉତ୍ସବରେ ଅମ୍ଭେ ପ୍ରତିମା-ରୂପରେ ରସରେ ମାତଲୁଁ ଏହା ବୋଲି ବଣହୋଇ କାହାକୁ ବର ଦେଇସାଇଥିବେ । ପୁଣି ସୁବାବର ଲୁମାର ପାଶ୍ୱରେ । ତେବେ ରାମପ୍ରତିମା କାହିଁଅଛି । ଅତଏବ ଏକଥା କଛିନୁହେଁ ଐନ୍ଦ୍ରଜାଲିକ-ମାନଙ୍କର କପଟ କୌତୁକ ଏ । ଏପରି ଅସତ୍ତ୍ୱ କରୁଅଛି । ୧ଦାସ, ଧୀବର ଓ ଭକ୍ତ ସେବକ
୬ ଭୋଜବିଦ୍ୟା ବିଦ୍ୟକ, ଐନ୍ଦ୍ରଜାଲିକ ।

୨୪ଦୁହେଁ ଦୁହିଙ୍କି ମନ ନେତ୍ର କାହିଁକି ନ ଥାଇ ଉପୁଜାଇ ସ୍ନେହ ।
ଅଲୋକିତ ଲୋକନ ବଶୁଁ ଭଳ ଚକିତ ସ୍ତମ୍ଭିତ ହୋଇ ଗଲା ଦେହ ଯେ ।

ଯୁବାରାମା । ହାସେ ପୁଲକ କମ୍ପ ରହ । ହା ସେ ପଲ୍ଲବ କମ୍ପ ନାହିଁ ।
ନାସେ ଶ୍ୱାସ ରହିଲା ନାଶେ ମାର ତାହିଲ ମୂର୍ଚ୍ଛା । ୧ମୂର୍ଚ୍ଛିତ ଗଲା କାହିଁ ଯେ ॥
୨୫ଚକର ମଣିଲେ ପୁନ କର ଗୁଣିଲେ ଲେଖା ଏ ଗଲା ଦେଖାଗଲା ।
ଅଜୀବେ ସଜୀବ କରୁଅଛି ସଜୀବ-ଶରକୁ ତେବେ ଯେ ହେଲା ଯେ ।

ଯୁବାରାମା । ଅଦୃଶ୍ୟ ହୋଇଛନ୍ତି ପାଞ୍ଚ । ବର୍ଣ୍ଣ ସମବର୍ଣ୍ଣକ ରୂପ ।
ପଡ଼ିଗଲା କ କାଳ କ କାଳ ହରିତାଳ ଶଙ୍ଖ ହିଙ୍ଗୁଳ ଥିଲା ସଞ୍ଚ ଯେ ॥
୨୬ଶୁଣିଥିଲା ସଦ୍ଗୁଣ ପର ହେଉଛି ଦ୍ୱିଗୁଣ ଇଦ୍ଗୁଣ ନାହିଁ ସଂସାରେ ତ ।
ମୂହୁର୍ମୁହୁ ଲୋଚନ କ୍ଷଣେ କ୍ଷଣେ ମୋଚନ କରଇ ସନ୍ତାପ ବହୁତ ଯେ ।

ଯୁବାରାମ । ସବନ୍ତ ଥାଇ ଇନ୍ଦ୍ରଜାଲ । କ୍ଷଣକେ ହୁଏ ଚନ୍ଦ୍ର ମେଳ ।
ସ୍ୱପନ ନ ବସ୍ତୁରେ ସାକ୍ଷାତ ପରସ୍ତରେ ଈଶ୍ୱର ହେବେ ଅନୁକୂଳ ଯେ । ୨୭ସ୍ନୋ
ହେବ ସର୍ବେଭୂତପତି ତାଙ୍କୁ ଭଜ ଵପତି ନ ଘାତ ନୋହିବ କର୍ପୂର ।
୨ମେଘ-ଉପଲ ଶୀତକାନ୍ତରେ ବରଜିତ ଜ୍ଞାନ ପ୍ରସର ଗଲା ଧାଇଁ ଯେ ।

---

୨୪—କୁମାରକୁମାରୀ ଦୁହେଁ ଦୁହିଙ୍କୁ ଚାହିଁବାରୁ ମନ ଓ ନେତ୍ର ଅନ୍ୟ କାହିଁକି ଗଲେନାହିଁ ଅନୁରାଗ ଜାତହେଲା । ନ ଦେଖିଥିବାକଥା ଦେଖିବା ହେତୁରୁ ଚକିତ ହେଲେ ଦେହ ସ୍ତମ୍ଭିତ ହେଲା । ସେ ଯୁବା ଓ ଯୁବତୀ ଦୁହିଙ୍କର ଦେହରେ କମ୍ପ ପୁଲକ ରହିଲା । କିନ୍ତୁ ଅଧର ସେ ପଲ୍ଲବ କମ୍ପନ ଥିଲା ନାସିକାରେ ଶ୍ୱାସମାତ୍ର ରହିଲା, କନ୍ଦର୍ପ ନାଶକରିବାକୁ ଉଦ୍ଦୀପ୍ତ ହେଲା । ମୋହ ବୁଦ୍ଧି କେଉଁଆଡ଼େ ଗଲା । ଅର୍ଥାତ୍ ଚେତନା ଆସିଲା ୧ମୂର୍ଚ୍ଛିତ, ବୁଦ୍ଧି ।

୨୫—ଦୁହେଁ ଦୁହିଙ୍କୁ ଚିତ୍ରପଟ ବୋଲି ମଣିଲେ, କିନ୍ତୁ ଏହା ଅନ୍ତର ବଶ୍ୟରହିଲେ । ସେ ଏପଟ ଚିତ୍ରପଟ ଲେଖାଗଲା ସେ ଦେଖାଗଲା । କିନ୍ତୁ ନିର୍ଜୀବ ଚିତ୍ରରେ କନ୍ଦର୍ପକୁ ସଜୀବ କରୁଅଛି, ଏ ବଡ଼ ଆଶ୍ଚର୍ଯ୍ୟ ହେଲା ମନୁଷ୍ୟ ବର୍ଣ୍ଣ ସମାନ ବନକର ଶୋଭା ହୋଇଥିବାର ପାଞ୍ଚ ଯୁବା ଓ ଯୁବତୀ ଦୁହେଁ ଅଦୃଶ୍ୟ ହୋଇ ଅଛନ୍ତି । ଦୁହିଙ୍କର ବୈବର୍ଣ୍ୟ ହେବାରୁ ଅନୁମାନ ହେଉଛି । ଚିତ୍ରକାର କାଳ ହରିତାଳ ଶଙ୍ଖ ହିଙ୍ଗୁଳ ସଞ୍ଚରଣିଥିଲା କି । ତହିଁରୁ କାଳ ଅପର ଏ ଚିତ୍ରରେ ପଡ଼ିଗଲା କି । ୧ ସ୍ମରଣଶର, ପଚଶର ଯାହାର ( କନ୍ଦର୍ପ )

୨୬—ଯୁବା ଓ ଯୁବତୀ ଦୁହେଁ ପୁଣି ବିଚାରିଲେ, ଅସ୍ଥଶୁଣିଥିବାପର ଦେଖାଯାଉଅଛି । ସଂସାରରେ ଏପରି କେହିନାହିଁ । ଅଶ୍ରି ଜଳର ଦୁଃଖରୁ ମୁହୁ ମୁହୁ ନୟନମାନଙ୍କ ପ୍ରତି ଛାଡ଼ିଦେଉଅଛି । ସେ ଦୁହେଁ ଅପରକୁ ଇନ୍ଦ୍ରଜାଲ ବୋଲି ଭାବିଲେ, ପୁଣି କ୍ଷଣକମଧ୍ୟରେ ଚନ୍ଦ୍ର ପ୍ରତିମା ବୋଲି ଦୁହିଙ୍କ ବୋଧ ଏକହେଲା ପୁଣି ସ୍ୱପ୍ନବୋଲି ବିଚାରିଲେ । କିନ୍ତୁ ସାକ୍ଷାତ୍ ନିଦ୍ରାର ହେତୁ ସ୍ୱପ୍ନ ବୋଲି ବିଚାରିଲେ ନାହିଁ ଅତଏବ ଈଶ୍ୱର ଅନୁକୂଳ ହେବେ ବୋଲି ବିଚାରିଲେ ।

୨୭—ଯେ ଈଶ୍ୱର ସମସ୍ତ ପ୍ରାଣିମାନଙ୍କର ପତି ଅଟନ୍ତି । ତାହାଙ୍କୁ ଭଜ ବିପତ୍ତି କାହିଁକି ନିପାତକର ନ ହେବ । ଦୁଃଖ ପଥରପରି ଚନ୍ଦ୍ର ଶୁଭ୍ର ଶୋଭାରେ ବିରଜିତହେଲେ । ଅର୍ଥାତ୍ ଜ୍ଞାନ ବହିଲା ।

ଯୁବାସ୍ତମ । କୁମାର ଶୁଣିବ ଏ କୁମାରୀ । ଜେମା ଜାଣେ ନାରୀ ନର ।
ଗଲା ସନ୍ଦେହ ଦେହବନ୍ତ ଏ ଜନ୍ମି କ୍ଷେତ୍ର ଅବଦେଦବଜାର ସଞ୍ଚର ସେ । ୧୭।
ମନାସି ଜଗଦୀଶ ଦଶବାସେ ଅଶେଷ ଦ୍ୱେଗକୁ ଅତ୍ୟନ୍ତ ପ୍ରମୋଦ ।
ଯାହା ରଶତ ରସ କବିବାଣୀରେ ଶେଷ ନୋହେ ସେ ଦେବ ଶମ୍ଭୁ ତୁଚ୍ଛ ସେ
୧ସୁମନାଏ । ପାଞ୍ଚ ଏ ଛନ୍ଦର ସ୍ୱଚ୍ଛ । ନାହିଁ ଆନର ପ୍ରକାର ।
କହେ ଉପେନ୍ଦ୍ର ଭଞ୍ଜ ଉତ୍ତମ କବିପୁଞ୍ଜ ଦୁର୍ଲ୍ଲଭମାର୍ଗେ ମୋ ସଞ୍ଚର ସେ । ୨୮।

## ଚତୁର୍ଦ୍ଦଶ ଛନ୍ଦ ।

### ରାଗ ପଞ୍ଚମବରାଡ଼ି ।

ଦେଖି ପିକ ସ୍ୱନ ଶୋଭା । ମଞ୍ଜୁ ବଦ୍ଧ୍ୟଜଡପ୍ରଭା ।
ଦୋଷାର ତତ୍ତ୍ୱରର ମୋହନୀ ଏ ବେନି ସୁଧାକୁମ୍ଭ ଯେନ ଉଭା । ୧ ।
ଆଶ୍ଚର୍ଯ୍ୟ ଦଇବମାୟା । ଅଶେଷ ଲାବଣ୍ୟଛାୟା ।
ବଲ୍ଲଭୀ କରି ମୁଁ କି କରି ଲଭନ୍ତି ଶିବେ କରି ଜାହିଁ ଦୟା । ୨।

---

ତବୁତଙ୍କର ଉଦୟ ହେଲା ଉଦୟ ଧ୍ୟାନକଲେ । କୁମାର ବଜାରଲେ ଏ ରାଜ କୁମାରୀ, କୁମାରୀ ଜାଣିଲେ ଏ ରାଜପୁତ୍ର । ଏ ଦେହଧାରୀ ମନୁଷ୍ୟ ବୋଲି ଜାଣିବାରୁ ସନ୍ଦେହ ଗଲା । ପରସ୍ପର ଅନୁରାଗ ଜାତ ହେବାରୁ କନ୍ଦର୍ପ ସଞ୍ଚାର କଲା । ୧ଯୁବ. ସ୍ତ୍ରୀଣୀ ୨ ମେଦରୂପଳ, ରୂପପଥର ଅଦେହ, କନ୍ଦର୍ପ ।

୨୮—ଜଗଦୀଶ ବସ୍ତୁ ଓ ଦିଗମ୍ବର ଶିବଙ୍କୁ ସେ ଦୁହେଁ ଅତ ଆନନ୍ଦରେ ଅନେକ ଶ୍ଳେଷ ଦେଇ ମନାଶିଲେ । ଆହେ ପଣ୍ଡିତମାନେ ଯେ ସମସ୍ତ ରଚନାର କବିମାନଙ୍କ ବଚନରେ ଶେଷ ହୋଇ ନପାରେ, ତାପାରେ, ତାହାଙ୍କୁ ହୃଦୟରେ ତନ୍ମୟ କରି ଉପେନ୍ଦ୍ରଭଞ୍ଜ କହୁଅଛନ୍ତି । ଏ ଛନ୍ଦର ବଚନ ଅନ୍ୟ ଛନ୍ଦପରି ନୋହେ । ଉତ୍କୃଷ୍ଟ କବିମାନଙ୍କର ଦୁର୍ଲ୍ଲଭ ମାର୍ଗରେ ମୁଁ ସଞ୍ଚାର କରୁଅଛି । ଏହା ଜାଣ । ୧ସୁମନା, ପଣ୍ଡିତ ।

---

## ଚତୁର୍ଦ୍ଦଶ ଛନ୍ଦ ।

୧—ଶାର ରାଜପୁତ୍ର ପୃଥୁଳସ୍ତନୀ ରାଜକନ୍ୟାର ମନୋହର ଶୋଭା ଓ ବକ୍ଷସ୍ଥଳରେ ଅଧିକ ଝଟକ ଦେଖି ବିଚାର କରୁଅଛି । ଏ ଦୟିତାର ମୋହନ ମୂର୍ତ୍ତି ଅମୃତମନ୍ଥିତ ଯୋଡ଼ାଏ ଯେନ ଛିଡ଼ା ହୋଇଅଛି । ସମୁଦ୍ର ମନ୍ଥନପରେ ବିଷ୍ଣୁ ମୋହିନୀ ମୂର୍ତ୍ତି ଧରି ଅମୃତ କୁମ୍ଭ ଯେନ ଦେବତାମାନଙ୍କୁ ଅମୃତ ପରସିଥିବା କଥା ପୁରାଣରେ ଅଛି । ଏଠାରେ ସ୍ତନକୁ କବି ଅମୃତ କୁମ୍ଭ ବୋଲି ଉତ୍ପ୍ରେକ୍ଷା କରୁଅଛନ୍ତି ।

୨—ମୋହନ ମୂର୍ତ୍ତିପରି ଏ ଆଶ୍ଚର୍ଯ୍ୟଜନକ ଦେବମାୟା, ଏହାର ଦେହ ଅଶେଷ କାନ୍ତି ପୁଞ୍ଜରେ ପୂର୍ଣ୍ଣ ହୋଇଅଛି । ମୋହନ ଶିବଙ୍କୁ ବ୍ରତର ଦୟାକରି ନଥିଲେ । ସେପରି ଏ ମୋତେ ଦୟା କଲେ, ମୁଁ କପରି ଏହାଙ୍କୁ ସ୍ପର୍ଶ କରି ପାରିବ । ଯେଉଁ ଦେହ କାନ୍ତିରେ ପ୍ରତିବିମ୍ବ ପଡ଼େ, ତାକୁ ଛାୟା କହନ୍ତି ।

ଦୁର୍ଲଭ ଏହାକୁ କହୁ । ହରିଷ ସ୍ବରୂପ ଏହୁ ।
ଦେଖିଲ୍ଲ ଲେଖିଲ୍ଲ ଲୋଚନେ ବଚନେ ଉପମା ଦେବାକୁ ନାହିଁ । ୩ ।
ଗଣ୍ଡି ଶିରା ବର୍ଜିତ । ତନୁରେ ମାପ ଆୟୃତ ।
ପଙ୍କ୍ତିରସାଳକୁ କୃତାର୍ଥ କରିବା କନ୍ଦର୍ପ କରି ଲକ୍ଷିତ । ୪ ।
ପାନକଳ ପୂରି ତୁଣ୍ଡେ । ଫୁଟି ଦିଶୁଅଛୁ ଗଣ୍ଡେ ।
ଜବା କୁସୁମ ପ୍ରତିବିମ୍ବି ଅଛୁ କି ନିର୍ମଳ ମୁକୁରଖଣ୍ଡେ ।୫।
ହରିତୋଳି କାଳି ଶିତା । ଭୁଜ ପଦ୍ମେ କି ଶୋଭିତା ।
ସୁବର୍ଣ୍ଣଭୂମିରେ ଅଙ୍କୁରି ଅଛି କି ମରକତ ମିଛା ଲତା । ୬ ।
ଏହା ଶ୍ରୀ ଅଙ୍ଗକୁ ଛୁଇଁ । ରତନ ଯତନ ହୋଇ ।
ମହା ଅଦଭୂତ ପ୍ରଶଂସା ସଂସାରେ ଭୂଷଣ ଅଛନ୍ତି ପାଇ । ୭ ।
ଚନ୍ଦ୍ର ଉର୍ମି ଚନ୍ଦ୍ର ଝଳ । କେଶରାହୁ ଅର୍ଦ୍ଧେ ଗିଳ ।
ବେଣୀଅଗ୍ର ହୀରାପିହାଣିଅ ଶୋଭା ସୁଧା ପଡୁଅଛି ଗଳ । ୮ ।
୧ଉତ୍ତମାଙ୍ଗ ମାଙ୍ଗଭଙ୍ଗ । ଏଥିକି କି ନେନିଭଙ୍ଗ ।
ଶୋଭା ଅଧିକୁ ତମାଳ୨ଖଡ଼ ମାଳ ନୁହନ୍ତି ଉପମାଯୋଗ୍ୟ । ୯ ।
ତାର ଯେ ୧ତାରେ ସୀମନ୍ତ । ତାରାପତି ପରିପନ୍ଥି ।
ଯେଉଁକି ନୀଳ ନିର୍ମଳ ନଭ ତେଜେ ପ୍ରଭା ପ୍ରକାଶିଛି ଅତି । ୧୦ ।

---

୩—ଏହାକୁ ଏକା ଦୁର୍ଲ୍ଲଭ ପଦାର୍ଥ କୁହାଯିବ । ଏ ଆନନ୍ଦସ୍ବରୂପ, ଏବେ ଅକ୍ଷିରେ ଦେଖିଲି । କିନ୍ତୁ ଉପମା ଦେବାକୁ କଥାରେ ନାହିଁ ।

୪—ଏହା ଦେହରେ ଗଣ୍ଠି ଓ ଶିରା ନାହିଁ ଶାସ୍ତ୍ରୀୟ ପ୍ରମାଣମାପ ଅଛି । ପାଚିଲା ଅମ୍ବକୁ ଏହା ସହିତ ଅଳ୍ପ ତୁଳନା କରି କୃତାର୍ଥ କରାଯାଇଅଛି ।

୫—ପାନ ତୁଣ୍ଡରେ କଳ ପୂର୍ଣ୍ଣକରି ଗାଲରେ ଫୁଟି ଦିଶୁଅଛି । ଜବାଫୁଲ ନିର୍ମ୍ମଳ ଦର୍ପଣ ଖଣ୍ଡରେ ପ୍ରତିବିମ୍ବିତ ହୋଇ ଅଛି କି ? ।

୬—ହରିତାଳି ଗୋଡ଼ର ବାହାରେ ଓ ପାଦରେ କାଳି ପଡ଼ି ସୁନ୍ଦର ହୋଇଅଛି । ସୁନା ଭୂଇଁରେ ବଢ଼ା ହୋଇଥିବା ମରକତମଣିମୟଲତା ଅଙ୍କୁରି ଅଛି କି ?

୭—ରତ୍ନମାନେ ଏହାର ଶ୍ରୀଅଙ୍ଗକୁ ଛୁଇଁବାରୁ ସଂସାରରେ ଭୂଷଣରୂପେ ଅତି ଅପୂର୍ବ ପ୍ରଶଂସା ପାଇଅଛନ୍ତି ।

୮—ଏହାର ଚନ୍ଦ୍ର, ଉର୍ମି ଅର୍ଦ୍ଧ ଚନ୍ଦ୍ରପରି ଝଲକୁଛି । କେଶରୂପକ ରାହୁ ଅଧେ ଗିଳିଅଛି କି ? । ବେଣୀ ଅଗରେ ଥିବା ହୀରା ପିହାଣିଅ ଅମୃତ ଗଳିପଡ଼ିଲାପରି ଶୋଭିତ ହୋଇଅଛି ।

୯—ତମାଳ ଓ ମେଘ ମେଘ କେଶ ଶୋଭାର ଅଧଅଧକୁ ସମାନ ନୁହନ୍ତି । ଏହାବୋଲି ମଣି ଚୂଡ଼ା ଦୂର ଭଙ୍ଗ ହୋଇଅଛି କି ? । ୧ଉତ୍ତମାଙ୍ଗ, ମୁଣ୍ଡ । ୨ଖଣ୍ଡମେଘ, ମେଘ ।

୧୦—ତାହାର ଉଜ୍ଜଳ ମୁକ୍ତା ସୀମନ୍ତୀ ନକ୍ଷତ୍ର ସମୂହର ଶତ୍ରୁ ହୋଇଅଛି । କେଶ ଆକାଶ ପରି ଯେତେ ନୀଳ ଓ ନିର୍ମ୍ମଳ ସେ ତହିଁରେ ସେତେ ଅଧିକ ଶୋଭା ପ୍ରକାଶ କରୁଅଛି । ୧ତାରା, ଉଜ୍ଜଳ ଓ ନକ୍ଷତ୍ର । ୨ପରିପନ୍ଥୀ, ଶତ୍ରୁ ।

କେତକୀ ତୃଣାଗ୍ର ଦଳ । ରଖିଛୁ ସ୍ତ୍ରବେଣୀ ମୂଳ ।
ଚତୁରୀ ୧ସିନ୍ଧାରୀ ଜିପୁଟର ସୁନ୍ଦରୀ କାହିଁ ବୋଲି ବାଳା ଭୁଲ । ୧୧ ।
ସେ ଝରା କି ଶୋଭା ପାଇ । ଶିର ସୁଲକେ ଚଳଇ ।
ମୋତିଜାଲି ଛଳେ ସୁଧା ସିଞ୍ଚୁଛି କି ବନ୍ଧୁ ବିଜୁଳି ଉଭି । ୧୨ ।
ଶ୍ରୁତି ବର୍ତ୍ତିନେ ଅଶେଷ । ମନୋରମ ନେବନ୍ଧ ପାଶ ।।
ମନ ବନ୍ଧ ହୋଇ ତହିଁରେ ରହଇ ଯେଣୁ ଟସ ବନ୍ଧଆବାସ । ୧୩ ।
ଫୁଲଝୁଲକା ଝୁଲକ । ସୁର କନ୍ୟା ଅପଲକ ।
ମଲ୍ଲୀକଳୀ ଚୁମ୍ବ ଆଶେ ପାଶେ କିବା ଅବତ ଷ ଚଞ୍ଚରୀକ । ୧୪ ।
ଚନ୍ଦନ ତିଳକ ଭାଳେ । ସ୍ତମ୍ଭ ଜନମେ ଗ୍ରହିଁଲେ ।
ଏଣୁ ଝିଲମିଲିମାଳୀ ରତ୍ନହୋଣା ଧାରଣା ସ୍ତମ୍ଭ ଏ ଭାଳେ । ୧୫ ।
୧ଚଟୁଳ ଭ୍ରୂ ନର୍ତ୍ତନ । ଏ ଲକ୍ଷ୍ୟ ନ ଗ୍ରଣ୍ଡେ ମନ ।
କି ପାଞ୍ଚ ଆଞ୍ଚ କଜ୍ଜଳଗୁଣେ ରଚି ୨ଅତନୁ ଅଟସେଧନୁ । ୧୬ ।
ଏ ଯେଉଁ ଚଞ୍ଚଳଦୃଷ୍ଟି । ଛଳେ ନୀଳୋତ୍ପଳ ବୃଷ୍ଟି ।
୧ଅନ୍ତରଙ୍ଗରୁ ଉରୁକୁ ଅନାଇଲ ଭାବ କି ଗଳିନ ଫୁଟି । ୧୭ ।

---

୧୧—ଏତ ଲୁଚକରେ ଏ ବାଳାପତି ସୁନ୍ଦରୀ କାହିଁ ବୋଲି, ଚତୁର ବେଶ କାରଣୀ ବେଣୀ ମୂଳରେ କେତକୀର ତନ୍ତ୍ର ପାଖୁଡ଼ା ଖଞ୍ଜି ଅଛି । ୧ ସିଂହାରୀ, ବେଶ କାରଣୀ ।

୧୨—ମୁଣ୍ଡ ହଲେଇବାରେ କମ୍ପୁଥିବା ସେ ଝରା କେତେ ଶୋଭା ପାଉଅଛି । ବନ୍ଧୁ ବଜଳୀ ଉଦୟ ହୋଇ ମୋତି ଜାଲ ଛଳରେ ଅମୃତ ସିଞ୍ଚୁଅଛି କି ?।

୧୩—ଏହାର କର୍ଣ୍ଣ ବେଦପଥ ଅତିକ୍ରମଣୀୟ ଅଟେ, ସେ ମନୋହର ପାଶ ଯୋଡ଼ିବ । ମନ ତହିଁରେ ବନ୍ଧହୋଇ ରହୁଅଛି । ଯେହେତୁ ବନ୍ଧ ଅବାସ ଅଟେ, ବନ୍ଧ ନାମକ ଅଳଂକାରର ସ୍ଥାନ । ଅନ୍ୟ ପକ୍ଷ କବନ୍ଧର ।

୧୪—ଏହାର ଫୁଲ ଝଲକାର ଝଲକ ଦେଖି ଦେବତାମାନଙ୍କ ପଲକ ପଡ଼ୁନାହିଁ । ଅଳଙ୍କାର ମଲ୍ଲୀ କଳୀକୁ ଚୁମ୍ବିବାକୁ ଭ୍ରମର ଚୁମ୍ବିବାକୁ ଇନ୍ଦ୍ରପଦ ବର୍ଣ୍ଣାବତଂସ ପାଖରେ ରହୁଅଛି । ୧ଅବତଂସ, କର୍ଣ୍ଣରେ ଶୋଭା ହୋଇଥିବା ଫୁଲ ପ୍ରଭୃତି । ଚଞ୍ଚରୀକ, ଭ୍ରମର ।

୧୫—କପାଳରେ ଥିବା ଚନ୍ଦନ ତିଳକ ଗ୍ରହିଁଲେ ଲୋକର ସ୍ତମ୍ଭ ( ଜଡ଼ତା ) ଜାତ ହୁଏ । ଏଣୁ ବୋଧହୁଏ । ଏ କାଳ ଭାଳରେ ଝିଲିମିଲି ମାଳୀରୂପକ ରତ୍ନହୋଣାର ଧାରଣା ସ୍ତମ୍ଭ ହୋଇଅଛି କି ?

୧୬—ଚଞ୍ଚଳ ଭ୍ରୂଲତା ନଚାଇବାରୁ ଏ ଉପମା ମନକୁ ଆସୁନାହିଁ । କନ୍ଦର୍ପ ନିଜର ଅତସୀ ଫୁଲଧନୁକୁ କଜ୍ଜଳରେଖାରୂପ ଗୁଣଦେଇ କି ବଢ଼ାଇରେ ଅଛିଅଛି ! ୧ଚଟୁଳ, ଚଞ୍ଚଳ । ୨ଅତନୁ, କନ୍ଦର୍ପ, ଅତସୀ, ଦେଖି ।

୧୭—କ୍ଷୁବ୍ଧ କାମଧନୁ ହୋଇଥିବାରୁ, ଚଞ୍ଚଳଚାହାଣୀ ବ୍ୟାଜରେ ନୀଳୋତ୍ପଳ ଶରବୃଷ୍ଟି କରୁଅଛି କି । ସେ ଚାହାଣୀ ସଜ୍ଜପ୍ରଭୃତ୍ତ ହୃଦୟ ଭିତରେ ପ୍ରବେଶ କରିବାରୁ ହୃଦୟ ଫୁଟିଗଲାଣି କି ? ଭାବ ନାଜ ଗତରୁ ସେ ଚାହିଲେ । ୧ଅନ୍ତରଙ୍ଗ, ହୃଦୟ ପ୍ରଦେଶ । ଉରୁ, ଗତ ।

ଭବେ ଏ କୃପାଗୃହିଣୀ । ମୋ ମନ ୧କୃପଣ ଜାଣି ।
ଅଞ୍ଜନପୂରେ ଖପାଇ ଦେଉଛନ୍ତି ପୁନଃପୁନଃ ନୀଳମଣି । ୧୮ ।
ନେତ୍ରମଧ୍ୟ କଲା ତନୁ । ମୋତେ ଦେଲ ୧ଶତମନ୍ୟୁ ।
ସମ୍ପତ୍ତି ସମର୍ପି କ୍ଷଣକ ଭିତରେ କେଡେ ଦୟାଳୁ ସୁତନ । ୧୯ ।
ବଦନ ଲାବଣ୍ୟଜଳେ । ସଦନ ସର୍ବଦା କାଳେ ।
ନିବଦ୍ଧ ବନକଶନ୍ଦ ତରଣୀକ ଏଣିକ ତେଣିକି ଟଳେ । ୨୦ ।
ନାସାରେ ବେସର ମୋତି । ଧର ଡୋଳା ଓଷ୍ଠ ଜ୍ୟୋତି ।
୧କ୍ଷଣଦା ଆରଦ୍ରା ତଳେ ରହିଲେ କି ଭୁଟାଇ ରୋହିଣୀ ପ୍ରୀତି । ୨୧ ।
ପଦ୍ମରାଗ ଖଣ୍ଡେ ଖୋଲ । ରଖିଛନ୍ତି ହୀରାଆବଳୀ ।
ଝଲ ଝଟଝଟ ହୋଉଛନ୍ତି ପ୍ରକଟ କପଟରେ ହାସବୋଲି । ୨୨ ।
କସ୍ତୂରୀମକ୍ଷିକା ଅଛି । ଏମନ୍ତ ଲକ୍ଷେ ହେଉଛି ।
ଅଧରେ ମଧୁର ମଧୁ ସଞ୍ଚି ସାରି ଚିବୁକେ କିବା ରହିଛି । ୨୩ ।
ମକରୀ ଗଣ୍ଡଦେଶରେ । ନିର୍ମଳ ଆଦରଶରେ ।
ହସାବସାର ଶୋଭା ୧ଶଦପଟଳ ପ୍ରତିବିମ୍ବକୁ କି ଧରେ । ୨୪ ।

---

୧୮—ଭାବାର୍ଥ । ଏ ସୁନ୍ଦରୀ ମୋତେ ଦରିଦ୍ର ବୋଲି ଜାଣି କଜ୍ଜଳରୂପ ସ୍ୱଭାବ କୃପାତାହାଙ୍କରୂପ ଇନ୍ଦ୍ରନୀଳମଣିମାନଙ୍କୁ ଖପାଇ ଦେଉଅଛି କି ? ୧କୃପଣ, ଦରିଦ୍ର ।

୧୯—ସୁନ୍ଦରୀ ପ୍ରଭୁଙ୍କର ସର୍ବାଙ୍ଗକୁ ପୁନଃ ପୁନଃ ଚାହିଁବାରୁ ପ୍ରଭୁ ସ୍ତୁତି କରୁଅଛନ୍ତି । ଏ ସୁନ୍ଦରୀ ମୋର ଦେହକୁ ନେତ୍ରମଧ୍ୟ କଲ ଅହୋ କେତେ ଦୟାବତୀ, କ୍ଷଣକ ଭିତରେ ମୋତେ ଇନ୍ଦ୍ର ସମ୍ପତ୍ତି ସମର୍ପଣ କଲା । ୧ଶତମନ୍ୟୁ, ଇନ୍ଦ୍ର । ୨ସୁତନୁ, ସୁନ୍ଦରୀ ।

୨୦—ସୁନ୍ଦରୀର ଦୃଷ୍ଟି ସର୍ବଦା ପ୍ରଭୁଙ୍କର ମୁଖର ଲାବଣ୍ୟରୂପକ ଜଳରେ ସବୁବେଳେ ସ୍ନାନ କରେ । ଅତଏବ ବର୍ଣ୍ଣନା କରାଯାଉଅଛି । ଧଳା, କଳା ରଙ୍ଗ ଏପରି ଯମୁନାର ଜଳରେ ବନ୍ଧିତ ନୌକା ଏଣିକି, ତେଣିକି ଟାଳୁଅଛି କି ?

୨୧—କଳା ଡୋଳା ଓ ରଙ୍ଗ ଓଷ୍ଠର ପ୍ରତିବିମ୍ବିତ କାନ୍ତିକୁ ଧାରଣ କରିଥିବା ମୋତି ନାସିକାରେ ଶୋଭାପାଉଥିଲା । ଅତଏବ ବର୍ଣ୍ଣନା କରାଯାଉଅଛି । ରାତ୍ରି ଓ ଆର୍ଦ୍ରାନକ୍ଷତ୍ର ଦୁହେଁ ଚନ୍ଦ୍ରର ରୋହିଣୀ ନକ୍ଷତ୍ର ସହିତ ଥିବା ପ୍ରୀତିକି ଭୁଲାଇ ସେହି ଚନ୍ଦ୍ରଠାରେ ରହିଅଛନ୍ତି କି ? ୧କ୍ଷଣଦା, ରାତ୍ରି ।

୨୨—ଓଷ୍ଠାଧର ହୀରାକଣି ସଦୃଶ ଦନ୍ତପଙ୍କ୍ତିମାନେ ପଦ୍ମରାଗମଣି ଖଣ୍ଡରେ ଶୋଭାକରି ବସାଇଅଛି କି । ଅତଏବ ତାର ଝଟ ହାସଛଳରେ ଝଟ ଝଟ ହୋଇ ପ୍ରକାଶ ହେଉଅଛି ।

୨୩—ସୁନ୍ଦରୀର ଚିବୁକରେ ମାଛି ପରି କସ୍ତୂରୀରେ ଚିତ୍ରିତ ହୋଇଅଛି । ଅତଏବ ବର୍ଣ୍ଣନା କରାଯାଉଅଛି । ମହୁମାଛି ଏହାଙ୍କ ଓଷ୍ଠରେ ମଧୁର ମଧୁସଞ୍ଚୟ କରିସାରି ଚିବୁକରେ ବିଶ୍ରାମ କରୁଅଛି କି ?

୨୪—ତାହାର ଗଣ୍ଡସ୍ଥଳରେ ମକରୀ ଚିତ୍ରିତ ହୋଇଅଛି । ଅତଏବ ଅନୁମାନ କରାଯାଉଅଛି କି । ନିର୍ମଳ ଦର୍ପଣରେ ପ୍ରତିବିମ୍ବିତ ହୋଇଥିବା ସ୍ୱଭାବ ଉଲ୍ଲାସ ଯୋଗର ଚିହ୍ନ ସମୂହକୁ ଧାରଣକରିଅଛି କି ? ୧ପଟଳ, ସମୂହ ।

ମାଳାରେ ପୂରିତ ଗଳା । ୧କଳକଣ୍ଠ କି ପଡ଼ିଲା ।
ବଚନ ପାଶରେ ମୋହନବଶରେ ମଦନ ପର୍ବ ମଣିଲା । ୨୫ ।
ଭୁଜ କରି କି ମାଧୁରୀ । ଶିରକୁ ହରି ଲହରୀ ।
ତହିଁ କୁବଳୟ ଏଥି ସୁବଳୟ ସମୁଦ୍ରାଲିଙ୍ଗନ ସରି । ୨୬ ।
ଓଷ୍ଠାରୁଣେ ବାଦକୃତ । କୁଚ ମନ୍ଦରପର୍ବତ ।
ହାର ମଧ୍ୟମଣି ଅଗସ୍ତି ନମ୍ରମୁଁ ଆଉ ନ ବଢ଼ିଲେ ସତ । ୨୭ ।
କଳାକାଞ୍ଚୁଲି ଗରସି । ଅଛୁ ସ୍ତନ ଶୋଭା ବଶି ।
ବିଷଜ୍ୱାଳା ଶାନ୍ତ ସ୍ନାନ କି କରନ୍ତି ଶମ୍ଭୁ କାଳିନ୍ଦୀରେ ପଶି । ୨୮ ।
ଶୁକ ପଦକ ରାଜିତ । ଶିକୁଳିରେ ଏଣୁ ଯୁତ ।
ଉରଜ-ପଞ୍ଜୁରୀ ପରେ ରହନ୍ତି କି ସଦା ସେ ସ୍ଥାନ ବାଞ୍ଛିତ । ୨୯ ।
ମନୋହର ରୋମଶ୍ରେଣୀ । ପୟୋଧର ପେଡ଼ା ଜାଣି ।
ଧଇର୍ଯ୍ୟପବନ ପାନ ପାଇଁ କିବା ବାହାରନ୍ତି କାଳୀଫଣୀ । ୩୦ ।

---

୨୫—ସେ ସୁନ୍ଦରୀର ଗଳା ମାଳମାନଙ୍କରେ ପୂର୍ଣ୍ଣଥିଲା । ଅତଏବ ବର୍ଣ୍ଣନା ହେଉଅଛି । କୋକିଳ ବଚନରୂପ ପାଶରେ ପଡ଼ିଲା କି ? ଅଉ ମୋହିତ ହୋଇ ରହିବାରୁ ତାକୁ ପର୍ବ ବୋଲି ବଡ଼ାଇଲା । ୧କଳକଣ୍ଠ, କୋକିଳ ।

୨୬—ଏହାର ଭୁଜ କେତେ ଶୋଭା ଧାରଣ କରିଅଛି । ଲହରୀ ପରି ଶୋଭାରେ ମନ ହରଣ କରୁଅଛି । ଲହରୀରେ କୁବଳୟ ( ନୀଳକଇଁ ) ଥାଏ । ଏ ଭୁଜରେ ସୁବଳୟ ( ଉତ୍ତମକଙ୍କଣ ) ଅଛି । କିନ୍ତୁ ସମୁଦ୍ରାଲିଙ୍ଗନ ଦୁଇଥିରେ ସମାନଅଛି । ଲହରୀ ସମୁଦ୍ରକୁ ଆଲିଙ୍ଗନ କରେଅଛି । ଭୁଜ ମୁଦ୍ରା (ମୁଦି)ର ଯୋଗ ସହିତ ହୋଇଅଛି ।

୨୭—ପୂର୍ବକାଳରେ ବିନ୍ଧ୍ୟପର୍ବତ ଗର୍ବରେ ବଢ଼ି ସୂର୍ଯ୍ୟଙ୍କ ମାର୍ଗ ରୁନ୍ଧ କରୁଥିଲା । କିନ୍ତୁ ଅଗସ୍ତି ମହର୍ଷିଙ୍କୁ ଦେଖି ପ୍ରଣାମ କରିବାରୁ ଅଗସ୍ତି ଆଶୀର୍ବାଦ କଲେ "ତୁ ଏହିପରି ପଡ଼ିଥା" । ତହୁଁ ସେ ଆଉ ବଢ଼ିଲା ନାହିଁ । ସେହିପରି ଏହାର ସ୍ତନରୂପ ମନ୍ଦରପର୍ବତ ଓଠରୂପକ ବାଳ ସୂର୍ଯ୍ୟ ସହିତ ବିବାଦ କରି ବଢ଼ୁଥିଲା । କିନ୍ତୁ ବୋଧ ହୁଏ ହାର ମଧ୍ୟ ମଣିରୂପକ ଅଗସ୍ତି ଭାରି ନମ୍ର ହେବାରୁ ଆଉ ବଢ଼ିଲା ନାହିଁ କି ?

୨୮—କଳା କାଞ୍ଚୁଲି ସ୍ତନକୁ ଆଚ୍ଛାଦନ କରିଥିବାରୁ ଏହିପରି ଜଣାଉଛି । ଶିବ ବିଷଜ୍ୱାଳା ଶାନ୍ତ କରିବାକୁ ଯମୁନା ଜଳରେ ପଶି ଗାଧୋଉଅଛନ୍ତି କି ?

୨୯—ଏହାଙ୍କର ପଦକ ଶୁକପକ୍ଷୀ ପରି ହୋଇଥିବାରୁ ଶିକୁଳିରେ ଯୁକ୍ତ ହୋଇଅଛି ସ୍ତନରୂପକ ପିଞ୍ଜରା ଉପରେ ମଧ୍ୟ ରହିଅଛି । ଯେ ହେତୁ ତାର ସେ ସ୍ଥାନ ସର୍ବଦା ବାଞ୍ଛିତ ଅଟେ ।

୩୦—ଏହାର ମନୋହର ରୋମାବଳୀ ଗୋଟିଏ କାଳୀ ସାପ କି ? ସେ ସ୍ତନକୁ ପେଡ଼ା ବୋଲି ଜାଣି ଧୈର୍ଯ୍ୟରୂପକ ପବନ ଖାଇବାକୁ ବାହାରିଅଛି କି ?

ଭଲ ସାଜେଣି ବାଜେଣି । କଙ୍କିଣି କଟୀରେ ପୁଣି ।
କଣି କଣି ନେବ ମାନସୁଁ ମାନକୁ କଣି କଣି ହେଉଛଣି । ୩୧ ।
ପିଙ୍ଗଳ ବସନ ଜରି । ଶ୍ରୀଅଙ୍ଗେ ଯାଇଛି ଜରି ।
କାମକଲ୍ପତରୁ ପିଧାନ ପରି କି ଜଡ଼ିତ ହେମମଞ୍ଜରୀ । ୩୨ ।
ହଂସକ ନୂପୁର ପାଦେ । ଚୂଳଝୁଣ୍ଟିଅ ପ୍ରମଦେ ।
ଚେତନା ଚମକ ପକାଇ ଦେବ ଏ ଝମକ ଚମକ ନାଦେ । ୩୩ ।
ଚରଣେ ଶୋଭେ ଅଲତା । ହୋଇଛି କି ମଞ୍ଜୁଲତା ।
ଏ ରାଗ ଅନାଇଁ ସରାଗ ବଢ଼ଇ ମୁଁ ହେବ ଏରୂପେ ରତା । ୩୪ ।
ଅମୂଲ୍ୟ ହୀରାରତନ । ହରଷ ରସ ଘଟନ ।
କେଉଁକାଳେ କେତେ ପୁଣ୍ୟ କରିଥିଲି ସେ ଭାଗ୍ୟେ ନେବ ପତନ । ୩୫ ।
ମୋହନ ବୋଲାଇ ଯେହ୍ନ । ସେହ୍ନ ସ୍ୱରୂପତ ଏହ୍ନ ।
ସମସ୍ତରୁପେ ମସ୍ତକମଣି ବୋଲି ସୁନ୍ଦରୀସଂସାରେ ଭହ୍ନି । ୩୬ ।
ରସିକ ଏମନ୍ତ ଭାଳେ । ଧଇବେ ସୁଭାଗ୍ୟବଳେ ।
ରାମା ନୟନ-ଅୟନରେ ପଥିକ ପୁରୁଷଶୋଭି ଏକାଳେ । ୩୭ ।
ତରଣିକୁଳର ସାର । ଆଶ୍ରୟରୁ ନିରନ୍ତର ।
କହେ ଉପେନ୍ଦ୍ର, ଭଞ୍ଜ ମୁଁ ଲଭିଛି ଶବଦସମୁଦ୍ର ପାର । ୩୮ ।

——:O:——

୩୧—ଦୃଶି ବାନ୍ଧିଥିବା କଙ୍କଣୀ କଟିରେ ଭଲ ସାଜେଣୀ ହୋଇଅଛି । ତାହାର କିଣି (ଧ୍ୱନି) କିଣି କିଣି ହେଲ ମାତ୍ରକେ ମନରୁ ମାନ କିଣିନେବ ।

୩୨—ଏହାଙ୍କ ପିନ୍ଧିଥିବା ଲୁଗାର ଜରୀ ଶ୍ରୀଅଙ୍ଗରେ ଜଡ଼ାଯାଇଅଛି । ବାଞ୍ଛା କଳ୍ପତରୁ ସୁନାମଞ୍ଜରୀମାନଙ୍କ ଦ୍ୱାରା ଆଚ୍ଛାଦିତ ହୋଇଅଛି କି ? ଏପରି ଦିଶୁଥିଲା ।

୩୩—ଦୋହାର ପାଦରେ ପାହୁଡ଼ ଓ ନୂପୁର ଏବଂ ଅଙ୍ଗୁଳୀରେ ଚୂଳଝୁଣ୍ଟିଆ ଝମକ ଚମକ ଶବ୍ଦରେ ଚେତନାରେ ଚମକ ପକାଇ ଦେବ ।

୩୪—ପାଦରେ ଅଳତା ଦିଆ ହୋଇଅଛି । ସେ କେଡ଼େ ସୁନ୍ଦର ହୋଇଅଛି । ଏ ରଙ୍ଗ ଦେଖିଲେ ପ୍ରେମ ବଢ଼ୁଅଛି । ମୁଁ ଏ ଅଲତାପରି ଅନୁରକ୍ତ ହେବି ।

୩୫—ଏ ହୀରକ ଅମୂଲ୍ୟ ଅଟେ । ହର୍ଷ ଓ ଶୃଙ୍ଗାର ଭାବ ଘଟନରେ ଅଛି । କେଉଁ କାଳରେ କେତେ ପୁଣ୍ୟ କରିଥିଲି, ସେହି ଭାଗ୍ୟରୁ ଆସି ପଡ଼ିଲା ।

୩୬—ଯାହାଙ୍କୁ ମୋହନକାରୀ କୁହାଯାଏ । ତାହା ଏମାନେ ଏହି ସ୍ୱୀୟ ସ୍ୱରୂପ ଅଟେ । ସୁନ୍ଦରୀ ସଂସାରରେ ଏହାଙ୍କୁ ସର୍ବପ୍ରକାରରେ ମସ୍ତକମଣି କୁହାଯିବା ଉଚିତ ।

୩୭—ରସିକ ଏହିପରି ଭାବନା କରୁଅଛି । ଏ ସମୟରେ ପୁରୁଷରେ ଶୋଭା ଦେବାକୁ ଭାଗ୍ୟବଳରୁ ସୁନ୍ଦରୀ ନେତ୍ର ପଥର ପଥିକ ହେଲ ଅର୍ଥାତ୍ କୋଟିବ୍ରହ୍ମାଣ୍ଡସୁନ୍ଦରୀ ରାଜପୁତ୍ରକୁ ଚାହିଁଲା ।

୩୮—ଉପେନ୍ଦ୍ରଭଞ୍ଜ କହୁଅଛନ୍ତି । ମୁଁ ତରଣି କୁଳର (ସୂର୍ଯ୍ୟବଂଶର) ସାର (ଶ୍ରେଷ୍ଠ) ରାମଚନ୍ଦ୍ରଙ୍କ (ତରଣିକୁଳର ସାର) ନୌକାଶ୍ରେଷ୍ଠ ପଦ ଆଶ୍ରୟ କରି ଶବ୍ଦ ସମୁଦ୍ରର ପାରକୁ ପାଇଅଛି । ଅର୍ଥାତ୍ ସମସ୍ତ ଶବ୍ଦାର୍ଥ ଜାଣେ ।

## ପଞ୍ଚଦଶ ଛାନ୍ଦ ।

### ରାଗ—ନଳିନୀଗୌଡ଼ା ।

ଖି ରମା କୁମାର ସୁସମାକୁ ଭାଳିଲା ।
ଅତନୁ ସୁତନୁବନ୍ତ କେବା ଭାମ ଥିଲା ଯେ । ୧ ।
ତାହାର ଶସ୍ତ କୁସୁମ ଏହା ଶସ୍ତ ରୂପ ।
ରତିମତି କଲେ ହେବ ମୋ ପୁଣ୍ୟ ଅମାପ ଯେ । ୨ ।
ମୀନ ମକର ଲକ୍ଷଣନିକର ଦେଖିଲା ।
ଆନନ୍ଦ-ସମୁଦ୍ର କରି ପୁଣି ସେ ଯୋଖିଲା ଯେ । ୩ ।
ସରିତ ସରିତେ ସେ ଶରୀରେ ମନ ମିଶି ।
ଅଙ୍ଗସଙ୍ଗ ଏ ରୂପେ ହୁଅନ୍ତା ହେଲା ଯୋଷି ଯେ । ୪ ।
୧କଳାନିଧି ସନ୍ନିଧି ପ୍ରକାଶ କି ବିଷୟେ ।
କୁମୁଦିନୀ ପାଶେ ଜଳେ ପ୍ରତିବିମ୍ବ ପ୍ରାୟେ ଯେ । ୫ ।
ଏ ବନ ଗଗନ କିବା ମୋହୋ ଭାଗ୍ୟ ରାଶି ।
ଯୋଗକୁ ହୋଇଛି କିବା ସନ୍ନିକଟ ଆସି ଯେ । ୬ ।

---

### ପଞ୍ଚଦଶ ଛାନ୍ଦ ।

୧—ରମା ରାଜକୁମାରୀ ରାଜ କୁମାରଙ୍କ ପରମ ଶୋଭାକୁ ଦେଖି ଚିନ୍ତିଲା । ଦେହର ରୂପ ଓ ସୁନ୍ଦରତା ଦେହବନ୍ତ ଏପରି ଯୋଡ଼ାଏ କନ୍ଦର୍ପ ଥିଲେ ।

୨—ମୋ ଦେହସ୍ଥିତ କନ୍ଦର୍ପର ଅସୂୟା ପଡ଼ିଲା, ସେ ଏ ଦେହଧାରୀ କନ୍ଦର୍ପର ରୂପ ଅସୂୟ ହୋଇଅଛି । ଏ ଯେବେ ମୋଠାରେ ରତି ବୁଦ୍ଧି କରନ୍ତି, ଅର୍ଥାତ୍ ମୋତେ ରତିଦେବୀ ବୋଲି ସ୍ୱୀକାର କରନ୍ତି, ତେବେ ମୋର ଅମାପ ପୁଣ୍ୟ ଅଛି ବୋଲି ବୁଝିବ ।

୩—ସେ ରାଜପୁତ୍ରୀ ପ୍ରତ୍ୟଙ୍ଗରେ ମୀନ ରେଖା ଓ ମକର ରେଖା ପ୍ରଭୃତି ଶୁଭ ଲକ୍ଷଣମାନ ଦେଖି ପୁଣି ଏ ପୁରୁଷ ଆନନ୍ଦ ସମୁଦ୍ର ବୋଲି ମନେ କଳ୍ପନା କଲା । ଯେ ହେତୁ ସମୁଦ୍ରରେ ମୀନ ଓ ମକର ଥାଆନ୍ତି ।

୪—ଆନନ୍ଦ ସମୁଦ୍ର ସେ ପୁରୁଷଙ୍କର ଦେହରେ ତାର ମନ ନଦୀପରି ମିଶିଗଲା । ମନ ମିଶିଗଲା ପରି ଦେହ ହେଲେ ମିଶିଯାନ୍ତା ବୋଲି ଶୋଚିହେଲା ।

୫—ପାଣିରେ କହ୍ଲାର ପାଖରେ ଚନ୍ଦ୍ର ପ୍ରତିବିମ୍ବରୂପେ ପ୍ରବେଶ କଲା ପରି ଏ କଳାନିଧି ରାଜପୁତ୍ର ମୋ ନିକଟରେ କି ହେତୁରୁ ପହଞ୍ଚି ଅଛନ୍ତି । ୧କଳାନିଧି, ଚଉଷଠି କଳାମାନଙ୍କର ସ୍ଥାନ ଓ ଚନ୍ଦ୍ର ।

୬—ଏ କି ? ତାରା ଆକାଶ, ? ମୋ ଭାଗ୍ୟ ସମୂହର ସୁଯୋଗ ହେତୁରୁ ଅଥବା ମୋ ଦ୍ୱାଦଶ ରାଶିର ଶୁଭଯୋଗ ହେବାକୁ ଆସି ନିକଟବର୍ତ୍ତୀ ହୋଇ ଅଛନ୍ତି ।

ଏମନ୍ତ ଶବ୍ଦରୁ ସ୍ୱରୂଜଘନା ଶଭର ।
ଛୋଏ ନିକଟ ନିକଟ ପ୍ରକଟ କୁମର ଯେ । ୭ ।
ଘାବଣ୍ଟେ ପାବଣ୍ଟେ ମହାମଣ୍ଡନା ଓହ୍ଲାଇ ।
କରପଇଠି ବଡ଼ମ୍ନୋଷ୍ଟୀ ସଖୀକରେ ଦେଇ ଯେ । ୮ ।
ଭବ ଯାଉଥନ୍ତୁ ସେ ନାଗର ଏଣ୍ଡ ସ୍ତବ ।
ହେ ବାଳେ ନର୍ମଦା ସୁରତରଙ୍ଗିଣୀ ଭବ ଯେ । ୯ ।
କାଳିନ୍ଦୀ ରୂଚର କୃଷ୍ଣବେଣୀ ପୁଣି ଲକ୍ଷି ।
ଚନ୍ଦ୍ରଭାଗାଳକଶୋଭ୍ର ଭଣ ଭତ୍ପୃଲାଘୀ ଯେ । ୧୦ ।
ହୋଇଥିବ ଯୁକ୍ତ ୨ରସ ୩ସରସ୍ୱତୀ ସଦା ।
ଜରତ ପବ୍ଵଜ ହୋଇ ତେ ବାରେ ୧ବାହୁଦା ଯେ ।୧୧।
ତୀର୍ଥମୟ କଳପନା ମୋ ଆନ ନ କର ।
ବୋଲି ଅଜ ସ୍ତୁଟୁ କହିବାକୁ ଯୋଡ଼ି କର ଛେ ।୧୨।
ତବକ-ଚମ୍ପାମାଳାକୁ କାଢ଼ି ଶମ୍ପାରୋଷି ।
ଅଳୀ କରେ ଦେଲା ରତ କଟାକ୍ଷ-ଗୃଢୁଷ୍ଟି ଯେ ।୧୩।
ଏକାଳେ ଉଦୟ ଲଭେ ଷେହ୍ନ ସ୍ଥାନ-ନଭେ ।
ମାଙ୍ଗଲ୍ୟା ତାରକା ହୋଇ ଯୁକ୍ତ ଯୋଗ ଶୁଭେ ଯେ ।୧୪।

---

୭—ସ୍ନିଗ୍ଧଘନା ସେ ରାଜକୁମାରୀ ଏପରି ବଚନ କହିବା ବେଳେ ସେ ରାଜପୁତ୍ର ଅତି ନିକଟରେ ପ୍ରବେଶ କଲେ ।

୮—ସେ ମହାମଣ୍ଡନା ରାଜକୁମାରୀ ବମ୍ପୋଷ୍ଟୀ ସଖୀ ହାତରେ ହାତ ପଇଠଦେଇ ପାଥରୁ ମାନଙ୍କରେ ଓହ୍ଲାଇଲେ ।

୯—ସେ ସମୟରେ ସେ ନାଗର ରାଜପୁତ୍ର ଏପରି ସ୍ତୁତି ମାନ କଲେ । ହେ ବାଳେ ତୁ ନର୍ମଦା (କ୍ରୀଡ଼ାଦାୟିନୀ), ଅତଏବ ନର୍ମଦାତୀର୍ଥ ଅଟୁ । ପୁଣି ସୁରତରଙ୍ଗିଣୀ (ରତିକ୍ରୀଡ଼ାନଦୀ) ଅଟୁ । ଅତଏବ ସ୍ୱର୍ଗଗଙ୍ଗାତୀର୍ଥ ହୋଇଅଛୁ । ଭାବନାକର ।

୧୦—ପୁଣି ତୋଠାରେ ଯମୁନାପରି ସୁନ୍ଦର କୃଷ୍ଣବେଣୀଅଛି । ଅତଏବ ତୁ ଯମୁନାତୀର୍ଥ ଓ କୃଷ୍ଣାତୀର୍ଥ ହୋଇଅଛୁ । ଚନ୍ଦ୍ରର ଅର୍ଦ୍ଧଭାଗ କରି ଲଲାଟ ଦ୍ୱାରା ଶୋଭିତା ହୋଇଅଛୁ । ଅତଏବ ଚନ୍ଦ୍ରଭାଗା ତୀର୍ଥ ଅଟୁ । ସୁନ୍ଦର ପଦ୍ମପରି ତୋର ଚକ୍ଷୁ ହୋଇଅଛି । ଅତଏବ ତୁ ତପୋତ୍ପଳା ତୀର୍ଥ ହୋଇଅଛୁ ।

୧୧—ତୋର ବଚନ ସରସ ହୋଇଥିବ ଅତଏବ ତୁ ଜଳଯୁକ୍ତ ସରସ୍ୱତୀ ତୀର୍ଥ ହୋଇଥିବୁ । ହେ ବାଳେ । ଥରେ ଅଭିଳାଷ କର (ବାହୁଦାତୀର୍ଥ) ହୋଇ ପବିତ୍ରକର । ୧ବାହୁଦା, ବାହୁଦାୟିନୀ ଓ ନଦୀବିଶେଷ । ୨ରସ, ଶୃଙ୍ଗାରାଦି ଓ ଜଳ । ୩ସରସ୍ୱତୀ, ବଚନ ଓ ନଦୀ ବିଶେଷ ।

୧୨।୧୩—ହେ ସୁନ୍ଦରି । ମୋର ତୀର୍ଥ ସ୍ୱରୂପ କଳ୍ପନାକୁ ଅନ୍ୟଥା କରନାହିଁ, ବୋଲି ଅଜ ସ୍ତୁତି କହିବାକୁ ହାତ ଯୋଡ଼ିବାରୁ ଚନ୍ଦ୍ରପ୍ରେମୀ ରାଜପୁତ୍ରୀ ସୁନା ଚମ୍ପା ମାଳାକୁ କାଢ଼ି ଅକ୍ଷିରେ ଠାରିଦେଇ ସଖୀ ହାତରେ ଦେଲା ।

୧୪—ଏହି ସମୟରେ ସେଠାରେ ଆକାଶରେ ମାଙ୍ଗଲ୍ୟା ଶୁଭଯୋଗ ଯୁକ୍ତ ନକ୍ଷତ୍ର ଉଦୟ ଦେଖାଗଲେ ।

ଅବଧୂତୀ ଉପାଧ୍ୟାୟୀ ପୋଷ୍ଟା କଣ୍ଟୁଦୂରେ ।
ଝୁଣ୍ଟିକି ଅସନ୍ତ ସେ ଶ୍ରବଣା ପରକାଶେ ଯେ । ୧୫ ।
ଅଗସ୍ତି ଉଦୟ ପରି ଦଶି ଖଞ୍ଜପୁଂଷ ।
ଆଶା ଅଚ୍ଛାଦଲ୍ଲ ଲଜ୍ଜା-ଦଶା ପରକାଶ ଯେ । ୧୬ ।
୧ଘନ-ରସ-ମଧୁ କାଳ ପୁରୁଷ କୋକିଳ ।
ମଧୁରତର ଭାଷକୁ ବିଦ୍ୱେଷୀ ଚପଳ ଯେ । ୧୭ ।
ବିପତ୍ତି-ନାଶନ ଅଟେ ୧ବି-ପତି ପ୍ରକାର ।
ଥିଲ କୁମାର ଭଜଲ ୨ସ୍ୱର୍ଭାନୁ ସଗ୍ରୀତ ଯେ । ୧୮ ।
ଅନୁଗ୍ରହ ଘେନିଲ୍ଲ ପଣରେ କର ଜଣ ।
ବାଳା ମାଳା ପ୍ରଦାନ ଭାବକୁ ଅନୁସରି ଯେ । ୧୯ ।
ଶାନ୍ତା ଜନମାଇଁ ସ୍ପୃହାଥିଣ୍ଟୁ କୃଶୋଦରୀ ।
୧ବାରୁଣୀଗତ ଭାନୁରେ ଚକ୍ରବାକୀ ପରି ଯେ । ୨୦ ।
ନ ଲଙ୍ଘିଲ୍ଲ ସେ ସୋପାନ ଲୋକାଲୋକ ମତି ।
ପଦ ଅରୁଣ-ଅମ୍ବୁଜେ ହେବାରୁ ଲକ୍ଷିତ ଯେ । ୨୧ ।

---

୧୫—ଅବଧୂତୀ ଶିକ୍ଷା, ଉପାଧ୍ୟାୟୀ ସନ୍ନ୍ୟାସିନୀ ଏବଂ ପୋଷ୍ଟା ଏମାନେ ଶ୍ରବଣା ନକ୍ଷତ୍ର ପରି ଅଳ୍ପ ଦୂରରେ ଝୁଣ୍ଟି ଅସ୍ତ ଅଛନ୍ତି ।

୧୬—ସେ ଖଞ୍ଜ ପୁଂସ ଅଗସ୍ତି ତାରା ଉଦୟ ହେଲା ପରି ଦେଖାଗଲେ । ଲଜ୍ଜାରୂପକ ଦଶା ପ୍ରକାଶ ହୋଇ ଆଳାପ କରିବା ଆଶାକୁ ଦଶମାନଙ୍କ ପରି ଅଚ୍ଛାଦନ କଲା । ୧ଆଶା, ଦିଗ ଓ ତୃଷ୍ଣା ।

୧୭—ସେ ନବଜ ରସ ପୂର୍ଣ୍ଣକାଳ ବର୍ଷାକାଳ ପରି ହୋଇ ପୁରୁଷ ରୂପକ କୋକିଳର ଅତି ମଧୁର ବଚନର ଶୀଘ୍ର ବିଦ୍ୱେଷୀ ହେଲା । ସଜନପୁତ୍ର ବୃନ ହେଲେ । ବର୍ଷାକାଳରେ କୋକିଳ ବୋବାଇବା ବନ୍ଦ ଥାଏ ।

୧୮—ବିପତ୍ତି ନାଶନ ନାରାୟଣଙ୍କ ଆଗରେ ଗରୁଡ଼ ପରି ରାଜପୁତ୍ର ସୁନ୍ଦରୀ ଆଗରେ ଥିଲେ । ଏ ମାନଙ୍କୁ ପ୍ରଭୃତିଙ୍କୁ ଦେଖି ଚନ୍ଦ୍ରପରି ଅଦୃଶ୍ୟ ହେଲେ । ୧ବିପତି, ପକ୍ଷିରାଜ ଗରୁଡ଼ । ୨ସ୍ୱର୍ଭାନୁ, ରାହୁ ।

୧୯—ଅନୁଗ୍ରହ ଘେନିଲା ପରି ହାତ ଅଞ୍ଜଳି କରି ବାଳା ମାଳା ଦେବା ଭାବକୁ ଅନୁସରଣ କରି ଗୁପ୍ତରେ ରହିଲା ।

୨୦—କୃଶୋଦରୀ ରାଜକନ୍ୟା ଶାନ୍ତାବନ୍ତ ସ୍ପୃହାଥିଲେ । ସୂର୍ଯ୍ୟ ପଶ୍ଚିମ ଦିଗକୁ ଗଲେ ଚକ୍ରବାକୀ ପରି ବିଚ୍ଛେଦ ଦୁଃଖ ଅନୁଭବ କଲା । ୧ବାରୁଣୀ, ପଶ୍ଚିମ ଦିଗ ।

୨୧—ସେ ରାଜକନ୍ୟାର ପାଦ କମଳପଦ୍ମ ସହିତ ଲକ୍ଷିତ ହେବାରୁ ଅର୍ଥାତ୍ ଅରୁଣ (ସୂର୍ଯ୍ୟ) ଅମ୍ବୁଜ (ଚନ୍ଦ୍ର) ହେବାରୁ ପାଥରରୂପକ ଲୋକାଲୋକ ପର୍ବତ ଲଙ୍ଘନ କଲା ନାହିଁ ।

କେଣେ ଗଲା ପଙ୍କ ହରି ବାଲା ସହଚରୀ ।
ସୁବର୍ଣ୍ଣ-ଚମ୍ପକମାଳା କରେ ଅଛି ଧରି ଯେ ।୧୨।
ଅତି ଦୁର୍ଲ୍ଲଭ ଆଶ୍ଚର୍ଯ୍ୟ ବଚନକୁ ତହିଁ ।
ପୁରୁଷ ପାରୁଶ ଉକ୍ତି ଗଲା କହି ହୋଇ ଯେ । ୧୩ ।
କେମନ୍ତ ଏ ହେବ [୧]ମତ୍ତକୁଞ୍ଜର ଯୁବାକୁ ।
ଆଶା କରିଅଛି ଆଶାବନ୍ଧେ ବାନ୍ଧିବାକୁ ଯେ । ୧୪ ।
ଶୁଣି ମିତ୍ର ମୃଦୁତର ଉତ୍ତରକୁ କଲା ।
ଯେତେବେଳେଁ ଗୃହାଣି-ଅଙ୍କୁଶ ଲଗାଇଲା ଯେ । ୧୫ ।
ନ ବାନ୍ଧିଲେ ବାନ୍ଧିଲେ ରହିଲାନ ସ୍ତବ୍ଧତେ ।
ମୋହନ-ଝୋପରେ ପଡ଼ିବାରେ ଅନାୟତ୍ତେ ଯେ । ୧୬ ।
[୧]ହୀର ହରି ଅତି ଚନ୍ଦ୍ରବମ୍ବ ଚୁମ୍ବାଇଛି ।
କେମନ୍ତେ ହୋଇବ ଏ ସମ୍ଭୃତ ନ ଆସୁଛି ଯେ । ୧୭ ।
ଈଶ୍ୱର-ଶିରମଣ୍ଡନ [୨]ଉନ୍ମତ୍ତସୁମନ ।
ଯୋଗେ ଥାଇଁ ଚୁମ୍ବିଥିଲା ପରି ମନେ ଘେନ ଯେ । ୧୮ ।
ବୋଲି ମାଳା ଦେଲା କିଛି ଦୂରେ ଥାଇଁ ସଖୀ ।
ଧୀର ଗଳାକୁ ମଣ୍ଡିଲା ଦେଲା ପ୍ରାୟେ ରଖି ଯେ । ୧୯ ।

---

୧୨—ବାଳା ରାଜକନ୍ୟାର ସଖୀ କେଣେଗଲାପରି ବୋଧ ହେଉଅଛି ଓ ସ୍ୱୟଂ ଚମ୍ପାମାଳା ହାତରେ ଧରିଅଛି ।

୧୩—ପୁରୁଷ ନିକଟକୁ ଯିବାରୁ ସେଠାରେ ଅତି ଦୁର୍ଲ୍ଲଭ ଅଶ୍ଚର୍ଯ୍ୟ ବଚନମାନ କହି ହୋଇଗଲା ।

୧୪—ଏ ଯୁବା ମତ୍ତହସ୍ତୀକୁ (ଆଶାବନ୍ଧେ) ଲୁଚି ଅଣି ସୂତାରେ ବାନ୍ଧିବାକୁ ଏ ରାଜପୁତ୍ରୀ ଆଶାକରିଅଛି । ଏହା କପରି ହେବ ।

୧୫ ଓ ୧୬—କେତେ ଦୂରର ମିତ୍ର ଏହା ଶୁଣି ଅତି କୋମଳ ଉତ୍ତର କଲା । ଏ ରାଜକନ୍ୟା ଯେତେବେଳେଁ ରାହାଣୀରୂପକ ଅଙ୍କୁଶ ଲଗାଇଲାଣି । ବାନ୍ଧିଲେ ବା ନ ବାନ୍ଧିଲେ ଏ ସ୍ତବ୍ଧ ହୋଇ ରହିଲାଣି । ଅନାୟତ୍ତରେ ମୋହରୂପ ଝୋପରେ ପଡ଼ିଅଛି ।

୧୭ ୧୮—ଶ୍ୱେତ ଚନ୍ଦ୍ର ବିମ୍ବ ଚୁମ୍ବିବା ଇଚ୍ଛା କରିଅଛି । ଏହା କପରି ହେବ । ସମ୍ଭବ ହେଉନାହିଁ । ଏହାଶୁଣି ମିତ୍ର ଉତ୍ତର କଲା । ମହାଦେବଙ୍କ ମସ୍ତକ ଭୂଷଣ ଦୁଦୁରା ଫୁଲ ସାଙ୍ଗେ ଥାଇ ଶ୍ୱେତ ଚନ୍ଦ୍ରବିମ୍ବ ଚୁମ୍ବିଦେଲା ମନରେ ଭାବ । ୧ହୀର, ଶ୍ୱେତ । ୨ଉନ୍ମତ୍ତସୁମନ, ଦୁଦୁରାଫୁଲ ।

୧୯—ଏହା କହି ସଖୀ କିଛି ଦୂରେ ଥାଇ ମାଳାଦେଲା । ରଖିଦେଲାପରି ଧୀର ରାଜପୁତ୍ର ଗଳାକୁ ଶୋଭିତ କଲା ।

୧ସୁଗ୍ରୀବ ହୋଇଲ ଅଙ୍ଗ କି ତପ-ବଶରୁ ।
ଅଦ୍ଭୁତେ ୨ଆକାରବନ୍ତ ରାମ କରୁଣାରୁ ଯେ । ୩୦ ।
ଏ ପଦକ କହି ସେ ପଦକ ଦେଲା ବେଗେ ।
ମିତ୍ର ନେଇ ଦେଇ ଆଳୀ କରେ ଅନୁରାଗେ ଯେ । ୩୧ ।
ବୋଇଲା ଜଣାଇବନ୍ତି କେମାକୁ ରେ ଶାରୁ ।
ଅଜୁଁ ଏ ସ୍ଥାନ ଛୁଡ଼ିଲା ପୁରୁଷ ହୃଦରୁ ଯେ । ୩୨ ।
ହସିଲା ହସିଲା ହୋଇ ସଜନୀ ଅସିଲା ।
ସେ ମଣ୍ଡନେ ରାମା ହୃଦ ଶୋଭା ପ୍ରକାଶିଲା ଯେ । ୩୩ ।
ଘଡନ ୧ନାୟକ-ରତ୍ନ ବ୍ୟାଜେ କି ଆଣିଲା ।
ରମଣୀମଣି ଏମନ୍ତ ମନରେ ମଣିଲା ଯେ । ୩୪ ।
ପରସ୍ପର ବରଣ ଉତ୍ସବ ମହାରସ ।
ଭାବନା ଏ ଗଲା ହେଲା କଲେ ତ ଆଶ୍ଳେଷ ଯେ । ୩୫ ।
ଲଭିବା ଏ ଭରସା ସହଜେ ଦିଶିଗଲା ।
ଯୋଗୀ ଯୋଗୀନୀ ବେନି କରଣି ଭଲା ଭଲା ଯେ । ୩୬ ।
କଲେ ତାହା ବାଳକ ସାରଣିଖେଳ ପର ।
୧ସୂତ୍ର-ଯୋଗେ ନେଲେ କ୍ରମେ କରକୁ ଓଠାର ଯେ । ୩୭ ।

---

୩୦—ସୁନ୍ଦର ରାମଙ୍କ ତପସ୍ୟାରୁ ସୁଗ୍ରୀବ ପୁଷ୍ପମାଳା ଧାରଣ କରିବାରୁ ମୁଁ ଆକାର ଯୁକ୍ତ ରାମ (ରମାର) କୃପାରୁ ଅଦ୍ଭୁତଭାବେ ପୁଷ୍ପମାଳା ଧାରଣ କରି ସୁନ୍ଦର ଗ୍ରୀବ ହେଲା । ୧ ସୁଗ୍ରୀବ, କପିରାଜ ଓ ସୁନ୍ଦରଗ୍ରୀବ । ୨ଆକାରବନ୍ତ, ଆକାରଯୁକ୍ତ ଓ ସୁନ୍ଦର ।

୩୧—ସେ ରାଜପୁତ୍ର ଏ ପଦକ କହି ନିଜ ପଦକ ବେଗେ ଦେଲା । ମିତ୍ର ନେଇ ସ୍ନେହରେ ସୁନ୍ଦରୀ ସଖୀ ହାତରେ ଦେଲା ।

୩୨—ମିତ୍ର କହିଲା, ରେ ଶାରୁ ? କେମାକୁ ଏହା ଜଣାଇବନ୍ତି । ଏ ପଦକ ଆଜିଠାରୁ ପୁରୁଷ ହୃଦୟରୁ ସ୍ଥାନ ଛାଡ଼ିଲା ।

୩୩—ସଖୀ ହସି ହସି ଆସି କେମାକୁ ପଦକ ଦେଲା । ରାଜପୁତ୍ରୀର ହୃଦୟ ସେ ଅଳଙ୍କାର ଦ୍ୱାରା ଶୋଭା ପ୍ରକାଶ କଲା ।

୩୪—ସଖୀ ପଦକ ଗଢ଼ନ ମଧ୍ୟ ମଣି ବ୍ୟାଜରେ ସେ ପୁରୁଷ ଶ୍ରେଷ୍ଠଙ୍କୁ ଆଣିଲା କି ? ଏହା ସେ ରମଣୀମଣି ମନରେ ଭାବିଲା । ୧ନାୟକରତ୍ନ, ମଧ୍ୟମଣି ଶ୍ରେଷ୍ଠ ଓ ପୁରୁଷ ଶ୍ରେଷ୍ଠ ।

୩୫—ଉଭୟ ପରସ୍ପରଙ୍କର ବରଣ ଉତ୍ସବ ହେଲା । ତନ୍ମାତ୍ରରେ । ଆଲିଙ୍ଗନ କଲା ପ୍ରାୟ ପରସ୍ପରଙ୍କର ମିଳନ ହେଲା ।

୩୬—ପାଇପାରିବାର ଭରସା ସହଜରେ ଦେଖାଗଲା । ଯୋଗୀ ଚନ୍ଦ୍ରଚୂଡ଼ ଓ ଯୋଗୀନୀ ମାଙ୍ଗଲ୍ୟା ଦୁହେଁ ଭଲ କରଣି ଦେଖାଇଲେ ।

୩୭—ପିଲାମାନେ ସାରଣୀ ଖେଳ କଲାପରି ସେ ଦୁହେଁ ମାୟାଯୋଗେ ସେ ମିଳନ କରାଇଲେ ସୂତାଯୋଗେ ସାରଣିକୁ ହାତକୁ ଓଟାରିନେଲାପରି କୌଶଳରେ ପୁଣି ମାୟା ସହିତ ପୁଣି ଅଧୀନ କଲେ । ୧ସୂତ୍ର, ସୂତା ଓ କୌଶଳ ।

ଦେଖୁ ଦେଖୁ ଦରଶନ କଲା ଅନ୍ତର୍ହିତ ।
ସ୍ୱଚ୍ଛନ୍ଦ ପ୍ରେମନ୍ତ ଚନ୍ଦ୍ରକଳା ହୁଏ ଗତ ଯେ । ୩୮ ।
ବେନି ମନ ବେନି ତନୁ ସୁଖସ୍ଥାନ ସରି ।
ପାଲଟି କି ରହିଲେ ରଚନ କରି ପୁରି ଯେ । ୩୯ ।
ଚକ୍ର-ଦମ୍ପତି ବିଯୋଗ କାଳ ପ୍ରକଟିଲା ।
ଦମ୍ପତିଚକ୍ର ସଂଯୋଗ ହେବାକୁ ଘଟିଲା ଯେ । ୪୦ ।
୧ଦରବଶେ ୨କୁଳାୟକୁ ଗମେ ୩ମନ୍ଦପନ୍ତ ।
ଦର-ଘୋଷେ ସଙ୍କେତ ଆଶ୍ରୟୀ ମନ୍ଦଗଛ ଯେ । ୪୧ ।
ନୃପଜା ପ୍ରବେଶ ପୁରେ ସଙ୍ଗମ ସଙ୍ଗରେ ।
ନୃପଜ ମିତ୍ର ସହିତେ ସ୍ଥିତ ସ୍ୱନବରେ ଯେ । ୪୨ ।
୧ଆଲମ୍ବନ ଭାବ ଅବଲମ୍ବନ ସହଜେ ।
ଏପ୍ରକାରେ ଉଦ୍ଦୀପନ ଭାବେ ଧୈର୍ଯ୍ୟ ଭଜେ ଯେ । ୪୩ ।
ଦିଗମ୍ବା ତଥି ରଜନୀ-ମୁଖକୁ ଦେଖନ୍ତି ।
ଗ୍ରହି ଏକଦନ୍ତେ ଶୋଭା କି ଗଣେଶ ମୂର୍ତ୍ତି ଯେ । ୪୪ ।

---

୩୮—ଯେପରି ଚନ୍ଦ୍ରକଳା ରାତ୍ରି ଶେଷରେ ପୁଣି ଚାଲିଯାଏ । ସେପରି ସେ ଦୁହିଙ୍କର ସାକ୍ଷାତ୍କାର ଦେଖୁଁ ଦେଖୁଁ ଅପ୍ରକାଶିତ ବା ଅନ୍ତର୍ହିତ ହେଲା ।

୩୯—ସେ ସ୍ତ୍ରୀ ପୁରୁଷ ଦୁହିଙ୍କର ମନ ଦୁହିଙ୍କ ଦେହକୁ ସୁଖକର ସ୍ଥାନ ମନେକରି ବଦଳା ବଦଳ ହୋଇ ପୁର ରଚନା କଲାପରି ରହିଲେ । ଅର୍ଥାତ୍ ସ୍ତ୍ରୀ ମନ ପୁରୁଷଠାରେ ଓ ପୁରୁଷମନ ସ୍ତ୍ରୀଠାରେ ରହିଲା ।

୪୦—ଚକ୍ରବାକ ସ୍ତ୍ରୀ ପୁରୁଷଙ୍କ ବିଯୋଗ କାଳରାତ୍ରି ପ୍ରବେଶ ହେଲା । ସାଧାରଣ ସ୍ତ୍ରୀ ପୁରୁଷ ଯୁଗଳମାନଙ୍କର ସଂଯୋଗ ହେବାକୁ ଘଟିଲା ।

୪୧—କାକ ସମୂହ ଭୟ ହେତୁରୁ ବସାକୁ ଗମନ କଲେ । ସଙ୍କେତ ସ୍ଥାନ ଆଶା କରିଥିବା ସ୍ତ୍ରୀ ଓ ପୁରୁଷମାନେ ସନ୍ଧ୍ୟା ଶଙ୍ଖ ଶବ୍ଦ ଶୁଣି ସଙ୍କେତ ସ୍ଥାନକୁ ମନ୍ଦ ମନ୍ଦ ଗମନ କଲେ । ୧ଦର, ଭୟ ଓ ଶଙ୍ଖ । ୨କୁଳାୟ, ବସା । ୩ ମନ୍ଦ ପନ୍ତ, କାକ ସମୂହ ।

୪୨—ରାଜକୁମାରୀ ସଖୀମାନଙ୍କ ସଙ୍ଗରେ ନିଜପୁରେ ପ୍ରବେଶ କଲେ । ରାଜକୁମାର ମିତ୍ର ସହିତରେ ନିଜ ଉପବନରେ ରହିଥିଲେ ।

୪୩—ଦୁହେଁ ଦୁହିଁଙ୍କର ସ୍ୱଭାବରେ ଆଲମ୍ବନ ଭାବ ଧାରଣ କରିଥିଲେ । ପୁଣି ଏପରି ମିଳନ ରୂପ ଉଦ୍ଦୀପନ ଭାବରେ ଧୈର୍ଯ୍ୟଧରି ରହିଲେ ୧ଆଲମ୍ବନ, ଯାହାକୁ ଉଦ୍ଦେଶ୍ୟ କରି ମନରେ ଶୃଙ୍ଗାର ଭାବ ଜାତ ହୁଏ, ସେ ତାହାର ଆଲମ୍ବନ ବିଭାବ । ୨ଉଦ୍ଦୀପନ, ଯାହାଦ୍ୱାରା ମନର ଭାବ ଉଦ୍ଦୀପ୍ତ ହୁଏ । ତାହାକୁ ଉଦ୍ଦୀପନ ଭାବ କହନ୍ତି । ଯେପରି ଚନ୍ଦ୍ର, ଚନ୍ଦନ, ପୁଷ୍ପ, ଭ୍ରମରମାନେ ଶୃଙ୍ଗାର ରସର ଉଦ୍ଦୀପନ ।

୪୪—ସେ ଦୁହେଁ ଦିଗମ୍ବା ତଥିର ସନ୍ଧ୍ୟାକାଳକୁ ଦେଖୁଥିଲେ । ଏକଦନ୍ତପରି ଦିଗମ୍ବା ଚନ୍ଦ୍ରକୁ ଗ୍ରହି ଧାରଣ କରୁଥିଲେ ଏ କାଳକଣ ଗଣେଶ ମୂର୍ତ୍ତି ହୋଇଅଛି କି ? ଯେହେତୁ ଗଣେଶ ଏକଦନ୍ତ ଅଟନ୍ତି ।

ଯେଣୁ ସେ କଳାପଷାଣ ତେଣୁ ରାଗମୟ ।
ସହୃଦେ ରତିମନ୍ତ୍ର କରେ ସେ ଉଦୟ ଯେ । ୪୫ ।

ସୁନୀଳ ପୃଷ୍ଠରେ କର୍ଣ୍ଣ-କୃଷ୍ଣିକ-ରୁଧିରେ ।
ତାରାଳୀ ବର୍ଣ୍ଣାବଳୀକି ଲେଖିଛୁ କ୍ରମରେ ଯେ । ୪୬ ।

ରଜନୀରେ ଦୃଶ ଦିବସରେ ନ ଦିଶଇ ।
ଏ ଉପଲକ୍ଷଣା ସେ ସଂଶୟ କିଛି ନାହିଁ ଯେ । ୪୭ ।

କୁମାର କୁମାରୀ ଗୃହେଁ ମିତ ମିତଣୀକି ।
ଜାପିଲା ହୋଇ ଭାଷିଲେ ଗୋଟିଏ ବାଣୀକି ଯେ । ୪୮ ।

ମାର ତାର ତାତର ପିଛିକ ବସୁରଳ ।
ଆମ୍ଭ ଦ୍ୱାରଣେ ଛନ୍ଦ ବରାହ ହୋଇଲା ଯେ । ୪୯ ।

ଏତେ ବୋଲି ହିରଣ୍ୟ-ସୋଦର ଅଳଙ୍କାର ।
ଏ ଥିଲେ ମାରିବ ବୋଲି ତେଜିଲେ ସତ୍ୱର ଯେ । ୫୦ ।

ସଖା ସଖୀ କହିଲେ ନ ଯେନ ଭୟ ମନ ।
ତଧି ଦଣ୍ଡବଶେ କାମ ଭଞ୍ଜିବ ୧ରତନ ଯେ । ୫୧ ।

ଗ୍ରହେଁ ହେମନ୍ତ ହୋଇଲା ଝାଙ୍କୋରିଲା ହେମ ।
ତମ ଶ୍ୟାମଳ ଯୋଟିଲା ଏ ଡର ଜନମ ଯେ । ୫୨ ।

---

୪୫—ସେ ପଷାଣ ଯେହେତୁ ତେଣେ ଅତି କଳା ଚିକ୍କଣ ଓ ରକ୍ତବର୍ଣ୍ଣ ଏବଂ ସମସ୍ତଙ୍କ ହୃଦୟରେ ସ୍ନେହରେ ମନ୍ତ୍ର ଉଦୟ କରେ ଅର୍ଥାତ ବନ୍ଧାଦାତା ଅଟେ । ଏହିପରି ସନ୍ଧ୍ୟାକାଳ ଯେହେତୁ କଳାବର୍ଣ୍ଣରେ ପ୍ରବୀଣ ଓ ରକ୍ତବର୍ଣ୍ଣ ଏବ ଅନୁରାଗମୟ ହୋଇ ସମସ୍ତଙ୍କ ହୃଦୟରେ ଏମନ୍ତ ଉଦୟ କରଏ ।

୪୬—ତେଣୁ ନୀଳବର୍ଣ୍ଣ ଆକାଶରେ କାନ ଯେଉଁଠାରେ କଷ୍ଟ ସମୂହ ରୂପକ ଅକ୍ଷରପଂକ୍ତିମାନଙ୍କୁ କ୍ରମରେ ଲେଖିଅଛ କି ? ।

୪୭—ଅତଏବ ସେ ନକ୍ଷତ୍ର ରୂପକ ଅକ୍ଷର ରାତ୍ରି ସମୟରେ ଦେଖାଯାଉ ଅଛନ୍ତି ଓ ଦିନରେ ଦିଶୁନାହାନ୍ତି । ଅତଏବ ଏହା ଲକ୍ଷ୍ୟ କରାଯାଉଅଛି ଏଥିରେ କିଛି ସନ୍ଦେହ ନାହିଁ ।

୪୮—ସେ କୁମାର ମିତକୁ ଏହିଁ ଓ ସେ କୁମାରୀ ମିତଣୀକୁ ଗୃହେଁ ଜପଲାପର ହୋଇ ଏହା କଥା କହୁଥିଲେ ।

୪୯—କନ୍ଦର୍ପ ତାର ବାପ ବିଷ୍ଣୁଙ୍କ ପିଛିକୁ ବଗର ଅମ୍ଭଙ୍କୁ ଦେଖାଇବାକୁ ଗୋଟିଏ ଅସ୍ତ୍ରର୍ଦ୍ଧ ବସ୍ତୁ ହୋଇ ଅଛନ୍ତି ? ବିଷ୍ଣୁଙ୍କର ବରାହ ଅବତାର ହୋଇଥିଲା ।

୫୦—ଏହା କହି ପୁଣି ଅଳଙ୍କାରମାନ ଶୀଘ୍ର ତ୍ୟାଗକଲେ । ଏହାଥିଲେ ସେ ବରାହକାଳେ ହିରଣ୍ୟ ଯୋଗର (ହିରଣ୍ୟାକ୍ଷ) ବଶ୍ୟଦ ମାରିବ । କାରଣ ବିଷ୍ଣୁ ବରାହ ଅବତାରରେ ହିରଣ୍ୟାକ୍ଷକୁ ମାରିଥିଲେ ।

୫୧—କୁମାରକୁ ସଖା କୁମାରୀକୁ ସଖୀ କହୁଛ । ମନରେ ଭୟ କରନାହିଁ । ଏବେ ସୂର୍ଯ୍ୟରୂପ ଚନ୍ଦ୍ରଗଣ ବଧାଦା ଦଣ୍ଡ ହେତୁରୁ ଏହିକ୍ଷଣି ବିନଷ୍ଟ ହେବ । ଚନ୍ଦ୍ର ଅସ୍ତହେବ । ୧ରତନ, ଚନ୍ଦ୍ର ।

୫୨—ଗ୍ରହଁ ଗ୍ରହଁ ଯେପରି ହେଲା । ହୃଦୟକର ଯେମ ଝାଙ୍କାଇଲା । ଅନ୍ଧକାରରୂପକ ଶ୍ୟାମଳ (କଳଙ୍କ) ଯୋଡ଼ିବ କି ? ଏ ଭୟ ତାର ହେଲା ।

ଚତୁର ଚତୁରୀ ଚର୍ଚ୍ଚି ଭାବିଲେ କି ହେବ ।
କାମ-ପ୍ରେତ-ଛଡ଼ା ମନ୍ତ୍ର-ଲେଖା କେବା ଦେବ ଯେ । ୫୩ ।
ଭଣେ ରାମପଦ କହେ ଉପଇନ୍ଦ୍ର ଭଞ୍ଜ ।
ଜାଣ ସୁଜନେ ଏମନ୍ତ ମୋହୋ ଗୀତପୁଞ୍ଜ ହେ । ୫୪ ।



## ଷୋଡ଼ଶ ଛାନ୍ଦ ।

—※—

ରାଗ ଶଙ୍କରାକୌଶିକ ।

( ଅନ୍ତଲ୍ୟା )

ହେଲା ଶଶୀ ନାଶ ଗଲା ନିଶି ନିଶାକର ପ୍ରାଚୀ ନାଗରୀବର ।
ନୀଳଶାଢ଼ୀ ଛାଡ଼ି ଅରୁଣ ସରାଗେ ପିନ୍ଧିଲା ଲୋହିତାମ୍ବର ।
କି ଝୁଲ । କଞ୍ଜୁ ଉଡ଼ିଯିବା ଇଚ୍ଛୁଁ ଅଳି ।
ସେହି ପଦ୍ମିନୀ ସୁରସଶାଳୀ । କାନ୍ତ ଉପରକୁ ଡୋଳା ଢାଳି । ୧ ।
୧ଭୁଜଙ୍ଗ-ଅଙ୍ଗ-ନଗାଦ୍ରି-ପୁର-ଦର-ନାଦ ଦର-ଛନ୍ଦ ହୋଇ ।
୨ଭୁଜଙ୍ଗ ବନ୍ଧକୀ ବନ୍ଧସଂଯୋଗକୁ ଚଞ୍ଚୁପୁଟେ ଗଲେ ଥୋଇଁ ।
ସେ ଧନ୍ୟ । ତାଙ୍କଠାରୁ ଯେବେ ଗଲେ ଭିନ୍ନ ।
ଯେବେ ପ୍ରୀତି କେବେ ନୋହେ ଭିନ୍ନ । ଏହିମତ ପ୍ରତି ରାତ୍ରଦିନ । ୨ ।

---

୫୩—ସେ ଚତୁର ଓ ଚତୁରୀ ଦୁହେଁ ଏହା ଚର୍ଚ୍ଚାକରି ଭାବନା କଲେ । କଣ ହେବ, କା. ପ୍ରେତ ଛଡ଼ା ମନ୍ତ୍ରପତ୍ର ପତ୍ରୀଙ୍କର ପତ୍ର ( ଚିଠି ) କେ ଆଣିବାକୁ ଦେବ ।

୫୪—କବି ଉପେନ୍ଦ୍ରଭଞ୍ଜ ରାମଚନ୍ଦ୍ରଙ୍କର ପାଦପଦ୍ମ ଭାବି କହୁଅଛନ୍ତି । ଅହେ ସୁଜନମାନେ ମୋର ଗୀତ ପୁଞ୍ଜ ଏହିପରି, ଜାଣନ୍ତୁ ।

——○——

### ଷୋଡ଼ଶ ଛାନ୍ଦ ।

୧—ରାତି ଶେଷ ହେଲା । ନଗରବାସୀ ଦୃଶ୍ୟହେଲେ । ପୂର୍ବଦିଗରୂପ ନାଗରୀଶ୍ରେଷ୍ଠ କଳାଶାଢ଼ି ଛାଡ଼ି ସୂର୍ଯ୍ୟଙ୍କ ଅନୁରାଗରେ ରଙ୍ଗଶାଢ଼ି ପିନ୍ଧିଲା କି ? ଭ୍ରମର ପଦ୍ମରୁ ଉଡ଼ିଯିବାକୁ ଇଚ୍ଛା କରିବାରୁ ଯେତେ ଶୋଭା ହେଲା । ବୋଧହୁଏ ସେହି ପଦ୍ମିନୀ ନାୟିକା ରସବତୀ ହୋଇ କାନ୍ତ ସୂର୍ଯ୍ୟଙ୍କୁ ଢୋଳାଢ଼ାଳି ଚାହିଁଲା କି ?

୨—ଶିବଙ୍କ କୈଳାସପୁର ଶଙ୍ଖ ଶବ୍ଦ ନାଦଯୁକ୍ତ ହେଲା । ବଃପୁରୁଷ ଓ ବଃପୀ ସ୍ତ୍ରୀମାନେ ସଂଯୋଗ ଅବସ୍ଥାରୁ ଚକ୍ରବାକ ସ୍ତ୍ରୀ ପୁରୁଷଙ୍କ ଠାରେ ରଖିଦେଇ ଗଲେ । ଦିନରେ ସେ ପକ୍ଷୀଙ୍କର ସଂଯୋଗ ହୁଏ । ତାଙ୍କଠାରୁ (ରାତ୍ରି) ବିଚ୍ଛେଦ ଯେବେ ଗଲେ । ଦୁହିଁଙ୍କର ପ୍ରୀତି କେବେ ଭିନ୍ନ ହୁଏନାହିଁ । ପ୍ରୀତି ରାତିଦିନ ଏହିପରି ହୁଏ ଅର୍ଥାତ୍ ଦିନରେ ଚକ୍ରବାକ ଯୁଗଳର ଓ ରାତିରେ ବଃ ବଃପୀଙ୍କର ସଂଯୋଗ ହୁଏ । ୧ଭୁଜଙ୍ଗ ଅଙ୍ଗ ନଗେନ୍ଦ୍ରପୁର ଦରନାଦ, ଶିବଙ୍କ କୈଳାସପୁର ଶଙ୍ଖଧ୍ୱନି । ୨ଭୁଜଙ୍ଗ ଓ ବନ୍ଧକୀ, ବଃ ଓ ବଃପୀ ।

କୁକ୍କୁଟ କୁଟ-ରଟରେ ପଳା ସ୍ୱୈର ତସ୍କର ¹ଅଭିସାରିକା ।
ଲିଭିଲ ଧନ ଚନ୍ଦ୍ର ବର୍ଣ୍ଣ ଲୁଗ୍ନାଇଁ ନଶାଦେହେ କରି ଦକା ।
ସେ ଭଲେ । ତାସ ²ବାସକସଜ୍ଜା ଯୁଗଳେ ।
ତ୍ରସ୍ତବନ୍ତ ମ୍ଳାନ ଏକାବେଳକେ । ଭଲ ଯେକାଯେନ ହୋଇଥିଲେ । ୩ ।
ଗୃହ-କପୋତ ହୁଂକୃତେ ପତିକୋଳୁଁ ନବୀନା ସଙ୍ଗମା ଯାଇ ।
ଦେଖଇ କରି ଅଧର ଆଦର ଦଶ ସ୍ନେହ ଲଜ୍ଜା ଉପୁଜାଇ ।
ସେ ବାଲୀ । ଦେଖି ଗଣ୍ଡପର ଶୋଭାବଳୀ ।
ଚୁମ୍ବ ଦେବ କ ପୋଚ୍ଛବ ଭଲ । ଛନ୍ନଚରି ମିଳବାକୁ ଆଳୀ । ୪ ।
ହାର ଶୀତଳରୁ ¹ବିପ୍ରଲବ୍ଧା ସ୍ତ୍ରୀରୁ ଯାଚନ କୃପଣଦ୍ୱାରୁ ।
ନିରାଶ ପାଇଁ ନିଃଶ୍ୱସକୁ ପକାଇ ବାହୁଡ଼ିଲ୍ଲ ସଙ୍କେତରୁ ।
ସେ ତହିଁ । ସଙ୍ଗେ ପୁରୁଷ ବଚନ କହି ।
ଅଷ୍ଟମଙ୍ଗଳା ବର ମୋ ସେହି । ମୋତେ କ ଭଲ ଆଶା ଦେଖାଇ । ୫ ।
ମନ୍ଦ-ଶବଦେ ସ୍ତବଧେ ମନ୍ଦେ ମନ୍ଦେ ସ୍ମାନକୁ ବଧୂ ବାହାର ।
ପିଣ୍ଡାରେ ଥିଲ ପଥିକ ସ୍ତନେ ମଣ୍ଡି ହେବାରୁ ହୃଦ ତାହାର ।
ମୁଁ ମଲି । କେଉଁ ବୁଦ୍ଧିରେ ବଦେଶ ଗଲି ।
ପ୍ରିୟା ଏ ଛବକ ନ ଦେଖିଲି । ତ କୁ ମନମଥ ଶରେ ଦେଲି । ୬ ।

---

୩—କୁକୁଡ଼ା ସମୂହଙ୍କ ରବରେ ସ୍ୱୈର ଓ ଅଭିସାରା ସ୍ତ୍ରୀମାନେ ପଳାଇଲେ । ଚଉକଥିବା ତସ୍କରମାନେ ପାଇଥିବା ଧନକୁ ଲୁଚାଇଲେ । ଅଭିସାରିକାମାନେ ପାଇଥିବା ଚକ୍ଷଣଭାବଚନ୍ଦ୍ର ଓ ବର୍ଣ୍ଣକୁ ଲୁଚାଇଲେ । ନକ୍ଷତ୍ରମାନେ ଓ ବାସକସଜ୍ଜା ସ୍ତ୍ରୀମାନେ ଏକାବେଳକେ ଶାସ୍ତ୍ରଂକାଳରେ ତ୍ରସ୍ତବନ୍ତ ହୋଇଥିଲେ ଓ ଉଦ୍ବିଗ୍ନଶେଷରେ ମ୍ଳାନ ହେଲେ । ଭଲା ଯେକାଯେନ ହୋଇଥିଲେ । ¹ଅଭିସାରିକା ଯେଉଁ ସ୍ତ୍ରୀ ପତି ଅପେକ୍ଷାରେ ସଂକେତ ସ୍ଥାନକୁ ଯାଇଥାଏ । ²ବାସକସଜ୍ଜା, ଯେଉଁ ସ୍ତ୍ରୀ ଗୃହ ସଜାଇ ପୁରୁଷ ଅପେକ୍ଷାରେ ବସିଥାଏ ।

୪—କୂଅ ସଂଯୋଗିନୀ ସ୍ତ୍ରୀମାନେ ଘରର ପାରାମାନଙ୍କ ଶବ୍ଦରେ ପତି କୋଳରୁ ଉଠିଯାଇ ଦର୍ପଣରେ ଅଧର କର ଗାଲରେ ଥିବା ଚୁମ୍ବନ ଚିହ୍ନ ସ୍ନେହ ଓ ଲାଜ ଜନ୍ମାଇ ଦେଖନ୍ତି । ପ୍ରାତଃ ସମୟରେ ଚୁମ୍ବନ ଚିହ୍ନ ଦେଖି ସଖୀ ଅସିବାକୁ ଛନ୍ନ ଚିନ୍ତି ହୋଇ ଚୁମ୍ବନ ଦେବ କି ? ପୋଛିଦେବ ବୋଲି ଭାବନା କରନ୍ତି ।

୫—ମାଗିବାଲୋକ କୃପଣ ଦ୍ୱାରରୁ ନିରାଶ ହୋଇ ନିଶ୍ୱାସ ପକାଇ ବାହୁଡ଼ିଲାପରି ବିପ୍ରଲବ୍ଧା ସ୍ତ୍ରୀ ହାର ଶୀତଳ ହେବାରୁ ସଂକେତ ସ୍ଥାନରୁ ନିଶ୍ୱାସ ପକାଇ ଫେରିଗଲେ । ସେ ସେଠାରେ ସଖୀକୁ କର୍କଶ ବଚନ କହିଲେ । ସେ ମୋର ଅଷ୍ଟମଙ୍ଗଳା ବରହେଲା । ମୁଁ ତା ମୁହଁ ଚାହିଁବ ନାହିଁ । ମୋତେ ଆଶା ଦେଖାଇକହିଲା । ¹ବିପ୍ରଲବ୍ଧା, ଯେ ସ୍ତ୍ରୀ ପାଖକୁ ପୁରୁଷ ଅସେ ନାହିଁ ।

୬—ବୋହୂମାନେ କାକ ଶବ୍ଦରେ ସ୍ତବ୍ଧ ହୋଇ ମନ୍ଦ ମନ୍ଦ ଭାବେ ସ୍ନାନକୁ ବାହାରିଲେ । ପିଣ୍ଡାରେ ଶୋଇଥିବା ପଥିକ ତାହା ଦେଖି ହୃଦୟ ବାନ୍ଧି ହେବାରୁ ଭାବନା କରେ । ମୁଁ ମଲି, କ

ଏସନ ସମୟେ ପ୍ରସନ୍ନବଦନୀ ମହାମନ୍ତ୍ର-ମୋହନୀ ।
ଯାଇ ଅଭିରାମ ଆରାମ କହଇ ବସାଇ ସଜନୀ ଗଣ ।
ରେ ଅଳି । କେଉଁ ଯୋଗ ହୋଇଥିଲା କାଲି ।
ମୁଁ ଯେ କି ଶୋଭା ଦର୍ଶନ କଲି । ଏହି ଦେହରେ କୃତାର୍ଥ ହେଲି । ୭ ।
କନକପର୍ବତ ଉପରେ ମର୍କତ-ଶୃଙ୍ଗ ପ୍ରାୟେ ଦିବ୍ୟ ଜୁଡ଼ା ।
ସୁମନାବଳୀ ବେଷ୍ଟିତ ରମ୍ଭା-ଉରୁ-ଶୋଭିନୀ କବେକଚୁଡ଼ା ।
ରେ ସହି । ମଧ୍ୟେ ଜଳଚଚଳ ଘନ ରହି ।
ଧାର ପରି ଅଗକୁଞ୍ଚ ଶୋହି । ଶଭ-ଗୃତକ ହୋଇଲା ସ୍ନେହି । ୮ ।
ରଞ୍ଜିତ ସମ ସୁବଳକ ବେଢରେ ଶ୍ରୀମୁଖ ଶୋଭେ ବଧୂରେ ।
ମଧ୍ୟ କଳଙ୍କ ପୋଛୁ ଶଶି ପରିଧି କରୁଛୁ କଳାନିଧିରେ ।
ରେ ସଖି । ମତ୍ତ ଚକୋର ମୋହର ଆଖି ।
ହାସ ସୁଧାପାନେ ହେଲା ସୁଖୀ । ଏଡ଼େ ଅଚମ୍ଭ ନ ଥିଲା ଦେଖି । ୯ ।
ଶ୍ରବଣଯୁଗଳେ ହୀରକକୁଣ୍ଡଳ ଶିରଚାଳନରେ ଚଳି ।
କଉତୁକେ ବାଦ ରଚନା କରି କି ଗୁରୁ ଶୁକ୍ର ଖେଳେ ଦୋଳି ।

---

ବୃଷ୍ଟିରେ ଉଦେଶ କଲି । ପ୍ରିୟାର ଏ କାଳ ଶୋଭା ଯାହା ନ ଦେଖିଲି । ତାକୁ ବଦର୍ଶ ଖର ବାଧା ଦେଲି ।

୭—ଏ ସମୟରେ ପ୍ରକଳ୍ପମାନ କୋଟିବ୍ରହ୍ମାଣ୍ଡସୁନ୍ଦରୀ ପ୍ରସନ୍ନ ମୁଖୀ ହୋଇ ସାଙ୍ଗ ମନୋହର ବଗିଚାରେ ତନ୍ନ ସଖୀଙ୍କୁ ବସାଇ କହିଲେ । ହେ ସଖି, କାଲି କି ସୁଯୋଗ ହୋଇଥିଲା । ମୁଁ କେଡ଼େ ଶୋଭା ଦେଖିଲି । ଏ ଦେହରେ କୃତାର୍ଥ ହେଲି ।

୮—ସୁନା ପର୍ବତ ମେରୁ ଉପରେ ମରକତ ଶୃଙ୍ଗପରି ତାଙ୍କର ସୁନ୍ଦର ଜୁଡ଼ା ଶୋଭା ପାଉଥିଲା । ମେରୁଶୃଙ୍ଗ ଦେବତାମାନଙ୍କ ଦ୍ୱାରା ବେଷ୍ଟିତ ହୋଇଥାଏ । ରମ୍ଭା ଉର୍ବଶୀ ପ୍ରଭୃତି ଅପ୍ସରାମାନଙ୍କର କବେକ ଚୂଡ଼ାଏ ଏ ଜୁଡ଼ା କଦଳୀ ଉରୁପରି ଉରୁ ଦ୍ୱାରା ଶୋଭିତ ସ୍ତ୍ରୀମାନଙ୍କର କବେକ ଚୂଡ଼ା ଓ ମୃଷ୍ଟ ନନ୍ଦୂନରେ ବେଷ୍ଟିତ ହୋଇଥିଲା । ମେରୁ ମଧ୍ୟ ଭାଗରେ ମେଘ ପଡ଼ିଥିଲା ପରି ତାଙ୍କ କଣ୍ଠରେ ଜଳବସ୍ତ୍ର ଶୋଭା ପାଉଥିଲା । ଜଳଧାର ପରି ଥିବ ଲୁହା ଶୋଭା ପାଉଥିଲା । ମୋର ଚକ୍ଷୁରୂପକ ଗୃତକ ତହିଁରେ ସ୍ନେହ କରିଥିଲା ।

୯—ରଞ୍ଜିତ ସମାନ ସୁନ୍ଦର ଶିଖଣ୍ଡକ ବେଢ଼ା ବଧୂଙ୍କରେ ଶ୍ରୀମୁଖ ଶୋଭିତ ହୋଇଥିଲା । ବୋଧ ହୁଏ ବଧାତା ମଧ୍ୟରୁ କଳଙ୍କ ପୋଛି ଚନ୍ଦ୍ରର ପରିଧି କରିଥିଲେ କି ? ହେ ସଖି, ମୋର ଅକ୍ଷି ମତ୍ତ-ଚକୋର ପରି ତାଙ୍କର ହାସ ରୂପକ ଅମୃତ ପାନ ଦ୍ୱାରା ଖୁସି ହୋଇଥିଲା । ଏଡ଼େ ଆଶ୍ଚର୍ଯ୍ୟ ଦେଖି ନ ଥିଲା ।

୧୦—ହେ ମିତ, ତାଙ୍କ ଦୁଇକାନରେ ହୀରା କୁଣ୍ଡଳ ମୁଣ୍ଡ ହଲାଇବାରେ ଦୋହଲୁଥିଲା । ବୋଧ ହୁଏ ବୃହସ୍ପତି ଓ ଶୁକ୍ର ଦୁହିଁ କୌତୁକରେ ବିବାଦ କରି ଦୋଳି ଖେଳୁଥିଲେ କି ? ସେ ଦୁହେଁ ମୋର

ରେ ମିତ ! କେସେ ମୋ ଗୁଣି ହେଉଛ ଉଦିତ ।
କଳ ଭଲ ଦଶା ଉପସ୍ଥିତ । ଅଛୁ ମଙ୍ଗଳ ଘାତରେ ଖ୍ୟାତ । ୧୦ ।

ଓଛି ୧ଘ୍ରାଣ ବ୍ୟାଜେ ୨ଚଞ୍ଚୁ ବେଶେ କି ସ୍ୱରୂପ ରମ୍ୟକଦ୍ୱୀପ ।
ଶ୍ୟାମ ନାଗପାଶ ନାଶ ନାଶ ୩ଲଗ୍ନ ବାହାରିଛି ଖଗାଧିପ ।
ରେ ସହି ! ଲୋକେ ମୁଁ ଶୁଣି ରାମା ବୋଲାଇ ।
ମୋତେ ଫୋଟିଛି ଉରଜ-୪ଅହି । ବଞ୍ଛା କଲେ ନ କଣିବ କାହି । ୧୧ ।

କପାଳ ଭ୍ରୂରୁ ନେତ୍ର ଯେନ ଯେ ତନୁବନ୍ତ କାମ ନୁହେ ଛନ୍ଦ ।
୧ଶମ୍ପାକ ଧନୁରେ ସଙ୍ଗ ଭୃଙ୍ଗ ଗୁଣ ବାଣ ନୀଳାବ୍ଜ କି ପଦ ।
ରେ ସଖି ! ଆନଠାରୁ ନ ବିନ୍ଧିଲା ଯୋଖି ।
ହୃଦ ଲକ୍ଷ କଲା କିସ ଦେଖି । ସଖୀ ବୋଲେ ଶମ୍ଭୁ ଅଛୁ ରଖି । ୧୨ ।

ବନ୍ଧୁ ପଡ଼ିଲା ପ୍ରାୟେ ରଙ୍ଗ ଅଧର କି ଶତ ମନ୍ଦାର ଫୁଲ ।
ଗର୍ଭେ ଖଞ୍ଜିଛି କେଉଁ ଧାତା ରଦନ ବ୍ୟାଜେ କୁନ୍ଦକଳୀମାଳ ।
ରେ ମିତ ! ସଦା ଫୁଟି ଅଛି ଅଛୁ ତ ।
ନ ପାଇଲେ ତହିଁ ମଧୁ ସତ । ଉଡ଼ି ଯିବ ପ୍ରାଣ-ମଧୁବ୍ରତ । ୧୩ ।

---

ଉଚ୍ଚ ରାଶିରେ ଉଦୟ ହୋଇଅଛନ୍ତି କି ? ଅତଏବ ମୋର ଭଲଦଶା ଉପସ୍ଥିତ କରୁଅଛନ୍ତି । ତାଙ୍କ ସଙ୍ଗେ ମଙ୍ଗଳ ଗ୍ରହ ଥିଲା ପରି ଜଣାଯାଏ । ଯେ ହେତୁ ସେ ବାଧା ପାଉଅଛି ।

୧୧—ସେ ସୁନ୍ଦରଙ୍କ ସ୍ୱରୂପ ରମ୍ୟକଦ୍ୱୀପ ହୋଇଅଛି କି । ତହିଁରେ ଗରୁଡ଼ ଶ୍ୟାମଚନ୍ଦ୍ରଙ୍କର ନାଗପାଶ ନାଶ କରିବା ସମ୍ବନ୍ଧରେ ତାହାଙ୍କର ଉଚ୍ଚ ନାସିକା ରୂପରେ ନିଜ ଅଣ୍ଡ ଫୋଡି ବାହାରିଅଛି କି । ଅରେ ସଖି, ଲୋକେ ମୋତେ ରାମା କହନ୍ତି । ପୁଣି ମୋତେ ଉରଜରୂପକ ସର୍ପ ଫୋଟିଅଛି । ଉଚ୍ଛା କଲେ ଉଚ୍ଛାଡ଼ିବେ କାହିଁ କି ? ୧ଘ୍ରାଣ, ନାସିକା । ୨ଚଞ୍ଚୁ, ଥଣ୍ଟ । ୩ଲଗ୍ନ, ସମୟ ବିଶେଷ । ୪ଅହି, ସର୍ପ ।

୧୨—ସେ ରାଜପୁତ୍ର ଦେହଧାରୀ କନ୍ଦର୍ପ ଅଟନ୍ତି । ଏ କଥା ଝୁଟ ( ମିଥ୍ୟା ) ନୁହେଁ । ଦେଖ, କପାଳ ସୁନାରିଫୁଲଧନୁ ଓ ଭ୍ରୂଲତା ଭ୍ରମରମୟଗୁଣ ଏବଂ ଚକ୍ଷୁ ନୀଳୋତ୍ପଳ ବା ପଦ୍ମରୂପକ ବାଣ ଧରି ଅନ୍ୟଠାରୁ ନ ବିନ୍ଧି ମଣ ଦେଖି ମୋର ହୃଦୟ ଯୋଖି ବିନ୍ଧିଲେ । ସଖୀ କହୁଛ, ତୁ ପରି ହୃଦରେ କାମ ଶତ୍ରୁ ଶମ୍ଭୁଙ୍କୁ ରଖିଛୁ । ୧ ଶମ୍ପାକ, ସୁନାରିଫୁଲ ।

୧୩—ତାଙ୍କ ଅଧର ରଙ୍ଗ ବୋହୁ ପଡୁଥିବାପରି କେତେ ବନ୍ଧୁକ ହୋଇଅଛି । କେଉଁ ବିଧାତା ମନ୍ଦାରଫୁଲ ଗର୍ଭରେ ଦନ୍ତପଙ୍କ୍ତି ରୂପରେ କୁନ୍ଦକଳୀମାଳ ଗନ୍ଥି ରଖିଛି । ଅରେ ମିତ, ଏ ଅପୂର୍ବ ବସ୍ତୁ । ମନ୍ଦାର ସବୁବେଳେ ଫୁଟିଛି ଓ କୁନ୍ଦକଳୀ ସବୁବେଳେ ଅଫୁଟିତ ଅଛି । କିନ୍ତୁ ସେଥିରୁ ମଧୁ ନ ପିଇଲେ ମୋର ପ୍ରାଣରୂପକ ଭ୍ରମର ନିଶ୍ଚେ ଉଡ଼ିଯିବ ।

କସ୍ତୁରୀ ଜିଣି କି କୁଚ ପୁଂନ୍ନାଗ ଶ୍ୟାମା-ଶମ୍ଭୁ-କନ୍ଦୀ-ଦୁର୍ଗ ।
କସ୍ତୁରୀ ଶୁଣି ମନାସି ଆସିଥିଲା ତୋ ସ୍ତନ ସପୁଂ ଯୋଗ ॥
ରେ ପୋହଳା । ଅଛି ପ୍ରବାଳ ବଉଳାମାଳା ।
ଦେଇ ଗଳା ପଦକ ପିଭୁଳା । ଶୁଣି ହସିଲା ଆନ କହିଲା । ୧୪ ।
ଏ କଥା ମିଥ୍ୟା ନୁହଇ ମନୋହର ସୁବର୍ଣ୍ଣଶିକୁଳି ଯୋଟଗ ।
ଶଙ୍ଖଶାଳର ଯୌବନ-କସ୍ତି କର ଦେଖାଇଛି ଦୁଇଦଗେ ।
ରେ ଅଳି । କେହୁ ବୋଲେ ସେ କଥାକୁ ଛଳି ।
ମୁଖପଦ୍ମ ତୋ ଧରବ ଟୋଲି । ନମ୍ରମୁଖେ କହେ ଗୁଣଶାଳି । ୧୫ ।
ବଘତଳରୁ ଉଦରଶେଷପାଏ ୧ପଣବବାଦ୍ୟ ସଦୃଶେ ।
ଗଢ଼ିବା କାଳେ ଧାତା ଦୃଢେ ଧରନ୍ତେ ସେ ଉଦ୍ଧେ ମଧ୍ୟ କ ରେଖେ
ରେ ସଖି । ୨ଷ୍ଟୁଚ ପୃଥୁଳ ସେ ଯେଣ ହୋଇ ।
ନାଭିଛଳେ କୁଶମୁଦ୍ରା ଥୋଇ । ହସ୍ତେ ଧରବାର ସାକ୍ଷୀ ଦୁଇ । ୧୬ ।
ଜଙ୍ଘ ଜାନୁ ଉରୁ କ ଶ୍ରୀରୁ ଅର୍ଗଳ-ସ୍ତମ୍ଭ ଆରମ୍ଭକୁ ପାଇ ।
କୁରଙ୍ଗନୟନା ମନ-ସାରଙ୍ଗକୁ ବାନ୍ଧ ପକାଇଛି ନେଇ ।
ରେ ନାରୀ । ଆଉ ପାଦକୁ କ ଦେବା ସରି ।
ଯାହା ପ୍ରତଳତ ଶୁଣିଁ କରି । ହସ୍ତ ଟେକ ଓଲଗଇ କରି । ୧୭ ।

---

୧୪—ତାହାଙ୍କର ଛଡ ସ୍ତନମାନଙ୍କ ମନ ବନ୍ଧ କରିବା ଉତ୍ତର ଜାଣିଛ କବାଟ କ ? ସଖୀ କହିଲ ସେ ନାହିଁକ କବାଟ ତୁମ୍ଭ ସ୍ତନପଦ୍ମଶ ଯୋଗ ଉଚ୍ଚାକଣ ଅଛିଥିଲ । ସେ କବାଟରେ ପୋହଳାମାଳାର ପକ ବଉଳାମାଳା ଲଗିଅଛି । ତହିଁରେ ଥିବା ପଦକରୂପକ ପିଭୁଳା ତୋଳେ ଦେଇ ଯାଇଅଛି । ଏହା ଶୁଣି ରାଜପୁତ୍ରୀ ହସିଲ ଓ ଅନ୍ୟ କଥା କହିଲ ।

୧୫—ଶଙ୍ଖର ପଶୁ ତୁଲ୍ୟ ଦୁଇମୁଣ୍ଡା ଯୌବନକସ୍ତି ଦୁଇପାଖେ ଥୋଇ ପାହାର ଦେଖାଇ ଅଛ କ ? ସେ କବାଟରେ ଲଗିଥିବା ସୁବର୍ଣ୍ଣଶିକୁଳି ଏହିପରି ଅନୁମିତ ହେଉଅଛି । ଏହା ମିଥ୍ୟା ନୁହେଁ, ଅନ୍ୟ କେହି ସଖୀ ସେ କଥାକୁ ଛଳ କହିଲ । ସେ ଯେବେ ହାଗ, ଯେବେ ତୋ ମୁଖପଦ୍ମକୁ ତୋଳିଧରିବ । ଏହା ଶୁଣି ସେ ଗୁଣବତୀ ରାଜକନ୍ୟା ଲଜ୍ଜାରେ ମୁହଁକୁ ନୁଆଁଇ କହିଲ ।

୧୬—ସ୍ତନ ତଳରୁ ପେଟ ଶେଷ ପର୍ଯ୍ୟନ୍ତ ପଣବବାଦ୍ୟ ପରି ହୋଇଅଛି । ଥରେ ସହି ଗଢ଼ିବାବେଳେ ବଧାତା ଦୃଢ଼ଭାବେ ଧରିଥିବାରୁ ସେ ଉଦରରେ ଭଳି ରେଖା ଏ ହୋଇଅଛି । ଅଳ୍ପ ମଧ୍ୟ ତହିଁ ପୃଥୁଳ ହୋଇଅଛି । ନାଭି କପଟରେ ବଧାତା ହାତର କୁଶମୁଦ୍ରା ରହିଅଛି । ଏହି ଦୁଇଟି କଥା ହସ୍ତରେ ଧରିହୋଇ ଥିବାର ସାକ୍ଷୀ ହୋଇଅଛି । ୧ ପଣବ, ବାଦ୍ୟ ବିଶେଷ । ୨ ସ୍ଫିଚ, ପିଚ୍ଛ ।

୧୭—ତାହାଙ୍କର ପେଣ୍ଡୁ, ଅଣ୍ଟୁ ଓ ଜଙ୍ଘ କେଡ଼େ ମନୋହର ଅର୍ଗଳ ସ୍ତମ୍ଭ ଶୋଭାକୁ ପାଇଅଛି । ସେ ମୃଗନୟନା ସ୍ତ୍ରୀମାନଙ୍କର ମନରୂପକ ମୃଗକୁ ନେଇ ବାନ୍ଧି ରଖିଅଛି । ହେ ସଖି, ପାଦକୁ କଣ ତୁଳନା କରିବା । ତାହା ସାହାର ତଳବା ଯେଉଁ ସମାନ ନ ହେବାରୁ ହସ୍ତଟେକି ଓଲଗୁଅଛି । ୧ ଜଂଘା, ପେଣ୍ଡୁ । ଜାନୁ, ଅଣ୍ଟୁ । ଉରୁ, ଜଂଘ ।

କଣ୍ଠ ଶଙ୍ଖ-ଜୟ ମନ୍ଦର-ତାଡ଼ନ ବରାହବର ସୁଶାନ୍ତ ।
ସେ ନର-କେଶରୀ ବଳୀ-ଧ୍ୱଂସୀ ତେଜେ ସହସ୍ରକର-ଜୟନ୍ତ ।
ରେ ସନ୍ଧ । ମୂର୍ତ୍ତି ରାମ ବଳ ଖ୍ୟାତ ମନ୍ଦ ।
ବୁଧ ଗୁଣେ ଚନ୍ଦ୍ରହାସେ ଶୋହ । ବିଷ୍ଣୁ ଦଶରୂପ ଏତେ କି ବନ୍ଧ । ୧୮ ।
ସଜନି ବୋଇଲା ତୁ ସକଳ ବିଧୁ ମୋହନରେ ଏକମୂର୍ତ୍ତି ।
ଶ୍ରୀଅଙ୍ଗ ସୁବାସେ ଗନ୍ଧବତୀ ସାକ୍ଷେ ଚଞ୍ଚଳା ହୋଇଛନ୍ତି କାନ୍ତି ।
ରେ ଶ୍ୟାମା । ସୀତା ମାଧୁର୍ଯ୍ୟ ଗିରେ ସୁସମା ।
ତୁ ରେ ବତିଶ-ଲକ୍ଷଣ-ସୀମା । କାମପ୍ରଶୁ ତୋ ଭ୍ରୂରୁ ଉପମା । ୧୯ ।
ହୋଇଛନ୍ତି ଏ ହେତୁ ସେତୁ କାନ୍ତ କାନ୍ତା ହୋଇ ନେବ ଦବା ଜାଣି ।
ଶୁଣି ପୁଲକିତ କି ତନୁ-ଲତାରେ କଳିକା-ଅଙ୍କୁର ଦଶି ।
ସେ ବାମା । ସହଜେତ ଅନୁରାଗ-ଧାମା ।
ହେଲା ଗଦ୍‌ଗଦବାଣୀ-ନିଗମା । ପୁଣି ହୋଇଲା ଶତ ସମ୍ଭ୍ରମା । ୨୦ ।

---

୧୮—ରାଜପୁତ୍ର ସେ ଏକାକେ ବିଷ୍ଣୁଙ୍କର ଦଶଅବତାର ଧାରଣ କରିଅଛନ୍ତି । ବିଷ୍ଣୁ ଶଙ୍ଖଜୟ ଅର୍ଥାତ୍ ମୀନାବତାରରେ ଶଙ୍ଖାସୁରକୁ ଜୟ କରିଥିଲେ । ରାଜପୁତ୍ରଙ୍କର କଣ୍ଠ ଶୋଭାରେ ଶଙ୍ଖକୁ ଜିଣିଅଛି । ବିଷ୍ଣୁ କୂର୍ମାବତାରରେ ମନ୍ଦର ପର୍ବତରେ ତାଡ଼ିତ ପାଇଥିଲେ । ସେ ରାଜପୁତ୍ର ମନ୍ଦ ସେବକର ତାଡ଼ନକାରୀ । ବିଷ୍ଣୁ ଅଚ୍ୟୁତ ବରାହବର ହୋଇଥିଲେ । ସେ ରାଜପୁତ୍ର ବରାଙ୍ଗ ଅହବର ( ଉତ୍କୃଷ୍ଟ ଯୁଦ୍ଧରେ ) ନିର୍ଭୀକ ଅଟନ୍ତି । ବିଷ୍ଣୁ ନରସିଂହରୂପ ଧାରଣ କରିଥିଲେ । ରାଜପୁତ୍ର ନର-ଶ୍ରେଷ୍ଠ ଅଟନ୍ତି । ବିଷ୍ଣୁ ବାମନାବତାରରେ ବଳିକି ଧ୍ୱଂସ କରିଥିଲେ । ରାଜପୁତ୍ର ବଳୀ ( ବଳବାନ୍ ) ଲୋକମାନଙ୍କୁ ଧ୍ୱଂସ କରୁଅଛନ୍ତି । ବିଷ୍ଣୁ ପରଶୁରାମ ଅବତାରରେ ( ସହସ୍ରକର ) କାର୍ତ୍ତବୀର୍ଯ୍ୟକୁ ଜୟ କରିଥିଲେ । ରାଜପୁତ୍ର ତେଜରେ ( ସହସ୍ରକର ) ସୂର୍ଯ୍ୟଙ୍କୁ ଜିଣିଅଛନ୍ତି । ବିଷ୍ଣୁ ରାମମୂର୍ତ୍ତି ହୋଇଥିଲେ । ରାଜପୁତ୍ର ରମଣୀୟ ମୂର୍ତ୍ତି ଧାରଣ କରିଅଛନ୍ତି । ବିଷ୍ଣୁ ମଥୁରାରେ ( ବଳ ) ବଳରାମ-ରୂପରେ ଖ୍ୟାତ ଥିଲେ । ରାଜପୁତ୍ର ପୃଥ୍ୱୀରେ ବଳରେ ଖ୍ୟାତ ଅଟନ୍ତି । ବିଷ୍ଣୁ ବୁଦ୍ଧ ଅବତାର ଧାରଣ କରିଥିଲେ । ରାଜପୁତ୍ର ଗୁଣରେ ବୁଧ ହୋଇଅଛନ୍ତି । ବିଷ୍ଣୁ କଳ୍କି ଅବତାରରେ ( ଚନ୍ଦ୍ରହାସ ) ଖଡ୍ଗଦ୍ୱାରା ଶୋଭାପାନ୍ତି । ରାଜପୁତ୍ର ଚନ୍ଦ୍ରପରି ହାସରେ ବା ଖଡ୍ଗଦ୍ୱାରା ଶୋଭା ପାଉଅଛନ୍ତି ।

୧୯—ସଖୀ କହିଲା, ହେ ସୁନ୍ଦରି ? ବିଷ୍ଣୁଙ୍କର ସକଳ ଅବତାର ଯେଉଁ ଦେବୀମାନେ ମୋହିତ କରାଇଥିଲେ, ତୁ ସେ ସମସ୍ତଙ୍କର ସମଷ୍ଟି ସ୍ୱରୂପ ଏକମୂର୍ତ୍ତି ହୋଇଅଛୁ । ତୁ ଶ୍ରୀଅଙ୍ଗ ସୁବାସରେ ଗନ୍ଧବତୀ ହୋଇଅଛୁ ପୃଥ୍ୱୀହୋଇଅଛୁ ମୁଁ ରାଗେ କାନ୍ତି ଚଞ୍ଚଳା (ବିଦ୍ୟୁତ) ପରି ହୋଇଅଛି । ଅତଏବ ଲକ୍ଷ୍ମୀ ହୋଇଅଛୁ । ଅହୋ ସଖୀ ? ତୁ ବଚନମାଧୁର୍ଯ୍ୟରେ (ଗିରା) ଶାରଦାସମାନ ହୋଇଅଛୁ । ଅତଏବ ସୀତା ହେଲୁ ତୁ ବତିଶ ଲକ୍ଷଣମାନଙ୍କର ସୀମା ହୋଇଅଛୁ । ଅର୍ଥାତ୍ ତୋପରି ବତିଶଲକ୍ଷଣ ଯୁକ୍ତା ସ୍ତ୍ରୀ ଆଉ ନାହାନ୍ତି । ଅତଏବ ବତିଶଲକ୍ଷଣ ସୀମାରେ ବଶ ହୋଇଅଛୁ । କନ୍ଦର୍ପର ପରଶୁ ତୋ ଭ୍ରୂରୁର ଉପମା ହୋଇଅଛି । ଅତଏବ ତୁ କାମପ୍ରସୂ ଅର୍ଥାତ୍ ରୁକ୍ମିଣୀ ହୋଇଅଛୁ ।

୨୦—ହେ ସୁନ୍ଦରି ! ଏହି ହେତୁରୁ ସେ କାନ୍ତ ହୋଇ ଅଛନ୍ତି । ତୁ କାନ୍ତାହୋଇ ଦାନରାଜ କରାଇବୁ । ଏହା ଶୁଣି ସେ ବାମା ପୁଲକିତ ହେଲା । ଅର୍ଥାତ୍ ପ୍ରେମ ଅଙ୍କୁରିତ ସେ ଦେହ ରୂପକଲତାରେ କଢ଼

ଦୃଷ୍ଟିକୃତ କୁସୁମିତ ୧କୁଞ୍ଜମାନେ କପୋତ ୨କୂଜନ୍ତୁ କରି ।
କୃଶୋଦରୀ ୩ଉଦ୍ବେଗଯୁତ ହୋଇ ଭାଷେ ଏତ କାମ-୪ପ୍ରତିହାରୀ ।
ରେ ମିତ । ୫ଦୂର୍ବା-କାନ୍ତ ଅଙ୍ଗ ଅଙ୍ଗୀକୃତ ।
୬ମହାରଜତ-ଲଗ୍ନ ଧ୍ୱନି । ଉଚ ଡାକରେ ହୋଇଛନ୍ତି ରତ । ୨୧ ।
ଯେଣୁ ଅନଙ୍ଗ ସେ ତେଣୁ ଦିଶୁ ନାହିଁ ୧ଚୂତ ନୂଆଳୀ ତା ବାଣ ।
୨ଗୁଣୁଁ ହେଲେ ୩ଚ୍ୟୁତ ୪ଆବଳୀ ହେଜ ମୁଁ ଆଉ କି ରହିବ ପ୍ରାଣ ।
ରେ ଆଳି । ତନୁ କୋମଳେ ଶିରୀଷ ତୁଳି ।
ଯିବ ଭସ୍ମତ ମାତ୍ରକେ ଗଳି । କହ କେହ୍ନେ ହୋଇବ ସମ୍ଭାଳି ୨୨ ।
ଏ ସମସ୍ତେ ଅଙ୍ଗେ ୧ସୁମନ ପଡନ୍ତେ ଚମକ ଭଣିଲ ମଲି ।
ପୁଷ୍ପିତ ୨କିଂଶୁକପନ୍ତି ବିଲୋକିତ ମିଳିତ ୩ମିଳିନ୍ଦ-ମାଳୀ ।
ସେ ଭଣିଲ । ଏତ ସଧୂମ ଅନଳ ଜଳି ।
ଦେଲା ମୋ କେଳିବନ କେ ଜାଳି । ଆଉ କାହିଁ ମୁଁ କରିବ କେଳି ।୨୩।
ଆକୁଳେ ବୁକୁ-୧ଦୁକୂଳ ଉଡ଼ାଦେଲା ବାତେ ସେ ରେଣୁ ପଡନ୍ତେ ।
୨ସ୍ଫୁଲିଙ୍ଗେ ଫୋଟକ ହେଲା ପଣି ଭେଦ ପୁଣି ଅନାଇଲା ସ୍ତନେ ।
ସେ ବାଳା । ଯେସନ ତମାଳକୁ ମେଘମାଳୀ ।
ପଡ଼ରଜ୍ଜୁ ଘଡଘଡ଼ି କଲା । ତାପ ନାଶେ ସେ ବଗକୁ ଗଲା । ୨୪ ।

---

ଉଦ୍ବେଗପର ଦଶିଲା । ସେ ସୁନ୍ଦରୀ ସ୍ୱଭାବରେ ସ୍ନେହମୟୀ ଅତଏବ ଗନ୍ତବ୍ୟତନ ପ୍ରକାଶକଲା । ପୁଣି ଉନ୍ମାଦନୀ ହେଲା । ୧କାତରା, ବଡ଼ୀ ୨ଉତ୍ତବଭ୍ରମା, ଉନ୍ମାଦନୀ ।

୨୧—ପୁଷ୍ପିତ ସ୍ୱାଦ ସ୍ଥଳରେ କପୋତପକ୍ଷୀର ଧ୍ୱନି ଶୁଣିବାରୁ ସେ କୃଶୋଦରୀ କେମା ଭୀତହୋଇ ଦୁଃଖ ପ୍ରକାଶ କହିଲା । ହେ ସଖି ଏତ କନ୍ଦର୍ପଦ୍ୱାରୀ, ଯେଉଁକି ଦୂବପରି ଶ୍ୟାମଳ ଶୋଭା ଧରିଅଛି । ସୁନାର ଲଗିଥ ଧଇତ ପୁଣି ଉଚଡାକରେ ମାତୁଛି । ୧ କୁଞ୍ଜମଣ୍ଡଳ ସ୍ଥାନୀୟଗଣ, ୨କୁହୁ,ଧ୍ୱନି, ୩ ଉଦ୍ବେଗ, ଭୟ, ୪ ପ୍ରତିହାରୀ ଦ୍ୱାରୀ, ୫ଦୂର୍ବା ଦୂବ ୬ ମହାରଜତଲଗ୍ନ, ସୁନା ଲଗିଥ ।

୨୨—ଯେହେତୁ କନ୍ଦର୍ପ (ଅନଙ୍ଗ) ଅଙ୍ଗରହିତ, ଅତଏବ ଦେଖାଯାଉ ନାହିଁ । ଆମ୍ର ଓ ନଅଳୀ ପ୍ରଭୃତି ଫୁଲ ତାର ବାଣ ଅଟେ । ସେ ବାଣସମୂହ ଧନୁରୁ ଖସିଲେ ମୁଁ ହେଜନ୍ତି, ଆଉ ପ୍ରାଣରହିବ କି ? ଅରେସଖି, ମୋ ଦେହ କୋମଳତାରେ ଶିରୀଷ ଫୁଲସଙ୍ଗେ ସମାନ । ଅଳ୍ପକେ ଗଳିଯିବ, କିପରି ସମ୍ଭାଳି ହେବ କହ । ୧ଚୂତ ଆମ୍ର, ୨ ଗୁଣ, ଧନୁଗୁଣ ୩ ଚ୍ୟୁତ, ସ୍ଖଳିତ ୪ଆବଳୀ, ସମୂହ ।

୨୩—ଏହି ସମୟରେ ଅଙ୍ଗରେ ଫୁଲ ପଡିବାରୁ କେମା ଚମକ ପଡ଼ି ମଲି ବୋଲି କହିଲା । ଭ୍ରମରପଙ୍କ୍ତି ଯୁକ୍ତ ପୁଷ୍ପିତ ପଲାଶ ସମୂହ ଦେଖିଲା । ଏତ ଧୂଆଁସହିତ ଅଗ୍ନି, ମୋ ବଗିଚା ଜାଳିଦେଲା । ମୁଁ ଅଉ କେଉଁଠାରେ କେଳି କରିବ ୧ସୁମନ, ଫୁଲ । ୨କିଂଶୁକ ପଲାଶ ବୃକ୍ଷ, ୩ମିଳିନ୍ଦମାଳା ଭ୍ରମର ସମୂହ ।

୨୪—ପବନରେ ସେ ପଲାଶ ପରାଗ ପଡ଼ିବାରୁ ବ୍ୟାକୁଳ ହୋଇ ଛାତିବସ୍ତ୍ର ଉଡ଼ାଦେଲା । ଏ ଅଗ୍ନିକଣାରେ ଫୋଟକା ହୋଇଗଲା କି ବୋଲି ପୁଣି ସ୍ତନକୁ ଚାହିଁଲା । ସେ ବାଳା ତମାଳ ବୃକ୍ଷକୁ ମେଘମାଳା ଭାବିଲା, କୋଇଲି ଡାକକୁ ଘଡ଼ଘଡ଼ି ବୋଲି ଭାବିଲା । ଏ ଅଗ୍ନି ତା ପଡ଼ିବାରୁ ସେ ଅନ୍ଧକୁ ଗଲା । ୧ ଦୁକୂଳ, ପାଟବସ୍ତ୍ର । ୨ସ୍ଫୁଲିଙ୍ଗ ଅଗ୍ନିକଣା, (ଫୁଲ) ଫୋଟକ, ଫୋଟକା ।

୧ବଙ୍କସେନ ତରୁ ତରୁଣୀ ଅନାଇ ତାହା ନାଥ ନାମ କହୁ ।
ବୋଲେ ଯେବେ ତୁମ୍ଭେ ସାକ୍ଷାତେ ମିଳିଲ ୨ଦମ୍ଭୋଳି ଭୟ ମୋ କାହିଁ ।
ସେ ଯୋଷା । ଭଳି କହୁବାରେ ମୃଦୁଭାଷା ।
ମିଳ ଶ୍ଳେଷ ହୋଇଅଛି ମିଶା । ସଙ୍ଗେ ଗୋଡ଼ାଇଛନ୍ତି ୩ବୟସ୍ୟା । ୨୫ ।
ଦେଖାଇ ଫୁଲ ମନ୍ଦାର ଭଣେ ମାର-କଣି-୧ଅଶୋକାକୁ ସଙ୍ଗି ।
୨ମଧୁ-ଶିରେ ଦେଇ ଜ୍ୱଳତ୩ହୁତସଲ୍ଲୀ ମୁଁ ହରିଣୀ ମୋତେ ଖୋଜ ।
ସେ ରସ । ସେଣୁ ନୃପସୁତ ଭଣେ ଭଣି ।
ବର-୪ଶାର୍ଦ୍ଦୂଳ ହେଲେଣି ଆସି । ପଲା ଧନୁ ଅଗ୍ନି ଥୋଇ ଘଷି । ୨୬ ।
ଭ୍ରୂଭଙ୍ଗିମା ଯୋଗଭଙ୍ଗିମାରେ ପ୍ରିୟସଙ୍ଗିମା ବଚେ ୧ଭାରତୀ ।
ରାଜା ତନୁଜା ଦୃଷ୍ଟରଜା ତୁ ଲଜ୍ଜାବତୀ ହୋଇ ଏକ ରୀତ ।
ରେ ମିତ । ମନ୍ତ୍ର ପୀରତି ହେଲେ ଗୁପତ ।
ତେବେ ବାଞ୍ଛିତ କାର୍ଯ୍ୟ ପ୍ରାପତ । ଜଣାଗଲେ ସର୍ବ ମହତ । ୨୭ ।
ସ୍ତନ ଜନମାଇ ଦେବାରୁ ସେ ସ୍ତନ ଅଚ୍ଛନ୍ନ କରେ ସୁନ୍ଦରୀ ।
ଅନାବୃତେ ଖୋଳ ବାସ ଯୋଡ଼ାଇଲେ କୁଚ ପୟୋଧର ପରି ।
ସେ ଯୋଷା । ତୁଟି କରାଇ ଅନନ୍ତ ଦଶା ।
ଦେଇ କୁମାରେ ଅନନ୍ତ ଆଶା । ଦୂର କରିଦେଲା ସେ କ୍ଷୁଧା ତୃଷା । ୨୮ ।

---

୨୫—ସେ ତରୁଣୀ ଅଗସ୍ତି ଦେଖି ତାହାର ନାମ (ଅଗସ୍ତି) ବୋଲି କହିଲା ଯେବେ ତୁମ୍ଭେ ନାଥ ମିଳିଲ ତାହା ହେଲେ ମୋର ଆଉ ବଜ୍ରଭୟ କାହିଁ ଅଛି । ସେ କଥାରେ ସଖୀମାନେ ଶ୍ଳେଷରେ କଥା ମିଶାଇଥିଲେ, ସଖୀମାନେ ସଙ୍ଗେ ଗୋଡ଼ାଇ ଥିଲେ । ୧ ବଙ୍କସେନତରୁ, ଅଗସ୍ତି ଗଛ ୨ ଦମ୍ଭୋଳି, ବଜ୍ର ୩ ବୟସ୍ୟା, ସଖୀ ।

୨୬—ସୁନ୍ଦରୀ ମନ୍ଦାରଫୁଲ ଦେଖାଇ କହେ । କନ୍ଦର୍ପ ଅଶୋକର ଅଗ୍ରଭାଗ ବସନ୍ତ ମୁଣ୍ଡରେ ଜଳୁଥିବା ଭ୍ରମର ଦେଇ ମୋତେ ଖୋଜୁଛି । ଯେହେତୁ ମୁଁ ହରିଣୀ (ସୁବର୍ଣ୍ଣପ୍ରତିମା) ସୁତରାଂ ମୃଗୀ ଅଟେ । ରହିଥିବାରୁ ରାଜପୁତ୍ର ତାହାକୁ ଗ୍ରହଣ କରେ ଦେଖାଇଲେ ତହୁଁ ସେ କହିଲା ବାର ଶାର୍ଦ୍ଦୂଳ ରାଜପୁତ୍ର ଆସିଲେଣି, ଯାରେ କନ୍ଦର୍ପ ତୁ ନାହିଁ ଓ ଧନୁ ଥୋଇଦେଇ ପଲା । ସେହି ଶିକାରରେ ଅଗ୍ନି ଜାଳିବା ପ୍ରସିଦ୍ଧଅଛି । ଏଠାରେ ମନ୍ଦାରଫୁଲକୁ ଜ୍ୱଳନ୍ତ ଭ୍ରମର ସଙ୍ଗେ ତୁଳନା କରାଯାଇ ଅଛି । ୧ଅଶୋକ, ଶିକାର, ୨ ମଧୁ, ବସନ୍ତ, ୩ ହୁତସଲ୍ଲୀ, ଭ୍ରମର ୪ ଶାର୍ଦ୍ଦୂଳ, ବ୍ୟାଘ୍ର ।

୨୭—ଭ୍ରୂଭଙ୍ଗୀ ନିପୁଣା ସେ ଯୋଗଭଙ୍ଗ କାରଣ ତେମାକୁ ପ୍ରିୟସଙ୍ଗିମା ବଚନ କହୁଛି । ହେ ସୁନ୍ଦରୀ ! ତୁ ରାଜକନ୍ୟା ପୁଣି ପ୍ରାପ୍ତ ବୟସ୍କା ହେଲୁଣି, ଅତଏବ ଲଜ୍ଜାବତୀ ହୋଇ ତୋର ଏହି ରୀତି ଦେଖାଯାଉଅଛି । ଅରେ ସଖି, ମନ୍ତ୍ର ଓ ପ୍ରୀତି ଦୁହେଁ ଯେବେ ଗୁପ୍ତ ହୁଅନ୍ତି । ତେବେ ବାଞ୍ଛିତକାର୍ଯ୍ୟ ପ୍ରାପ୍ତ ହୁଏ, ଜଣାଗଲେ ମହତ ସର୍ବ । ୧ ଭାରତୀ, ବଚନ, ୨ ଦୃଷ୍ଟରଜା, ରଜୋବତୀ ।

୨୮—ଏପରି ଭୟ ଜନ୍ମାଇ ଦେବାରୁ ସୁନ୍ଦରୀ ସେ ରୀତିରୁ ଯୋଡ଼ାଇଲା । କିନ୍ତୁ ତାହା ଅଣ ଆବୃତରେ ପ୍ରକାଶ ପାଉଥିଲା । ଯେପରି ଲୁଗାରେ ଯୋଡ଼ାଇଲେ ସୁଦ୍ଧା ଉଚ୍ଚସ୍ତନ ସ୍ତନ ପ୍ରକାଶହୁଏ । ସେ ସୁନ୍ଦରୀ ବଳିହଅବସ୍ଥା ହୋଇ ରାଜପୁତ୍ରଠାରେ ଅନନ୍ତ ଆଶାରଖି ଭୋକ ଓ ଶୋଷ ଛାଡ଼ିଦେଲା ।

କୁମାର ମାର ମାରଣେ ତାପୀ ହୋଇ କୁମାରୀ ଦର୍ଶନ ଘେନି ।
ପ୍ରତିକ୍ଷଣେ ଯେଣେ ଚାହିଁଲେ ଈକ୍ଷଣେ ଯେଣୁ ତା ପ୍ରସନ୍ନ ଦଶି ।
ସେ ସତ । ଘଣି ଧୃଷ୍ଟ ଭଣି ଭ୍ରମରଙ୍ଗ ।
ଆର ଛନ୍ଦେ ତା ହେବ ରଚିତ । ଚଉତିଶାରେ ଯମକ ଯୁକ୍ତ । ୨୯ ।
କହେ ଉପେନ୍ଦ୍ର ମୋ ପ୍ରଭୁ ଶ୍ରୀରାମ ବୈକୁଣ୍ଠନାଥ ସାକ୍ଷାତ ।
ଜାତ କଲେ କ୍ଷୀରାର୍ଣ୍ଣବୁଁ ସୁଧା ମୋର ଗୀରାର୍ଣ୍ଣବୁଁ ରସଗୀତ ।
ସେ ସତ । ସେ ବିବୁଧ ଏ ବୁଧ ରଞ୍ଜିତ ।
ଦୈତ୍ୟ ଖଳରେ ଅଧରଷିତ । ଯେ ଗ୍ରସିବ ହେବ ରାହୁ ମତ । ୩୦ ।

## ସପ୍ତଦଶ ଛାନ୍ଦ ।

ରାଗ କାଳୀ ।

୧କମଳଗଣେ କମଳ ଗଣେ ୨ମରୀଚିକାକୁ ଯଥା ।
କାମିନୀ- ରତ କାମୀ ନରତ ଦିଶେ ଦଶଦିଗନ୍ତ ତଥା । ୧ ।
କ୍ଷିତିରେ ଅପ କ୍ଷିତିରେ ଅଣ ତୋତେ ଏ ଦୃଷ୍ଟି ଦିଶେ ।
କ୍ଷଣ ରୁଚିର ୧କ୍ଷଣ-ରୁଚିର ପ୍ରାୟେ ଲୀନ କ ବିଶେ । ୨ ।

---

୨୯—କନ୍ଦର୍ପପୀଡ଼ା ଦେବାକୁ ରାଜକୁମାରପର ତପ୍ତ ହୋଇ ରାଜକନ୍ୟାର ଦର୍ଶନକୁ ଯୋଷି ହେଉଥିଲେ । ଯେଉଁଆଡେ ଚାହୁଁଥିଲେ ସେଆଡେ ସର୍ବଦା କେମାର ପ୍ରସନ୍ନତା ଅକ୍ଷିଅଗ୍ରରେ ଯେପରି ହେଉଥିବା ଦେଖାଯାଉଥିବ । ସେ ତାହା ସତ କବୃର ମନ ଭ୍ରମରେ ଧୃଷ୍ଟକଥା କହୁଥିଲେ । ଅଉଛନ୍ଦରେ ତାହା କଥିତ ହେବ । ସେ ଛନ୍ଦ ଯମକ ଯୁକ୍ତ ଚଉତିଶା ହେବ ।

୩୦—ଉପେନ୍ଦ୍ର ଭଞ୍ଜ କହୁ ଅଛନ୍ତି ସାକ୍ଷାତେ ବୈକୁଣ୍ଠ ନାଥ ରାମଚନ୍ଦ୍ର, କ୍ଷୀର ସମୁଦ୍ରରୁ ଅମୃତ ଜାତ କରାଇଥିଲେ ଓ ମୋ ବଚନ ସମୁଦ୍ରରୁ ରସଯୁକ୍ତ ଗୀତ ଜନ୍ମାଇ ଛନ୍ତି ଏହା ସତ୍ୟ ଅଟେ । ସେ ଅମୃତ ଦେବତାମାନଙ୍କୁ ରଞ୍ଜିତ କରିଥିଲା । କିନ୍ତୁ ଏ ପଣ୍ଡିତମାନଙ୍କୁ ରଞ୍ଜିତ କରୁଅଛନ୍ତି । ସେ ଅମୃତକୁ ଅସୁରମାନେ ଧର୍ଷଣ କରିପାରି ନ ଥିଲେ । ଏ ଗୀତକୁ ଖଳଲୋକମାନେ ଧରଷି ପାରୁନାହାନ୍ତି, କିନ୍ତୁ ଯେ ଏହାକୁ ଗ୍ରାସ ( ଦୋଷ ଦେବା ) କରିବ, ସେ ଅମୃତ ପିଉଥିବା ରାହୁପରି ଖଣ୍ଡିତ ହେବ ।

---

### ସପ୍ତଦଶ ଛାନ୍ଦ ।

୧—ଯେପରି ମୃଗମାନେ ମୃଗତୃଷ୍ଣାକୁ ଜଳବୋଲି ମନେ କରନ୍ତି । ସେପରି କାମୀ ରାଜପୁତ୍ର ସର୍ବଦା କାମିନୀ ଚିନ୍ତାରେ ରତ ହୋଇଥିବାରୁ ଭ୍ରମରେ ଚତୁର୍ଦ୍ଦିଗରେ ରାଜପୁତ୍ରୀ ଦେଖାଯାନ୍ତେ ତାହା ସତ୍ୟ ବୋଲି ମନେ କରୁଥିଲେ । ୧କମଳଗଣେ, ମୃଗମାନେ ଓ ଜଳ, [illegible], ୨ ମରୀଚିକା, ମୃଗତୃଷ୍ଣା ।

୨—ଏ ଭାବୁକଙ୍କ ଦୃଷ୍ଟିରେ, ସେହି ସୁନ୍ଦରୀ, ଏ କ୍ଷିତିରେ ମେଘ ଦୋଠାରେ ଅପ ଭୂ ଭୂମିରେ ଚାଲିଥିବା ଭୂ କ ଦେଖିଲେ ବିଜୁଳି ପ୍ରାୟ କ୍ଷଣମାତ୍ର ରୁଚିର (ସୁନ୍ଦରୀ) ଦେଖାପଡ଼ି ପୁଣି ଲୀନ ଯାଉଥାନ୍ତି ।
୧ କ୍ଷଣରୁଚ, ବିଜୁଳି ।

୧ଖର-କରଜା ୨ଖରକର-ଜ-ଖାର-କୁଞ୍ଚିତ-କେଶି ।
ଖଣ୍ଡ ପରଶୁ ୩ଖଣ୍ଡପରଶୁ-ପର-ଚାପକୁ ହସି । ୩ ।
ହରିତବାସୀ ହରିତବାସୀ ହୋଇ ନ-ଅସୁ ପାଶ ।
ହର ସୁମତ ହର ସୁମତ କଲଙ୍କୀ ଶଶୀ ଦେଖ । ୪ ।
୧ଗଜଗ୍ରୀ-ବର ଗଜଗ୍ରୀବ ବରନତମ୍ବା ଶମ୍ବାଧର ।
୨ଗଜଗ୍ରୀ-ବର ଗଜଗ୍ରୀ ବର ରୂପକୁ ମୁଁ ତୋହର । ୫ ।
ସାରସଦୃଶା ସାର ସଦୃଶା କାହିଁ ପାଇବା ଗୁଣେ ।
ସୁମନାବର ସୁମନାବରସୁତର ନ ଥିବ ଜଣେ । ୬ ।
ଘନକେଶିନ ଘନ ୧କେଶିନୀ-ସୂଦନ ସେବଥିଲ ।
୨ଘନ ରସରେ ଘନରସରେ ଗୃତକ ପ୍ରାୟ ହେଲି । ୭ ।
ଷଡ଼ିଲ ତନୁ ଷଡ଼ିଲ ତନୁ ପୁନଃପୁନଃ ମୁଁ ବୋଲି ।
ଷଡ଼ଜନକ ୧ଷଡ଼-ଜନକ-ବାହନ କଲେ ମଲି । ୮ ।
ନାଗସ୍ୱ-ପୁର ୧ନାଗ-ସ୍ୱପୁର ଗରବହାରୀ କଟି ।
୨ନତନୁ ମତେ ନ-ତନୁ ମତେ କରିବା ଅନର୍ଥ ଘୋଟି । ୯ ।

---

୩—ହେ ତୀକ୍ଷ୍ଣ ନଖସ୍ତ, ହେ ସମୁଜ୍ଜ୍ୱଳ ଲହରୀପର କୁଞ୍ଚିତକେଶି, ହସିକରି କରବାହାର କନ୍ଦର୍ପଚାପକୁ ଦେଖ । ୧ଖରକରଜା, ତୀକ୍ଷ୍ଣନଖା ଖରକରଜା, ସୂର୍ଯ୍ୟଜା—ଯମୁନା ନୀର, ଲହର ୩ଖଣ୍ଡପରଶୁ ଶିବ । ପର, ଶତ୍ରୁ, କନ୍ଦର୍ପ ।

୪—ହେ ହରିତବାସୀ (ନୀଳବସନା) ନୁ ହରିତବାସୀ ହୋଇ ଅର୍ଥାତ୍ ଦଶମାନଙ୍କରେ ରହିଲାପରି ବଶି ମୋ ପାଖକୁ ଆସୁନାହିଁ । ଏ ସୁମତ କଳଙ୍କୀ ଚନ୍ଦ୍ରକିରଣ ହାସ୍ୟ ମୋର ଚଳମନକୁ ହରଣ କରୁଅଛି ଅର୍ଥାତ୍ ଖଣ୍ଡନ କରୁଅଛି । ହର, କିରଣ ଓ ହରଣକରେ ।

୫—ହେ ଗୋଜଚନା ବର୍ଣ୍ଣଗୌର, ହେ ବର ନତମ୍ବୀ, ହେ ବିମ୍ବାଧର ଶିବ ଗୌରବର ପ୍ରକୃତଦର୍ପୀ ହେତୁରୁ ମୁଁ ତୋର ଅଟେ । ୧ଗୌରବର, ଗୋରଚନାଶ୍ରେଷ୍ଠ ଓ ଶିବ, ଗୌର, ପାର୍ବତୀବର ଇତ୍ୟାଦି ।

୬—ହେ ପଦ୍ମନେତ୍ରୀ, ଗୁଣରେ ତୋ ସଦୃଶ (ସମ) ଲକ୍ଷ୍ମୀଙ୍କୁ ପାଉନାହିଁ ପାଇବା, ଅର୍ଥାତ୍ ପାଇବା ନାହିଁ ଏ ସୁମନାବର (ସ୍ତ୍ରୀ ଶ୍ରେଷ୍ଠ) ତୋ ପରି ଜଣେ ଇନ୍ଦ୍ରପୁରେ ନ ଥିବ । ୧ସୁମନାବର ଦେବଶ୍ରେଷ୍ଠ ଇନ୍ଦ୍ର ।

୭—ହେ ଘନକେଶିନ, (ଜଳସାନ୍ଦ୍ରକେଶି) ମୁଁ କୃଷ୍ଣଙ୍କ ସେବା କରିଥିଲି । ଅତଏବ ମେଘକରେ ଚାତକ-ପରି ତୋ ନବଘନ ରସରେ ଆଶାକରି ରହିଲି । ୧କେଶିନୀସୂଦନ, କୃଷ୍ଣ । ଘନରସରେ, ନବଘନରସରେ ଓ ମେଘଜଳରେ ।

୮—ମୋର [ତନୁ] ଦେହ ସଢ଼ିଲା ବୋଲି ପୁନଃ ପୁନଃ କହୁଅଛି । ମୟୂର ନାଚର ଷଡ୍ଜସ୍ୱର ଶୁଣିକଲେ ଅର୍ଥାତ୍ ବୋବାଇଲେ ମୁଁ ମରି ମେଘକାଳ କରିବ ଉଦ୍ଦୀପନକରେ ୧ଷଡ଼ଜନକ କାର୍ତ୍ତିକେୟ ତାଙ୍କ ବାହନ ମୟୂର ।

୯—ହେ ନାଗସ୍ୱପୁର (ନାଗଲୀଳେଶ୍ୱ) ତୋର କଟି ସିଂହର ଗର୍ବହରଣ କରୁଅଛି । ଅତଏବ କନ୍ଦର୍ପ ମତହୋଇ ମୋତେ ବିନାଶ କରିବାକୁ ଘୋଟିଅଛି । ୧ ନାଗର ପୁର, ସିଂହର । ୨ନତନୁ, କନ୍ଦର୍ପ ଓ ବନ୍ଧୁ ।

୧ଶୁଭ୍ର-କରଣ ଶୁଭ୍ର କରଣ ପତନ ୨ସୁଧାସୁର ।
ଶମ୍ବନ କର ଶମ୍ବନ କରିବାରେ ମୁଁ ଦେଖ ଭୀରୁ । ୧୦ ।
୧ଚନ୍ଦ୍ରମା-ଭାନୁ ଚନ୍ଦ୍ରମା ୨ଭାନୁ ସମାନ ତାପୁଅଛି ।
୩ରତ୍ନଶୀଳା ତନ୍ୱଙ୍ଗେ ଶିଳା ହେବାର ନୋହେ କିଛି । ୧୧ ।
୧ବାସନ୍ତୀଆଲୀ ବାସନ୍ତୀଆଳୀ ପରି ଗୁଞ୍ଜିବ ତୋର ।
ବାଟେରେ ବର୍ତ୍ତିବାରେ ୨କବନ୍ଧ ହେବ ପଥିକ ବାଳ । ୧୨ ।
ଛନ୍ଦ ନ କର ଛନ୍ଦନ କର ଗଳାରେ ମୋର ।
ଛନ୍ଦା-ସୁମନ ଛନ୍ଦା ସୁମନତାପ କରିବ ଦୂର । ୧୩ ।
୧ଲକ୍ଷ୍ମୀ ୨ରସାଳ ଲକ୍ଷ୍ମୀ ରସାଳ ହୃଦରେ ଧରି ଧରୁ ।
୩ଲଳିତ-ଅଙ୍ଗି ଲଳିତ ଅଙ୍ଗୀକାର କଲି ଉରୁରୁ । ୧୪ ।
୧ଜୀବନ ଏକା ଜୀବ ନଥାନା ମୀନ କି ଧରି ପାରେ ।
୨ଜଗତୀ ମଣ୍ଡନ ଜଗତୀ-ମଣ୍ଡନା ତୁ ମୋ ସଙ୍ଗେ ବାଟେରେ । ୧୫ ।
ରସାଳଶି ରେ ରସାଳଶିରେ କରେ କୋକିଳ ଘୋଷ ।
୧ରତି-ରଞ୍ଜନ ରତି ରଞ୍ଜନସୁବେଣି ହୋଇ ତୋଷ । ୧୬ ।

---

୧୦—ଚନ୍ଦ୍ରର ଶୁଭ୍ରକରଣ ହେଉଥିବା ଚନ୍ଦ୍ରକିରଣ ଏବେ ମୁଁ ଶମ୍ବରକର ତୋର ସ୍ପର୍ଶ କରିବାକୁ ମୋ ସନ୍ତାପ ହେବ । ୧ଶୁଭ୍ର କିରଣ । ୨ ସୁଧାସୁର, ଚନ୍ଦ୍ରକିରଣ ଏର ।

୧୧—ଚନ୍ଦ୍ର କିରଣ ଓ କର୍ପୂର ସୂର୍ଯ୍ୟର ତାପ ଦେଉଅଛି । ତନ୍ୱଙ୍ଗରେ ସେସବୁ ଦେହିବା ତୁଏ । ହେ ରତ୍ନଶୀଳା ( ସୁନ୍ଦରୀ ) ଏଥରଣରେ ପ୍ରସ୍ତରର ନ୍ୟାୟ ହେବା କଷ୍ଟ ଭଲ ବୁଝେ ।
୧ଚନ୍ଦ୍ରମା, ଚନ୍ଦ୍ର ଓ କର୍ପୂର । ୨ଭାନୁ, କିରଣ ଓ ସୂର୍ଯ୍ୟ ।

୧୨—ହେ ବାସନ୍ତି ! ( ବସନ୍ତମୋହନ ) ମୁଁ ତୋହର ମାଧବୀପୁଷ୍ପସମୂହ ତୋର ଗୁଞ୍ଜିବ । ହେ ବାଳ ! ଏବେ କେଶପାଶ ମଣ୍ଡିବାକାର ପବନ ହେବ । ୧ବାସନ୍ତୀ ଅର୍ଥ, ମାଧବୀସମୂହ ଓ ବସନ୍ତମୋହନ ସଖୀ । ୨ କବରୀ, କେଶପାଶ ।

୧୩—ହେ ସୁନ୍ଦରୀ ! ଛନ୍ଦ (କପଟ) କରନାହିଁ । ମୋର ଗଳାରେ କର ଛନ୍ଦନ କର । ମୋର ଅଧିକ ମନର ତାପ ଛନ୍ଦା ହୋଇଥିବା ଫୁଲ ଦୂର କରିବ । ସୁମନ, ଫୁଲ ଓ ଉତ୍ତମ ମନ ।

୧୪—ହେ ଲଳିତଅଙ୍ଗି (କୋମଳାଙ୍ଗି) ତୁ ସୁନ୍ଦରଭାବେ ଅଙ୍ଗୀକାର କର ଲକ୍ଷ୍ମୀ ସଦୃଶ ରସାଳର ଦୁଇ ଅମ୍ବ ସ୍ତନକୁ ଧରି ଅର୍ଥାତ୍ ତାହାର ସ୍ପର୍ଶ ଦ୍ୱାରା କଠିନ ସ୍ତନକୁ ବାହୁରେ ଧାରଣ କରୁଅଛୁ ।
୧ଲକ୍ଷ୍ମୀ, ଦୁଇ ଓ ସ୍ତନ । ୨ରସାଳ, ସରସ ଓ ଅମ୍ବ । ୩ଲଳିତ, କୋମଳ ଓ ସୁନ୍ଦର ।

୧୫—ହେ ଦେବୀ ! ମୀନ ଜଳବିନେ ଅଳ୍ପ ଜୀବଧର ପାରେ କି ? । ହେ ଜଗତୀ ମଣ୍ଡନା ତୁ ମୋ ସହିତରେ ଏକବାର ଆଶ୍ରାକୁ ଯୋଗଦେବ । ୧ଜୀବନ, ଜଳ । ୨ଜଗତୀ, ଜଗତ୍ ଓ ଆଶ୍ରା ।

୧୬—ହେ ରସାଳସି ! କୋକିଳ ଅମ୍ବ ବୃକ୍ଷ ଉପରେ ଧ୍ୱନି କରୁଅଛି । ଏ ସମୟରେ ହେ ରତ୍ନ ସୁବେଣି ରତି କରି ରତିର ବେଳ ଉତ୍ତମ କର । ୧ରତି, ସୁରତ ଓ ରତିର ପତ୍ନୀ ।

ଝଲକାନ୍ତ ଝଲକା ୧ଝଷାଂସକୁ କର କ ମଙ୍କା ।
ଝଳସୁବର୍ଣ୍ଣା ଝଳ ସୁବର୍ଣ୍ଣାଚଳୀ ଘଣ୍ଟିକ ଚଳା । ୧୭ ।
୧ସୁତବିଳାସ ସୁତ ବିଳାସବନ୍ତ ହୋଇବା ୨ଯାମେ ।
ସୁବାକୁ ୩ରଙ୍ଗେ ସୁବାକୁରଙ୍ଗେ କର ନ ହେବା କାମେ ।୧୮।
୧ଞାଳ-ଲୋଚନ ଞାଳ-ଲୋଚନ-ଶୁଭ୍ର-ନୟନେ ମୋହନ୍ତୁ ।
୨ଞଗମ ବନ ଞଗମ-ବନବାସୀ କମ୍ପିବେ ସ୍ତୁତି । ୧୯ ।
ମନ୍ତ୍ରେଭଗତ ମତେ ଭଗତ ଦେଇ ନିର୍ଭୟ କର ।
୧ମାନସ ମାନ ସମାନ ନୋହିଲେ ମୁଁ ତୋହର ।୨୦।
ଟେକ-ଆନନ ଟେକ ଆନ ନ ବାଞ୍ଛା ପରାଣସଙ୍ଗ ।
ଟିକାଏ ରସ ଟୀକାଏ ରସଶାସ୍ତ୍ରରେ ପଣ ଭୁଙ୍ଗ । ୨୧ ।
ଘବବଙ୍କଣ ଘବ ବଟଶଲକ୍ଷଣା କରି ପର ।
ଭଞ୍ଜ ମଦନକୁ ଭଲ ମଦନକୁ ବ୍ରହ୍ମାଣୀ ଧ୍ୱାସେ ଧର । ୨୨ ।
ଠିକେ ଝରନ୍ତ ଠିକେ କ ରନ୍ତ ଜାତ ବର୍ତ୍ତୁଳ କୁଚେ ।
ଠକାରପର ଠକାର ପଉଦ୍ଧର ନ ପାରୁ ଦର୍ଶେ । ୨୩ ।

---

୧୭—ହେ ସୁନ୍ଦରୀ ! ତୁ ଝଲକା ଓ ବସ୍ତ୍ରଭୂଷଣକୁ କମନୀୟ ଭାବରେ ଝଳକାଉଅଛୁ । ( ଝଳସୁବର୍ଣ୍ଣ ) ହେ ଝଳକ କାନ୍ତି ଏବେ ଝଳକ ସୁବର୍ଣ୍ଣ ନିର୍ମିତ ଘଣ୍ଟି କି ବଜାଉ । ଅର୍ଥାତ୍ ତରଙ୍ଗୀତ ଗତି କର । ୧ଝଷାଂସ, କର୍ଣ୍ଣଭୂଷଣ ।

୧୮—ହେ ବିଳାସବତୀ ! ପ୍ରଭାତରେ ଜାତ ସୁତ ସଂଯୋଗରେ ସୁଖୀ ହେବା । ସୁବାକୁ (ମୋତେ) ସୁବାସୁବରଙ୍ଗ କାମବ୍ୟାଧି ଦାଉ । କୌତୁକରେ ବଞ୍ଚାଅ ନାହିଁ । ୧ସୁତ, ସୁତ ଓ ସୁତ୍ର । ୨ ଯାମେ, ପ୍ରଭାତେ । ୩ରଙ୍ଗେ, କୌତୁକରେ ।

୧୯—ହେ ସୁନ୍ଦରୀ ! ତୁ କଟାକ୍ଷ ଓ ଧବଳବର୍ଣ୍ଣଯୁକ୍ତ ଚକ୍ଷୁଦ୍ୱାରା ଶିବଙ୍କୁ ମୋହିତ କରୁଥାଉ । ନଗର ବନବାସୀ ଋଷିମାନେ ସ୍ୱତଃପ୍ରୋରଣାରେ ଓ ଭାବବଳରେ ସ୍ତୁତି କରନ୍ତି କାମ ଭୟରେ କମ୍ପିବେ । ୧ଞାଳନେତ୍ର ଶିବ । ୨ନଗର, ପୁର । ବନ, ଉପବନ ।

୨୦—ହେ ମନ୍ତ୍ରଭକ୍ତର ମୋ ଭକ୍ତି ଗ୍ରହଣ କରି ମୋତେ ନିର୍ଭୟ କର । ତୋହର ମୋ ମନର ସମ୍ମାନ ମାନ (ତେଜ) ସମାନ ନୋହିଲେ ମୁଁ ତୋହର ଅଟେ । ୧ମାନସମାନ, ମାନସିକ ସମ୍ମାନ ।

୨୧—ହେ ପ୍ରାଣସଙ୍ଗ ! ତୁ ମନର ଶ୍ରେଷ୍ଠ ମୁଖକୁ ଟେକ । ମୋର ଆନ ବାଞ୍ଛା (ବ) ନାହିଁ । ତୁ ପର ରସ ଶାସ୍ତ୍ରରେ ଟୀକାଏ ଅଛୁ । ଅର୍ଥାତ୍ ରସଜ୍ଞ ଅଛୁ । ତେବେ ମୋ ସହିତ ଟିକାଏ ରସ ।

୨୨—ହେ ଘବ ବୋଷ, ( ପ୍ରଣୟୀଙ୍କ ଶ୍ରେଷ୍ଠ ) ତୁ ବଟଶଲକ୍ଷଣା ଅଟୁ । ମନରେ ବିଚାର କର । ତୁ ଡାହାଣୀରେ ଭଞ୍ଜ ନାମକ ଅସୁର ସ୍ୱଭାବ ଓ ହାସ୍ୟରେ ମଦନଙ୍କୁ ଧାରଣ କରି ବର୍ତ୍ତି (ଜାଳିକ) ପରି ଭଲମଦନକୁ କରଥାଉ ।

୨୩—ତୋର କାନ୍ତି ଠିକେ ଅଛି । ଅର୍ଥାତ୍ ଶେଷ ଅଛି । ଉତ୍ତେଜନା ଠିକେ କି ? ତା ଅଙ୍ଗରେ ଚଳୁଥାଇ କି ? ତୋ କୁଚରେ ଠକାରପର ବର୍ତ୍ତୁଳତା ଜାତ ହୋଇଅଛି । ଏଣୁ ତୁ ଠକାମି କରୁ ସତ୍ତ୍ୱ ପାରୁନାହିଁ । ୧ଠକାର, ଠଅକ୍ଷର ଓ ଠକାମି ।

ବରବର୍ଣ୍ଣିନୀ ୧ତଙ୍କ ବର୍ଣ୍ଣନା କରୁଁ ଏ ଜଣା ତୋଟେ ।
ବାଣକୁ ମାରୁ ବାଣ-କୁମାରୀ-ଗତ-ଜନକ ମୋତେ । ୨୪ ।
ଡାଳିମ୍ବ-ବୀଜ ଡାଳିମ୍ବ-ବ-ଜ ଦନ୍ତକୁ ସମ ନୋହୁ ।
ତୋଲାପ୍ରତିମା ତୋଲାପ୍ରତିମା ଘଡ଼ିଙ୍କି ହେଲୁ ତୁହି । ୨୫ ।
ଫଳ କଳ୍ପଫଳ କଳ୍ପତରୁ ତୁଁ ଯା ମନାସି ।
ଫୁଟଇ ହୃଦୟ ପୁଟଇ ହୃଦୟ କର ରେ ମଦାଳସି । ୨୬ ।
ତାଳେ ବଗୃବ ତାଳେ ବଗ୍ର ଦର୍ଶନ ବେଳୁଁ କରେ ।
ଢଳଢଳ ମୁଁ ଢଳଢଳ ମୁଁ ନୟନେ ଅଶ୍ରୁ ଧରେଁ ।୨୭
୧ପଦେ ଶରଣ ପଦେ ଶରଣବତ୍ସଳା ବାଣୀ ଭଣ ।
୨ପୁଷ୍ପମାର୍ଗଣ ପୁଷ୍ପ-ମାର୍ଗଣ ଦଣ୍ଡୁ ରଖିଲ ପ୍ରାଣ । ୨୮ ।
ଅନ୍ତରଗତେ ଅନ୍ତର ଗତେ କି ଥିବ ପାଶେ ଆସି ।
୨ଅନାକୁଳରେ ଅନାକୂଳରେ ଭେଳା ଯାଉଛି ଭାସି । ୨୯ ।
କରୁଣ କରୁ କରୁଣ କରୁଣାକର ବୃକ୍ଷେ କି ଫଳେ ।
ନୂତନା ହୁଡ ୧ନୂତ୍ନ ନାହିଁତ ସମାନ ତୋହୋ ତୁଲେ ।୩୦।

---

୨୪—ଅତେ ବର ବର୍ଣ୍ଣନା ମୁଁ ଭଲ୍ଲୀ ବର୍ଣ୍ଣନା କରୁଁ ଏ ତୋପ୍ରତି ଜଣା ହେବ । ଏଣୁ ବାଣ କୁମାରୀ ଉଷା ତାରତେ, ଅନଙ୍ଗ, ତାଙ୍କ ଜନକ ଯେ କନ୍ଦର୍ପ ମୋତେ ବାଣରୁ ମାରୁଅଛି । ୧ବର, ଭଲ୍ଲୀ ।

୨୫—ଡାଳିମ୍ବ ମଞ୍ଜି ଓ ମୁକ୍ତା ତୋ ଦନ୍ତକୁ ସମାନ ନୁହନ୍ତି । ତୁମେ ତୋଳା ପ୍ରତିମାକୁ ଘଡ଼ଣ ଦେଲ ନଳେ ତୋଳା ପ୍ରତିମା ହେଲୁଣି, ଅର୍ଥାତ୍ ସବୁଦା ଦେଖାଯାଉଅଛୁ । ଡାଳିମ୍ବ ବୀଜ, ଡାଳିମ୍ବମଞ୍ଜି । ଶାମୁକ ଜାତ ମୁକ୍ତା ।

୨୬—ହେ ମଦାଳସି ତୁ କଳ୍ପତରୁ ଅଟୁ । ମୁଁ ଯାହା ମନାସି ଅଛି । ସେ କଳ୍ପନା ଫଳକୁ ତୁ (ପ୍ରକାଶକର) ମୋର ହୃଦୟ ଫାଟୁଅଛି । ତୋ ହୃଦୟର (କୁଚେ) ପ୍ରକାଶକୁ କର ।

୨୭—ମୁଁ ଦର୍ଶନ ବେଳୁଁ କେବଳ ତୋତେ ବଗ୍ର କରେ (ଭାବୁଅଛି) ତୁ ଅତେ ମୋ ପ୍ରତି ବଗ୍ର କର । ତୋ ଅଭାବରେ ମୁଁ ଢଳଢଳ ହେଉଅଛି । ଅକ୍ଷିରେ ଲୁହ ଢଳଢଳ କରି ଧରୁଛି । ୧ତାଳେ, କେବଳ ଓ ଅତେ ।

୨୮—ହେ ଶରଣ ବତ୍ସଳା । ମୁଁ ତୋ ପାଦେ ଶରଣ ଗଲି । କନ୍ଦର୍ପର ଫୁଲଶର ଦଣ୍ଡରୁ ତୁମ୍ଭ ପ୍ରାଣ ରଖିଲ ପଦେ କଥା କହ । ୧ପଦ, ପାଦରେ ଓ ଏକପଦ । ୨ପୁଷ୍ପ ମାର୍ଗଣ, କନ୍ଦର୍ପ ଓ ଫୁଲଶର ।

୨୯—ତୁ ପାଶେ ଆସି ଅନ୍ତର୍ଗତରେ କ ଥିବ ଅନ୍ତର ହୋଇପାରେ ମୋର ଭେଳା ଭାସି ଯାଉଅଛି । ତୁ କୂଳରେ ରହି ଅକୂଳ ନ ହୋଇ ଥିବାଠ । ୧ଅନ୍ତର ଗତେ, ଅନ୍ତର ହୋଇପାରେ । ୨ଅନା କୂଳରେ, ଅକୂଳ ହୋଇ ।

୩୦—କରୁଣାର ବୃକ୍ଷରେ ନାନ୍ଦଣାଫଳ ଫଳେ କି ? ଅର୍ଥାତ୍ ଫଳେନାହିଁ । ତେବେ ତୁ କରୁଣା ବୃକ୍ଷ ମୋତେ କାହିଁକି କରୁଣ କରୁଅଛୁ । ଅତେ ନୂତନା, ତୁ ମୋଠାରେ ହୁଡ ଅଟୁ । ତୋ ତୁଲେ ସମାନ ହେବାକୁ ଅନ୍ୟ କେହି ପ୍ରଶଂସିତ ନାହିଁ । ୧ନୂତ ପ୍ରଶଂସିତ ।

୧ତାରକ ମଣି ତାରକ-ମଣି-ହାସୀଙ୍କ ମୋ ଭରସା ।
୨ତାର ୩ତଡ଼ଗନ୍ତୁଁ ତାର ତରଳନ୍ତୁ ଅଧିକ ହେବୁ ଯୋଷା । ୩୧ ।
ଧନଞ୍ଜୟ ଧନ ଞ୍ଜୟ ଯେବେ ମୁଁ ନ ପାଇବି ।
ଧନ ରସାରେ ଧନୀର ସାରେ କେମନ୍ତ ବୋଲାଇବି ।୩୨।
ଥରେ ସହ ତ ଥରେ ସନ୍ତତ ତାପ-ଜ୍ୱରକୁ ନାଶ ।
୧ଧ୍ୱଗସାର ଯେ ଧ୍ୱଗ ସାର ଯେମନ୍ତ କରିବା ଯଶ । ୩୩ ।
ଘନ ବରଣ୍ଡେ ଘନ ବରଷ୍ଟି ହେବାରୁ ଯୁଗ ପ୍ରାୟେ ।
ଦାଶରଥିର ଦାସର ଥିର ଭକ୍ତି ଉପେନ୍ଦ୍ର ଧ୍ୟାୟେ । ୩୪ ।



## ଅଷ୍ଟାଦଶ ଛାନ୍ଦ ।

(ଗ୍ରୀଷ୍ମକାଳ ଓ ସୁନ୍ଦରୀର ବିରହ ବର୍ଣ୍ଣନା)

ରାଗ ରାମକେରୀ ।

ଶୁଣ ହେ ସାଧବ ୧ମାଧବ ଶେଷେ ଝିଲିକା କନ୍ତ ।
୨ଏ ଗ୍ରୀଷ୍ମଋତୁ ବିଷମ ସମ ନୁହନ୍ତି କେହି । ୧ ।

---

୩୧—ହେ ଯୋଷା ? ମୁଁ ତୋ ଉଜ୍ଜ୍ୱଳ କର୍ଣ୍ଣବୋଳ ମନେ କରୁଛି । ତାର ହାସିବ ( ତୋତେ ) ମୋର ଭରସା ଅଛି । ନୃତ୍ୟରୁ ଉଜ୍ଜ୍ୱଳ କର । ଉଜ୍ଜ୍ୱଳତାର ମଧ୍ୟ ମଣିଠାରୁ ଅଧିକ ଚିହ୍ନ ଭୂଷଣ ହେବୁ । ୧ତାରକମଣି, ଉଜ୍ଜ୍ୱଳ ବର୍ଣ୍ଣ ମଣ୍ଡନରେ ଓ ତନ୍ତୁ । ୨ତାର, ଉଜ୍ଜ୍ୱଳ ବଳ ଓ ଉତ୍ତମ । ୩ତଡ଼ଗନ୍ତୁ, ନୃତ୍ୟରୁ ଓ ହାର ମଧ୍ୟମଣିରୁ ।

୩୨—ହେ ଧନ ତୁ ମୋର ଧନବ୍ରଣି ନଷ୍ଟେ । ଯେବେ ତୋତେ ନ ପାଇବି, ହେ ଧନ । ପୃଥିବୀରେ ଧନୀମାନଙ୍କ ମଧ୍ୟରେ ସାର କୋଲି କପରି ବୋଲାଇବି ।

୩୩—ହେ ସହ ମୁଁ ଥରେ ତୁ ଥରେ ମୋ ସନ୍ତତ ହୋଇ କାମତାପ ଜ୍ୱରକୁ ନାଶ କର । ହେ ଧୀର ଶ୍ରେଷ୍ଠ ; ଯେ ପୃଥ୍ୱୀ ଠାର ଯଶ, ତାହା କପରି କରିବା । ୧ଧ୍ୱଗ ସାର, ଧୀର ଶ୍ରେଷ୍ଠ ଓ ପୃଥ୍ୱୀରେ ଉତ୍କୃଷ୍ଟ ।

୩୪—ଆର ମୁଁ ଘନ ବଚନ ହେବାରୁଙ୍କ ଦାନବ ଯୁଗପର ଲାଗୁଛି । ଉପେନ୍ଦ୍ରଭଞ୍ଜ ରାମଚନ୍ଦ୍ରଙ୍କର ଦାସର ସ୍ଥିର ଭକ୍ତି ହୋଇ ଏ ଧ୍ୟାନ କରୁଅଛନ୍ତି ।



## ଅଷ୍ଟାଦଶ ଛାନ୍ଦ ।

୧—ଅହେ ସାଧୁଜନମାନେ ଶୁଣ । ବସନ୍ତକାଳ ଶେଷରେ ଝିଲ୍ଲୀର ଶବ୍ଦ କରିବାହାସ କରୁଅଛି କି ? ଏ ଗ୍ରୀଷ୍ମଋତୁ ବଡ଼ ଭୟଂକର ଅଟେ । ଅନ୍ୟ କୌଣସି ଋତୁ ଏହା ସଙ୍ଗେ ସମାନ ନୁହେଁ । ୧ମାଧବ, ବସନ୍ତ । ୨ଝିଲିକା, ଝିଲ୍ଲୀର ।

ସତ ଏ ଶରଣ ମାଙ୍କକୁ ଜାତ ¹ଗାତ୍ରରୁ ସ୍ୱେଦ ।
²ଅର୍କ ବୃହଦ୍ଭାନୁ ସ୍ୱା ଯୋଗୁଁ ଜଳେ ତେଜସ୍ୱୀ ବାଦ ।୨।
ସ୍ୱହରୁ ପ୍ରକାଶ ଆକାଶେ ପ୍ରଭାକର ଦିବସେ ।
ଜଳେ ¹କୃଶାନୁ ସାନୁମାନଙ୍କରେ ଅଶେଷେ ।୩।
ଧରଣୀ ¹ଧରଣିଧୂଳିଙ୍କ କଲା ତପତ ତହିଁ ।
ପଥିକ ପଦ ଦ୍ୱିପଦଙ୍କୁ ପଦପଦକେ ଦେଇ ।୪।
ତପ୍ତ କାଳ କଲା ଭଗ୍ନାଳ ଖଳା ମାର୍ଗକୁ ସେହିଂ ।
ସକଳ ମୃଗରେ ଚଞ୍ଚଳ ଅନ୍ତ୍ୟବରତେ ଝାଇ ।୫।
ଶୀତଳ ସଲିଳେ ଅନଳେ ସଦା ରହି ସେ ଥିଲ ।
ସୁର ଦୁରନ୍ତ ¹ଅର୍ଚ୍ଚି ରୂପ ତତ୍ତ୍ୱ ପ୍ରତାପେ କଲ ।୬।
ସେ ଚନ୍ଦନେ ଚନ୍ଦ୍ରସଦନେ ଚନ୍ଦ୍ର ¹ଚନ୍ଦ୍ରେ ବଞ୍ଚିତ ।
ଜନରଞ୍ଜନକୁ ରଜନୀଦିନେ କେତେ ରଚିତ ।୭।
¹ନଳିନବନ୍ଧୁ ସେ ମଳିନ କରି ପ୍ଲୋଷଣକୁ କଲେ ।
ଜ୍ୱଳନ ବଂଶ-କଳୀ ଗ୍ରନ୍ଥି-ଗୁଚ୍ଛ ପୂର୍ଣ୍ଣଙ୍କ ଷ୍ଟଣ୍ଡେ ।୮।

---

୨—ଏ କଥା ସତ କି, ଏ ରତ୍ନ ସ୍ୱର୍ଣ୍ଣବର୍ଣ୍ଣ ମାନେ ଦେହରୁ ଝାଳ ଜାତ ହୁଏ । ଯାହା ହେତୁରୁ ସୂର୍ଯ୍ୟ ଓ ଅଗ୍ନି ଦୁହେଁ ପ୍ରତ୍ୟେକେ ମୁଁ ତେଜସ୍ୱୀ ବୋଲି ବିବାଦ କରନ୍ତି । ଅର୍ଥାତ୍ ଦୁହେଁ ତେଜସ୍ୱୀ ନୁହନ୍ତି । ¹ଗାତ୍ରରୁ ସ୍ୱେଦ, ଦେହରୁ ଝାଳ । ²ଅର୍କ ବୃହଦ୍ଭାନୁ, ସୂର୍ଯ୍ୟ ଅଗ୍ନି ।

୩—ସୂର୍ଯ୍ୟ ଦିନରେ ଆକାଶରେ ନିଜ ପ୍ରଭା ପ୍ରକାଶ କରେ । ଅଗ୍ନି ପର୍ବତମାନଙ୍କର ଅଗ୍ରରେ ଜଳୁଥାଏ । ¹କୃଶାନୁ, ଅଗ୍ନି । ସାନୁମାନ୍, ପର୍ବତ । ଅନଳ, ଦାବାଗ୍ନି ।

୪—ସେ ଋତୁରେ ପୃଥ୍ବୀରେ ଥିବା ବାୟୁ ଧୂଳି ତପ୍ତ କଲା । ପ୍ରଚଣ୍ଡରେ ବାଟୋଇମାନଙ୍କର ପାଦକୁ ଦଗ୍ଧ ଦେଲା । ¹ଧରଣି ବାତ ।

୫—ସେ ବାୟୁ ଗତ, ଏ ଗ୍ରୀଷ୍ମକାଳ ଶୀଘ୍ର ଯାଉ ବୋଲି ଦେଖ । ସବୁଠା ମୃଗମାନଙ୍କୁ ଚଞ୍ଚଳ କରୁଥିଲା ।

୬—ଜଳରେ ଓ ପବନରେ ଯେଉଁ ଶୀତଳ ଥିଲା । ଦୁଃସହ ସୂର୍ଯ୍ୟ କିରଣ ଓ ଅଗ୍ନିଶିଖା ସେ ଦୁହିଙ୍କଠାରୁ ସେ ଶୀତଳତାକୁ ନିଜ ପ୍ରତାପରେ ଦୂରକଲା । ¹ଅର୍ଚ୍ଚି, ଅଗ୍ନିଜ୍ୱାଳା ରୂପ, କିରଣ ।

୭—ସେ ଶୀତଳତା ଚନ୍ଦନଠାରେ ଓ ଚନ୍ଦ୍ରଶାଳା ସ୍ୱଚ୍ଛତେ ଏବଂ ଚନ୍ଦ୍ରକଠାରୁ କର୍ପୂରରେ ରହି ଦିବସ ଏବ ଦିବାସ୍ୱପ୍ନରେ କେତେ ପ୍ରକାର ଲୋକମାନଙ୍କର ସନ୍ତୋଷ ବିଧାନ କଲା । ¹ଚନ୍ଦ୍ର ଚନ୍ଦ୍ର ଓ କର୍ପୂର ।

୮—ସୂର୍ଯ୍ୟ କିରଣଦ୍ୱାରା ଅଗ୍ନିକୁ ମଳିନ କରିବାରୁ ଉଷ୍ଣବଶରୁ ଅଗ୍ନି ବାଉଁଶରୂପକ ବନ୍ଧୁଘରେ ଗଣ୍ଠି ରୂପକ ଗୃହରୁ ପ୍ରବେଶକରି ପୂର୍ଣ୍ଣହେଲା । ଅଗ୍ନି ସର୍ବଦା ବାଉଁଶ ବଣରେ ବାଉଁଶଗଣ୍ଠି ଫୁଟିଲା । ¹ନଳିନ-ବନ୍ଧୁ, ସୂର୍ଯ୍ୟ ।

ମନ୍ଦ ଉଠନ୍ତ ମିଶି [୧]ଦ୍ୱନ୍ଦ୍ୱ ଦ୍ୱନ୍ଦ୍ୱ ମନ୍ଦ କରୁଛ ।
ଅହେ [୨]ଦ୍ୱିଜବନ୍ଧୁ କି ବର୍ଣ୍ଣି ବସୁଧାକୁ ଦହୁଛ । ୯ ।
କି କଦର୍ଯ୍ୟ କାଳ ଉଦୟ ଏହି ଅସ୍ତଗୀବର୍ଣ୍ଣି ।
ଉପସ୍ଥିତେ ଜଳେ ରସନା ଖ୍ୟାତ ବହୁତ ପଶୁ । ୧୦ ।
ଶଙ୍କାରେ ପଙ୍କରେ ଅଙ୍ଗକୁ ଲୋଟାଇଲେ ମହିଷ ।
ଘୂମିତ ଆତଙ୍କେ ପତଙ୍ଗେ ପିଇ ଖର୍ଜ୍ଜୁରରସ । ୧୧ ।
ଏଣୁ ଜୀବକୁଳ ଆକୁଳ ହେଲେ [୧]ସଜ୍ୱର ବଶ ।
ତେଣୁ ଦାହ ତୃଷ୍ଣା ଜନିତ ଦୈନ୍ୟ ଭ୍ରମ ମାନସ । ୧୨ ।
ଏ ବାରି ଭ୍ରମରେ ଚମରୀ ମରୀଚିକାକୁ ଧାଇ ।
ତା ଭ୍ରମର ପାଞ୍ଚି [୧]ହଂସ-ଜା ଘାଟ ହଂସ ଗୋଡ଼ାଇ । ୧୩ ।
ଶୁକଚଞ୍ଚୁ ଚମ୍ପୁ କିଂଶୁକକଳା ଭ୍ରମ ଭ୍ରମରେ ।
ସେ ପଙ୍କିଲ ଜଳଟୋପାଏ ଢାଳ ମୁଖ ବସ୍ତାରେ । ୧୪ ।
[୧]କେକାପୁଚ୍ଛ ତଳେ [୨]ତାପିଞ୍ଛ ଭ୍ରାନ୍ତି ବଶରେ ଅହି ।
ଖୋଜି ଆସି ବକ ବୁଝି ତା [୩]ଅଣୀବିଷରେ ରହି । ୧୫ ।

---

୯—ଅହେ ସୂର୍ଯ୍ୟ ଓ ଅଗ୍ନି ତୁମ୍ଭେ ? ତୁମ୍ଭେ ଦୁଇମିଶି କି କାରଣରୁ ମନ୍ଦ କଳହ ଲଗାଇଛ ଏବଂ ପୃଥିବୀକୁ ପୋଡ଼ିପକାଉଛ । ୧ଦ୍ୱନ୍ଦ୍ୱ, ଯୁଗଳ ଓ କଳହ । ୨ଦ୍ୱିଜବନ୍ଧୁ, ସୂର୍ଯ୍ୟ ଓ ଅଗ୍ନି ।

୧୦—ଜିଭର ପ୍ରକୃତ ଅନେକ ପଶୁ ଓହୋ କେବେ ନଷ୍ଟ ହେବାର ଉପସ୍ଥିତ ହେବ ବୋଲି ଅସ୍ଥିର ହେବା ହେତୁରୁ ଜିଭବାହାରି ପକାଇଲେ କି ? କିନ୍ତୁ ତାହା ଜଳସ୍ପର୍ଶ ହେବାରୁ ହୋଇଥାଏ ।

୧୧—ମହିଷମାନେ ଶଙ୍କାରେ ନିଜ ଶରୀରକୁ ଲୋଟାଇଲେ । ପକ୍ଷୀମାନେ ତୃଷାଆତଙ୍କରେ ଖଜୁରି ରସ ପିଇ ଘୁମାଇଲେ ।

୧୨—ଏହି ହେତୁରୁ ଜୀବମାନେ ଜ୍ୱରର ଅଧୀନହେବାରୁ ଅକୁଳହେଲେ । ସେହି ହେତୁରୁ ସନ୍ତାପ ଦାହତୃଷା ଓ ମନୋଭ୍ରମ ଜାତହେଲା । ଶୀତ ସନ୍ତାପକୁ ଜ୍ୱର ବୋଲି ବର୍ଣ୍ଣନା କରାଯାଉଅଛି । ୧ ସଜ୍ୱର, ସନ୍ତାପ ଜ୍ୱର ।

୧୩—ଚମରୀ ମୃଗମାନେ ମୃଗତୃଷ୍ଣାକୁ ଏ ଜଳବୋଲି ଦଉଡ଼ି ଧାଇଁଲେ । ହଂସମାନେ ଚମରୀମାନଙ୍କ ଭ୍ରମରକୁ ଯମୁନାଜଳ ବୋଲି ଗୋଡ଼ାଇଲେ । ୧ହଂସଜା ସୁତା, ସୂର୍ଯ୍ୟ ତନୟା ଯମୁନାର ଜଳ ।

୧୪—ଭ୍ରମର ପଲାଶକଢ଼ି ଭ୍ରମରେ ଶୁଆଥଣ୍ଟକୁ ଚୁମ୍ବନ କରନ୍ତେ ସେ ଶୁଆ ସେ ଭ୍ରମରକୁ ପଙ୍କୁଆ ଜଳ ଛୋପା ଏ କହ୍ମର ମୁଖ ବସ୍ତାରକଲା ।

୧୫—ସର୍ପ ତମାଳ ଗଛବୋଲି କେତେକ ମୟୂରପୁଚ୍ଛତଳେ ପଶି ଶୁଅନ୍ତେ ସେ ସାପଠାରେ ସେ ମୟୂରର ଏ ମୃଣାଳ ବୋଲି ଭୁଲିହେଲେ । ୧କେକୀ, ମୟୂର । ୨ତାପିଞ୍ଛ, ତମାଳ । ୩ଅଣୀବିଷ, ଶାଳ ବଣ, ମୃଣାଳ ।

୧ଦଣ୍ଡରେ ଶୋଭନ୍ତି କେଶସ୍ତ ସୁରସରିତ ସର ।
ବାର ବାର ସ୍ପୃଷ୍ଟ କ୍ଷାଳିବା କି ଲହରୀ ବନ୍ଧୁର । ୧୬ ।
କଣ୍ଠ ଅଣ କରି ଅସକ୍ରେ ଶୃଙ୍ଗୁ ସେ ଘନ ସ୍ତନ ।
୧ଦାନଜଳ ଦାନ ଜଳ କି ଦନ୍ତ ବକାଳୀ ଝଳ । ୧୭ ।
ନଭରଙ୍ଗକାନ୍ତି ୧ସାରଙ୍ଗ ଅଧୋଗତ କଚ୍ଛନ୍ତ ।
୨ତପ ଖ୍ୟାତଠାରେ ବସ୍ଥାନ ହଂସା ଉଦିତ ହୋଇ । ୧୮ ।
ଏମନ୍ତ କାଳରେ ମାରଜାନନ୍ଦୀ ନରବରଜା ।
ପଲଙ୍କେ ପଲଙ୍କେ ନ ରହି କଲା ସେ ମହୀଶଯ୍ୟା । ୧୯ ।
ଦେଖି ମାରଜାକ୍ଷୀ ସ୍ୱିତକ କାଦମ୍ବିନୀ ବାଣୀଜା ।
ଶଚୀକଳା ସହ ଝକଲା କରି ଲୋଚକ ବ୍ରତଜ୍ୟା । ୨୦ ।
ସ୍ତନ୍ଧଳୀ ପ୍ରଥମା ଛଳଳୀ ନେବା ପଙ୍କଜଶେଜେ ।
ଅବନୀଙ୍କ ଶିଷ୍ଟାଙ୍ଗୀ ପଦ୍ମବାସୀ ସବ୍ରତେଜେ । ୨୧ ।
ହୁଙ୍କତି ତନୁକୁ ଲୋକନ କରି ଦ୍ୱିତାୟ୍ୟା ବୋଲେ ।
ହେମପିତୁଳା ତୁଳା ହେଲ ଜାନ୍‌ବର୍ତ୍ତୁଳା ଭୁଲେ । ୨୨ ।
ଦେଖୁଁ ଦେଖୁଁ ଉଜେ ସ୍ୱବର୍ଣ୍ଣ ବର୍ଣ୍ଣଇ ହେ ଅପର୍ଣ୍ଣା ।
ଏ ଶୋଭାସଦନ ମଦନ ସୁଧା ଲେପଇ ପର୍ଣ୍ଣା । ୨୩ ।

---

୧୬—ପର୍ବତ କନ୍ଦରରେ ଶୋଭୁଥିବା ସ୍ତନ ଶୃଙ୍ଗତା ହେତୁରୁ ଗଙ୍ଗାତୁଲ୍ୟ ଦେଖା ଯାଉଥିଲା । ଏବଂ ତାର ବାରମ୍ବାର ସଙ୍କୁଚ ଶ୍ୱଳନକରିବା ଗଙ୍ଗାଲହରୀ ଖେଳିବାପରି ଜଣୁଥିଲା । ୧ ଦରୀ କନ୍ଦର ।
୧୭—ହାତୀ ଗଙ୍ଗାଜଳ ଅଧରେ ଦନ୍ତଶୃଙ୍ଗକୁ ଅସକ୍ରେ ଯେ ସ୍ତନ ତାକୁ ନେଇଯିବାଲି ଓ ତା ମଦଜଳକୁ ବର୍ଣ୍ଣପାଣି ବୋଲି ଏବଂ ତା ଦନ୍ତକୁ ବକପଙ୍କ୍ତି ଶୋଭାବୋଲି ଭାବନ୍ତ । ୧ଦାନଜଳ, ମଦଜଳ ।
୧୮—ଆକାଶରେ ଶୋଭା କରୁଥିବା ତାରକ ନକ୍ଷତ୍ରରୂପେ ମେଘ ଛନ୍ନକରି ଅଧୋଗତ କରିବାକୁ ଉଚ୍ଚକଲେ । ତପସ୍ୟା ଖ୍ୟାତହେବା ସ୍ଥାନରେ ହଂସା ବସ୍ଥାନହେବା କାରଣ ଅଛି । ଏଣୁ ଉପକାର ଏଥିରେ ସ୍ୱେଚ୍ଛାରେ ହେବ । ୧ସାରଙ୍ଗ, ତାରକ । ୨ତପ, ତପସ୍ୟା ଓ ଗ୍ରୀଷ୍ମ ।
୧୯—ଏ ସମୟରେ ପଦ୍ମାକ୍ଷୀ ସେ ରାଜକନ୍ୟା ପଲଙ୍କମାତ୍ର ପଲଙ୍କରେ ରହି ନ ପାରି ଭୂମି ଶଯ୍ୟାକଲା ।
୨୦—କାଦମ୍ବିନୀ ଓ ବାଣୀଜା ସଖୀ ଶଚୀକଳା ସହିତ ପଦ୍ମାକ୍ଷୀ ଜେମାର ଏ ରୀତିକୁ ଦେଖି ରୋଦନ କ୍ୟାଟକରି ବ୍ୟସ୍ତହେଲେ ।
୨୧—ପ୍ରଥମା କାଦମ୍ବିନୀ ଜାଣିଲେ ଏବଂ ଛଳଳରେ କହନ୍ତ । ଏ ଶିଶୁଙ୍କର କୋମଳାଙ୍ଗୀ ପଦ୍ମଶଯ୍ୟା ଜେମା ନଷ୍ଟେ ପୃଥ୍ୱୀରେ ଶ୍ରୀ ଅଟେ । ସ୍ୱଭାବରେ ପଦ୍ମବାସିନୀ ଲକ୍ଷ୍ମୀହେବ । ଅତଏବ ଏହାକୁ ପଦ୍ମପତ୍ର ଶେଯକୁ ନେବା ଉଚିତ ଅଟେ ।
୨୨—ଦ୍ୱିତୀୟା ବାଣୀଜା ଜେମାର ମୂର୍ତ୍ତିର ଶରୀରକୁ ଦେଖି କହିଲା । ଏ ଜାନୁ ବର୍ତ୍ତୁଳା ସହିତ ଏବେ ସ୍ୱର୍ଣ୍ଣ ପ୍ରତିମା ସମାନ ହେଲା । ୧ଠାରେ ଭ୍ରମ ।
୨୩—ରହୁଁ ରହୁଁ ଜେମା ଦବର୍ଣ୍ଣତାକୁ ଭଜିବାକୁ ଅର୍ଥାତ ଦରହରେ ପାଣ୍ଡୁର ବର୍ଣ୍ଣହେବାକୁ ଅପର ଶଚୀକଳା ବର୍ଣ୍ଣନକଲା । ଏ ଜେମା ଶୋଭାର ଗୃହ ଅଟନ୍ତି । ଅତଏବ କନ୍ଦର୍ପ ଚୂନ ଲଗାଉଛି କି ? ଏଠାରେ ବୈବର୍ଣ୍ଣ୍ୟ ।

ସ୍ଥଳକଜାଳକ ଶୃଙ୍ଗେ ଯେ ଅନ୍ୟା କହିଲା ବେଗେ ।
ଚୂରଚକକରୁ ତରୁଣୀ ପୁଷ୍ପାଙ୍କୁର ସର୍ବାଙ୍ଗେ । ୨୪ ।
ମଧ୍ୟା ଭାଷେ ସତ ଉତ୍ପନ୍ନ କଉସ୍ତୁଭରେ ଥର ।
ଶୋଭାକର କର ଅଧର ନବପଲ୍ଲବ ପର । ୨୫ ।
ଅନ୍ୟା ବୋଲେ ଜାତ ବରଜ-ଜାତବେଦା ସଙ୍ଗତେ ।
ଜଳେ ପ୍ରଜ୍ୱଳ ଅଦ୍ରିଭାବୁଁ ଜଳେ ପୂର୍ଣ୍ଣ ତା ଏତେ । ୨୬ ।
ନୋହୁ ନବାର ନେହବାର ଉକ୍ତି ପ୍ରଥମା କରେ ।
ମାଳାରେ ମିଳତ ମିଳନ୍ଦ ମକରନ୍ଦ ଉଦ୍ଧାରେ । ୨୭ ।
ବଚନ କରନ୍ତେ ରଚନ ଅଧଧ ଦ୍ୱିତୀୟା ଭାଷେ ।
କଳକଣ୍ଠ କଣ୍ଠ ଭଳନ୍ତି ଶୋକ-ଘନ ପ୍ରକାଶେ । ୨୮ ।
ଜ୍ଞାନବଶ୍ଚିନ ବନ୍ଧବଶେ ତାହା ତୃତୀୟା ଶୃଙ୍ଗେ ।
ଫୁଙ୍କିଲା ଶୁକ୍ତିକ ଓ କଲା କନ୍ତୁ ଚେତନା ବନ୍ଧ । ୨୯ ।
ଜଗତ୍ପାଳ ଗଜଗଣ୍ଡକ ଟେକ ସଖୀ ନେବାରେ ।
ଦର୍ଶିଲା ଭଦ୍ରାକ୍ଷୀ ସୁଭଦ୍ରା ରଥବନେ ପ୍ରକାରେ । ୩୦ ।

---

୨୪—ଜେମାର ସେମ ଝାଙ୍କୁରିବା ଦେଖି ଅନ୍ୟା କାଦମ୍ବିନୀ ବେଗେ କହୁଛି । ଏ ତରୁଣୀ ଚୂରଚକା ବୃକ୍ଷ ଅଟେ । ଏ ହେତୁ ସର୍ବାଙ୍ଗରେ କଢ଼ିକା ଅଙ୍କୁରିତ ହୋଇଅଛି, ଏଠାରେ ସେମାଞ୍ଚ । ଚୂର୍ଚ୍ଚକ, ଚୁରିଚନା ।

୨୫—ମଧ୍ୟାବାଣୀକା କହୁଛ, ଏହା ସତ ଅଟେ । ଯେହେତୁ ଏହାର ଶୋଭାକର ହସ୍ତ ଓ ଅଧର ନୂଆପତ୍ର ଅଧିକପଦନରେ ଥରିଲାପରି କମ୍ପୁଛି ଏଠାରେ କମ୍ପ ।

୨୬—ଅନ୍ୟ ଶରୀକଳା ସଖୀ କହୁଛି । ସଙ୍ଗବ ଦେହରେ ବରଚ ଅଗ୍ନି ପ୍ରଜ୍ୱଳିତହୋଇ ଜଳିବାରୁ ତାହା ହୋଇଥିବାରୁ ଜଳାଶୟପରି ଜଳରେ ପୂର୍ଣ୍ଣ ହୋଇଅଛି ଏଠାରେ ସ୍ୱେଦ । ଜାତବେଦା, ଅଗ୍ନି ।

୨୭—ଲୁହ ନବାଇଣକର ନ ହେବାରୁ ପ୍ରଥମା କାଦମ୍ବିନୀ କହୁଛି । ମାଳୋପ୍ରଲରେ ବସିଥିବା ଭ୍ରମର ମକରନ୍ଦ ଉଦ୍ଧାରୁଅଛି କି । ଅକ୍ଷି ମାଳେପ୍ଳ, ଲୋଳା ଭ୍ରମର, ଲୁହ ମକରନ୍ଦ, ଏଠାରେ ଅଶ୍ରୁ । ମିଳିନ୍ଦ, ଭ୍ରମର ।

୨୮—ଜେମା ଅର୍ଦ୍ଧସ୍ଫୁଟ ବଚନ ପ୍ରକାଶ କରିବାରୁ ଦ୍ୱିତୀୟା ବାଣୀକା ସଖୀ କହୁଛି । ଶୋକରୂପକ ମେଘ ଉଦୟହେବାରୁ କୋକିଳରପରି କଣ୍ଠରନ୍ଧ ଯାଉଅଛି । ମେଘ କାଳରେ କୋକିଳର କଣ୍ଠ ପଡ଼ିଯାଏ ଏଠାରେ ସ୍ୱରଭଙ୍ଗ । କଳକଣ୍ଠ, କୋକିଳ ।

୨୯—ଦୈବ ହେତୁରୁ ଜେମାଙ୍କର ଜ୍ଞାନ ନଷ୍ଟ ହେବାରୁ ତୃତୀୟା ସଖୀ ଶଶିକଳା ତାହା ଦେଖି କାନ୍ଦପୁଙ୍କିଲା ଓ ବନ୍ଧୁ ଚେତନା ହେତୁରୁ ଡାକିଲା । ଏଠାରେ ପ୍ରଳୟବର୍ଣ୍ଣିତ ହେଲା ।

୩୦—ସଖୀମାନେ ଗଜଗତି ଜେମାଙ୍କୁ ଅଧାଧରାକୁ ଟେକନେବାରେ ସ୍ୱଭଦ୍ରାଙ୍କୁ ରଥବର ରଥ ଉପରକୁ କରେ କରପରପର ସେ ଭଦ୍ରାକ୍ଷୀ ଜେମା ଦେଖାଗଲେ ।

ଦୁଃଖରେ ପ୍ରକଟ ନକଟେ ହେବ ସୁଖରେ ପୁଣି ।
ଏ ଅଷ୍ଟସାତ୍ତ୍ୱିକ ଭଷ୍ଟ ଯେ ଅଙ୍ଗୁଁ ହୋଇଲ୍ଲ ଭଣି । ୩୧ ।
ଏ ଚାନ୍ଦ୍ର ଅଲଙ୍କନଭରେ ମଗନ ହୋଇ ।
ଥିବ ପାଶବଦ୍ଧ ୧କୁରଙ୍ଗୀ ପରି ୨ତରଙ୍ଗ ନୋହି । ୩୨ ।
ଘୃଣା ପୀଡ଼ାବଶେ ଅଙ୍ଗଟା ଅଙ୍ଗ ରଙ୍ଗ ଲୁଇବ ।
ସପକ୍ୱ ସିନ୍ଦୂର ରସାଳ ଫଳ ଲକ୍ଷ୍ୟ ହୋଇବ । ୩୩ ।
ଚନ୍ଦ୍ର ବିନ୍ଦୁ ଝାଳ ଝରିବ ଇନ୍ଦୁମୁଖରୁ କ୍ରମେ ।
ଲଇଲେ ଭଲ ମୋତିପନ୍ତି ଭଳି ବନ୍ଧିଲ୍ଲ ସମେ । ୩୪ ।
ପ୍ରଖର ନଖର ଶୂଳକେ ବନ୍ଧୁ ରୋମାଞ୍ଚ କାୟେ ।
ଯୁବତୀ ହେବ ଜାପଫୁଲେ ପୂଜା ପାଙ୍କଟୀ ପ୍ରାୟେ । ୩୫ ।
ଭଜ ସିତକାର ବଳାର ୧ଗୋଧ ଚମକୁଥିବ ।
୨ପ୍ରେମତରଙ୍ଗେ ପଦ୍ମଲତା ରଙ୍ଗେ ଚଳିଲ୍ଲ ଥିବ । ୩୬ ।
୧ବର ରଜନୀକର କର ହେବ ୨ଚନ୍ଦ୍ରର ରଜ ।
ପଡ଼ନେ ୩ଜୀବଞ୍ଜୀବ ନେତ୍ର ଦ୍ରବିଯିବ ସହଜ । ୩୭ ।

---

୩୧—ସ୍ତମ୍ଭ ପ୍ରଭୃତି ଏ ଅଷ୍ଟବିଧ ସାତ୍ତ୍ୱିକ ବିକାର ଏ ଯେମାନଙ୍କର ଦୁଃଖରେ ପ୍ରକାଶ ହେଉଅଛି । ପୁଣି ନିକଟରେ ପ୍ରିୟ ମିଳନ୍ତେ ସୁଖରେ ପ୍ରକାଶିତ ହେବ । ଆଜଠାରୁ ଏହାର ବାଞ୍ଛିତ ପୂର୍ଣ୍ଣହେଲା । ଏହା ସଖୀମାନେ କହୁଛନ୍ତି ।

୩୨—ଏକାନ୍ତରେ କାନ୍ତର ଅଲଙ୍ଗନ ସୁଖରେ ମଗ୍ନହୋଇଁ ପାଶରେ ବନ୍ଧାହୋଇଥିବା ମୃଗୀପରି ଚଞ୍ଚଳ ନୋହି ରହିଥିବ । ଏଠାରେ ସ୍ତମ୍ଭ । ୧ କୁରଙ୍ଗୀ, ମୃଗୀ । ୨ ତରଙ୍ଗ, ଚଞ୍ଚଳ ।

୩୩—ପ୍ରିୟର ବାହୁବନ୍ଧ ପୀଡ଼ା ହେତୁରୁ ଏ ଅଙ୍ଗନାର ଅଙ୍ଗ ରକ୍ତ ବର୍ଣ୍ଣ ଧାରଣ କରିବ । ଅତଏବ ଉତ୍ତମ ପାଚିଲ ସିନ୍ଦୂରଆମ୍ବ ସହିତ ସମାନ ଦିଶିବ । ଏଠାରେ ବୈବର୍ଣ୍ଣ୍ୟ ।

୩୪—ରତିକେଳୀ ପରେ ମୁକ୍ତାଗୁଚ୍ଛ ପରି ବର୍ତ୍ତୁଳାକାର ଏହାଙ୍କ ଚନ୍ଦ୍ରମୁଖରୁ ସୁରତଶ୍ରମ ହେତୁକ ଝାଳ ବିନ୍ଦୁ ବିନ୍ଦୁ ହୋଇ ଝରିବ ଏଠାରେ ସ୍ୱେଦ ।

୩୫—ଏ ଯୁବତୀ ପ୍ରିୟର ତୀକ୍ଷ୍ଣନଖକ୍ଷତ ହାର ଦେହରେ ରୋମାଞ୍ଚ ଧାରଣ କରିବ । ଅତଏବ କଦମ୍ବ ଫୁଲରେ ପୂଜିତ ପାଙ୍କଟୀପରି ହେବ ଏଠାରେ ରୋମାଞ୍ଚ, ରୋମଟାଙ୍କୋରିବା । ଜାପ, କଦମ୍ବ ।

୩୬—ପ୍ରିୟଙ୍କର ଦନ୍ତକ୍ଷତାଦି ହାର ସଶବ୍ଦ ଶୀତ୍କାର କରାଇ ପ୍ରାପ୍ତହେବାରୁ ଏହାଙ୍କ ଦେହ ଚମକୁଥିବ । ପଦ୍ମଲତା ତରଙ୍ଗରେ ଯେପରି ପ୍ରେମତରଙ୍ଗରେ କେତେ ରଙ୍ଗରେ ଚଳୁଥିବ । ୧ ଗାତ୍ର, ଦେହ । ୨ତରଙ୍ଗ ଲହରୀ । ଏଠାରେ କମ୍ପ ।

୩୭—ଏହାଙ୍କର ବର ଚନ୍ଦ୍ରପରି କର୍ପୂରଧୂଳି ଭାବ ବଚନପରି ଯେ ଯେତେବେଳେ ପଡ଼ିବ । ସେତେବେଳେ ଏହାଙ୍କ ନେତ୍ରରୂପକ ଚକୋର ସ୍ୱଭାବରେ ଦ୍ରବିଯିବ । ଏଠାରେ ଅଶ୍ରୁ । ୧ ବର, ପତି । ରଜନୀକର, ଚନ୍ଦ୍ର । କର, କରଣ ୨ ଚନ୍ଦ୍ରର ରଜ, କର୍ପୂର ଧୂଳି । ୩ ଜୀବଂଜୀବ, ଚକୋର ପକ୍ଷୀ । ଚକୋର ଚନ୍ଦ୍ର କିରଣ ପିଏ ।

କେଳିପ୍ରବୀଣା ବୀଣା ବାଜି ଗୁଣା ହୃତ ମନ୍ଦରେ ।
ନ ରହିବ ନାହିଁ କହିବ ଯେବେ ଗାଢ଼ରତରେ । ୩୮ ।
ଲଳନା ଚନ୍ଦ୍ରମାଃସୁଲଳନା ବଣେ ଛନ୍ନ ହାରବ ।
ରେଚତ ଏ ବାଣୀ ଜେମାକୁ ଶୁଭସୂଚକ ସ୍ୱବ । ୩୯ ।
ଏକାଳେ ସେ ବନଭୂ ବନମାର୍ଗେ କୌଶିକୀସ୍ନାନେ ।
ମନ୍ତ୍ରୀ ମନୋହାରୀ ଭିଷକନାରୀ ଧୀର ଗମନେ । ୪୦ ।
ଗୃହୁ ଘସୁଟେତ ଛିଟକେ ବେଣ୍ଣ ୧ଅବଟ ଦଶେ ।
ଧାଡ଼ି ଏକ ଦଳ ଦଳନ ପାକଶାକ ସଦୃଶେ । ୪୧ ।
ପର୍ଣ୍ଣଯୁଗଳେ ପୂର୍ଣ୍ଣ ହୋଇଅଛି ୨ଅର୍ଣ୍ଣ ସହଜେ ।
ଅଯତ୍ନେ ଦେଖିଲେ ନୟନେ ନବପଲ୍ଲବ ଶେଯେ । ୪୨ ।
ଇଙ୍ଗିଲ ସଚିବା ପ୍ରଶ୍ନିଲ ବୈଦ୍ୟବାମାକୁ ଏ କି ।
କେହି ବରଣୀ ରହିଅଛି ସେହି କହିଲ ତର୍କି । ୪୩ ।
ଅନ ନ ଯେନ ସେ ୧ଅନଳ ମାତ୍ର ଦୁଃଖଶୟନା ।
ଉକ୍ତ କୁଚର ଏ ୨ସୁସଞ୍ଜ ସଞ୍ଜା ରହିଛି ସିନା । ୪୪ ।
ନବସପତ୍ରବସ୍ତୃସୀର ଅନ୍ତ ଉପନ୍ତ ଗାନ୍ଧ ।
ଯେତକ ଛୁଇଁଛି ତେତକ ଶୁଖି ଯାଇଛି ମାନ୍ଦ । ୪୫ ।

---

୩୮—ବୀଣାରେ ବୀଣାର ତାର ଛିଣ୍ଡି ଯାଇଥିବା ବୀଣାପରି ସ୍ୱରରେ ଗାଢ଼ ସମ୍ଭୋଗରେ ଏ କେଳି ପ୍ରବୀଣା ନାହିଁ କହିବ । କିନ୍ତୁ ସେତେବେଳେ "ନା" ଏହି ଅକ୍ଷର ମାତ୍ର ଉଚ୍ଚାରିତ ହେବ । ଅତଏବ ସ୍ୱରଭଙ୍ଗ ଏଠାରେ ।

୩୯—ଏହି ଭେଦରେ ସ୍ତ୍ରୀମାନଙ୍କର ବନ୍ଧୁରୂପ ଅଙ୍ଗରେ ବକ୍ଷସ୍ଥଳ ହାର ଲମ୍ବିତ କରିବାକୁ ଚନ୍ଦ୍ର ଚାଳନା କରନ୍ତି । ସେ ପ୍ରତିଦ୍ୱାରା ଏ ସୁନ୍ଦରୀ ଅବଶ୍ୟ ଅଙ୍କିତ ହେବେ । ଏଠାରେ ପ୍ରଳୟ ବର୍ଣ୍ଣିତ ହେଲା । ଏକଥା ସବୁ ଶୁଭସୂଚକ ହୋଇଥିବାରୁ ଜେମାଙ୍କ ବଡ଼ ଭଲ ଲାଗିଲା ।

୪୦—ଏହି ସମୟରେ ମନ୍ତ୍ରୀପତ୍ନୀ ଓ ବୈଦ୍ୟପତ୍ନୀ ସେ ବନ ଭୂମିର ବନମାର୍ଗରେ କୌଶିକ ନଦୀରେ ସ୍ନାନ କରିବାକୁ ଧୀରେ ଧୀରେ ଯାଉଥିଲେ ।

୪୧, ୪୨—ସେ ଦୁହେଁ ବାଟରେ ନଅପନଶଯ୍ୟା ଅକସ୍ମାତେ ଦେଖିଲେ । ସେ ଶଯ୍ୟାରେ ମନୋହର ପତ୍ତ୍ରନ୍ଧ ଅକାରରେ ଘୋଡ଼ାଏ ଗର୍ତ୍ତ ଦେଖାଯାଉଥିଲା । ଧାଡ଼ିଏ ପଦ୍ମପତ୍ର ସିଝାଶାଗପରି ଦଳିତ ହୋଇଥିଲା । ପତ୍ର ଯୋଡ଼ିକରେ ଜଳପୂର୍ଣ୍ଣ ହୋଇଥିଲା । ୧ ଅବଟ, ଗର୍ତ୍ତ । ୨ ଅର୍ଣ୍ଣ, ଜଳ । ୩ ପୁଟ, ପତ୍ତ୍ରନ୍ଧ ।

୪୩-୪୪—ମନ୍ତ୍ରୀ ପତ୍ନୀ ଇଙ୍ଗିତରେ ବୈଦ୍ୟ ପତ୍ନୀଙ୍କୁ ଏ କ'ଣ ବୋଲି ପଚାରିଲେ । ସେ ବୈଦ୍ୟପତ୍ନୀ ତର୍କଣା କରି କହିଲେ । କେହି ଜଣେ ବରବର୍ଣ୍ଣୀ ରହିଅଛି । ଅନ୍ୟ କେହି ନୁହେଁ ନାହିଁ । ତେବେ, ସେ ବରବର୍ଣ୍ଣୀ ମୂର୍ତ୍ତିମାନ୍ ଦୁଃଖରେ ଶୟନ କରିଥିବାରୁ ତା ଛାତି ସ୍ତନର ଏ ସୁନ୍ଦର ଛାପ ଯାଇ ଯୋଗକ ପରି ରହିଅଛି । ୧ ଅନଳ, ନୃପ । ୨ ସୁସଞ୍ଜ, ସୁନ୍ଦର ।

୪୫—ସେ ଷୋଡ଼ଶବର୍ଷୀୟ ଅତିତାପ ଯୁକ୍ତ ଦେହ ଯେତିକି ପତ୍ରମାନଙ୍କରେ ଲାଗିଛି ସେତିକି ଲୁଚିତ । ସେତିକି ପତ୍ରମାନଙ୍କରେ ଶୁଖିଯାଇଅଛି ।

ଅବଳା ଯେ ଶୋକପ୍ରବଳା ହୋଇ ଲୋଚନ ନାରୀ ।
୧ଛଦନଯୁଗଳେ ୨ସଦନ କଲ ଅଞ୍ଜନ ସତ । ୪୬ ।
ମୃଣାଳ ଶୈବାଳ ପତନ ତାହା କବଳ ଆଶେ ।
୧ରଥାଙ୍ଗ ଚକ୍ରବାକଚକ୍ର୨ ମିଳେ ଏ ଶଯ୍ୟା ପାଶେ । ୪୭ ।
ଦେଖ ଫୁଟି ଫାଟି ହେଉଛି ମୋ ଚିହ୍ନାରହୁଁ ଛୁଟି ।
ତଣ୍ଡୁଳବତ ପାରାବତ ଯେକ ଠୁକନ୍ତ ୧କ୍ରୋଡି । ୪୮ ।
ରମଣୀ ଛିନ୍ନମାଳା ମଣି ଗୁଡ଼ ନାହୁଁ କ ତାଡ଼ ।
ଉଷଣେ କ୍ଷଣେକ୍ଷଣେ ଧରେ ତାହା ଚକୋରପଟ । ୪୯ ।
୧ସୌଗନ୍ଧୀ ସ୍ନେହମଗ୍ନା ନେଇ ରଜନୀ ହବା ।
ବରତ୍ରୁଣୀ ଜଗନ୍ମୋହିନୀ ଅମ୍ବ ନୃପଜା ଅବା । ୫୦ ।
ଧାତ୍ରି ଉପାଧାୟୀ ୨ସଚିବା ୩ପ୍ରେକ୍ଷେ ଜେମାର ପାଶେ ।
ସେ ଜାଇଁ ଶେଯାଉଥିଲେ ଯେ ସଖୀ ଶଯ୍ୟା ପଲ୍ୟଙ୍କେ । ୫୧ ।
କାଚରେ ସହିରେ ରୁଚିରଚିରେ ସେ ଆଚ୍ଛାଦନ ।
ଚନ୍ଦ୍ରଦଗ୍ଧ ଭୁଲୁ ପାଣ୍ଡର ଗୁଚ୍ଛେ ଲିପି ଚନ୍ଦନ । ୫୨ ।
ବକୁଳ ଫୁଲଜ ଶଙ୍କାରେ ଗଣ୍ଡେ ମକସ୍ତ କର ।
ସ୍ଥୂଲ ବ୍ୟଜନ୍ତ ପ୍ରଭଞ୍ଜନବଶେ ସ୍ବେଦ ନିବାରି । ୫୩ ।

---

୪୬—ସେ ଅବଳା ପ୍ରବଳ ଶୋକବଶ ହୋଇ ସେ ସବୁ ଲୁହ ବାହାର କରିଥିଲା ତାହା ଏପରି ଯୋଡ଼କରେ ନିଃସ୍ୱସ୍ଥାନ କରିଅଛି ଅର୍ଥାତ୍ ସାତ ଅଛି । ୧ଛଦନ ଯୁଗଳେ, ପକ୍ଷଦ୍ୱୟରେ । ୨ ସଦନ, ସ୍ଥାନ ।

୪୭—ଅଶ୍ରୁ ତଳିଯାଇ ଯାହା ବ୍ୟବହୃତ ହୋଇଥିବା ପଦ୍ମନାଳ ଓ ଶୈବାଳ ଏ ଶଯ୍ୟାପାଖେ ପଡ଼ିଥିବାରୁ, ତାହାକୁ ଖାଇବା ଆଶାରେ ହଂସ ଓ ଚକ୍ରବାକମାନେ ଆସି ମିଳିଅଛନ୍ତି । ୧ଚକ୍ରବାକ, ହଂସ । ୨ଚକ୍ର ସମୂହ ।

୪୮—ଦେଖ ବରତ୍ରୁଣୀର ଦେହତାପ ହାର ମୋତିହାର ନିଃସ୍ୱ ଫୁଟି ଫାଟି ଛୁଟି ( ଛିଣ୍ଡି ) ପଡ଼ିଅଛି । ପାରାମାନେ ତାହାସବୁ ଚାଉଳପରି ବବୃଳ ଥଣ୍ଟ ଠୁକୁଅଛନ୍ତି । ୧ କ୍ରୋଡ଼, ଥଣ୍ଟ ।

୪୯—ସେ ବରତ୍ରୁଣୀ ଛିନ୍ନ ଛିଣ୍ଡିଯାଇଥିବା ମାଳାର ମଣିମାନଙ୍କରୁ ତାପ ଛାଡ଼ୁନାହିଁ କି ? ଦେଖ ଚକୋର-ମାନେ ଅଗ୍ନିକଣା ବୋଲି ତାହାସବୁ ଖାଇବାକୁ ସର୍ବଦା ଧରୁଅଛନ୍ତି ।

୫୦-୫୧—ପଦ୍ମିନୀ ଜଗନ୍ମୋହିନୀ ଅମ୍ବ ରାଜକନ୍ୟା ଅବା ପୁରୁଷ ସ୍ନେହାଧୀନା ହେବାରୁ ବରତ୍ରୁଣୀ ହୋଇ ଦାରୁଣ କହିଅଛନ୍ତି, ଏହା ବୋଲି ମନ୍ତ୍ରୀ ଦେବୀ ଜେମାଙ୍କ ପାଖକୁ ଉପାଧ୍ୟାୟୀଙ୍କୁ ପଠାଇଲେ । ୧ ସବ୍ରେଣ୍ଟମ, ପଦ୍ମିନୀ । ୨ ସଚିବା, ମନ୍ତ୍ରୀଦେବୀ । ୩ ପ୍ରେକ୍ଷେ, ପଠାଇଲେ । ସେ ଉପାଧ୍ୟାୟୀ ଯାଇଁ ( ଯିବାବେଳକୁ ) ସେ ସଖୀମାନେ ପଦ୍ମାଦଳରୁ ହାର ଶେଯ ଶେଯାଉଥିଲେ ।

୫୨—ସେହି ସଖୀମାନେ ଉପରେ ଉତ୍ତମବସ୍ତ୍ର ହାର ଶୀଘ୍ର ଶଯ୍ୟାକୁ ଘୋଡ଼ାଇ ପକାଇଲେ । ସେ ବୃଷୋ-ଦରର ଦେହ ପାଣ୍ଡୁ ତାକୁ ଲୁଚାଇବାକୁ ଚନ୍ଦନ ଲେପିଲେ ।

୫୩—ଅଶ୍ରୁ ଛଳରେ ସାବ୍ଧ ହେମାହେବା ଜଣାକର ତାହା ଲୁଚାଇବାକୁ ମକସ୍ତ ଉଷ୍ଣ ଗଣ୍ଡରେ । ପଙ୍ଖା ତାଳନ କରିବା ବାୟୁ ସ୍ୱେଦ ନିବାରଣ କଲେ ।

ସେ ଦେଖି ବୋଲେ ଜାଣିଲନ୍ତ ଅଣିଲନ୍ତ ମାନସ ।
ଏ ମଗଧେଶ୍ୱର କୁମାର ଦେଖି ମାତେ ଅବଶ । ୫୪ ।
ସୁରତର ଯହିଁ ଏ ଗତ ନାର କ ଗତ ଥିବ ।
ଦୁର୍ଲଭ ବାଳା କଟିପ୍ରାପ୍ତି ଯଥା ମୁକତି ଲଭ । ୫୫ ।
ସଖୀ ଅନୁଗୃହ ଚିହ୍ନ କହେ ବନସ୍ପତେ ।
ମତ୍ତେଭଗମନା କାମନା ପୂର୍ଣ୍ଣ କେମନ୍ତେ । ୫୬ ।
ସେ ଉତ୍ତର କଲ କାତର ଗିର ଅଭରସାରୁ ।
ନ ଭଜିବ ବା ବନ୍ଧୁଜୀବ-ବନ୍ଧୁ-ଅଧର ଯାରୁ । ୫୭ ।
କି ଥବା ତା ଚିତ୍ତ ଆବେଶ ଦେଖା ସ୍ୱପନେ ହୋଇ ।
ଚର ପ୍ରଚର ଏ ବସ୍ତୁରବର୍ଣ୍ଣି କର ଯେ ନାହିଁ । ୫୮ ।
ଆମ୍ଭେ କରିବା ଉଦ୍‌ଯୋଗ ଯୋଗଭଙ୍ଗୀ କାର୍ଯ୍ୟେ ।
ଯାଇ ତୁ ପୂଜାଇ ସ୍ନେହକୁ ବକ୍ରବଚନ ବ୍ୟାଜେ । ୫୯ ।
ଉଠୁଁ କହେ ସଖୀଙ୍କର କର ଧରଣ ବେଗେ ।
ଆଜନ୍ମଦୁଃଖୀ କଥା ଆଜଠାରୁ ତୁମ୍ଭଙ୍କୁ ଲାଗେ । ୬୦ ।
କିପାଇଁ ନୋହିଲା କହି ସେ ଗଲା ମନ୍ଦିରମଧ୍ୟରେ ।
ତା ବକ୍ଷସ୍ଥ ଲଭି ଏ ବାର୍ତ୍ତା କହେ କାନ୍ତ ଆଗରେ । ୬୧ ।

---

୫୪—ସେ ଉପାଧ୍ୟାୟୀ ଦେଖି କହିଲେ ମୁଁ ଜାଣିଲିଣି । ଏ ଜେମା ମଗଧ ରାଜପୁତ୍ରଙ୍କୁ ଦେଖି କାମପୀଡ଼ିତ ହୋଇଅଛି, ଏହା ମନକୁ ଆଣିଲିଣି ।

୫୫—ଏ ସୁରତର ଯେଉଁଠାରେ ଏପରି ଗତି (ଅବସ୍ଥା) ହୋଇଅଛି । ସେ ପୁରୁଷର କି ଅବସ୍ଥା ହୋଇଥିବ ଯେହେତୁ ସ୍ତ୍ରୀ ସହବାସ ପାଇବା ମୁକ୍ତି ପାଇବାପରି ପରମ ଦୁର୍ଲଭ ଏହା ଭାବ ।

୫୬—ସେ ଚିହ୍ନ ସଖୀ ବନସ୍ପତିରେ ବତାଇଦେଇ ପଚାରିଲେ । ଏମନ୍ତ ଗଜଗତି ଜେମାର ମନୋରଥ କିପରି ପୂର୍ଣ୍ଣହେବ ।

୫୭—ସେ ଉପାଧ୍ୟାୟୀ ଉତ୍ତରକଲେ । ବନ୍ଧୁଜୀବ ପୁଷ୍ପ ସମୋଷ୍ଠୀ ଏ ଯାରୁ ଜାଣିବା ମୋତେ ଭଜିବ କି ନାହିଁ ଏହି ଅଭରସାରୁ ସେ ଗିର କାତର ଥିଲା ।

୫୮—କି ଅବା ସ୍ୱପ୍ନରେ ଦେଖାହୋଇ ସେ ବୀରଙ୍କର ମନ ଆବେଶ ହୋଇଥିବ ଅତଏବ ମିଥ୍ୟା ଏ ବିଚାରକୁ ତାର ପ୍ରଚାର କର ନାହିଁ ।

୫୯—ଆମ୍ଭେ ଏ ଯୋଗ ଭଙ୍ଗୀ କାର୍ଯ୍ୟରେ ତୋଠାକୁ ଯାଇଁ ବକ୍ରବଚନ କପଟରେ ସ୍ନେହ ଜନ୍ମାଇ ଉଦ୍‌ଯୋଗ କରିବା ।

୬୦—ଉପାଧ୍ୟାୟୀ ଯିବାକୁ ଉଠନ୍ତେ ସଖୀମାନେ ବେଗେ ତାଙ୍କ ହାତଧରି କହିଲେ । ଏ ଅଜନ୍ମ ଦୁଃଖୀ ଆଜଠାରୁ ତୁମ୍ଭଙ୍କ ସରିସ ।

୬୧—ହିଁ ନ ହେଲାକି ଏହା କହି ସେ ଉପାଧ୍ୟାୟୀ ମନ୍ଦିରକୁ ଗଲା । ସେ ରାଜପତ୍ନୀ ଏ ବାର୍ତ୍ତା ପାଇ ନିଜ ପତିଙ୍କ ଆଗେ କହିଲେ ।

ଘଟିବ ସ୍ୱପନରେ ଲପନ ଦେଖିଥିବ ଯାହାର ।
ବାମ୍ନଥିଏଁ ବାମ୍ନ ଥାଇ ଭାଇ ବରହାଭର । ୭୨ ।
କରୁପ ନରୁପଣ କର ବଶ ହୋଇଛୁ ସେହି ।
ଜାଣିବା ଅଣିବା ବ୍ରହ୍ମାଣ୍ଡ ଏକ ପଟେ ଲେଖାଇ । ୭୩ ।
ବଚନକର୍ମା ଚିତ୍ରକାର ଥିଲା ଡକାଇ କହି ।
ସରୂପ ବିଧାନେ ବିଧାତା ଗଲା ସେ ପଟ ଲିହି । ୭୪ ।
୧ଲକ୍ଷ୍ମଣଯୁକ୍ତ ପଦ ଚନ୍ତ୍ର ଉପଇନ୍ଦ୍ରର କୃତ ।
୨ଲକ୍ଷଣସହିତ ସାହିତ୍ୟ ଏହି ଚିତ୍ତ ମୋହିତ । ୭୫ ।

## ଊନବିଂଶ ଛାନ୍ଦ ।

ରାଗ ମାଳବ ।

ଶୁଣ ହେ କଲ୍ପକଜନେ ଏ ଚରିତ ରସ ।
ମନ୍ତ୍ରୀ ପୁରୋହିତ ବୈଦ୍ୟ ଯବେ ଛନ୍ତି ବସି । ୧ ।
ଚିତ୍ରକାର ଆଣି ଦେଖାଇଲା ପଟ ଫେଇ ।
ଅଷ୍ଟଧିୀ ସେ ତିନଲୋକ ପଟ୍ଟକୁ ଅନାଇଁ । ୨ ।
ଲେଖା ୧ଲେଖାବଳୀ ଶୁଦ୍ଧ ୨ସୁଧର୍ମାସଭାରେ ।
ଖୋଜ ନ ଦେଖିଲେ ତହିଁ ପ୍ରଧାନ ସୁନ୍ଦରେ । ୩ ।

---

୭୨-୭୩—ମନ୍ତ୍ରୀ କହେ, ଏ କନ୍ୟାଧନୀ ସ୍ୱପ୍ନରେ ଯାହାର ମୁଖ ଦେଖିଥିବ । ସେହି ସ୍ୱପ୍ନଦୃଷ୍ଟ ବ୍ୟକ୍ତିଙ୍କର ଅନ୍ୱେଷଣ କରିବାର ଉଚିତ । ସେ ସ୍ୱରୂପ ନିରୂପଣକରି ଅସକ୍ତ ହୋଇଅଛ ଯଦି ଆମ୍ଭେ ଜାଣିବା କୋଟିଏ ପଟରେ ସମସ୍ତ ବ୍ରହ୍ମାଣ୍ଡ ଯୁବକ ଲେଖାଇ ଆଣିବା ।

୭୪—ବଚନ କର୍ତ୍ତା ( ଅସ୍ପର୍ଶ କାର୍ଯ୍ୟକାର ) ଚିତ୍ରକାର ଥିଲା । ମନ୍ତ୍ରୀ ତାକୁ ଡକାଇ କହିଲେ । ସାମାନ୍ୟ-ରୂପ ( ଚିତ୍ର ମୂର୍ତ୍ତି ) ନିର୍ମାଣରେ ବିଧାତାପରି ସେ ଚିତ୍ରକାର ପଟ ଚିତ୍ରିବାକୁ ଗଲା ।

୭୫—ଏକାଦଶ ଲକ୍ଷଣ ଯୁକ୍ତ ଶ୍ରୀ ରାମଚନ୍ଦ୍ରଙ୍କର ପାଦ ଚନ୍ଦ୍ରୀକର ଉପେନ୍ଦ୍ରଭଞ୍ଜ ସମସ୍ତଭାବେ ଲକ୍ଷଣ ଲକ୍ଷିତ ଚିତ୍ତ ମୋହନ ଏହି ସାହିତ୍ୟ କରି ଅଛନ୍ତି । ୧ ଲକ୍ଷ୍ମଣ, ଚିହ୍ନ । ୨ ଲକ୍ଷଣ ଓ ରାମାନୁଜ ।

ଊନବିଂଶ ଛାନ୍ଦ ।

୧-୨—ଅହେ କଳ୍ପନାକାର ଗ୍ରାହକ ଲୋକମାନେ ଶୁଣ ଦରବାରରେ ମନ୍ତ୍ରୀ ପୁରୋହିତ ଓ ବୈଦ୍ୟ ଏମାନେ ବସି ଅଛନ୍ତି । ଏହି ସମୟରେ ଚିତ୍ରକାର ଆଣି ପଟ ପିଟାଇ ଦେଖାଇଲା । ସେ ତ୍ରିଭୁବନ ପଟକୁ ଚାହିଁ ଅଷ୍ଟସ୍ଥାନ୍ତ ହେଲେ ।

୩—ସେ ଚିତ୍ରପଟରେ ଦେବତାମାନେ ଲେଖା ହୋଇଥିବା ଶୁଦ୍ଧ ଦେବସଭାରେ ଖୋଜ ପ୍ରଧାନ ସୁନ୍ଦର ଦେଖି ପାଇଲେ ନାହିଁ । ୧ଲେଖାବଳୀ, ଦେବ ସମୂହ । ୨ସୁଧର୍ମା, ଦେବସଭା ।

୧ବଳସଦ୍ମେ ପଡ଼ି ବାସୁକୁଳ ବେଗେ ନେଇ ।
ସର୍ପ ୨ଅସୁର ସ୍ୱଭାବେ ଅନାଦର ପାଇ । ୪ ।
ଧରାରେ ହୋଇଲେ ପୁଷ୍ପପୁର କେବଳାରି ।
ସ୍ୱର୍ଗେ ନ ଥିବା ସୁନ୍ଦର ପଡ଼ିବାରୁ ଧରା । ୫ ।
ପୁନଃପୁନଃ ଗୃହ୍ଣି ମନ୍ତ୍ରୀ ପ୍ରଶଂସିତ ଭଙ୍ଗି ।
ବୋଇଲେ କାମନା ଯହିଁକି ଏ ଯୋଗ୍ୟ ତହିଁକି । ୬ ।
ରହିବାକୁ ଅମୃତ ଚନ୍ଦ୍ରମା ସିନା ସ୍ଥାନ ।
ବୈଦଗ୍ଧ୍ୟୋକ୍ତି ସେ ଯହିଁ ରମେ ସେହି ସେ ପ୍ରଧାନ । ୭ ।
୧ଉମାସ୍ୱସା ବିଷ୍ଣୁପଦ ଶିବ ଶିରସ୍ଥାୟୀ ।
ଦେଖ ଗଙ୍ଗା ଲବଣସାଗରେ ସଙ୍ଗ ପାଇ । ୮ ।
ପରମପାବନୀ ତୀର୍ଥମାନ ଯେତେ ଥିଲେ ।
ଗୃହକ ଶତ୍ରୁ ରସିତ ଯେନ ଘନଜଳେ । ୯ ।
ବିପ୍ର ବୋଲେ ଜଳ ଜନ୍ତୁ ସବର୍ଣ୍ଣ ହିଁ ଅଛି ।
ବିବେକଶୂନ୍ୟରେ ପଶୁ ପକ୍ଷୀ ସମେ ଲକ୍ଷି । ୧୦ ।

---

୪—ନେତ୍ର ଦ୍ୱିତୀ ପାତାଳପୁରେ ପଡ଼ି ବେଗେ ଫେରିଆସିଲ । ଯେହେତୁ ସାପ ଓ ରାକ୍ଷସମାନେ ସେ ପାତାଳବାସୀମାନେ ସ୍ୱଭାବରେ ଅନାଦରର ପାତ୍ର ଅଟନ୍ତି । ୧ବଳସଦ୍ମ, ପାତାଳ । ୨ଅସୁର, ରାକ୍ଷସ ।

୫—ସ୍ୱର୍ଗରେ ନ ଥିବା ସୁନ୍ଦର ପୁରୁଷ ସେଠାରେ ଧରା ପଡ଼ିବାରୁ ପୃଥିବୀରେ ସେ ପୁଷ୍ପପୁର କେବଳ ବଦଶାଳ ହେଲା ।

୬—ମନ୍ତ୍ରୀ ପୁନଃ ପୁନଃ ଚାହିଁବାରୁ ପ୍ରଶଂସିତ ବର୍ଣ୍ଣନା କରିଲେ । ଯାହାପାଇଁ କାମନା ଅଛି । ଏ ସୁନ୍ଦର ପୁରୁଷ ସେଥିର ଯୋଗ୍ୟ ଅଟନ୍ତି ।

୭—ଅମୃତ ରହିବାକୁ ଚନ୍ଦ୍ର ଏକା ଯୋଗ୍ୟସ୍ଥାନ ଅଟେ । କେମାର ଏ ଏକା ଅନୁରୂପ ଅଟନ୍ତି । ଏହା ଶୁଣି ବୈଦଗ୍ଧ୍ୟୋକ୍ତି କଲେ. ସେ ଯାହାଠାରେ ରମେ, ତାହାର ସେ ଏକା ପ୍ରଧାନ ଅଟେ । ତେମାନଙ୍କ ଯାହାଠାରେ ଆସକ୍ତ ସେହି ଏକା ଯୋଗ୍ୟପାତ୍ର ଅଟେ ।

୮—ଦେଖ ଗଙ୍ଗା ପାର୍ବତୀଙ୍କ ଭଗିନୀ ଓ ବିଷ୍ଣୁଙ୍କ ପାଦରେ ଏବଂ ଶିବଙ୍କ ମସ୍ତକରେ ଅବସ୍ଥାନ କରି ସୁଦ୍ଧା ଲବଣ ସମୁଦ୍ର ସଙ୍ଗତ ସମ୍ପର୍କ କଲ । ୧ସ୍ୱସା, ଭଗିନୀ ।

୯—ଅତି ପବିତ୍ର ତୀର୍ଥଜଳ ଯେତେ ଥିଲେ ତୃଷା ଚାତକର ତାହା ମେଘଜଳକୁ ରସିତ । ଏହା-ବଗୁଭକର ।

୧୦—ବିପ୍ର ପ୍ରଶଂସିତ କହିଲେ, ଉତ୍ତମର ସବର୍ଣ୍ଣ ହୋଇବାରୁ ଜଳ ଜନ୍ତୁ (ମାଛ) ଅଟେ । ବିବେକ ଶୂନ୍ୟ ତା ବସ୍ତୁରେ ପଶୁ ଓ ପକ୍ଷୀ ସମାନରୂପେ ଲକ୍ଷିତ ହୁଅନ୍ତି । ଗଙ୍ଗା ଜଳ ଓ ଚାତକ ପକ୍ଷୀ ହୋଇଥିବାରୁ ଭଲମନ୍ଦ ବିଚାର କରି ପାରିଲେ ନାହିଁ ।

ଯେ ଉତ୍ତମା-ଉତ୍ତମାଙ୍ଗ-ଭୂଷଣ-ରତନ ।
ଦୁର୍ବଳ ନଗ୍ରରେ ସିତା ନବେଶିବ ମନ । ୧୧ ।
ନାରଦ ପର୍ବତ ତାତ ବର କରିଥିଲେ ।
ଇଲାକନ୍ୟା ବିଷ୍ଣୁ ଦରଶନେ ମାଳା ଦେଲେ । ୧୨ ।
ବୈଦ୍ୟ ସ୍ୱପ୍ନେ ସାଧ୍ୱୀ ଯାହା ଘେନ ବିରହଣୀ ।
ବାଣିଜ୍ୟ କରିବ ସେହୁ ସ୍ୱପ୍ନଧନ ଘେନ । ୧୩ ।
ଗନ୍ଧବତୀସାର ରସବତୀ ଯେ ପଦ୍ମିନୀ ।
କୋମଳା ଏ ପ୍ରଶଂସାରୁ ଆନ କ କାମିନୀ । ୧୪ ।
ସେ ଚଣ୍ଡାଂଶୁ ସ୍ନେହବଶ ଥାଉ ଚନ୍ଦ୍ର ପ୍ରୀତି ।
ତାର ପ୍ରକାଶେ ପଦ୍ମିନୀ ନୟନ ମୁଦନ୍ତି । ୧୫ ।
ବୃନ୍ଦାବତୀ ଜଳନ୍ଧରେ ହେବାରୁ ଲୋଲୁପ ।
ଭଗବାନ ଦିବ୍ୟରୂପ ଦେଖି ଦେଲା ଶାପ । ୧୬ ।
ମନ୍ତ୍ରୀ ବୋଲେ ଏ ବଣିପସରା ପରି ପଟ୍ଟ ।
ସୁବର୍ଣ୍ଣ ଦୁର୍ବର୍ଣ୍ଣ ଅଛି ଜାଣିମା ଲମ୍ପଟ । ୧୭ ।
ଆହେ ରଙ୍ଗାଜୀବ ତବ ଜୀବବନ୍ଧୁ ଯିବ ।
ବନ୍ଧୁଜୀବ-ଅଧରୀକି ଏ ପଟ୍ଟ ଭେଟିବ । ୧୮ ।

---

୧୧—ଯେ ଯେମା ଉତ୍ତମା ସ୍ତ୍ରୀ ମାନଙ୍କର ମସ୍ତକ ମଣ୍ଡନ ମଣି ସ୍ୱରୂପ । ସେ ଦୁର୍ବଳ ପୁରଠାରେ ମନ ନବେଶି ଥିବ ନିଶ୍ଚେ । ଉତ୍ତମାଙ୍ଗ, ମସ୍ତକ ।

୧୨—ବାପ ପର୍ବତ ଋଷି ନାରଦଙ୍କୁ ବର କରିଥିଲେ । କିନ୍ତୁ ଇଳାକନ୍ୟା ବିଷ୍ଣୁଙ୍କୁ ଦେଖି ବରଣ କଲା । ତାତ, ବାପ ।

୧୩—ବୈଦ୍ୟ କହିଲେ, ସାଧ୍ୱୀ ଯେମା ସେହି ସ୍ୱପ୍ନ ଦୃଷ୍ଟ ପଦାର୍ଥ ଘେନ ବିରହିଣୀ ହୋଇଅଛି । ସେହୁ ସ୍ୱପ୍ନଧନ ଘେନି ବାଣିଜ୍ୟ କରିବ । ଅର୍ଥାତ୍ ତାକୁ ବରିବ । ସାଧ୍ୱୀ, ସତୀ ।

୧୪୧୫—ଗନ୍ଧବତୀ ଶ୍ରେଷ୍ଠା ରସବତୀ କୋମଳା ପଦ୍ମିନୀ, ଏ ସବୁ ପ୍ରଶଂସାରୁ କାମିନୀମାନେ ମଧ୍ୟ ଅନନ୍ୟ ନୁହନ୍ତି । ପଦ୍ମଲତା ମଧ୍ୟ ଏରୂପର । ସେ ପଦ୍ମଲତା ତୀକ୍ଷ୍ଣକରଣ ସୂର୍ଯ୍ୟଙ୍କର ସ୍ନେହାଧୀନା ଅଟେ । ଅମୃତାଂଶୁ ଚନ୍ଦ୍ର ସହିତ ପ୍ରୀତିକରିବା ହେତୁ ଥାଉ, ସେ ଚନ୍ଦ୍ରର ପ୍ରକାଶରେ ପଦ୍ମିନୀ ନ ଫୁଟେ, ଅର୍ଥାତ୍ ଫୁଟେ ନାହିଁ ।

୧୬—ବୃନ୍ଦାବତୀ ଜଳନ୍ଧରଠାରେ ଆସକ୍ତ ଥିବାରୁ ବିଷ୍ଣୁଙ୍କର ଦିବ୍ୟରୂପ ଦେଖି ବୃନ୍ଦା ଶାପଦେଲା ।

୧୭—ମନ୍ତ୍ରୀ କହିଲେ, ଏ ଚିତ୍ରପଟ୍ଟ ବଣିଆ ପସରା ପରି ହୋଇଅଛି । ସେ ପସରାରେ ସୁନା ଓ ରୁପାଥାଏ । ଏ ଚିତ୍ରପଟ୍ଟରେ ସୁନ୍ଦର ଅସୁନ୍ଦର ଲେଖା ଅଛନ୍ତି । ଜାଣିମା ଯେମା କାହାଠାରେ ଲୋଭିତ ଅଛି । ସୁବର୍ଣ୍ଣ, ସୁନା ଓ ସୁନ୍ଦର । ଦୁର୍ବର୍ଣ୍ଣ, ରୁପା ଓ ଅସୁନ୍ଦର ।

୧୮—ଆହେ ଚିତ୍ରକର ! ତୁମ୍ଭ ଜୀବବନ୍ଧୁ (ପ୍ରିୟା) ଏ ପଟ୍ଟ ନେଇ ଯିବ, ବନ୍ଧୁଲି ଅଧର ଯେମାକୁ ଭେଟିବ । ରଙ୍ଗାଜୀବ, ଚିତ୍ରକର ।

ସେ କାଳେ ନେତ୍ର କପାଳେ ଦୃଷ୍ଟିକି ନବେଶି ।
ଜାଣିମ ଲୀଳାଭିଳାଷୀ ଯହିଁ ସାଭିଳାଷୀ । ୯ ।
କରିବା ବର ଆଣିବା ଉଦ୍ୟମ ଶୁଣି ତା ।
ସେ ଯାଇଁ ପ୍ରେରଣ କଲା ଶୁଦ୍ଧାନ୍ତେ ବନିତା । ୧୦ ।
ଦେଖେ ବାଳା ୧ବାସାଞ୍ଚଳ ଦଶା ଗ୍ରହ କରି ।
ଛଣ୍ଡାଉଛି ପରମପଣ୍ଡିତା ଗୁଣ ଧରି । ୧୧ ।
ପୂର୍ବ ଲୋକନ ଅପୂର୍ବପୁରୁଷ ବସ୍ତିନେ ।
ଆଶ୍ରୟ ନାହିଁ ବଞ୍ଚିତ ସଂଶୟ ଜୀବନେ । ୧୨ ।
ହୃଦୟଦୋଳିତ ପତ୍ର ପୁଷ୍ପମାଳ ମ୍ଳାନ ।
ରସାଳସୀ ଶିଶୁଶଶୀ ପ୍ରତିମ ରଞ୍ଜନ । ୧୩ ।
ରସାଳ ଡାଳିମ୍ବ ବୀଜ ଅଶନେ ଡରଇ ।
ପାଣିସ୍ଥିତ କମଳ ଚୁମ୍ବିବା ଇଚ୍ଛା ହୋଇ । ୧୪ ।
ଅଗାଧ ଶୋକସାଗରେ ବୁଡ଼ି ଯାଇ ମନ ।
ଉଦିତ ମୁଦିତେ ଦେଖେ ଦେଖିଲା ନୟନ । ୧୫ ।

---

୯—ଲୀଳାଭିଳାଷିଣୀ ଜେମା ସେ ଦର୍ପଣ ଦେଖିବାବେଳେ କପାଳରେ କେଶ ଗୋଟି ସେହିଁଠାରେ ଦୃଷ୍ଟି ନବେଶିବ । ସାହାଠାରେ ଅଭିଳାଷିଣୀ ହୋଇଅଛି ବୋଲି ଜାଣିବ । ସୂକ୍ଷ୍ମଦର୍ଶୀ ଅନୁମାନ କରିବ ।

୧୦—ଅମ୍ଭେ ତାହା ଶୁଣି ତାକୁ ବରକର ଆଣିବା ବିଷୟରେ ଉଦ୍ୟମ କରିବା । ତହିଁ ସେ ରାଜାଙ୍କ ଯାଇଁ ଜନ ସାର୍ଥୀଙ୍କୁ ଅନ୍ତଃପୁରକୁ ପଠାଇଲ । ୧ଶୁଦ୍ଧାନ୍ତ, ଅନ୍ତଃପୁର ।

୧୧—[illegible] ନଉଶିବ । ସେ ବାଳା ଯେମା ପରମପଣ୍ଡିତା ଗୁଣଧର ବାନାପଣ୍ଣ ପରି ଗ୍ରହଣକର ଛି । ଗ୍ରହଦଶା ଛଣ୍ଡାଇବା ଉଦ୍ଦେଶ୍ୟ ଥିବାରୁ ପଣ୍ଡିତା ଗୁଣ ଦେଖାଇଲା । ୧ବାସାଞ୍ଚଳ ଦଶା ବାନାପଣ୍ଣ ପରି ।

୧୨—ଏଠାରୁ ତନ୍ତ କାମଦଶା ବର୍ଣ୍ଣିତ ହେବ । ପୂର୍ବରୁ ଦେଖିଥିବା ସେ ଅପୂର୍ବ ସୁନ୍ଦର ପୁରୁଷଙ୍କ ବାଟରୁ ଅନ୍ୟ ଆଶ୍ରୟ ନାହିଁ । ଜୀବନରେ ସନ୍ଦେହ ହୋଇଅଛି । ଏଠାରେ ମନଃସଙ୍ଗ ବର୍ଣ୍ଣିତ ହେଲା ।

୧୩—ତାର ହୃଦୟରେ ଦୋହଲୁଥିବା କର୍ପୂରପତ୍ର ଓ ଫୁଲର ମାଳାସବୁ ମଳିନ ହୋଇଅଛି । ଏଠାରେ ତାପ । ସେ ରସାଳସୀ ଜେମା ଦ୍ୱିତୀୟା ଚନ୍ଦ୍ରର କାନ୍ତି ଧାରଣ କରିଅଛି । ଏଠାରେ କୃଶତା ଓ ପାଣ୍ଡୁତା ।

୧୪—ଆମ୍ବ ଓ ଡାଳିମ୍ବ ବୀଜ ଖାଇବାକୁ ଡରୁଅଛି । ଏଠାରେ ଅରୁଚି । ହାତରେଥିବା ପଦ୍ମଫୁଲକୁ ଚୁମ୍ବିବାକୁ ଇଚ୍ଛା କରୁଅଛି । ରାଜକୁମାରଙ୍କ ମୁଖ କଳ୍ପନାରେ । ଏଠାରେ ସଙ୍କଳ୍ପ ।

୧୫—ଜେମାଙ୍କର ମନ ଅଗାଧ ଶୋକ ସାଗରରେ ବୁଡିଯାଏ । ଅନବଲମ୍ବତା । ନୟନ ମୁଦ୍ରିତ କଲେ ଦେଖିଥିବା କୁମାର ଉଦିତ ହୁଏ, ତାହାଙ୍କୁ ଦେଖେ । ଏଠାରେ ତନ୍ମୟତା ।

କଥାପ୍ରସଙ୍ଗ ସ୍ୱଭାବେ ବଚନ ରଚତ ।
ଚନ୍ଦନ-[1]ଇନ୍ଧନ ନବାମ୍ବର ପାଶେ ସ୍ଥିତ । ୨୬ ।
[1]ରକ୍ତୋତ୍ପଳାବଳୀ ପଟ ଭେଟେ ଏ ସମୟେ
ଦେଖେ ସେଗଣ ବର୍ଣ୍ଣିକଗଣ ଶୋଭା ପାଏ । ୨୭ ।
ସଖୀ ସଙ୍ଗେ ସୁମୁଖୀ ସେ ଚିତ୍ର ଦେଖି ଦେଖି ।
ଗତ ଦର୍ଶନ ପୁରୁଷେ ରଖିଲା ସେ ଆଖି । ୨୮ ।
ସେ ଖଞ୍ଜନ ରଞ୍ଜନ ସେ ପ୍ରତିମା ପିଞ୍ଜୁଳା ।
ସାରଗାର ଗୁଣ ଅଠାକାଠିରେ ଲାଗିଲା । ୨୯ ।
ପୁଲକିଲା କପୋଳ କି ସେ ନିପକଳିକ ।
ଚୁମ୍ବିବୋଲି ଦେଖାଇଲା କିଶୋର-ଅଳିକ । ୩୦ ।
ଅଳସ ବ୍ୟାଜେ ଛନ୍ଦିଲା ଊର୍ଦ୍ଧ୍ୱେ ବେନିକର ।
ଏ ପାଶେ ବାନ୍ଧି ରଖିବା ଅଭୀଷ୍ଟ କି ତାର । ୩୧ ।
ପୀନ କୁଚ ଉଚ ଦିଶିବାରୁ ଏହା ତର୍କି ।
ଭାବଗୃହ ସ୍ଥଳେ ଅମ୍ବୁଜାକ୍ଷୀ ଚମ୍ପୁ ଟେକ । ୩୨ ।
ସେ ଅନୁରାଗିଣୀ ସେ ବାମାକୁ ଅନୁଗ୍ରହ ।
କଲା ଅଣାଇ ବସନ ଭୂଷଣ[1]ସନ୍ଦୋହ । ୩୩ ।

---

୨୬—କଥା ପ୍ରସଙ୍ଗ ସ୍ୱଭାବରେ ଅର୍ଥାତ୍ ବଡ ଚତୁର ପ୍ରକାରରେ ବଚନରଚନା କଲେ । ଏଠାରେ ଉନ୍ମାଦ ଅବସ୍ଥା । ମୂର୍ଚ୍ଛା ହୋଇଥିବାରୁ ମରଣ କୋଳେ ଚନ୍ଦନକାଠ ଓ ବସ୍ତ୍ରଲୁଗା ପାଖରେ ଥୁଆ ହୋଇଥିଲା । ଏଠାରେ ମୂର୍ଚ୍ଛା ବର୍ଣ୍ଣିତ ହେଲା । [1]ଇନ୍ଧନ, କାଠ ।

୨୭—ଏହି ସମୟରେ ଚିତ୍ରକାରିଣୀ ଚିତ୍ରପଟ ଭେଟିଲା । ଯେମିତି ଦେଖିଲା, ପଟରେ ସେଗଣ ବର୍ଣ୍ଣିକମାନ ଚିତ୍ର ଶୋଭା ପାଉଥିଲା । [1]ରକ୍ତୋତ୍ପଳାବଳୀ, ଚିତ୍ରକାରିଣୀ ।

୨୮—ସୁମୁଖୀ ଯେମିତି ସଖୀମାନଙ୍କ ସଙ୍ଗରେ ସେ ଚିତ୍ର ଦେଖି ଦେଖି ପୂର୍ବ ଦୃଷ୍ଟ ପୁରୁଷଠାରେ ଆଖି ରଖିଲା ।

୨୯—ଯେମିତି ସେ ଆଖି ରଞ୍ଜନ (ଅନୁରକ୍ତ) ଖଞ୍ଜନ ପକ୍ଷୀ ହେଲା । ସେ ପୁରୁଷର ପ୍ରତିବିମ୍ବ ପିଞ୍ଜୁଳାରେ ଥିବା ସାରଗାର ଗୁଣରୂପକ ଅଠାକାଠିରେ ଲାଗି ରହିଲା ।

୩୦—ଯାହା ଯେମିତି ଗଣ୍ଡସ୍ଥଳ ରୋମାଞ୍ଚିତ ହେଲା । ଉତ୍ପ୍ରେକ୍ଷା ହେଉଅଛି । ସେ ଯେମିତି କଦମ୍ବକଳିକ ଚୁମ୍ବନକର ବୋଲି ସେ ଚିତ୍ରିତ ଯୁବକ ଭ୍ରମରକୁ ଦେଖାଉଥିଲା ।

୩୧—ଅଳସ ଭାଙ୍ଗିବା କପଟରେ ଦୁଇହାତ ଉପରକୁ ଟେକି ଛନ୍ଦିଲା । ଏହି ବାହୁପାଶରେ ସେ ପୁରୁଷକୁ ବାନ୍ଧିରଖିବା ସେ ଯେମିତି ଅଭିଳଷିତ ହୋଇଥିଲା ।

୩୨—ଯେମିତି ପୀନ କୁଚ ଉଚ ଦିଶିବାରୁ ଏହା ତର୍କଣା ହେଉଅଛି । ସେ ପୁରୁଷକୁ ବାନ୍ଧିରଖିବା ବନ୍ଦିଶାଳ ସ୍ଥାନରେ ସେ ପଦ୍ମନେତ୍ରା ଯେମିତି ଚମ୍ପୁ ଟେକିଛି ।

୩୩—ପରେ ଅନୁରାଗିଣୀ ଯେମିତି ବସ୍ତ୍ର ଓ ଅଳଙ୍କାର ସମୂହ ଅଣାଇ ସେ ଚିତ୍ରକାର ବାମାକୁ ଅନୁଗ୍ରହ କରିଦେଲା । [1]ସନ୍ଦୋହ, ସମୂହ ।

ଦେହ-ଆବାସ କରଣ ପଟ୍ଟକୁ ଥୋଇଲା ।
କେବଳ ହସ୍ତରେ ଧରି ବାହାର ନ ହେଲା । ୩୪ ।
ବାହୁଡ଼େ ସେ ବାଳୀ କରି ମନୋରଥ ପୂର୍ଣ୍ଣ ।
ତା ପତ୍ର ଶୁଣି ସମସ୍ତ ସଚିବେ କଥନ । ୩୫ ।
ଜାଣିଲୁ ପୁଷ୍ପପୁରେଶ-କୁମାରେ ଲୋଭିତ ।
କହିବା ଶୁଣ କୋବିଦେ ଏବେ ତା ଚରିତ । ୩୬ ।
ତାପୀ ମଦନେ ଅଧିକେ ¹ଉଷ୍ମାଗମ ଦହେ ।
ନୃପନନ୍ଦନ ²ଆରାମ-ସଦ୍ମେ ବସି କହେ । ୩୭ ।
ଏ କଦାଚ ଗ୍ରୀଷ୍ମ ବ୍ୟାଘ୍ର ପ୍ରବେଶ ¹ନଗରେ ।
ଦେଖ ରଙ୍କଣୀ ²ପାଟଳୀ ଅରକତ କରେ । ୩୮ ।
¹ଖର-କରଜ ପ୍ରକଟେ ଅତ୍ୟନ୍ତ ଦେଖାଇ ।
²ଧୂନ୍ନ କରି ବଦାନ୍ୟ ³ଜୀବନ ⁴ହରି ନେଇ । ୩୯ ।
କେତେ ରକ୍ଷା ଯେ ଅରସ୍ତ ନାଡ଼ କରିଥିବେ ।
ବଦ୍ୟାନନ୍ଦ ଯଶୋବନ୍ତ ଉତ୍ତର ଏ ଶ୍ରବେ । ୪୦ ।

---

୩୪—କେମା ସେ ପଟ୍ଟକୁ ବନ୍ଦଶାଳ କରି ଘରେ ନେଇ ଥୋଇଲା । ଏବଂ ହାତରେ କେବଳ ଧରି ରଖିଲା । ବାହାରକୁ ବାହାରିଲା ନାହିଁ ।

୩୫—ସେ ଚତୁରା ବାଳୀ ମନୋରଥ ପୂର୍ଣ୍ଣ କରି ଫେରି ଆସିଲା । ତାପରେ ଚିତ୍ରକାର ଏ ସମସ୍ତ କଥା ଶୁଣି ମନ୍ତ୍ରୀଙ୍କୁ କହିଲା ।

୩୬—ମନ୍ତ୍ରୀ ଜାଣିଲେ, ଏ କେମା ପୁଷ୍ପପୁର ରାଜକୁମାରଙ୍କ ଠାରେ ଆସକ୍ତ ହୋଇ ଅଛନ୍ତି । ଏବେ ସେ ରାଜକୁମାରଙ୍କ ଚରିତ କହୁଛି, ହେ କୋବିଦମାନେ ଶୁଣ ।

୩୭ ଏ ରାଜ କୁମାର ମଦନରେ ତାପି ହୋଇଥିଲେ, ପୁଣି ଗ୍ରୀଷ୍ମକାଳ ଅଧିକ ତପୁଅଛି । ଅତଏବ ବଗିଚାରେ ଥିବା ଗୃହରେ ବସି କହୁଅଛନ୍ତି । ¹ଉଷ୍ମାଗମ, ଗ୍ରୀଷ୍ମକାଳ । ²ଆରାମ ସଦ୍ମ, ବଗିଚା-ଘର ।

୩୮—ଏ ଗ୍ରୀଷ୍ମରୂପ ବ୍ୟାଘ୍ର ନଗରରେ ପ୍ରବେଶ କରିଅଛି, ଦେଖ ପାଦ ଟଳିପଡ଼ିବା ଲୋକକୁ ଚିର ରଙ୍କଣୀ ପରି ଉତ୍କ୍ରାନ୍ତ କରେ । ଆଉ ପଟ୍ଟନରେ ପ୍ରବେଶ କରି ରଙ୍କଣୀ ଓ ପାଟଳୀ ବୃକ୍ଷମାନଙ୍କୁ ପୁଷ୍ପ ଦ୍ୱାରା ରକ୍ତବର୍ଣ୍ଣ କରେ । ¹ନଗରେ, ନଗରରେ ଓ ପର୍ବତରେ । ²ପାଟଳୀ, ପାଦଟଳି ପଡ଼ିବା ଲୋକ ଓ ବୃକ୍ଷ ବିଶେଷ ।

୩୯—ଏ ଗ୍ରୀଷ୍ମସିଂହ ଅଟେ । କିରଣରୂପ ନଖ ପ୍ରକଟକୁ ଅତ୍ୟନ୍ତ ରୂପେ ଦେଖାଇ ଧୂନକରି ବଦାନ୍ୟ ଲୋକମାନଙ୍କ ଜୀବନ ନିଏ । ଏ ଗ୍ରୀଷ୍ମ ସୂର୍ଯ୍ୟ କିରଣ ଦୀପ୍ତିକୁ ଅଧିକ ଦେଖାଇ ବଦାନ୍ୟ କରି ଜଗତର ଜଳକୁ ହରିନିଏ । ¹ଖର କରଜ-ପ୍ରକଟ, ତୀକ୍ଷ୍ଣ ନଖ ପ୍ରକଟ ଓ ସୂର୍ଯ୍ୟକିରଣର ତାପ । ²ଧୂନ, ଧୂନ୍ନ, ଓ ନଷ୍ଟ । ³ଜୀବନ, ପ୍ରାଣ ଓ ଜଳ । ⁴ହରି, ସିଂହ ଓ ହରଣ କରି ।

୪୦—ଅରସ୍ତ ନିମିତ୍ତ ବାଡ଼ ଏ ବ୍ୟାଘ୍ର ଉପଦ୍ରବ କେତେକ ରକ୍ଷା କରିଥିବେ । କେଣାଡ଼େର ବାଡ଼ ଓ ଗ୍ରୀଷ୍ମରୁ କେତେକ ରକ୍ଷାକରି ଥିବେ । ଏହା ଶୁଣି ବଦ୍ୟାନନ୍ଦ ଓ ଯଶୋବନ୍ତ ମିତ୍ର ଦୁହେଁ ଏ ପ୍ରକାରେ ଉତ୍ତର ଦେଲେ । ¹ଅରସ୍ତ ବାଡ଼, ଉପଦ୍ରବ ନିବାରଣାର୍ଥ ବାଡ଼ ଓ କେଣାଡ଼େର ବାଡ଼ ।

୧ନବଚଣ୍ଡୀ ପ୍ରସନ୍ନେ ଏ ଶ୍ୱେତ ଯିବ ନାଶ ।
ମନ୍ତ୍ରର ଦେଇ ଅନ୍ତର ହୋଇ ଚନ୍ଦ୍ରପୁଂଷ । ୪୧ ।
ସ୍ତ୍ରୀପୁଂସଲକ୍ଷଣା ବୋଲେ ଉଦ୍ୟମ କରିବା ।
୧ଉଦନ୍ତ ଦେଉଥିବା କି ସେ କଟକେ ଯିବା । ୪୨ ।
ସ୍ୱର୍ଗ ଯେ ଦୁର୍ଲ୍ଲଭ ଯଜ୍ଞ କରି ଲଭେ ଜନ ।
ମନ୍ତ୍ରୀଜ ଉକ୍ତି ସେ ବାଳା କରୁଣାର ସ୍ଥାନ । ୪୩ ।
ଭଲ ଅଭିଳାଷ ପରିଚୟ ଶୁନା ବାଳା ।
କାମଶରେ ରୁଦ୍ରାଣୀ ଛଟକେ ବନ୍ଧଦେଲା । ୪୪ ।
ସେ କମଳା ଏହାଙ୍କ ଏ ଚନ୍ଦ୍ରା ସେହ୍ନଦନୁ ।
ମୁଁ ପୁରୁଷୋତ୍ତମ କେହ୍ନେ ମଣ୍ଡିବ ମୋ ଜାନୁ । ୪୫ ।
ଶ୍ରୀମୁଖ ବକ-ବଜନ୍ମ ତାରକ ପ୍ରସନ୍ନ ।
ସ୍ମୃତ ଯେନ ପବନ ହୁଅଇ ପ୍ରତିଦନ । ୪୬ ।
ମହୀମଣ୍ଡନା ମହିଳାମଣି ତୋ ବଖାନ ।
ନ ଥିଲା ନୋହିବ ନାହିଁ ଏ ଗୁଣ କଥନ । ୪୭ ।

---

୪୧—ନବଦୁର୍ଗା ପ୍ରସନ୍ନ ହେଲେ ଏ ସିଂହ ବ୍ୟାଘ୍ର ଭୟ ନାଶ ହୋଇଯିବ । ଶ୍ଳୋକରେ ନୃପତି ରମା ପ୍ରସନ୍ନ ହେଲେ ଏ ଚରିତ୍ର ଛାଡ଼ି ଯିବ । ଚନ୍ଦ୍ର ପୁଂସ୍ ଏ ବଂଶରେ ମନ୍ତ୍ର ବା ଦଣ୍ଡର ଦେଇ ଅନ୍ତର ହୋଇଅଛନ୍ତି ।

୪୨—ପୂର୍ବୋକ୍ତ ଯୋଚା କହିଲ । ଉଦ୍ୟମ କରିବା, ଖବର ଦେଉଥିବା, ସେ ନଗରକୁ ଯିବା । ୧ଉଦନ୍ତ, ବାର୍ତ୍ତା ।

୪୩—ସ୍ୱର୍ଗ ଦୁର୍ଲ୍ଲଭ ହେଲେ ସୁଦ୍ଧା ଲୋକ ଯଜ୍ଞକରି ତାହା ଲାଭ କରେ । ସେପରି ଉପାୟକରି ତାକୁ ପାଇବାକୁ ଚେଷ୍ଟା କରିବା । ଏହା ଶୁଣି ମନ୍ତ୍ରି ପୁତ୍ର କହିଲା, ସେ ବାଳା ଦୟାର ଆଧାର ଅଟେ । ତା ଅନୁଗ୍ରହ ପ୍ରତି ବିଶେଷ ଚେଷ୍ଟା ଦରକାର ହେବ ନାହିଁ ।

୪୪—ଏଠାରୁ ଅଭିଳାଷ ପ୍ରଭୃତି କାମ ଦଶା ବର୍ଣ୍ଣିତ ହେବ । ଏହାଙ୍କର ଭଲ ଅଭିଳାଷ ହୋଇଅଛି । ସେ ବାଳା ବନ୍ଧା ପରିଚୟରେ ରୁଦ୍ରାଣୀଙ୍କର ଦାସ କାମ ଶରରେ ବନ୍ଧପଡ଼ିଲା । ଏଠାରେ: ଅଭିଳାଷ ।

୪୫—ସେ ଧନ୍ୟ ଏହାଙ୍କର ଏହି ଚନ୍ଦ୍ରା ହୋଇଅଛି । ସେ ଯେମା କମଳା (ପଦ୍ମା), ସୁନ୍ଦରୀ ଲକ୍ଷ୍ମୀ ଅଟେ । ମୁଁ ପୁରୁଷୋତ୍ତମ (ପୁରୁଷଶ୍ରେଷ୍ଠ) ସୁନ୍ଦର ବିଷ୍ଣୁ ଅଟେ । ସେ କପରି ମୋ ଜାନୁକୁ ମଣ୍ଡନ କରିବ ଅର୍ଥାତ୍ ମୋର ପ୍ରିୟା ହେବ । ଏଠାରେ ଚନ୍ଦ୍ରା ।

୪୬—ତାହାର ଶ୍ରୀମୁଖ ବିଶେଷ ଜନ୍ମ (ହାତ) ଦାସ ବକ ଓ ପ୍ରସନ୍ନ କଜ୍ଜଳବାସ୍ତବ୍ୟ ଅତଏବ ତାରକ ମନ୍ତ୍ର ସ୍ୱରୂପ ତାହା ସ୍ମରଣ କରି ପ୍ରତିଦିନ ପବନ ହେଉଅଛି । ଏଠାରେ ସ୍ମୃତି ।

୪୭—ତୋ ବ୍ୟତୀତ ମହୀମଣ୍ଡନା ମହିଳାମଣି କେହି ନଥିଲା, ନାହିଁ । ହେବ ନାହିଁ, ଏହିପରି ଏ ଗୁଣ କଥନ ହେଉଅଛି ।

ବିଷୟ ହେଲାଣି ପ୍ରାନ୍ତ ହତ ମୋ ଏ ଦଶା ।
ମୃଦୁଧ୍ୱନି ଶୁଭେ ଶ୍ରୁତି ଟେକଇ ଉଦ୍‌ବେଗେ । ୪୮ ।
ପ୍ରତିଆଶାରେ ସେ ସମାରୂପ ଦିଶିଗଲେ ।
ଆସ ଆସ ବସ କୋଳେ ପ୍ରଳାପରେ ବୋଲେ । ୪୯ ।
କଳକଣ୍ଠ ଦୂତ କରେ ଉଡ଼ିଗଲେ ସେହି ।
ଉନ୍ମାଦେ ହସି କହଇ ଗଲା ବାର୍ତ୍ତା କହି । ୫୦ ।
ବୋଲେ ତନୁ ୧ହରିଣକୁ ଶୁହିଁ ଯେବେ ପୁଚ୍ଛି ।
ସନ୍ନିପାତଜନ୍ୟ ଏ ବ୍ୟାଧି ୨ପୃଶ୍ନର କାହିଁଛି । ୫୧ ।
କଲ ଆନ ପ୍ରତିମା ପଣ୍ଡେୟ କ୍ଷଣେ କ୍ଷଣେ ।
ଶ୍ୱାସ ବଡ଼ ଜଡ଼ଭାବ ନାହିଁ ଗତି ଭଣେ । ୫୨ ।
ଏ ଦଶା ନବକିଶୋର ପାଇଲାଣି ଜାଣ ।
ଆଉ କିଛି ନୋହୁ କର ତୋର ଭୃତ୍ୟପଣ । ୫୩ ।
ଶୁଣି ହସ ହୋଇଲା ବୋଇଲା ଲେଖ ଲେଖ ।
ଜାଣିଛି ୧ଚତୁରମୁଖ ଚତୁରେ ୨ସୁମୁଖ । ୫୪ ।

---

୪୮—ବର୍ତ୍ତମାନ ମୋର ବିଷୟ ପ୍ରାନ୍ତହତା ହେଲାଣି ଅର୍ଥାତ୍ ନଷ୍ଟ ହେଲାଣି । ଏଠାରେ ଜଡ଼ତା, ଯେଉଁ ଦିଗେ ମୃଦୁ ବଚନ ଶୁଭୁଅଛି । ମୁଁ ସେ ଦିଗକୁ ଉଦ୍‌ବେଗରେ ମୋ କଥା ଶୁଣ କାନ ଡେରଇ । ଏଠାରେ ଉଦ୍‌ବେଗ ।

୪୯—ସଖୀ ପ୍ରତ୍ୟାଶା କରନ୍ତି ତାଙ୍କ ସେ ସମାନରୂପ ଦେଖାଗଲେଣି ପ୍ରଳାପରେ କହେ, ହେ ବାଳେ, ଆସ ଆସ ମୋ କୋଳରେ ବସ । ଏ ପ୍ରଳାପ ।

୫୦—ସର୍ବଦା କୋକିଳକୁ ଦୂତ କରଇ । ସେ ଉଡ଼ିଗଲେ ଉନ୍ମାଦରେ ହସି କହ କହେ, ବାର୍ତ୍ତା କହିବାକୁ ଏ ଗଲା । ଏଠାରେ ଉନ୍ମାଦ ।

୫୧—ତରୁଣୀଜନଙ୍କ ଦେହ ପାଣ୍ଡୁତାକୁ ଦେଖି କେହି ଯେବେ ପଚାରେ ତେବେ ବୋଲେ ଏ ସନ୍ନିପାତଜନ୍ୟ ବ୍ୟାଧି ଅଟେ । ଏହାପାଇଁ ଔଷଧ କାହିଁ ଅଛି, ନାହିଁ । ଏ ପାଣ୍ଡୁତା । ୧ହରିଣ, ପାଣ୍ଡୁତା । ୨ପୃଶ୍ନର, ଔଷଧ ।

୫୨—ଅଳଙ୍କୃତା ପ୍ରତିମା ପ୍ରାୟ କ୍ଷଣେ କ୍ଷଣେ ଅଚଳ ହେଉଛି, ଏ ଜଡ଼ତା । କ୍ଷଣେ କ୍ଷଣେ ବଡ଼ ନିଃଶ୍ୱାସ ଛାଡ଼ୁଛି । କେବେ ଜଡ଼ଭାବ (ମୂର୍ଚ୍ଛା) ହେଉଅଛି । କ୍ଷଣେ କ୍ଷଣେ ମୋ ବନା ଗତି ନାହିଁ ବୋଲି କହେ । ଏ ମୃତ୍ୟୁକଳ୍ପ ।

୫୩—ନବକିଶୋର ଗଜପତିକୁ ଏ ଦଶାମାନ ପାଇଲାଣି, ଜାଣ, ଏବେ ଅଭିବନ୍ଧ ନ ହେଉ । ତୁମ୍ଭ ଭୃତ୍ୟପଣ ପ୍ରକାଶ କର ।

୫୪—ପୋଷା ମଇନା ମୁଖରୁ ଏହା ଶୁଣି ହସହୋଇ କହନ୍ତି । ଶୀଘ୍ର ପତ୍ରଲେଖ ମୁଁ ଜାଣିଅଛି । ବିଧାତା ଶଙ୍କରନାରାୟଣଙ୍କଠାରେ ପ୍ରସନ୍ନ ଅଛନ୍ତି । ୧ ଚତୁରମୁଖ, ବିଧାତା । ୨ ସୁମୁଖ, ପ୍ରସନ୍ନ ।

ବସ୍ତ୍ର ବସ୍ତୁ ଲେଖି ଛଦଳପତ୍ରରେ ।
ସମର୍ପିଲେ କି ସମର୍ପି ହେଲେ ତାହାଠାରେ । ୫୫ ।
ମଙ୍ଗଳକାରୀ ହୋଇଲେ ଶିବା ଦ୍ୱିଜ ତହିଁ ।
ବାମ ଦକ୍ଷିଣଭାଗକୁ ସୁଲଗ୍ନ କହଇ । ୫୬ ।
ତେଣେ ଉପାଧ୍ୟାୟୀ ଯେ ଗମନ କରୁଥିଲେ ।
ଏଣେ ପୋଷ୍ଟା ଯା'ଇ ଯୋଗବଳରେ ଜାଣିଲେ । ୫୭ ।
ଅଦ୍ଭୁତସ୍ତ୍ରଂସ ମାଙ୍ଗଲ୍ୟା ଶୁକ ଶାରୀ ହୋଇ ।
ଚମ୍ପାପୁର ମଧ୍ୟରେ ସରସୀତଟେ ଯାଇ । ୫୮ ।
ଲବଙ୍ଗଲତାରେ ବସି ଭାଷେ ଏକପଦ ।
କୁମାରୀ କୁମାର ସ୍ନେହ ମଦନବର୍ଦ୍ଧନ । ୫୯ ।
କଳହଂସକେଦାରେ ଭୂପାଳେ ଅଳ୍ପାଦିକ ।
ପ୍ରଥମରେ 'ଯେ' ଯୁକ୍ତ ଅଧିକ ଏତେ ମାତ୍ର । ୬୦ ।
ଶ୍ରୀରାମ ସାର୍ଥ କରବେ ଏ ମନୋରଥକୁ ।
ଶ୍ରୀ-ରାମ୍-ମୂର୍ତ୍ତି ମୋହିଲେ ଯେ ୧ହରଯୂଥକୁ । ୬୧ ।
କହେ କବି ବୀରବର ଉପଇନ୍ଦ୍ର ଭଞ୍ଜ ।
ସୁହୃଦେ ଯେ ମିଶ୍ରିତ ଗ୍ରନ୍ଥକୁ ଏବେ ହେଜ । ୬୨ ।

---

୫୫—ବସ୍ତ୍ର ବସ୍ତୁ ଶବର ପଦଲେଖି ସେ ପୋଷ୍ଟାଠାରେ ସମର୍ପଣ କଲେ, ତାଙ୍କଠାରେ ନିଜେ ସମର୍ପିତ ହେଲେ ।

୫୬—ସେ ଅନୁକୂଳବେଳେ ଶିବା ( କିଆ ) ଓ ଦ୍ୱିଜ ( ବ୍ରାହ୍ମଣ ) ଯଥାକ୍ରମେ ବାମ ଓ ଦକ୍ଷିଣ ଭାଗରେ ରହି ଶୁଭଲଗ୍ନକୁ ସୂଚନା କରଇ ମଙ୍ଗଳକାରୀ ହେଲେ ।

୫୭—ଉପାଧ୍ୟାୟୀ ତେଣେ ଯାଉଥିଲେ, ସେତେବେଳେ ଜାଣିଲେ ପୋଷ୍ଟା ଏଣେ ଯାଉଅଛନ୍ତି ।

୫୮ ୫୯—ଅଦ୍ଭୁତ ସ୍ୱରୂପ ଓ ମାଙ୍ଗଲ୍ୟା ଦୁହେଁ ଶୁଆ ସାରି ହୋଇସାରି ଚମ୍ପାପୁର ମଧ୍ୟରେ ପୋଖରୀ କୂଳରେ ଲବଙ୍ଗଲତାରେ ବସି ପଦେ କହିଲେ । ଏ କୁମାରୀ ଓ କୁମାରଙ୍କର ପରସ୍ପର ସ୍ନେହ ହେତୁରୁ କାମଗାଥା ହୋଇଅଛି ।

୬୦—ଏହି ପଦ କଳହଂସ କେଦାର ଓ ଭୂପାଳରାଗରେ ରଚିତ ହୋଇଅଛି । ପ୍ରଥମ କଳହଂସ କେଦାରରେ ଶେଷରେ "ଯେ" ଏହି ଅକ୍ଷର ଯୁକ୍ତ ହେବା ଅଧିକମାତ୍ର । କିନ୍ତୁ ଉଭୟ ସମାନ ଅଟନ୍ତି ।

୬୧—ଶ୍ରୀରାମଚନ୍ଦ୍ର, ଏ ମନୋରଥ ପୂର୍ଣ୍ଣ କରିବେ । ଯେ ଶ୍ରୀଯୁକ୍ତ ରମଣୀୟ ମୂର୍ତ୍ତି ଦ୍ୱାରା ମାଙ୍କଡ଼ମାନଙ୍କୁ ବଶ କରିଥିଲେ । ୧ ହରିଯୂଥ, ମାଙ୍କଡ଼ ଦଳ ।

୬୨—ବୀରବର କବି ଉପେନ୍ଦ୍ର ଭଞ୍ଜ କହୁଅଛନ୍ତି । ହେ ସହୃଦୟ ଲୋକମାନେ ସ୍ତ୍ରୀ ପୁରୁଷଙ୍କ ବିଚିତ୍ର ବ୍ୟବହାରରେ ମିଶ୍ରିତ ଏ ଗ୍ରନ୍ଥକୁ ବିଚାରକର ।



# ବିଂଶ ଛାନ୍ଦ ।

## ଖଗ ଜଳହଂସ କେଦାର ଓ ଭୂପାଳ ।

ଭୂଷଯାରସେ ବେନି ଖଗ ଗୁଣର । ନୀରକ୍ଷୀରମିଶ୍ରିତ ଦ୍ୱିରୁକ୍ତି ବାର ସେ ।
ଶୁକ କହିବା ରଚିତା ଶୁଭ୍ରୁସ୍ୱ ସ୍ୱର । ସାରୀ ଅଗ୍ରେ ତେ ମୃଦୁତର କହି କରେ ସେ ।୧
ନାଗରମଣି ସାର ଶ୍ରୁତି-ଶ୍ରୀ-ଧାମ । ନାହିଁ ୧ଶ୍ରୁତରେ ତାହା କୀର୍ତ୍ତି ସମ ସେ
ସୁନା ସାଦୃଶ କାନ୍ତ କି ମନୋରମ । କାମିନୀଚୟ ଧୈର୍ଯ୍ୟ ହରିବାକୁ କ୍ଷମ ସେ ।୨
୧ଲୋକେ କେଶରୀ ବୋଲି ସ୍ତୁତି କି ଭଣି । କର ଅରି ଜୟକୁ ମଧ୍ୟରେ ପୁଣି ସେ ।
ଅଧୀର ଶରଦୁଃଖ ସେ ପାଇଲେ ସେ । ବଶ ନେମାରେ ଶାହିବଞ୍ଚିବା ଖୋଜେ ସେ ।୩
୧ସୁମନସର ୨ପାତେ କି ଦେହ ଭୂତେ । ଶନ୍ତ ସୁନ୍ଦର ଶଢା ଚମକେ କେତେ ସେ
ନୀର ତେଜ ବନରେ ଆଦରହୀନ । ରତନବର ବେଶେ କି ବଳେ ମନ ସେ ।୪

---

୧—ଅହେ ପଣ୍ଡିତ ହଂସମାନେ ଜଳହଂସ କେଦାର ଓ ଭୂପାଳ ଏହି ଦୁଇରାଗରେ ଗ୍ରଥିତ ନୀର ଓ କ୍ଷୀରପରି ମିଶ୍ରିତ ଶୁଅ ଓ ସାରୀ ଦୁହିଙ୍କର ଉକ୍ତିକୁ ବାର ( ପୃଥକ୍ କର ବୁଝ ) ଏ ଛନ୍ଦରେ ଶୁଅକୁମାର ପକ୍ଷରୁ ଜଳହଂସ କେଦାର ରାଗରେ ଓ ସାରୀ କୁମାରୀ ପକ୍ଷରୁ ଭୂପାଳ ରାଗରେ ମିଶ୍ରିତରୂପେ କହୁଅଛନ୍ତି । ୧ବୁଦ୍ଧ ସାରସ, ପଣ୍ଡିତହଂସ । ଶୁକ କୁମାରର ଚାତୁର୍ଯ୍ୟର ସ୍ୱର ସାର ଅଗ୍ରରେ ମୃଦୁତର ( ଅତି କୋମଳ ) କର ବାରତା କହଇ ସାରୀ ଶୁକ କହିବାର ଚାତୁରୀ ର ସ୍ୱର ତା ଅଗ୍ରରେ ହିଁ ମୃଦୁତର ( କୋମଳ ପ୍ରତିବଚନ ) କରେ ।

୨—ଶୁକଉକ୍ତି, ସେ କୁମାର ନାଗରମଣି ଓ ସାର ଶ୍ରୁତିଶ୍ରୀ ଧାମ ( ଉତ୍କୃଷ୍ଟ ନାଗରମାନଙ୍କର ଉପର ସ୍ଥାନ ) ଅଟନ୍ତି । ତାହାଙ୍କ କୀର୍ତ୍ତି ସମାନ ଆଉ ଶ୍ରୁତିରେ ( ବେଦରେ ) ଶୁଣାନାହିଁ ତାଙ୍କର ସୁନା ସଦୃଶକାନ୍ତି କି ମନୋହର ଅଟେ । ସେ କାମିନୀଚୟ (ସ୍ତ୍ରୀମାନଙ୍କର) ଧୈର୍ଯ୍ୟ ହରଣ କରିବାକୁ ସମର୍ଥ ଅଟନ୍ତି । ସାରୀଉକ୍ତି । ସେ କୁମାରୀ ନାଗରମଣୀ ସାର ( ନାଗରୀକ ସ୍ତ୍ରୀମାନଙ୍କଠାରୁ ଉତ୍କୃଷ୍ଟ ) ଓ ଶ୍ରୀରଧାମ ସୌନ୍ଦର୍ଯ୍ୟସ୍ଥାନ ଅଟନ୍ତି । ଶୁଣିବାରେ ତାହାପରି ଆଉ କେହିନାହିଁ । ଉତ ଦେବୀ ତା ସମତ ? ଅର୍ଥାତ୍ ସମାନ ନୁହେଁ । ସୁନା ସାଦୃଶକାନ୍ତ ( ସୁନାସିକା ଚକ୍ଷୁ ଯୋଗ ) କି ମନୋହର ଅଟେ । କାମୀନଚୟ ( କାମୁକ ପୁରୁଷମାନଙ୍କର ) ଧୈର୍ଯ୍ୟହରଣ କରିବାକୁ ସମର୍ଥ ଅଟନ୍ତି । ୧ଶ୍ରୁତିରେ, ବେଦରେ ଓ ଶୁଣିବାରେ । ୨କ୍ଷମ, ସମର୍ଥ ।

୩—ଶୁଅ, ଲୋକେ ଯାହାକୁ କେଶରୀବୋଲି ସ୍ତୁତି କରନ୍ତି । ପୁଣି ସେ ମଧ୍ୟଲୋକ ( ପୃଥିବୀ ) ରେ ଅରି (ଶତ୍ରୁ) ଜୟକୁ କରିଅଛନ୍ତି । ସେ ନେମାଠାରେ ବଶ ହେବାରୁ ଅଧୀରହୋଇ ଶର ଦୁଃଖକୁ ପାଇଲେ । ତ୍ରାହି ( ରକ୍ଷାକର ) ବୋଲି ବାଞ୍ଛା ଉପାୟ ଖୋଜୁଅଛନ୍ତି । ସାରୀ ଯାହାକୁ ଜଗତରେ କେଶରୀବୋଲି ସ୍ତୁତି ଭଣନ୍ତି । ପୁଣି ସେ କଟିଦ୍ୱାରା (କରିଅରି) କେଶରୀ ଜୟକୁ କରିଅଛି । ସେ ଅଧୀର ଶର ( ଦେବକୃତ ) ଦୁଃଖ ପାଇ ଖଞ୍ଜେ ଓ ( ମାରେ ) କନ୍ଦର୍ପରେ ବଶହୋଇ ରକ୍ଷାକର ବୋଲି ବଞ୍ଚିବାଉପାୟ ଖୋଜନ୍ତି । ୧ ଲୋକେ, ଲୋକମାନେ ଓ ଜଗତରେ କେଶରୀ, ସିଂହ ଓ କଶ୍ୟପ । ୨ ମଧ୍ୟରେ, ମଧ୍ୟମଲୋକ, ପୃଥ୍ୱୀରେ ଓ କଟିଦ୍ୱାରା ।

୪—ଶୁଅ ସେ ସୁମନସର କଥା ପଡ଼ିଲେ କି ଉପରେ କେମାର ସୁନ୍ଦର ଶଢା ଚିନ୍ତା କେତେ ଚମକୁଅଛନ୍ତି । (ନୀର) କୁହ ତେଜ ଉପବନରେ ଅତରହୀନ ହୋଇଅଛନ୍ତି । ( ନବର ବେଶେ ) ଜଗଇ ଭ୍ରମଣ

ତା ପଲ୍ଲବ ଶୟନେ ନ ଆସେ ନିଦ୍ରା । ଲେଖ ନେତ୍ର-ସମ୍ପତ୍ତି ଶରଧା ସଦା ଯେ ତରହେ ଭ୍ରସି ସେ ଯେ ସରସୀତର । ଆନ ନ ଦେଖେ, ସ୍ତୁତିଆଶାରେ ତାର ଯେ ।୫। ଅଗମ ନ ଯାଉଛି ଗୃହାନ୍ତେ ବଶେ । ଲଭିଲି ଭରସାରେ ସନ୍ତୋଷେ ବସେ ଯେ । ପାଞ୍ଚେ ପକ୍ଷ ଜନମୁଁ ପାଇବ ସତେ । ନଷ୍ଟେ ଅଧରାମୃତ କାରଣ ମତେ ଯେ ।୬। କାମନା ସଫଳରେ କରିବ ବ୍ରତ । କ ଉସନ୍ଧି ଥାଇ ପ୍ରତିଭୂଷର ଯେ । ଦେବକୀକୁମାରକୁ କରଇ ସ୍ତୁତ । ଅହେ କରୁଣା କର ମୁଁ ଅତିଆର୍ତ୍ତି ଯେ ।୭। ଚନ୍ଦ୍ରକାନ୍ତମୁଖୀଙ୍କ ଦ୍ରବିଲ ଗ୍ରହି । ହା ସେ ଚନ୍ଦ୍ରପ୍ରଭାଗ୍ରୀ ଧିଆନ ଏହି ଯେ । ଭ୍ରମରକୁନ୍ତଳୀ ପୁଣି ଯେ ସ୍ମରେଛି । ମତ୍ତେଭଗତି ସ୍ନେହେ ଚାହିବ ପୁଚ୍ଛେ ଯେ ।୮। କର ଯେ ଠୁକ ଛିତ ବାନ ସେ ସାର । ତନୁହୀନଶୋଭନ

---

ବେଶରେ ରତ ହେବାକୁ ମନ ବଳେ ନାହିଁ । ସାଧୁ, ଫୁଲ ପଡନରେ କ ଉସ୍ତରେ ସୁନ୍ଦର ଶ୍ରେଷ୍ଠଙ୍କ ଚିତ୍ତ କେତେ ତମକଇ । ଜୀବନରେ ନରତେ ( ସର୍ବଦା ) ଅତଇ ମ୍ଳାନ ହୋଇଅଛି । ଉତ୍ସରେ ବେଶ ହେବାକୁ ମନ ବଳେ ନାହିଁ । ୧ମନସର ସୁନ୍ଦରର ଓ ଫୁଲର । ୨ପଡେ, ପତନରେ । ୩ଉତ୍ସବେ, ଉତ୍ସବେ । ୪ସୁନ୍ଦର ଚିତ୍ତ, ମନୋହର ଚିତ୍ତ ଓ ସୁନ୍ଦର ଶ୍ରେଷ୍ଠ ।

୫—ଶ୍ଳୋ, ତାର ପଲ୍ଲବଶଯ୍ୟାରେ ନିଦ୍ରା ଅସୁନାହିଁ ଲେଖ ( ଜାଣ ) ତାଙ୍କର ସଦାବେଳେ ନେତ୍ର ସମ୍ପତ୍ତି କେମିତାରେ ଶ୍ରଦ୍ଧା ଅତଏବ ପୋଖରୀରେ ଭ୍ରସିଲପରି ତରହରେ ଭ୍ରମୁଅଛନ୍ତି । ତାର ( କେମାର ) ସ୍ତୁତିଆଶା ହେତୁରୁ ଅନ କଛି (ତାର) ଅଂସର ନ ଦେଖଇ । ସାଙ୍ଗ, ଶଯ୍ୟାରେ ତାପ ହେତୁରୁ ଲବମାନ ନିଦ୍ରାଅସେ ନାହିଁ । (ଲେଖ) ଦେବତାମାନଙ୍କର ନେତ୍ରସମ୍ପତ୍ତି ସ୍ୱରୂପ ଉପଲକରେ ସଦା ଶ୍ରଦ୍ଧା ହେଉଛ ? ଶୀତର ସରସ୍ୱରୂପ ଅର୍ଥାତ୍ ଅତଶୀତଳ କେସେ ହେ ବାର ? ବୋଲ ଭ୍ରମଇ । ସ୍ତୁତି ଅଧା (ଦଶ) ରେ ତାର ( ସେ ବାଳର ) ଅନନ (ମୁଖ) ଦେଖେ ।

୬—ଶ୍ଳୋ, ଅଗମ ( ପ୍ରାପ୍ତିଆଶା ) ନ ଯାଉଛି । ଗୃହାନ୍ତେ ବଶେ, ଅତଏବ ଲବ୍ଧ (ସ) ଭରସାରେ ସନ୍ତୋଷେ ବସଇ । ସେ ପାଞ୍ଚେ ମୋର ପକ୍ଷ ଜନମୁଁ ( କେଣାଜାତ ହେଉ ) ଉଡ଼ିଯାଇ ସତେ ପୁଣି ପାଇବ ? ତା ଅଧରାମୃତ ନଷ୍ଟେ ମତେ କାରଣ ହେବ । ଅର୍ଥାତ୍ ପାନକଲେ ମରିବ ନାହିଁ । ସାଧୁ, ମନ ଅଗ ତା ପାଖକୁ ଯାଉଛି । ଗୃହାନ୍ତେ ଦଶେ ( ଦଶମାନଙ୍କରେ ) ଦର୍ଶନ-ଲଭ ଲଭି ପାରୁଅଛି । ପାଞ୍ଚଇ, ଭସାରେ (ପୃଥ୍ୱୀରେ) ସନ୍ତୋଷରେ ମୋ ବଶରେ ଥିବା ପକ୍ଷଜନ ( ସ୍ୱଜନକୁ ) ସତେ ପଇବ ? ଅଧର ( ଧରାନହେଲେ ) ମତେ ନଷ୍ଟ ମୃତ (ମରଣ) କାରଣ ହେବ ।

୭—ଶ୍ଳୋ, କାମନା ସଫଳ ହେବାପାଇଁ ବ୍ରତ କରିବ ( ଦୃଢ଼ଠାଇବ ) କ ? ପ୍ରତିଭୂଷର ପ୍ରତିକଥାରେ ସେ ଉସନ୍ଧି ନେଇଥାଇ । ଦେବକୀକୁମାର ( ଶ୍ରୀକୃଷ୍ଣ ) ସ୍ତୁତ କରେ । ଅହେ ପ୍ରଭୁ ? ମୁଁ ଅତି ଅର୍ତ୍ତିଜନ ଅଟେ ମୋତେ କରୁଣାକର । ସାଙ୍ଗ, କାମନାଶ ହେବା [ ଫଳରେ ] ଅର୍ଥେ ବ୍ରତରେ କରଇ । ପ୍ରତିଭୂଷର ପ୍ରତ୍ୟୁତ୍ତର ପାଇଁ ସନ୍ଧିରେ (ଜୀବ) ଶୁଣଥାଏ ।

୮—ଶ୍ଳୋ, ସେ ଚନ୍ଦ୍ରକାନ୍ତ ମୁହଁଙ୍କ ( ଚନ୍ଦ୍ର ସୁନ୍ଦରମୁଖୀକୁ ) ଚାହିଁ ଦ୍ରବିଲ ବୋଲି କହୁଛି । ହା ସେ ଚନ୍ଦ୍ରପ୍ରଭା ( ମୁଖ ଚନ୍ଦ୍ରପ୍ରଭା, ) ଏହି ଧ୍ୟାନକରୁଅଛି । ପୁଣି ସ୍ମୃତିରେ ମିତ୍ରକୁ ପୁଚ୍ଛଇ, ସେ ଭ୍ରମରକୁନ୍ତଳା ( ଚଞ୍ଚଳା ମୃଗନେତ୍ରୀ ) ମତ୍ତେଭଗତି ( ମତ୍ତଗଜ ଗମନା ) ସ୍ନେହରେ ମୋତେ ଚାହିବକି ? ଯେହେତୁ ତାଙ୍କର ଚନ୍ଦ୍ରପ୍ରଭାଭୁଲ୍ୟ ହାସରେ ଦ୍ରବିଲ । ଚନ୍ଦ୍ରକାନ୍ତ ମଣି ଚନ୍ଦ୍ର କିରଣରେ ଦ୍ରବଯାଏ । ମୋର ଧୀ (ବୁଦ୍ଧି) ଆନ ହେଲା ଏହି କଥା କହି ସେ ରଙ୍କୁନୟନା ( ମୃଗ ନେତ୍ରୀ ) ଭ୍ରମରେ ପୁଣି ସ୍ମୃତିରେ ସଖୀକି ପୁଚ୍ଛଇ. ଉତ ସ୍ନେହରେ ମୋତେ ଚାହିବ କି ?

ଜ୍ଞାନତା ହୋଇ ଯେ । ହା ଗ୍ରବର ଡାପାଶ ସୁଝୁଦେ ଛନ୍ନ । ରଜନୀକର କରେ
ଶୟନ ଘେନ ଯେ ।୯। କରେ ଗଉରୀପଦ ସେବାରେ ପ୍ରେମ । ମାଳକରେ
ଅଧର ଜପଇ ନାମ ଯେ । ଶିବଦେବ ଅଭୟ ଦେବାରେ ଧ୍ୟାୟି । ଈଶ
ପରାଧୀନରେ ଏମନ୍ତହୋଇ ଯେ ।୧୦। ସଦା ହଂସସୁଗତ ମାନସରତ ସ୍ତୋକ ।
ସ୍ନେହ କି ତୁଟି ଘନରେ ସ୍ଥିତ ଯେ । ଅଛି କି ତାର ରକ୍ଷା ଜୀବନ ବିନା ।
ସୁରମଣୀ ଚନ୍ଦନସୁବାସୀ ବିନା ଯେ ।୧୧। ସୁରତରଙ୍ଗିଣୀରେ ମଜ୍ଜିବ ମତ ।
ଇଚ୍ଛେ ଏହା ତାହାର ଜନ୍ମାନ୍ତ ପ୍ରୀତି ଯେ । ମୁଁ କରିବ ଲଭିବ ସୁକୃତ ଥିଲେ ।
ଭବନୀରତରସେ ଜର୍ଜ୍ଜର ଭଲେ ଯେ ।୧୨। ଈପ୍ସିତ ଯିବା ନାହିଁ ଦେହଲୀ ବଳ ।

---

୯—ଶ୍ରୀ. ହେ ସାକ୍ଷ ! ସେ ତୁମର ଚିତରେ ଦୀନ ( ଦୁଃଖୀ ) ହୋଇ କପାଳରେ କର ଦେଉଅଛି । ତନୁ ହ୍ରୀକଶୋଭନ ( ଅଶୋଭା ) ହୋଇଅଛି । ତା ଜ୍ଞାନ ହୃଦବାରୁ ତା ପାଶ ସୁହୃଦେ ( ପାଶ ମିତ୍ରମାନେ ) ହାହକର ( ଅଥା ଏହ ଧ୍ୱନରେ ) ଛନ୍ନ ହେଉ ଅଛନ୍ତି । ରଜନୀକର ( କର୍ପୂରରେ ) ଶୟନ କରେ । ତାପଶାନ୍ତ ନମିତ୍ତ, ଏହା ଘେନ । ସାକ୍ଷୀ ସେ କେମାକରଚେ ( କରରେ ) ଛିଡ ଦେଇ ଧନ ସାରୁଡ । ତାହାର ଜ୍ଞାନ ତନୁସ୍ମର ଶୋଭନ ( କନ୍ଦର୍ପ ସୁନ୍ଦର ) ଠାରେ ଅଛି । ତା ସୁହୃଦସ୍ୱରେ ଥିବା ହାସବର ( ମାଳାଶ୍ରେଷ୍ଠ ) କୁ ପାଶ ବତାଯ ଛନ୍ନ ହେଉଅଛି । ରଜନୀକର ( ଧୂଳିସମୂହରେ ) ଶୟନ କରଇ, ଏହା ଘେନ ।

୧୦—ଶ୍ରୀ ମାଳକରେ (ମାଳହାର) ଗୌରୀ ପଦସେବାରେ ପ୍ରେମ କରୁଅଛି ଅଧରରେ ନାମ ଜପ କରୁଅଛି । ଅଭୟ ଦେବାଠାରେ ଶିବଦେବଙ୍କ ଧ୍ୟାନ କରୁଅଛି । ଈଶପର (କନ୍ଦର୍ପ) ଅଧୀନହୋଇ ଏମନ୍ତ ହୁଏ । ସାକ୍ଷୀ ! ସେ ଗୌରୀ ପଦସେବାରେ ପ୍ରେମ ପ୍ରକାଶ କରଇ । କରେ ମାଳଧରି ଅଧରରେ ନାମ ଜପକରେ । ହେ ଅଭୟଦେ, ଦୁର୍ଗେ ବାରେ ଶିବ ( ମଙ୍ଗଳ ) ଦେବ ବୋଲି ଧ୍ୟାନକରଇ । ସେ ଈଶ [ପତି] ପରାଧୀନତାରେ ଏମନ୍ତ ହୁଅଇ ।

୧୧—ଶ୍ରୀ ! ସଦା ମାନସରରେ ହଂସପରି ସୁଗତ ସୁନ୍ଦରୀ ମାନସ ( ମନ ) ରେ ସେଲୁ ଘନରେ [ମେଘଠାରେ] ସ୍ଥିତ ସ୍ତୋକ (ଚାତକ) ସ୍ନେହ ତୁଟଇକି ? ଜୀବନ ( ଜଳ ) ବିନା ତାର ଅଛି ଜୀବ ରକ୍ଷା ଅଛିକି, ସେହିପରି ସୁରମଣୀ ଚନ୍ଦନ ସୁବାସିତ କେମା ବିନା ତାହାଙ୍କ ଗତ । ସାକ୍ଷୀ, ହଂସ ସୁଗତ (ହଂସଗମନା) ର ମାନସ ସଦା ସୁନ୍ଦରଠାରେ ରତ ହୋଇଅଛି । ତାଠାରେ ଘନରେ (ନବଘନ ରବରେ ) ସ୍ଥିତ ସ୍ନେହଅଛି । ସେ ସ୍ନେହ ସ୍ତୋକ [ ଅଳ୍ପ ] କି ଶୀଘ୍ର ତୁଟିଯିବ । ତାର ଅଛି ଜୀବ ରକ୍ଷା ଅଛିକି । ସେ ଚନ୍ଦନ ସୁବାସିତା କବନାର ସେ ଶୁରମଣି ଗତ ବିନା ।

୧୨—ଶ୍ରୀ ! ସୁରତରଙ୍ଗିଣୀ ( ରତିକ୍ରୀଡାରୂପ କେମା ସମୁଦ୍ରରେ ) ମଜ୍ଜିବାକୁ ମତ ହେଉଅଛି । ପୁଣି ଏହା (ମତ) ତାହାର ଜନ୍ମାନ୍ତ ( ଯାବଜ୍ଜୀବନ ) ପ୍ରୀତିକୁ ଇଚ୍ଛାକରେ । ସୁକୃତଥିଲେ ମୁଁ କରିକ ଲଭିବ । ଭବନୀ ( କେମା ) ଠାରେ ଲାଗିଛି ସେ ( ଅସକ୍ତ ହେବା ରସରେ ] ଭଲେ ଜର୍ଜ୍ଜର ହୋଇଅଛି । ସାକ୍ଷୀ, ସୁରତରଙ୍ଗିଣୀରେ [ ଗଙ୍ଗାରେ ] ମଜ୍ଜିବାକୁ ଝାସଦେବାକୁ ମତ ହୋଇଅଛି ଜନ୍ମାନ୍ତରେ ଅନ୍ୟ ଜନ୍ମରେ ହେଲେ ତାହାର ପ୍ରୀତି ହେବ । ଏହା ଇଚ୍ଛାକରେ ସୁକୃତି ଥିବା ଲଭିବ । ଏପରି ନଇଦ ସର୍ବଦା ଭାବ ରସେ ଭଲେ ଜର୍ଜ୍ଜର ହୋଇଅଛି ।

ଯୁଗଳ ବସିବାର ପ୍ରସନ୍ନ ଭାଳ ଯେ। ଖଞ୍ଜିମିରେ ପକାନ୍ତି ନିଶ୍ୱାସ ଶାଳ। ଥିବା ଜୀବ ପବନେ ଉଡ଼ି ଏ ଡ଼ର ଯେ।୧୩। ଆହା ରତନରୁଚେ ବସ୍ତ୍ରଦକର। ଏକାକୀ ଘୃତିଭର କପୋଳେ କର ଯେ। ତାହା ପଗପତି ମୋ ହୋଇବ କେହ୍ନ। ମୋହିତ ସେ ସଂସାରେ କ ସ୍ନେହ ବନ୍ଧ।୧୪। ରସିକବର ନୋହି ସୁମନ ବାରେ। ବରବର୍ଣ୍ଣିନା କସ୍ୱାଗତିକ ସ୍ମରେ ଯେ। କହ୍ନେ ରସାଳସିରେ କୋକିଳ ବାଣୀ। ଶତ କୋଟି ଲକ୍ଷ୍ୟ ନ୍ୟପ ଚଉକୁ ଅଣିଯେ।୧୫। ନଷ୍ଟେ ପଦ୍ମ କରଗ୍ରହଣ ଶୋକେ। ଦ୍ରବ କର ମୃଣାଳ ସୁମନା ଠେକେ ଯେ। ସୁପର୍ଣ୍ଣରେ ଆଦର ଏଣୁ କି ଘଟେ। ପଦ୍ମରସ ରଞ୍ଜନ କରନ୍ତି ଏବେ ଯେ।୧୬। ସୁବା ଯା

---

୧୩—ଶ୍ଲୋ, ଦେହଳୀ (ଦ୍ୱାରବନ୍ଧ) ବଢ଼ାଇବି ଡେଇ ଯିବାର ନାହିଁ। ପ୍ରସନ୍ନଭାବେ ଯୁଗଳ ହୋଇ ବସିବାକୁ ଭଲଇ। ମିତମାନେ ଏହାଦେଖି ଖଟି [ଖଣ୍ଡ] କୋନ୍ତି। ଷଇନିଃଶ୍ୱାସ ଦେଖି ଏ ଡ଼ର ହୁଏ। ଏ ନିଃଶ୍ୱାସପବନ ସହିତରେ ଜୀବ ଥିବା ଉଡ଼ିଯିବ। ସାରୀ, କାହିଁ ଯିବା ଯିବାର ନାହିଁ। ଦେହଳୀ ବଢ଼ିବାକୁ ଏଥି ଏହିବଟନ ତ ହେଉଅଛି। ନବ କାଳସ୍ରୋତ ହୋଇଅଛି। ଅତଏବ ଶ୍ରିବାର ପାଟଙ୍କର ପ୍ରସନ୍ନତା ଭଲଇ। ମିତ ସଖୀମାନେ ଖଟକର ବୈରାଗ୍ୟରେ ଷଇନିଃଶ୍ୱାସ ପକାନ୍ତି। ପବନରେ ଥିବା ଉଡ଼ିଯିବ, ଏଡର ସେମାନଙ୍କର ହେଉଅଛି।

୧୪—ଶ୍ଲୋ। ଘୃତିଭରର ଉତ୍ସାହିକା ହେତୁ କପୋଳେ କରଦେଇ ବହନ୍ତି। ଅହା ଶେଦୋକ୍ତି ଲବ୍ଧ ଭୁଜେ ବସ୍ତ୍ରଦକର, ତନ୍ତ୍ର ମୁଁ ଏକାକୀ ଅଛେ। ମୋର ତାହା ପ୍ରାପ୍ତି କେହୁ ହୋଇବ ସଂସାରରେ ସେ ମୋହିତ ହୃଦକାରିଣୀ ଅଛେ। ମୋଠାରେ କ ସ୍ନେହବନ୍ଧିତ। ସାରୀ ବସ୍ତ୍ରପର ତକରେ ଉସ୍ତରେ ଅତ୍ୟାଗତ ନ ରୁଚେ। ଏକାକୀ ଓ ଘୃତିରେ ବାନ୍ଧରେ ଭରଦେଇ କପୋଳେ କର ରଖି ବସିଛି ମୋର ତାହା ପଗ ପତି କେହି ହେବ। ସେ ସଂସାରେ ମୋଠାରେ କ ସ୍ନେହ ବନ୍ଧ ମୋହିତ ହୋଇଅଛି।

୧୫—ଶ୍ଲୋ। ସେ ରସିକବର ବାରେ ସୁବା ସୁମନ ସ୍ମରଣର ହେଉ ନାହାନ୍ତି। ସେ ବର୍ଣ୍ଣନାକର ଗତକୁ ସ୍ମରଣ କରନ୍ତି। କହୁଅଛି ହେ ରସାଳସା କୋକିଳବାଣୀ ଏହିପରି ଶତ ଓ କୋଟିବାର ଲକ୍ଷ୍ୟ ଲକ୍ଷଣା ବୋଧ କଥାମାନଙ୍କୁ ଚଉକୁ ଅଣଇ। ସାରୀ, ସେ କେମା ରସିକର ସୁମନାବାରେ (ପୁଷ୍ପ ଅମୃତରେ) କବର (କେଶବେଶ) କୋହ୍ନି ବର [ପତ୍ର] କର ଗତିର ପ୍ରାପ୍ତି ଉପାୟକୁ ସ୍ମରଣ କରୁଅଛି। ରସାଳଶିରେ ଅମ୍ବଟଛଉପରେ କୋକିଳବାଣୀ କହେ ତାକୁ ଶତକୋଟି ଲକ୍ଷ୍ୟ ବନ୍ଦ୍ରଭୂଲନ ମନକୁ ଅଣୁଅଛି।

୧୬—ଶ୍ଲୋ। ସେ ପଦ୍ମିନୀ କେମାର କର ଗ୍ରହଣକରିବାକୁ ଶୋକରେ ଦ୍ରବ ଘରଚଯାଇ ମୃଣାଳ ଓ ସୁମନା ପଦ୍ମନାଳ ଓ ପୁଷ୍ପକୁ କେମାର ବାହୁ ଓ କରଳ ବଗ୍ଭର କରରେ ଧର ନଷ୍ଟେ ଠେକୁଅଛି। କେମାର ଉଦର ସାମ୍ୟଥିବାରୁ ସୁବର୍ଣ୍ଣରେ ଉତ୍ତମ ପଦ୍ମପତ୍ରରେ ଅଦରକର ଶଯ୍ୟାକରେ। ଏବେ ତାକୁ ପଦ୍ମରସ ରଞ୍ଜନ ଜଳସିକ୍ତ କରେ ସାରୀ ସଖୀ କରଗ୍ରହଣ ହାତଧର ଥିବା ମୃଣାଳକୁ ଠେକିବାରେ ପଦ୍ମିନୀକେମା ଶୋକେ ତାକୁ ନଷ୍ଟେ ଦ୍ରବାକର ସର୍ପ ବୋଲି ବୁଝଇ। ଏଣୁ ଆଦରକର ସୁପର୍ଣ୍ଣରେ ଗରୁଡଙ୍କୁ ଭବଇ। ଏବେ ତାକୁ ପଦ୍ମରସ ଜଳରୂପକଦଶରେ ମଣ୍ଡିତ କରେ।

ନୂପୁରକୁ ମଣ୍ଡିବା ପ୍ରୀତି । ରମା ନାଗରେ ସାର ଭୋଗ ଏମନ୍ତି ଯେ । ଧରି ତାର କେଶକୁ ଯତନେ କଲେ । ହେବ ହରଷେ ସାରସେକ୍ଷଣୀ ଭଲେ ଯେ ।୧୭। ଅନୁରାଗୀରତନ ମନ ଏ ଭାବ । ଘନସ୍ତନତ ଯୋଗେ ଜୀବନ ଯିବ ଯେ । ତତ୍ତ୍ୱ ଭବ ମୋହିନୀ ମାୟାରେ ଲୀନ । କରମ ସେ ଉଦୟ କରିବ ପୁନଃ ଯେ ।୧୮। ଘୋର ବେଦନା ସହ ଗୋଚର ନୋହି । ସୁସଂଯୋଗ ହୋଇ ମିଳୁତ ନାହିଁ ଯେ । ବଳ ଚିତ୍ତ ଯେମନ୍ତ ନଷ୍ଟ କ ମେଳେ । ହେବ ସୁମନାବର ଉଦ୍ଭବ ଭଲେ ଯେ ।୧୯। ସିଦ୍ଧି କରି ଯେ କାବ୍ୟ ଅର୍ଥ ଯେ ଯୋଡ଼ି । ଅଦ୍ଭୁତ ହାସେ ଆଦ୍ୟ ରସରେ ଜଡ଼ି ଯେ । କହେ ଉପେନ୍ଦ୍ର ବର୍ଣ୍ଣ ଭଙ୍ଗୀରୁ ବାରି । ଶୁଦ୍ଧ ଗଙ୍ଗା ଯମୁନା ସଙ୍ଗମ ପରି ଯେ ।୨୦।

---

୧୭—ଶ୍ଳେଷ । ପୁବା ରାଜକୁମାର ଯା ପଦରେ ନୂପୁରକୁ ପ୍ରୀତିକରୁଛି ଏବଂ ଏମନ୍ତି କରୁଛି । ସେ ରମା ଯେବେ ନାଗରେ ଅର୍ଥାତ୍ ନାହିଁ କରେ । ସେତେବେଳେ ତାର କେଶକୁ ବାନ୍ଧିବାକୁ ଯତ୍ନକଲେ ସାରସେକ୍ଷଣୀ ପଦ୍ମନୟନା ଭଲେ ହର୍ଷ ହେବ ଏ ସାକାଙ୍କ୍ଷ । ସାରୀ, ସେ ରମାପୁବାର ଜାନୁପୁରକୁ ମଣ୍ଡିବାକୁ ( କୋଡ଼ରେ ବସିବାକୁ ) ପ୍ରୀତି ସ୍ନେହ କରୁଛି । ନାଗରେ ପୂର୍ବରେ ଏ ଭୋଗସାର ବୋଲି ମତ କରୁଛି । ତାର କେଶକୁ ଚନ୍ଦ୍ରକୁ ଧରିବାକୁ ଯତ୍ନକଲେ ସେକ୍ଷଣି ସାର ହର୍ଷ ହେବକ ।

୧୮—ଶ୍ଳେଷ । ଅନୁରାଗିରତ୍ନ ସେ ହରେଣ୍ଟ କୁମାରର ମନରେ ଏ ଭାବ ହେଉଛି । ଘନସ୍ତନ ଯୋଗେ ମିଳନରେ ଜୀବନ ଯିବ ନାହିଁ । ଭବ, ଶିବଙ୍କର, ତତ୍ତ୍ୱ ମୋହିନୀରେ ମାୟାରେ ଲୀନ ହେବାପରି ମୋ ତତ୍ତ୍ୱ ସେ ଭବ ମୋହିନୀ ସନ୍ଧ୍ୟାର ମାୟାରେ ସେହିରେ ଲୀନ ହୋଇଅଛି । ପୁନଃ ସେ କର୍ମକୁ ଉଦୟ କରିବ । ଅର୍ଥାତ୍ ମିଳନ ସୁଖ ହେବ । ସାରୀ, ସେ ଅନୁରାଗିଣୀ ଜେମାର କୁମାରପଟରେ ଘନୁନ ଅସ୍ତ୍ର ହେବାରୁ ଏ ଭାବ ହେଉଅଛି । ବର୍ଷାକାଳ ହେଲେ ଘନସ୍ତନର ଘଡଘଡ଼ି ଯୋଗେ ମୋ ଜୀବନ ଯିବ । ତତ୍ତ୍ୱଭବ କାମର ମୋହିନୀ ମାୟାରେ ଲୀନ ହୋଇଅଛି ପୁନଃ କ୍ରମଶେ ଉଦୟ କରିବ [ଭଲଦଶା ହେବ] ।

୧୯—ଶ୍ଳେଷ । ସେ ଘୋର ବେଦନା ସହୁଅଛନ୍ତି । ତାହା ଗୋଚର ହେଉନାହିଁ । ସଂଯୋଗ ହୋଇ ଭଗତ ମିଳୁନାହିଁ । ମୋର ସୁମନାବର (ଚନ୍ଦ୍ର) ଉଦ୍ଭବ ହେବ ବୁଝିବାରୁ ବଳ ଗରାର ତତ୍ତ୍ୱ ଯେପରି ଭସ୍ମୁକଠାରେ ମେଳ ହୋଇଥିଲା । ସେପରି ଏ ସୁମନାବର ( ସ୍ତ୍ରୀଶ୍ରେଷ୍ଠ ) ଜେମାଙ୍କ ଉଦ୍ଭବ ହେବ ବୋଲି ବୁଝୁଅଛି । ଯେମନ୍ତ କ ମେଳେ ମିଳନରେ ଚିତ୍ତ ବଢ଼ିବାରୁ ଉଦ୍ଭବ ହେଉଅଛି । ସାରୀ । ତାର ଘୋର ବେଦନା ସହୁମାନଙ୍କ ଗୋଚର ହେଉନାହିଁ । ସଂଯୋଗ (ଶୁଭଯୁକ୍ତ) ଭଗ ଭୋଗମିଳୁନାହିଁ । କୁମାରଠାରେ ଚିତ୍ତ ବଳ ଯେପରି ମେଳେ (ମିଳନରେ) ଉଦ୍ଭବ ହୋଇଅଛି । ସୁମନା ଜେମା ବର ଉତ୍କୃଷ୍ଟ ଉଦ୍ଭବ ହେବ ବୋଲି ଭଲେ ।

୨୦—ଯେ "ସି" "ଦ୍ଧି" ପଦାକର କାବ୍ୟ ଅର୍ଥ ଯୋଡ଼ି ବସେ । ସେ ଅଦ୍ୟନ୍ତ ଅଦ୍ଭୁତ ପୂର୍ଣ୍ଣ ହାସେ ରସେ ଉପହାସରେ ଜଡ଼ିତ ହୁଏ । ଆଉ ଯେ ପଦା ସିଦ୍ଧି କରି କାବ୍ୟ ଅର୍ଥ ଯୋଡ଼ି ବସେ । ସେ ଅଦ୍ଭୁତ ହାସ୍ୟରସରେ ଓ ଆଦ୍ୟ ଶୃଙ୍ଗାର ରସରେ ଜଡ଼ିତ ହୁଏ ସମସ୍ତ ଭାବ ଗ୍ରହଣ କରି ଉପାସ୍ଥାପନ କରନ୍ତିରେ । ଉପେନ୍ଦ୍ର ଭଞ୍ଜ କହୁଅଛନ୍ତି । ଯେପରି ପ୍ରୟାଗରେ ଧଳା ଓ କଳା ବର୍ଣ୍ଣ ଭଙ୍ଗୀରୁ ଗଙ୍ଗା ଯମୁନା ସଙ୍ଗମ, ବାରହୁଏ । ସେପରି ଏସବୁରେ ଶ୍ଳେଷ ସାରୀ କରିପୁକ ଉକ୍ତି ବର୍ଣ୍ଣିତ ହୋଇଅଛି, ଅବର୍ଣ୍ଣ ଅକ୍ଷର ଯୋଜନା ଭଙ୍ଗୀରୁ ବାରିକରି ଗ୍ରହଣକର ।

## ଏକବିଂଶ ଛାନ୍ଦ ।

ରାଗ ମଙ୍ଗଳ ।

ଗଲେ ଶୁକ ସାରୀ ଭାଷି ଯେତେ ପ୍ରେମକଳା ।
ସେ ପୂର୍ଣ୍ଣିଶଶୀ ହୃଦୟ-ନଭେ ପ୍ରକାଶିଲା ଯେ । ୧ ।
ସଂଶୟା ସନ୍ଧ୍ୟା-ତମ ନାଶ ହେଲା ବେଗ ।
କାର୍ଯ୍ୟାର୍ଥୀ ପଥିକେ ଆଗ ଦିଶି ଗଲା ଦଗ ଯେ । ୨ ।
ହରଷ-କୁମୁଦ ବିକସିତ ହାସ ବ୍ୟାଜେ ।
ଚିତ୍ତ-ଚକୋର ଅମୃତ ପାନେ ତୋଷ ଭଜେ ଯେ । ୩ ।
ମନେ ମନେ ଧ୍ୟାୟି ଧ୍ୟାୟି ସେହି ସେହି ଉକ୍ତି ।
ଘେନିଲେ କି କଥା ଏ ପକ୍ଷୀଙ୍କ ଏତେ ଶକ୍ତି ଯେ । ୪ ।
ପୁଣି ଗୁଣିଲେ ଏ ବୁଦ୍ଧି ପଢାଇବା ଖଗ ।
ହୋଇଥିଲେ ପୂର୍ବେ ହଂସଦୂତ ଅତ ଅଙ୍କ ଯେ । ୫ ।
ନଳ ଦମୟନ୍ତୀ କାମଦେବ ପ୍ରଭାବତୀ ।
ରାଜା ରକ୍ଷପୁରେ ମିଳ କରି ଦେଲେ ପ୍ରୀତି ଯେ । ୬ ।

---

### ଏକବିଂଶ ଛାନ୍ଦ ।

୧—ଶୁକ ଓ ସାରୀ ଦୁହେଁ ଯେତେ ଚନ୍ଦ୍ରକଳାପରି ପ୍ରେମ ଅଂଶ ପ୍ରକାଶ କରିଲେ । ସେ ସବୁ ପୂର୍ଣ୍ଣ ଚନ୍ଦ୍ର ପରି ହୋଇ ପୋଟାପ୍ରଭୃତିଙ୍କର ହୃଦୟ ଆକାଶରେ ପ୍ରକାଶମାନ ହେଲା । ଅର୍ଥାତ୍ ଭୂମାର କୁମାରୀଙ୍କର ପୂର୍ଣ୍ଣ ପ୍ରେମ ସେମାନେ ବୁଝି ପାରିଲେ । ୨ୟ ଓ ୩ୟ ପଦରେ ଚନ୍ଦ୍ରୋଦୟ ଭାବ ବର୍ଣ୍ଣିତ ହେବ ।

୨—ସନ୍ଦେହ ରୂପକ ସନ୍ଧ୍ୟା ଅନ୍ଧକାର ବେଗରେ ନାଶ ହେଲା । କାର୍ଯ୍ୟାର୍ଥୀ ପୋଟା ଓ ଭଟାଧ୍ୟାୟୀ ଦୁହେଁ ପଥିକ ହେଲେ ଅଗ ସେ ଦୁହିଙ୍କୁ ବାଟ ଉପାୟ ଦିଶିଗଲା । ଚନ୍ଦ୍ରୋଦୟରେ ସନ୍ଧ୍ୟାନ୍ଧକାର ନଷ୍ଟ ହୁଏ ଓ ପଥିକଙ୍କୁ ବାଟ ଜଣାପଡ଼େ ।

୩—ହାସ୍ୟବ୍ୟାଜରେ ଆନନ୍ଦ ରୂପକ କଇଁ ଫୁଲ ଫୁଟିଲା । ଚିତ୍ତ ରୂପକ ଚକୋର ସେ ବଚନାମୃତ ପାନରେ ସନ୍ତୋଷ ପାଇଲା ।

୪—ସେ ଦୁହେଁ ସେହି ଶୁକସାରୀଙ୍କ କଥାକୁ ମନେ ମନେ ବିଚାର କଲେ । ଏ କି କଥା ? ପକ୍ଷିଙ୍କର କଣ ଏତେ ଶକ୍ତି ନୁଅନ୍ତା ଏହା ବୁଝିଲେ ।

୫—ପୁଣି ବିଚାରକଲେ ଏ ଶୁକ ଓ ସାରୀ ଖଗ ପକ୍ଷୀ ପଢ଼ାଇବା ବଧି ଅଟେ । ଏ କଥା ଏହାଙ୍କଠାରେ ଅସମ୍ଭବ ନୁହେଁ । ଯେଣୁ ପୂର୍ବକାଳରେ ଅତି ଅଳ୍ପ ବାହୁଁ ହଂସପକ୍ଷୀ ଦୂତ ହୋଇଥିଲେ ।

୬—ନଳ ଓ ଦମୟନ୍ତୀ ଦୁହେଁ କୁଣ୍ଡିନ ରାଜାଙ୍କ ଅନ୍ତଃପୁରେ ଏବଂ ପ୍ରଭାବତୀ ଓ କାମଦେବ ଦୁହେଁ ଶମ୍ବର ରକ୍ଷସ ଅନ୍ତଃପୁରରେ ମିଳିତ ହୋଇ ପ୍ରୀତି କରିଥିଲେ । (ପ୍ରଭାବତୀ, ରତିଦେବୀ କନ୍ଦର୍ପଙ୍କୁ ଅପେକ୍ଷା କରି ପ୍ରଭାବତୀ ନାମରେ ଶମ୍ବର ଘରେ ଥିଲେ ।

ସବୁଠାକୁ ମୂଳ କର୍ମ ଦୁର୍ଲ୍ଲଭ ଲଭଇ ।
ଉଦ୍ୟମେ କର୍ମବିପାକେ କାର୍ଯ୍ୟକୁ ନ ପାଇ । ୭ ।
ବନେ ପାତାଳେ ସୁଗ୍ରୀବ ସ୍ୱୟଂପ୍ରଭା ଥିଲେ ।
ତାଙ୍କ କି ଉଦ୍ୟମେ ରାମଭଦ୍ର ବର ଦେଲେ ଯେ । ୮ ।
ସିନ୍ଧୁ ମନ୍ଥନରେ ଶ୍ରମ କରିଣ ଅସୁରେ ।
ଶ୍ରମ ନୋହିଲେ ସେ ଆଉ ଅମୃତ ପାନରେ ଯେ । ୯ ।
ସ୍ନେହ କରାଇଣ ଏବେ କୁମାରୀ କୁମାରେ ।
ବିଧି ନାମ ସିଦ୍ଧି କଲା ଧାତା ଏହିଠାରେ ଯେ । ୧୦ ।
ଯୋଗ ଛଣ୍ଟରେ ଶ୍ମଶାନ ରାକ୍ଷସରେ ଲଙ୍କା ।
ଏ କଥା ତୁମରି ମନେ ଥିଲା ବଡ଼ ଶଙ୍କା ଯେ । ୧୧ ।
ଏତେ ଭଲ ପୁଚ୍ଛା ପୁଚ୍ଛି କେ ତାହିଁ ଗମିତ ।
ଯୋଦ୍ଧା ବୋଲେ ଯେ ମଗଧେଶ୍ୱର ପ୍ରିୟପୁତ୍ର । ୧୨ ।
ନି କଥା ପ୍ରସଙ୍ଗବଶେ କହିଏ କହିଲେ ।
ସେହିଦିନୁ ସେ ୧କଥାପ୍ରସଙ୍ଗ ଭାବ ହେଲେ ଯେ । ୧୩ ।
ଚତୁର୍ମାସ୍ୟା କରିଥିଲେ ଅଦ୍ଭୁତପୁରୁଷେ ।
ପ୍ରେମମଞ୍ଜରୀ ମିଳିଲେ ଭଲ ହେବ ଭାଷେ ଯେ । ୧୪ ।

---

୭—କର୍ମ (କପାଳ) ସବୁ କାର୍ଯ୍ୟ ପାଇବାକୁ ମୂଳ ଅଟେ । ଦୁର୍ଲ୍ଲଭ ପଦାର୍ଥକୁ କପାଳ ମିଳାଇ ଦେଇପାରେ କପାଳ ମନ୍ଦରେ ଉଦ୍ୟମ କଲେ ସୁଦ୍ଧା ଲୋକ କାର୍ଯ୍ୟ ପାଇପାରେ ନାହିଁ ।

୮—ସୁଗ୍ରୀବ ବନରେ ଥିଲେ ଓ ସ୍ୱୟଂ ପ୍ରଭା ପାତାଳରେ ଥିଲେ । ସେ ଦୁହିଙ୍କର ଗୁଣ ଅବା ଉଦ୍ୟମ ଥିଲା । ତଥାପି ସେ ଦୁହିଙ୍କୁ ରାମଚନ୍ଦ୍ର ବର ଦେଇଥିଲେ । ତାଙ୍କ ଅଦୃଷ୍ଟ ଭଲ ଥିଲା ।

୯—ଅସୁରମାନେ ସମୁଦ୍ର ମନ୍ଥନରେ ପରିଶ୍ରମ କଲେ ସୁଦ୍ଧା ଅମୃତପାନ କରିବାକୁ ସମର୍ଥ ହୋଇପାରିଲେ ନାହିଁ । ତାଙ୍କ ଅଦୃଷ୍ଟ ନାହିଁ ।

୧୦—ବିଧାତା ଏ କୁମାରୀଙ୍କ ପରସ୍ପର ସ୍ନେହ କରାଇଣ ଏଠାରେ ନିଜର ବିଧିନାମକୁ ସାର୍ଥକ କଲେ । ଯେହେତୁ ଏ ବିଧି ଉଚିତ ହୋଇଅଛି ।

୧୧—ଟିକିଙ୍କର ଶ୍ମଶାନଯୋଗ ଓ ରାକ୍ଷସସନ୍ଦର୍ଶନ ସମ୍ବଳିତ ଯୋଗକଥା ସ୍ମରଣ କରି ମନରେ ବଡ଼ ଶଙ୍କା ଥିଲା । ଏ ଅନୁଚିତ ମିଳନ ।

୧୨-୧୩—ଏତେକ ହେବାରୁ କିଏ କେଉଁଆଡେ ଯିବେ ବୋଲି ପଚରାପଚରି ହେଲେ । ତହିଁ ଯୋଦ୍ଧା କହିଲା ମଗଧରାଜାଙ୍କର ପ୍ରିୟ ପୁତ୍ରଙ୍କ ଲୋକମାନେ ପ୍ରସଙ୍ଗରେ ନିଜ କଥା କହିଲେ, ସେହିଦିନୁ ସେ ରାଜକୁମାର ବାତୁଳଭାବ ଧାରଣ କଲେ । ୧ କଥା ପ୍ରସଙ୍ଗ, ବାତୁଳ ।

୧୪—ସେ ସମୟରେ ଅଦ୍ଭୁତ ପୁରୁଷ ସେଠାରେ ଚତୁର୍ମାସ୍ୟା କରିଥିଲେ । ସେ କହିଲେ ପ୍ରେମମଞ୍ଜରୀ ଜେମା ମିଳିଲେ ଏ ବାଇ ଭଲ ହେବ ।

ନୃପଜ ସତ କ ସ୍ୱପ୍ନ ଦେଖିଅଛନ୍ତି କାହିଁ ।
ପୁରେ ପୁରେ ଖୋଜ ଚମ୍ପାବତୀକ ମୁଁ ଯାଉଛି ଯେ । ୧୫ ।
ଉପାଧ୍ୟାୟୀ କହି କୋଟିବ୍ରହ୍ମାଣ୍ଡସୁନ୍ଦରୀ ।
କଲ୍ୟାଣୀ ଦର୍ଶନ ଶ୍ରବଣ କବନେ କରି ଯେ । ୧୬ ।
ପୁଂନାଗ ପୁଷ୍ପବାସୀ ନୃପ ଦେଖୁଁ ତାକୁ ତୋଷେ ।
ଫଣିଅମାନୀୟ ଅହି ଦଂଶିଲ କ ଦୋଷେ ଯେ । ୧୭ ।
ସେ ବଶେ ଘାଣ ହୋଇଛନ୍ତି ପଦ ନ ମାନଇ ।
ନରେନ୍ଦ୍ର ଯୋଗ୍ୟ ଜନ ମୁଁ ଲୋଡ଼େ ତାହା ପାଇ ଯେ । ୧୮ ।
ହର ବୋଲ ନାରୀ-ନର-ଲକ୍ଷଣା ଉଠିଲା ।
ମାଗଧ ମାଳଞ୍ଚ ଭେଟି ତା ପୁରେ ରହିଲା ଯେ । ୧୯ ।
ଏ ମଳୟାଦ୍ରିର ବାହୁଡ଼ି ପଡ଼ନ୍ତେ ଉପାଧ୍ୟାୟୀ ।
ଦ୍ୱିଦାନ୍ତଗଣ୍ଡ ଉଦନ୍ତ ପାଇବାର ପାଇଁ ଯେ । ୨୦ ।
ସୁଧାମୟ ଶୁବାନ୍ତକୁ ସେହି ମାର୍ଗେ ଗଲା ।
ଦ୍ୱିପକ୍ଷୀ ଶ୍ୱଶୁର ଗୃହ ପ୍ରବେଶ କହିଲା ଯେ । ୨୧ ।
କାହିଁ ରହିଲା ପୁଚ୍ଛିଲେ ଶ୍ରୀୟୁ ସଖୀ ତହିଁ ।
ଖୋଜ ପୁରେ ବଡଲକ୍ଷଣା ଚେଟୀ ଜଣେ ଘେନ ଯେ । ୨୨ ।

---

୧୫—ରାଜପୁତ୍ର ସେ ପ୍ରେମମଞ୍ଜରୀଙ୍କ ସତରେ କି ସ୍ୱପ୍ନରେ କେଉଁଠାରେ ଦେଖିଅଛନ୍ତି । ମୁଁ ତାକୁ ପ୍ରତି ନଗରରେ ଖୋଜି ଖୋଜି ଚମ୍ପାବତୀ ପୁରକୁ ଯାଉଅଛି ।

୧୬—ଉପାଧ୍ୟାୟୀ କହିଲା, କୋଟିବ୍ରହ୍ମାଣ୍ଡସୁନ୍ଦରୀ ବାଳିକା ବୟସରେ କଲ୍ୟାଣୀ ମାଳଲ୍ୟାଙ୍କୁ ଦର୍ଶନ କରିଥିଲେ ।

୧୭—ସେଠାରେ ପୁଷ୍ପପୁରବାସୀ ଯେ ପୁଂନାଗ ( ପୁରୁଷ ଶ୍ରେଷ୍ଠ ) ଥିଲେ, କୁମାରୀ ତାଙ୍କୁ ସନ୍ତୋଷରେ ଦେଖିବାରୁ ହର ଅମାନୀୟ ଅହି ( କାମସର୍ପ ) ତାକୁ କି ଦୋଷରେ ଦଂଶନ କଲା ।

୧୮—କୁମାରୀ ସେ କାମସର୍ପ ବିଷରେ ଘାର ହୋଇଛନ୍ତି । ପଦମନ୍ତ୍ର ମାନୁନାହିଁ । ମୁଁ ତାହାପାଇଁ ଯୋଗ୍ୟ ବୈଦ୍ୟ ଖୋଜି ଅଛି । ଶ୍ଳେଷରେ କହୁଛି, ତାହାପାଇଁ ଯୋଗ୍ୟ ରାଜଶ୍ରେଷ୍ଠଙ୍କୁ ଖୋଜୁଅଛି । ୧ନରେନ୍ଦ୍ର, ବୈଦ୍ୟ ଓ ରାଜା ।

୧୯—ନରନାରୀଲକ୍ଷଣା ଯୋଗ୍ୟ ହର ହର ବୋଲି ଉଠିଲା । ମଗଧଦେଶୀୟ ମାଳତୀକୁ ଭେଟି ତା ଘରେ ବସାକଲା ।

୨୦—ଉପାଧ୍ୟାୟୀ ଦ୍ୱିଦନ୍ତଗଣ୍ଡ ( ଗଜଦନ୍ତ ) କେମାର ବାର୍ତ୍ତା ପାଇବା ପାଇଁ ଏ ବୁଦ୍ଧିରେ ପଛେ ବାହୁଡ଼ିଲେ । ୧ମଳୟ, ବୁଦ୍ଧି । ୨ଉଦନ୍ତ, ବାର୍ତ୍ତା ।

୨୧—ଚନ୍ଦ୍ରକଳା ଅନ୍ତଃପୁରକୁ ସେହି ବାଟରେ ଗଲା । ଦୁଇପକ୍ଷୀ ଶୁଆସାରୀଙ୍କ ଶ୍ୱଶୁର ଓ ରାଜକୁମାରଙ୍କ ଗୃହ ପ୍ରବେଶ ହେବା କଥା କହୁଛି । ୧ସୁଧାମୟ ଶୁବାନ୍ତ, ଚନ୍ଦ୍ରକଳା ଅନ୍ତଃପୁର ।

୨୨—ବାଦମ୍ବିନୀ ତୁରନ୍ତ ଚନ୍ଦ୍ର ସଖୀ ପଚାରିଲେ । ସେ କୁମାରଙ୍କ ଦୂତ କାହିଁ ଗଲେ । ବଡଲକ୍ଷଣାଉପାଧ୍ୟାୟୀ ଚେଟୀ ଜଣେ ସାଙ୍ଗରେ ନେଇ ସେ ନଗରରେ ଖୋଜିଲେ ।

ରାଜ ସୁତ-ଦୂତ ରହି ମାଳିନୀ ସଦନ ।
ସୁମନ ଗୁନ୍ଥିବାକୁ ସୁମନ କଲା ମନ । ୧୩ ।
ପୁଷ୍ପବାଟୀ ପ୍ରବେଶିଲା ଦ୍ୱିଜିହ୍ୱସ୍ପର୍ଶି ଆସି ।
ମାଳାକାର ସ୍ମର ନାମେ ପୁନଃପୁନଃ ଭାଷି ଯେ । ୧୪ ।
ବୋଇଲା ମୁଁ ଆସଇ ଦେଖାଇ ଘୋଷପଥ ।
ଖଞ୍ଜଣି ପୁଷ୍ପକି ଯତ୍ନେ ମୋପରରେ ଗୁନ୍ଥ ଯେ । ୧୫ ।
ପଚାରିଲା କେଉଁ କୁସୁମରେ ସ୍ନେହ ଅଛି ।
ପାଟଳି ପାଟଳି ବୋଲି କଲା ଶୀଘ୍ର ଗତି ଯେ । ୧୬ ।
ଏ ଭାବ ଚିତ୍ତକୁ ଭାଗ୍ୟବନ୍ତ ନୃପସୁତ ।
ସ୍ତ୍ରୀ ସ୍ଥାନ ଅର୍ଦ୍ଧ-ପ୍ରୟୋଗେ ମୋହିନୀ ମୋହିତ ଯେ । ୧୭ ।
ସେ କାଳେ ଚେଟୀଏ ଆସି ବାହୁଁ ଦେଉଁ ଦ୍ୱାରେ ।
ବସନ୍ତ ଗୀତ ଗାଇଲା ଫୁଲଗୁନ୍ଥାଠାରେ ଯେ । ୧୮ ।
କି ଯୋଗେ ସୁନ୍ଦରବର ସୁନ୍ଦରୀରତନେ ।
ଦେଖିଲାରୁ ଲେଖିଲା ଲେଖିଲା ନେତ୍ର ମନେ ଯେ । ୧୯ ।
ଛନ୍ଦେଦ ଶଙ୍କାରୁ କରି ଦେବଦୃଷ୍ଟି ବନ୍ଧ ।
ପ୍ରେମସୃଷ୍ଟି ସର୍ଜିବା ଉତ୍ସାହେ ନିଦ୍ରା ନାହିଁ ଯେ । ୨୦ ।

---

୧୩—ସେ ରାଜକୁମାରଙ୍କ ଦୂତ ପୋଷା ମାଳିନୀ ଘରେ ରହି ଫୁଲଗୁନ୍ଥିବାକୁ ଯାହା ମନକଲା । ସ୍ତ୍ରୀପୁରୁଷଙ୍କ ଉତ୍ତମ ମନକୁ ଗୁନ୍ଥିବାକୁ ମନ କଲା ବୋଲି ବୁଝିବ । ସୁମନ, ଫୁଲ ଓ ଉତ୍ତମ ମନ ।

୧୪—ଦୁଷ୍ଟ ଅସି ବଗିଚା ଶାରଦା । ସେ ମାଳ ମାର ମାର ବୋଲି ପୁନଃପୁନଃ କହିଲା । ଦ୍ୱିଜିହ୍ୱସ୍ପର୍ଶୀ, ଦୁଷ୍ଟ । ସ୍ମରନାମେ, ମାର ।

୧୫—ମାଳୀ କହିଲା, ମୁଁ ଏ ଦୁଷ୍ଟକୁ ଗୋପାଳଙ୍କ ବାଟ ଦେଖାଇଦେଉ ଅଛି । ଏ ଜେମା ଖଞ୍ଜଣି ପୋଷ୍ୟ ଫୁଲ, ତୁମ୍ଭେ ଏହାକୁ ଯତ୍ନରେ ମୋପର ଗୁନ୍ଥିବ । ଘୋଷପଥ, ଗୋପାଳଙ୍କ ବାଟ ।

୧୬—କୁମାର ଦୂତ ପଚାରିଲା, କେଉଁ ଫୁଲରେ ଅତି ସ୍ନେହଥାଏ । ମାଳୀ "ପାଟଳି" କହି ଶୀଘ୍ର ଚାଲିଗଲା ।

୧୭—ଏ ପୋଷା ମନରେ ଭାବିଲା, ରାଜକୁମାର ବଡ ଭାଗ୍ୟବନ୍ତ ଅଟେ । ଯେହେତୁ ସେ କୁମାରଙ୍କ ବାସସ୍ଥାନ ପାଟଳି ପ୍ରଭୃତି ଅକ୍ଷର ଅର୍ଦ୍ଧ ପ୍ରୟୋଗରେ ଅର୍ଥାତ୍ ପାଟଳୀରେ ମୋହିନୀ ଜେମା ମୋହିତ ହୋଇଅଛି ।

୧୮—ସେ ସମୟରେ ଜଣେ ଚେଟୀ ଅସି ଦ୍ୱାରେ ଡାହାଣରେ ପୋଷା ଫୁଲ ଗୁନ୍ଥାଠାରେ ବସନ୍ତ ରାଗରେ ଗୀତ ଗାଇଲା ।

୧୯—ସେ ସୁନ୍ଦର ଶ୍ରେଷ୍ଠ କୁମାର କି ଯୋଗରେ ସୁନ୍ଦରୀରତ୍ନ ଜେମାକୁ ଦେଖି ନେତ୍ର ଓ ମନରେ ଲେଖି ରଖିଲା ।

୨୦—ପଲକ ପଡିଲେ କୁମାରୀରୂପ ଦେଖାଯିବ ନାହିଁ ଅତଏବ ବିଚ୍ଛେଦ ହେବ ଏ ଶଙ୍କାରେ କୁମାର ଦେବ ଦୃଷ୍ଟି ଅର୍ଥାତ୍ ଅପଲକ ହେଲେ । ପ୍ରେମସୃଷ୍ଟି କରିବା ଉତ୍ସାହରେ ନିଦ୍ରା ହେଉନାହିଁ ।

୧ରସାଳ ବଣଚାମଣି ପୁଣି ତା ଭୁଞ୍ଜନା ।
ଆସ୍ୱାଦନେ ହୋଇଅଛୁ କ୍ଷୁଧା ତୃଷା ଊଣା ଯେ । ୩୧ ।
ଫଳ ଅଛୁ ଫଳ ନାହିଁ ଏ ଫଣସ୍ଥ ଲଭ ।
ମଦନ ଦହନ ଶରେ ପୀଡ଼ନ ଆରମ୍ଭି ଯେ । ୩୨ ।
ଭବେ କୋଳ କଲ୍ୟ ୧ଲୋଲଗୃହୀଣିକ ଛାଳ ।
କପା କୃପା ନ ଥିଲେ ଦେଅନ୍ତା ଏଡ଼ା ଘଲ ଯେ । ୩୩ ।
ଆଜନ୍ମସୁଖୀ ନୋହୁଛ ସ୍ୱପ୍ନେ ଦୁଃଖଗ୍ରସ୍ତ ।
ଏବେ ମାର ମାରଣେ ନ ବଞ୍ଚୁଥିବ ହସ୍ତ ଯେ । ୩୪ ।
ସେ ପରଦୁଃଖ ଯୋଜକା ବଡ଼ ଭାଗ୍ୟ ସତ ।
କ କହିବେ ଜଗନ୍ନାଥେ ଦେଇଛୁ ଉଦନ୍ତ ଯେ । ୩୫ ।
ବୋଲନ୍ତି ଆରତତ୍ରାଣ ଦୀନବନ୍ଧୁ ସେହି ।
କରି ଏହି ଭରସାକୁ ଆସିଅଛୁ ମୁହିଁ ଯେ । ୩୬ ।
ପୁଣି ସରଗ ପ୍ରକାଶ ଶୃଙ୍ଗଡ଼ାରେ ଥୋଇ ।
ବାଲା ପ୍ରାପତେ ଶଙ୍ଖାଉ ମାଲାରେ ଯୋଡ଼ାଇ ଯେ । ୩୭ ।
ଶ୍ରବଣେ ସେ ଗୀତ ଶିକ୍ଷା କଲେ ଉପାଧ୍ୟାୟୀ ।
ଏହିକାଳେ ମାଳାକାର ପରବେଶ ହୋଇ ଯେ । ୩୮ ।

---

୩୧—ପୁଣି ସେ ବନଚାମଣି ଜେମା ଅମ୍ବ ଓ ଅଙ୍ଗୁର । ଏ ବ୍ୟଞ୍ଜନରେ ରାଜପୁତ୍ର ଆସ୍ୱାଦନ କରି କ୍ଷୁଧା ତୃଷା ରହିତ ହୋଇଅଛନ୍ତି । ୧ରସାଳ, ଅମ୍ବ ଓ ଅଙ୍ଗୁର ।

୩୨—ଅମ୍ବର ଫଳ ଅଛି ଓ ଅଙ୍ଗୁର ଫଳ ନାହିଁ ଅତଏବ ମୋର ବାଞ୍ଛା ସଫଳ ହେବ କ ନାହିଁ, ଏ ସନ୍ଦେହ କଲାକ୍ଷଣେ କନ୍ଦର୍ପ ଶର ଦ୍ୱାରା ତାର ପୀଡ଼ା ଆରମ୍ଭ କରି ତାକୁ ଦହନ କରୁଅଛି । ଅଙ୍ଗୁର ଫେନ୍ନ ରଙ୍ଗଲାପର ।

୩୩—କମାର କଲ୍ୟା ଜଳ, ସୁନ୍ଦରୀ ଚଞ୍ଚଳ ତାହାଣୀ କି ଧାର ମୋତେ ଭବେ କୋଳ କଲା । ତପ୍ୟା ନ ଥିଲେ କାହିଁକି ଏ ଆଲିଙ୍ଗନ ଦଅନ୍ତା । ଏହା ଘଟୁଅଛନ୍ତି । ୧ଲୋଳ, ଚଞ୍ଚଳ ।

୩୪—ସେ କେମା ଅଜନ୍ମସୁଖୀ ସ୍ୱପ୍ନରେ ସୁଦ୍ଧା ଦୁଃଖ ହେଉନାହିଁ । ତାକୁ ଏବେ ଶରମାଦବାକୁ କନ୍ଦର୍ପର ସୁଦ୍ଧା ହାତରୁଠ କ ଥିବ ।

୩୫—ଯେ ଦୁଃଖ ଦେଖିନାହିଁ, ସେ ପରର ଦୁଃଖ ବୁଝିପାରିବା ବା ବଡ଼ଭାଗ୍ୟ ନସ୍ତୁପ । ମୁଁ ତ ଖବର ଦେଇଅଛି, ଜଗନ୍ନାଥେ କଣ କହିବେ ।

୩୬—ସେ ଜଗନ୍ନାଥେ ଅର୍ତ୍ତତ୍ରାଣ ଓ ଦୀନବନ୍ଧୁ ବୋଲି ସମସ୍ତେ କହନ୍ତି । ମୁଁ ଏହି ଭରସା କରି ଆସିଅଛି ।

୩୭—ପୁଣି ବାଲାଜେମାକୁ ପାଇବାକୁ ଶଙ୍ଖଉଚ୍ଚଟିଶି ଫୁଲ ମାଳାରେ ଯୋଡ଼ାଇ ସରଗ ପ୍ରକାଶ କରୁଥିବା ଶୃଙ୍ଗଡ଼ାରେ ଥୋଇସ ।

୩୮—ଉପାଧ୍ୟାୟୀ ସେ ଗୀତ ଶୁଣି ଶିଖିପକାଇଲେ । ଏ ସମୟରେ ମାଳାକାର ଉପସ୍ଥିତ ହୋଇ ଆସିପହୁଞ୍ଚ ।

ସୁମନସମ୍ଭାର ବାଲବାମା କରେ ଦେଇ ।
ଗଲା ସେ ଭୈରବୀ ସ୍ମରି ଉଚ୍ଚେ ଗୀତ ଗାଇ ଯେ ।୩୯।
୧ବାଣୀ ତାହା ବାଣୀଶ୍ୱର ହୋଇଲେ ଅଲଙ୍କୃତ ।
ହୃଦରେ ୨ସଦନ କରି ଦେଲେ ସେ ସ୍ଫୁରିତ ଯେ । ୪୦ ।
ଜେ ରସିକାକର କ୍ଷୀରଘଟ ହୋଇଥିଲା ।
୧ଦଧି-ବ୍ରଜ କାନ୍ତପ୍ରୀତି-ନୀର ମିଶାଇଲା ଯେ । ୪୧ ।
କ୍ରମେ ଶୀର୍ଣ୍ଣ କଲା ସ୍ଥାପି ବିରହାନଳରେ ।
ଉଦ୍ୟମି ମନ୍ମଥଦଣ୍ଡ ଧରି ମନ୍ଥିବାରେ ଯେ । ୪୨ ।
ପୁନଃ ଲଭିଲେ ସେ ନୀର ସ୍ଥିରକୁ ଲଭିବ ।
ଏ ବିନା ବିନାଶ ନାନାରସ-ଜାତ ଦ୍ରବ୍ୟ ଯେ । ୪୩ ।
୧ଘଟ ଫାଟି ଫୁଟି ଯିବା କାଳ ହେବ ଯହିଁ ।
କଷ୍ଟେ ଦଗ୍ଧ ଉଦ୍ଧାରଣ ସେତୁ ବ୍ରଜ-ବନ୍ଧୁ ଯେ । ୪୪ ।
ହଂସଦୂତ ନେଇ ଶ୍ରୁତି ମନ୍ତ୍ରେ ଏମନ୍ତରେ ।
ଯେବେନ କ୍ଷମା ଯାବି ହେବ ଏ ଶ୍ରାବକବଷରେ ଯେ । ୪୫ ।

---

୩୯—ସେ ମାଳାକାରି ସେ ଫୁଲମାନଙ୍କୁ ହାତରେ ଦେଇ ଭୈରବଦେବଙ୍କୁ ସ୍ମରଣ କରି ଉଚ୍ଚରେ ଗାନକଲା ।

୪୦—ତା କଥାରେ ସରସ୍ୱତୀ ପ୍ରସନ୍ନହେଲେ ଏବଂ ତା ହୃଦୟରେ ସ୍ଥାନକରି ପଦମାନଙ୍କୁ ସ୍ଫୁରିତ କରାଇଲେ । ୧ ବାଣୀ, ସରସ୍ୱତୀ ଓ ବଚନ । ୨ସଦନ ସ୍ଥାନ ।

୪୧—କୌଣସି ରସିକାଶ୍ରେଷ୍ଠ ଦୁଗ୍ଧଘଟ ହୋଇଥିଲା । ଦଧାତା ଗୋପାଳ ହୋଇ ତାଠାରେ କାନ୍ତ ପ୍ରୀତି ରୂପକ ପାଣି ମିଶାଇଲା । ୧ ଦଧି ବ୍ରଜ, ଦଧାତା ଗୋପାଳ ।

୪୨—ଦୁଧକୁ ନଷ୍ଟ କରିବାକୁ ଇଚ୍ଛାରେ ବସାଇ ଶୁଖାଇଲାପରି ମନ୍ଥିବାରେ ଉଦ୍ୟମକରି କାମ ଦଣ୍ଡଧରି ବିରହାନଳରେ ରଖି କ୍ରମେ କ୍ରମେ ଶୀର୍ଣ୍ଣକଲା ।

୪୩—ନଷ୍ଟରେ ବସିଥିବା ଦୁଧ ଉତ୍ତୁଳାଇଲାପରି । ଏ ବିରହାନଳରେ ନଷ୍ଟ ଅସ୍ଥିର ହେଉଅଛି । ପୁଣି ସେ କାନ୍ତପ୍ରୀତି ରୂପକ ପାଣି ପାଇଲେ ଦୁଧପରି ସ୍ଥିର ହେବ । ନୋହିଲେ ଲବଣୀ ପ୍ରଭୃତି ନାନାରସ ଜାତ ହେବା ଯୋଗ୍ୟ ଦୁଧ ପାଣି ବ୍ୟତୀତ ଉତ୍ତୁଳି ନଷ୍ଟ ହୋଇପରି ନାନାବିଧ ରସ ଯୋଗ୍ୟ ଏ ବାଳା ଏକାନ୍ତ ପ୍ରୀତିରୂପକ ଜଳ ପ୍ରାପ୍ତିଯୋଗୀ ନଷ୍ଟ ହେବ ।

୪୪—ଦୁଧ ଘଟ ଅଧିକ ଅଗ୍ନିରେ ଫାଟି ଫୁଟିଯିବା କାଳ ହେଲେ ଗୋପାଳ ଶୀଘ୍ରଆସି ରକ୍ଷିଲାପରି ଗୋପାଳତୁଲ୍ୟ ଦଧାତା ବିରହାଗ୍ନିରେ ଦେହ ନଷ୍ଟ ହେବା କାଳହେଲେ କଷ୍ଟେ ଦଗ୍ଧକଣ୍ଠକୁ ଉଦ୍ଧାର କରିବ । ୧ ଘଟ, ମାଠିଆ ଓ ଦେହ ।

୪୫—ଏଥିରେ ହଂସଦୂତ ପୋଥୀର ଉକ୍ତି ଓ ବର୍ଣ୍ଣ ଦେଖି ଶୁଣି ମନ୍ତ୍ରକର । ସେ ବରୁଦବ କ୍ଷମା ନେମା ଭବ ବର୍ଷରେ ଯାଉହେବ ।

ମଙ୍ଗଳ କାଟେ ଶ୍ରୀରାମ ସୁମର ନାଗରୀ ।।
ଶୋକସିନ୍ଧୁ ତରି ଯିବୁ ଭକତନଗରୀ ଯେ । ୫୪ ।।
ଶ୍ରୀରାମ ସୁମରି ଯେଣୁ ହେଲେ ସିନ୍ଧୁ ତରି ।
ମରୁତସୁତ ପ୍ରବେଶ ହେମମୟପୁରୀ ଯେ । ୫୫ ।।
କହେ ଉପେନ୍ଦ୍ର ଭଞ୍ଜ ଶ୍ରୀରାମ ସୁମରି ।
ବୈକୁଣ୍ଠପୁର ଲଭିବ ଭବସିନ୍ଧୁ ତରି ଯେ । ୫୬ ।।



## ଦ୍ୱାବିଂଶ ଛାନ୍ଦ ।।

### ରାଗ କଳସା ।।



ଯୁବାମଣି ଥିବା ପୁର ୧ଭିତ୍ତି ପକ୍ଷେ ସ୍ୱଚ୍ଛନ୍ଦେ ଭଙ୍ଗୀର ଗୀତ ଖଞ୍ଜା ।।
ଅଳୀ ଅଗ୍ରେ ଉପାଧ୍ୟାୟୀ ରଚନ ।।
ଶୀର୍ଣ୍ଣକଟୀ ପୂର୍ଣ୍ଣଚନ୍ଦ୍ରମାବଦନୀ ସେ କଥାରେ ଦେଇ କର୍ଣ୍ଣ ସେ । ସୁନ୍ଦରୀ ।।
ବେଗ ବେଗ ନେତ୍ରଯୁଗ ଝୁଲାଇ । ବାଲବାମା ହରଷକୁ ଅନାଇ ।।
୨ଓ ଉତ୍ଫୁଲ୍ଲ ସୁମନ ଗୁଚ୍ଛାରେ ଯତନେ ଉତ୍ଫୁଲ୍ଲ ସୁମନ ଥୋଇ ସେ । ୧ ।।

---

୫୪—ନାଗରୀ ନେମାମଙ୍ଗଳ କାଟିବାକୁ ଶ୍ରୀରାମଙ୍କୁ ସ୍ମରଣକର । ଶୋକ ସମୁଦ୍ରପାରି ହୋଇ ଭାଗ୍ୟ ଭକ୍ତମାନଙ୍କ ନଗରକୁ ଯିବ ବୋଲି ଜଣାଇଲ ।

୫୫—ଯେହେତୁ ମରୁତସୁତ ହନୁମାନ ଶ୍ରୀରାମଙ୍କୁ ସ୍ମରଣ କରି ହେଳାରେ ସମୁଦ୍ର ଡେଇଁ ସ୍ୱର୍ଣ୍ଣମୟ ଲଙ୍କାପୁରରେ ପ୍ରବେଶ କରିଥିଲେ ।

୫୬—ଉପେନ୍ଦ୍ରଭଞ୍ଜ କହୁଅଛନ୍ତି । ଅତେ ସଜ୍ଜନମାନେ ଶ୍ରୀରାମ ସ୍ମରଣକରି ସଂସାରସମୁଦ୍ର ତରି ବୈକୁଣ୍ଠପୁରକୁ ପାଇବ ।।



### ଦ୍ୱାବିଂଶ ଛାନ୍ଦ ।

୧—ଉପାଧ୍ୟାୟୀ ଯୁବାମଣି ଯେଉଁ ଥିବା ଘରର ବାହ୍ୟ ପକ୍ଷଦ୍ୱାରରେ ସଖୀମାନଙ୍କ ଅଗ୍ରରେ ସ୍ୱଚ୍ଛନ୍ଦରେ ଭଙ୍ଗୀ ପୂର୍ଣ୍ଣଗୀତ ଗାନ ରଚନା କଲେ । ସେ କୃଶକଟୀ ପୂର୍ଣ୍ଣଚନ୍ଦ୍ରମୁଖୀ ସୁନ୍ଦରୀ ସେ ଗୀତ କଥାରେ କାନ ଦେଇଥାଏ । ଫୁଲ ଗଭାରା ଥିବା ବାଳିକାର ଆନନ୍ଦ ଦେଖିବାକୁ ବେଗେ ବେଗେ ନେତ୍ରଦ୍ୱୟ ଭିଡ ଦେଉଥିଲେ । ଫୁଲ ପାଇ ଗୁଚ୍ଛାରେ ପ୍ରଫୁଲ୍ଲ ଚିତ୍ତରୁ ଥୋଇଥିଲେ । ୧ଉତ୍ଫୁଲ୍ଲ—୨ ପ୍ରଫୁଲ୍ଲ ସୁମନ ଫାଟିଲା ଫୁଲ ଓ ପ୍ରଫୁଲ୍ଲମାନ ।



ମାଳତୀ । [ ୧୫୦ ପୃଷ୍ଠା

ଖୋଜ କି ତୋ ସମେ ୧ସୁମନେ ନ ଗୋଟିଏ କୋଟିଏ ବ୍ରହ୍ମାଣ୍ଡେ କି ପାଇଁ ।
କିଶ କରୁ ନ ପାରୁବା ଧିଆଇ ।
ଅନଙ୍ଗ ଜ୍ୱାଳାରେ ହସ୍ତ ତନୁ କଲା ହର ଗଲେ ଯୋଗୀ ହୋଇ ରେ । ସୁନ୍ଦରି ।
ଏଣୁ ଦୁର୍ଲଭେ ଦୁର୍ଲଭ ତୁ ଅଟୁ । ତୁ ତେଜେ ମୋହନେ ମୋହନମୂରତି ।
ଭଗୀରଥେ ଗଙ୍ଗା କୃପା କଲା ପ୍ରାୟେ ନହେଲୁ ମୋ ନେତ୍ରସମ୍ମୁଖି ରେ । ୫ ।
୧ସୁରତରଙ୍ଗିଣୀ ଦେହ ତୁହି ସତ ୨ଘନରସରେ ମୂର୍ଚ୍ଛି ସ୍ୱଚ୍ଛ ।
ବଂଶସ୍ଥ ସେ ଗୋଡାଇ ରାଜା ପଛ ।
ନାହିଁ କରିବୁ କି ମୁଁ ରାଜକୁମାର ତୋ ପଛେ ଥିବାକୁ ନିତ୍ୟେ ରେ । ସୁନ୍ଦରି ।
ଏ ଭରସା ଯେ ତାରେ ତାର ୩ଅଙ୍ଗୀକାର । ଏଣେ ୪ଗାତ୍ର ନ କରିବୁ ପବିତ୍ର ।
ଚନ୍ଦ୍ରା ବାରୁଣିଯୋଗ ଅବଶ୍ୟ ହୋଇବ ୫ମଧୁର ସ୍ନେହରେ ମାସ ରେ । ୬ ।
ବଳି ଇନ୍ଦ୍ରିୟେ ଯୋଗ ବାଞ୍ଛାପର ଏ କଥା ମୁଁ କରେ ଭଜନ ।
ହୋଇବ କି ନାହିଁ ପ୍ରୀତିଯୋଜନ ।
ସ୍ୱବଶ ପ୍ରାୟେ ସ୍ୱଳ୍ପଶିକ୍ଷ ଲେଖନ ବର୍ଣ୍ଣ ପଠନେ ମୋ ମନ ରେ । ସୁନ୍ଦରି ।
କ୍ଷଣେ କ୍ଷଣେ ୧କ୍ଷଣପ୍ରଭା ସଦୃଶ । ପୁନଃପୁନଃ ବଢି ଲାଗ ଭରସା ।
ବକ୍ଷରେ ୨ଶେଷରେ ଅଶେଷ ହେବାରେ ଲାଗିଛି କିଛି ତପସ୍ୟା ରେ । ୭ ।

---

୫—ଧନ ଓ ଜ୍ଞାନହେଁ ସୌନ୍ଦର୍ଯ୍ୟରେ ତୋ ସମାନ ଗୋଟିଏ ଖୋଜି କୋଟିଏ ବ୍ରହ୍ମାଣ୍ଡରେ ପାଇଲେ ନାହିଁ କି ? ଏଣୁ ତୋତେ ଧରିବାକୁ ନ ପାରିବାରୁ କାତର କନ୍ଦର୍ପଙ୍କ ଜ୍ୱାଳାରେ ଦଗ୍ଧ ହୋଇଗଲେ ଏବଂ ହରଯୋଗୀ ହୋଇଗଲେ । ଅତଏବ ହେ ସୁନ୍ଦରି ! ତୁ ଦୁର୍ଲଭଙ୍କୁ ଦୁର୍ଲଭ ଅଟୁ, ତେଣୁ ମୋହନ ଜାଣିଲେ ମୋହନମୂର୍ତ୍ତି ଅଟୁ । ଗଙ୍ଗା ଭଗୀରଥଙ୍କଠାରେ କୃପାକଲାପରି ତୁ ମୋର ନେତ୍ରସମ୍ମୁଖ ହୋଇନାହୁଁ । ୧ ସୁମନେ, ସୌନ୍ଦର୍ଯ୍ୟରେ ।

୬—ମୋ ଶରୀର ଗଙ୍ଗା ଓ ନାନା ଜଳରେ ପୂର୍ଣ୍ଣଥାଏ, ଏବଂ ବଂଶସ୍ଥହେତୁରୁ ରାଜା ଭଗୀରଥଙ୍କ ପଛେ ପଛେ ଗୋଡାଇଥିଲେ ତୁ ମଧ୍ୟ ସେହିପରି ସ୍ୱଭାବରେ (ତରଙ୍ଗିଣୀ) ସୌନ୍ଦର୍ଯ୍ୟ ଏବଂ ନାନାପ୍ରକାର ରସରେ ପୂର୍ଣ୍ଣ ଅଟୁ । ମୁଁ ରାଜକୁମାର, ତୋ ପଛରେ ରହିବାକୁ ଇଚ୍ଛା କରୁଛି, ଏଥିକି ତୁ ନାହିଁ କରିବୁ କି । ଯେ ଗଙ୍ଗା ଭଗୀରଥଙ୍କର ବଂଶ (କପିଳଶାପ ଦଗ୍ଧ) କୁ ଉଦ୍ଧାର କରିଥିଲେ । ଏଣୁ ଏ ଭରସା ତୁ ମୋର ଏହା ଦେହକୁ ପବିତ୍ର କରିବୁ ନାହିଁ କି । ଚୈତ୍ରମାସରେ କୃଷ୍ଣପକ୍ଷରେ ଗଙ୍ଗାରେ ବାରୁଣୀ ଯୋଗହୁଏ । ସେଥିରେ ଲୋକେ ମଜ୍ଜନ୍ତି । ମୋର ହେ ଚନ୍ଦ୍ରା ତୋର ମଧୁର ସ୍ନେହରେ ବାରୁଣୀ ଯୋଗ ହେବ, ମୁଁ ତହିଁରେ ମଜ୍ଜିବି । ୧ ସୁରତରଙ୍ଗିଣୀ ଦେବନଦୀ ଓ ରତି ଲହରୀ । ୨ ଘନରସ, ଜଳ ଓ ନାନାରସ । ୩ ଯୋଗ୍ୟ ବଂଶ । ୪ ଗାତ୍ର, ଦେହ । ୫ ମଧୁର ଚୈତ୍ର ଓ ମନୋହର ।

୭—ବଳବତ୍ତର ଇନ୍ଦ୍ରିୟମାନେ ଯୋଗବାଞ୍ଛା କଲାପରି ମୁଁ ତୋର ଏ ଅନୁଗ୍ରହ କଥା ଭଜନ କରୁଅଛି । ତଥାପି ତୋର ପ୍ରୀତିଯୋଗ ହେବ କି ନାହିଁ । ମୋର ସ୍ୱଳ୍ପଶିକ୍ଷିତ ଛାତ୍ରମାନଙ୍କୁ ପଢି ପଢାଇବାକୁ ମନ ହେଉଅଛି । ସେପରି ସ୍ୱବଶ ସ୍ୱଳ୍ପଲେଖା ପଢିବାପାଇଁ ନିଜ ମନ କ୍ଷଣାର୍ଦ୍ଧ ନାହିଁ ପଢାଇ

ବାଣ ନିଦବର୍ଣ୍ଣିଣଠାରୁ କଣ୍ଠ ଗୁଣ କର ଈକ୍ଷଣ ବର୍ଣ୍ଣଜାମି ।
ନିର୍ମାଣିଲୁ ୧ଜାତରୂପପ୍ରତିମା ॥
ସୁରନଟଗ୍ରଠାରୁ ବରନାରୀଙ୍କୁ ୨ଜାଗତ୍‌ପୁଷ୍ପମଧ୍ୟମା ହେଲେ । ସୁନ୍ଦରି !
ଜୀବ ପାଇବାରୁ ଦିବ୍ୟ ବନିତା । ରୂପେ ହୋଇଲୁ ଅବନୀଜନ୍ତିତା ॥
ଗୁଣସଂଯୋଗ୍ୟ ସମୟରେ ଭାଗ୍ୟ ମୋର ତୁ ସେ ଅନୁଗ୍ରହକର୍ତ୍ତ୍ରୀ ହେଲେ । ୮ ।
ଶିରୀଷଅଙ୍ଗୀ ତଙ୍ଗିବଣେ ଜାଣିନ୍ତି ଅଙ୍ଗିକାର ମୋଟିରେ ନେହବାର ॥
ଲଜ୍ଜା-ଅଶ୍ରୁଯୁକ୍ତା ଥିବ ପ୍ରଖର ।
ଚନ୍ଦ୍ର ଘନ ଅନ୍ତ ଦଶେ ୧ମୋଦ ଜାତେ କୁମୁଦେ କି ଅଗୋଚରି ହେଉ । ସୁନ୍ଦରି ।
ହାବ ଜାତେ ଝଟ ଝ ଚହିଁବା । ପୁଣି ସ୍ତନ ପରେ ଦୃଷ୍ଟି ଥୋଇବା ।
ଖେଳ ୨ଖଞ୍ଜରୀଟ ପଙ୍କଜକଣ୍ଟିକିରେ ବସିବା ଛିଡ଼ଇ ଅବା ହେ । ୯ ।
ଅଧରେ ହାସ ପ୍ରକାଶ ଅନୁରାଗ-ନଦୀରୁ ଲହରୀ-ଲକ୍ଷ୍ମୀ ।
ବଳେ ସେକାଳେ ବାହାରେ ବାହାର ॥
ମୋର ହୃଦବନ ୧ପ୍ଳବନ କର ଯାହିଁ କୂଳରେ ଲାଗି ନି ପାରୁ ହେଉ । ସୁନ୍ଦରି ।
ଏଣୁ ଦାରିଦ୍ର୍ୟଦଶା ନାଶେ ହସ । ତୋର ମାନସ ହୋଇଥିଲା ପଶ ।
ସଦ୍ଭାଗପାଣ ଗୋଷ୍ଠିକେ ଭର ଯା ବଣ୍ଟେ ଦେଲୁ କୋଟିହାସ ହେ । ୧୦ ।

---

ଉପସ୍ଥିତ କରିଥିଲା । ମୋର ସେପରି ମନ ହେଉଛି କଲ୍ପ ରୂ ବଳ୍ଲିପରି କ୍ଷଣ କ୍ଷଣକେ ଦେଖାଦେଇ ଲିଭି ଯାଉଅଛୁ । ଏଣୁ ଭରସା ହେଉଛି, ମୁଁ ବଞ୍ଚାଉଅଛି ଶେଷଦେବଙ୍କ ଦାସ କହିବାରେ ଶେଷ କି ହେବାରବ ଉପସ୍ଥା ମୁଁ କ ହେଉଅଛି କି । ୧ କ୍ଷଣପ୍ରଭା ବିଜୁଳି । ୨ ଶେଷ, ଅନନ୍ତଦେବ ।

୮—ହେ ସୁନ୍ଦରି ! ବିଶ୍ୱକର୍ମା ବାଣାସୁରଠାରୁ ହାତ ହଜାର ଗଣକର ଓ ଇନ୍ଦ୍ରଙ୍କଠାରୁ ଅକ୍ଷି ହଜାର ଉଧାର କରି ସ୍ୱର୍ଗର ସିଦ୍ଧକାଠୀ ଉଲ୍ଲଙ୍ଘ ଅଣିଥୋଇ ଗୋଟିଏ ସୁନା ପ୍ରତିମା ତିଆରିଲା କି ? ସେ ଜୀବ ପାଇବାରୁ ସୁନ୍ଦରୀ ସ୍ତ୍ରୀ ହେଲା, ତୁ ସେହି ସ୍ତ୍ରୀ ପୃଥିବୀରେ ଜାତହୋଇ ରୂପରେ ସମସ୍ତଙ୍କୁ ମୋହିତ କଲୁ । ସେହି ତୁହି ଯାହା ମୋର ଅନୁଗ୍ରହ କାରିଣୀ ହେଲୁ । ଅତଏବ ମୋର ଭାଗ୍ୟ ଅଛି । ଜାତରୂପ ପ୍ରତିମା, ସୁନାପ୍ରତିମା । ୨ ଜାଗରୂପ, ସିଦ୍ଧ ।

୯—ହେ ଶିରୀଷାଙ୍ଗି ! ମୋଠାରେ ତୋର ଅଙ୍ଗୀକାର ଥିବା ମୁଁ ତୋର ସବୁ ଭଙ୍ଗୀରୁ ଜାଣେ । ସେ ଭାବ ପ୍ରକାର କଲୁ, ସେ ସବୁ ଲଜ୍ଜା ଅଶ୍ରୁଯୁକ୍ତ ଥିଲା । ଚନ୍ଦ୍ର ମେଘବାସ ଘୋଡ଼ାଇଲେ ସୁଖ ଆନନ୍ଦକାର କରିବାକୁ କାହିଁକି ଅଗୋଚର ହୁଏକି । ତୁ ଭଙ୍ଗୀ ପ୍ରକଟ ପ୍ରକାଶ କରିବା ହାସ ଯେତେ ତାହାଣୀ ପୁଣି ସ୍ତନରେ ଦୃଷ୍ଟି ପକାଇବା ହାସ ମନେହେଲା, ଖଞ୍ଜନପକ୍ଷୀ ଖେଳକରି ପଦ୍ମକଢ଼ିରେ ବସିବାକୁ ଚେଷ୍ଟା କଲାକ କି ଖଞ୍ଜନପକ୍ଷୀ ତହାଣୀ ତା ଖେଳ, ପଦ୍ମକଢ଼ି ସ୍ତନ ସହିତ ତୁଳନା କରାଯାଇଅଛି । ୧ମୋଦ ଆନନ୍ଦ । ୨ ଖଞ୍ଜରୀଟ, ଖଞ୍ଜନପକ୍ଷୀ ।

୧୦—ସେ ସାକ୍ଷାତ ହେବା ସମୟରେ ଅଧରରେ ହାସ ପ୍ରକାଶ ହେଉଥିଲା । ଅତଏବ ଅନୁରାଗ ନଦୀରୁ ଦୀର୍ଘ ଲହରୀ ବଳେ ବାହାର ବାହାର କରି ପରି ଦଶିଲା । ସେ ଲହରୀରେ ମୋର ହୃଦ୍‌ବନ ଭାସି-ଯାଇ କୂଳରେ ଲାଗି ପାରିଲା ନାହିଁ । ଏ ହେତୁ ମୋର ଦାରିଦ୍ର ଦଶା ହେବାରୁ ତୋ ମନ ତାହା ନାଶ କରିବାକୁ ସ୍ଥିର ହେଲା । ଅତଏବ ଗୋଟିଏ ପଦ୍ମରାଗ ପାତ୍ରରେ କୋଟିଏ ହୀରା ଭରିକରି ଯାହା ଦାନ ଦେଲୁ । ଅର୍ଥାତ୍ ପଦ୍ମ ଦଶିବା ଭଳି ହସିଲୁ । ଅଧର ପଦ୍ମ ରାଗ ପାତ୍ର ଓ ଦନ୍ତ କିରଣ କୋଟି ହୀରା ରୂପରେ ବର୍ଣ୍ଣିତ ହୋଇଛି । ୧ପ୍ଳବନ, ଭାସିବା ।

ରସିକା ନାସିକା ଫୁଲାଇ ଯେ ୧ସ୍ଫୁଟକାଳେ ତିଳଫୁଲ ପରାୟେ ।
ସତେ ତାର ପ୍ରାକୃତ ନାମପାଏ ।
ଟେକ ଦେଲୁ ମୋତେ ମୁକୁତା ସଙ୍ଗତେ ହେଲକୁ ସିନା ସଦୟେ ହେ ସୁନ୍ଦରୀ !
ସେକାଳେ ସେ ଶୋଭା ମୋତି କେମନ୍ତ । ଯଥା ୨ଭାର୍ଗବ ଊର୍ଦ୍ଧ୍ୱକୁ ଚଳିତ ।
ନବସଙ୍ଗମେ ୩ଜନଶାମଣି କୋଳରୁ ରୋହିଣୀ ଉଠିଲା ମତ ସେ । ୧୧ ।

କମ୍ପୁଥିଲା ପରା ଝଲକାଝଲକ ତାରକାବଳୀ ଝଳ ଦଳ ।
ମୁଁ ଘେନଲି ମୋ କୃପା କୃତେ ଛଳ ।
ପକାଇଲି ନେତ୍ର ତୋ ପାଦପଦ୍ମକୁ ଧରି ନ ଛାଡ଼ିବି ବୋଲି କରେ । ସୁନ୍ଦରି ।
ଝୁଲୁଥିଲୁ ୧ପ୍ରପଦକୁ କ ମଣି । ତହିଁ ସଂଶୟ ଉଦୟ ସେକ୍ଷଣି । ୧୨ ।

ମୁଁ ଭ୍ରମ ହେମନ୍ତ କାମ କ ହେମନ୍ତ ମତ୍ତକାଶିଣୀରେ ଶରଣ ।
ହେଲା ଭ୍ରୂଭାରୁ ପ୍ରହାରୁଛୁ ବାଣ ।
ବାଳା ବଳାନାହେ ଅଳାଥ ବୋଇଲେ ହୁଡ଼ିବ ସିନା ତା ଠାଣ ରେ । ସୁନ୍ଦରି ।
ତୋତେ ରଖିଲି ଲେଖି ଦେବୁ ମାନ । ଯେବେ ମୁହିଁ ତୋ ଅନୁଗ୍ରହପାତ୍ର ।
ଭେଟିଯାଏ ସର୍ବାରିଷ୍ଟକୁ ଖଣ୍ଡିବ କରି ପଞ୍ଚାକ୍ଷରୀମନ୍ତ୍ର ରେ । ୧୩ ।

---

୧୧—ଫୁଟିବାବେଳେ ରକ୍ତିମ ତିଳଫୁଲ ପରି ନାସିକା ଯାହା ଫୁଲାଇଲୁ, ହେ ରସିକା ! ସେ ନାସିକାର ପ୍ରାକୃତ ନାମ ( ନାକ ) ଅର୍ଥାତ୍ ସ୍ୱର୍ଗପାଏଁ ସତେ ମୋତେ ସେ ନାସାମୋତି ସଙ୍ଗେ ଟେକ ଦେଲୁ କି, । ତୁ ସଦୟ ହେଲାରୁ ଏହା କଲୁସିନା । ସେ କାଳେ ସେ ନାସାମୋତିର କପର ଶୋଭା ହୋଇଥିଲା । ଶୁକ୍ର ତାର ଉପରକୁ ଉଠିଲେ କି ? ଅବା ନୂଆ ସଙ୍ଗମରେ ଚନ୍ଦ୍ରଙ୍କ କୋଳରୁ ରୋହିଣୀ ଉଠିଗଲା କି । ୧ସ୍ଫୁଟକାଳେ, ଫୁଟିବାବେଳେ । ୨ଭାର୍ଗବ, ଶୁକ୍ର । ୩ଜନଶାମଣି, ଚନ୍ଦ୍ର ।

୧୨—ତାରକାମାନଙ୍କର ଶୋଭାର ଅତିକ୍ରମକାରୀ ଝଲକା କମ୍ପୁଥିଲା ପରା ମୁଁ ଜାଣିଲି, ମୋତେ ଦୟା କରିବାକୁ ଛଳକରି ପ୍ରକାଶ କରୁଥିଲ । ତେଣୁ ମୁଁ ତୋ ପାଦ ପଦ୍ମକୁ ଧରି ଛାଡ଼ିବ ନାହିଁ ବୋଲି ମନରେ ଦେଖିଲେ ନେତ୍ର ପକାଇଲି । ତୁ କଣ କାହିଁର ପାଦ ଅଙ୍ଗୁଳିମାନଙ୍କୁ ମଣିଥିଲୁ, ସେ କ୍ଷଣି ସେଥିରେ ମୋର ବଡ଼ ସନ୍ଦେହ ହେଲା । ବୋଧହୁଏ ପ୍ରତ୍ୟେକ ହୋଇ କି ଉପମା ଦେବ ଅବା କନ୍ଦର୍ପ ଏହାର ଉପମା ଅଶୋକ ଫଳୀ ରୂପ ବାଣରେ ପ୍ରହରକୁ ମାରିବ । ତୁ ଏହା କରୁଥିଲୁ । ୧ପ୍ରପଦ, ପାଦାଙ୍ଗୁଳି ।

୧୩—ମୁଁ ଯେପରି ଭ୍ରମରେ ପଡ଼ିଛ । କନ୍ଦର୍ପ କଣ ସେପରି ଭ୍ରମରେ ପଡ଼ିଛି । ମତ୍ତକାଶିଣୀ ତୋଠାରେ ଶରଣ ପଶିଲା ଭ୍ରୂଭାରୁ ବାଣ ପ୍ରହାର କରୁଅଛ କି । ବାଳା ତୁ ବଳାତ୍କାରେ 'ଅନାଥ' ବୋଲି କହିଲେ ସେ କନ୍ଦର୍ପର ଠାଣ ଛାଡ଼ିବ ସିନା । ମୁଁ ନେ ଲେଖାକୁ (ତୋତେଇ ଲି) ପଞ୍ଚାକ୍ଷର ମନ୍ତ୍ର କରି ଭେଟ ହେବା ପାଇଁ ସମସ୍ତ ଅମଙ୍ଗଳ ଖଣ୍ଡନ କରିବ ।

ମାଗି ହେମାଙ୍ଗୀ ଅଧରୁ ସୁଧା ଦେଇ ତା ବନ୍ଧୁ କର ଦେବ ତୋତେ ।
ବୋଧୁଁ ଜୀବକୁ ନ କରଇ ପ୍ରତେ ।
ଯିବ ଯିବ ଜୀବନ୍ତେଶ-ଭବନକୁ ଭାବନା କରୁଛୁ ଏତେ ରେ । ସୁନ୍ଦରି !
ଅନୁତ୍ତମ ତମ ସୁଧା ପିଉଛୁ । ରାମେ ସୁଗ୍ରୀବଙ୍କ ମିତ୍ର ହୋଇଛୁ ।
କି ଅଦୃଷ୍ଟରେ ଏ ବିବେକ ଉତ୍ପନ୍ନ କଷ୍ଟ କଷ୍ଟରେ ରହୁଛୁ ରେ । ୧୪ ।
ଗଲେ କୋମଳାଙ୍ଗୀ ଲାଗି ଜୀବ ଯିବା କେବେ ନୋହିବ କି ସୁଗତି ।
ହେଲେ ପବନ ନେତ୍ର ବାଣୀ ଶ୍ରୁତି ।
ଶୋଭା ଦେଖି କହୁ ଶୁଣି ବ୍ୟର୍ଥ ଦେହ କ୍ଷିତିଗୁଣେ ହେଲେ ଖ୍ୟାତ ରେ । ସୁନ୍ଦରି !
ତୋର ଲୀଳା-ସରଣିରେ ମିଶିବ । ଯେବେ ତେବେ ତାର ଭାଗ୍ୟ ଦିଶିବ ।
ଶଶୀଆଶାୟୀ ଶଶର ବପଶ୍ଚ ହୋଇତ ଭୋଗ ପାଇବ ରେ । ୧୫ ।
ଜନମାନ୍ତର କଥା ବୋଲି ମାତର କାତର ହୋଇ ନିରନ୍ତର ।
ତାହା ଗୁଢ଼ କରେ ଆନ ବିସ୍ତର ।
ଚତୁର୍ବର୍ଗସ୍ଥଳୀ ସ୍ୱଧର୍ମରେ ଫଳ ଅର୍ଥକୁଶଳା ତୋ ଗିରରେ । ସୁନ୍ଦରି !
କାମ କଟାକ୍ଷରେ ହୋଇ ଉତ୍ପତ୍ତି । ମୋକ୍ଷ ନିକଟରେ ଦକ୍ଷ ହୋଇଛନ୍ତି ।
ଏସନ ପ୍ରେମ-କଳ୍ପଲତା ପ୍ରସନ୍ନ ନୋହିବ କିପାଁ ଫଳିତ ରେ । ୧୬ ।

---

୧୪—ହେମାଙ୍ଗୀ ତୋ ଅଧରରୁ ଅମୃତ ମାଗି ତୋତେ ଦେଇ ସେ ହେମାଙ୍ଗୀର ବନ୍ଧୁ କରିଦେବ । ଏପରି ବୋଧ ଦେଲେ ମଧ୍ୟ ସେ ମୋ ଜୀବ ବିଶ୍ୱାସ କରୁ ନାହିଁ । ଯମପୁରକୁ ଯିବ ଯିବ ବୋଲି ଭେଳେ ଭାବନା କରୁଅଛି । କି ଶୁଭ ଦୃଷ୍ଟ ଥିବାରୁ ସେ ଜୀବର ଏ ପ୍ରକାରେ ଜାତ ହେବାରୁ ଅତି କଷ୍ଟରେ ଅଛି । ସେ ଏହା ବିବେକ କରୁଛି, ତେଣୁ, ଅଧମ ରାହୁ ଅମୃତ ପିଇଅଛି ଏ ମାଙ୍କଡ଼ ସୁଗ୍ରୀବ ରାମଚନ୍ଦ୍ରଙ୍କର ମିତ୍ର ହୋଇଅଛି ଅତଏବ ମୋତେ ଅବା କେମିତ ଅଧରାମୃତ ମିଳିବ । ୧ଜୀବନ୍ତେଶ ଭବନ, ଯମପୁର । ଅନୁତ୍ତମ, ଅଧମ ।

୧୫—ହେ ସୁନ୍ଦରୀ ? କୋମଳାଙ୍ଗୀ ତୋହଲାଗି ଜୀବ ଗଲେ ଭଲ ଗତି ହେବ ନାହିଁ କି ? ଅବଶ୍ୟ ହେବ । ଅକ୍ଷି ତୋ ଶୋଭା ଦେଖି, କଥା ତୋତେ କହୁ, କାନ ମୋ କଥା ଶୁଣି ପବନ ହୋଇ ଅଛନ୍ତି । କିନ୍ତୁ ତୋ ଅଙ୍ଗ ସଙ୍ଗ ଅଭାବରୁ ବ୍ୟର୍ଥ । ସେ ଦେହର ଯେବେ ପୃଥ୍ୱୀ ଗୁଣରେ ଖ୍ୟାତ ଅଛି । ଅର୍ଥାତ୍ ପୃଥ୍ୱୀ ଅଂଶରେ ଗଢ଼ା ହୋଇ ଅଛି । ତେବେ ମୃତ୍ୟୁପରେ ତୋ କ୍ରୀଡ଼ା ମାର୍ଗରେ ଯେବେ ମିଶିବ, ତେବେ ତାର ଭାଗ୍ୟ ଥିବାର ପ୍ରକାଶ ହେବ । ବସୁଧାକୁ ଜଳ ଅଶାରେ ଯାଇ ଶଶ ଚନ୍ଦ୍ରରେ ମିଶି ଏ ମୃତ୍ୟୁ ପାଇଲା ପରେ ମୋ ଦେହ ଅବଶ୍ୟ ଭୋଗ ପାଇବ । ୧ଶ୍ରୁତି କାନ । ୨ସରଣି, ମାର୍ଗ ।

୧୬—ଏ ପୂର୍ବ କଥା ଅନ୍ୟଜନ୍ମରେ ଘଟିବ, ଅର୍ଥାତ୍ ମୃତ୍ୟୁପରେ ହେବବୋଲି କାତର ହେଉଅଛି । ଏବେ ଯେଉଁ କଥା ତାହା ଅନାବଶ୍ୟକ କରୁଅଛି । ଧର୍ମ ଅର୍ଥ କାମ ମୋକ୍ଷ ଏ ଚତୁର୍ବର୍ଗର ତୁ ସ୍ଥାନ ଅଛୁ । ଦେଖ, ତୁ ସ୍ୱଧର୍ମରେ ଫଳ ଅଛୁ । ଅତଏବ ଧର୍ମ ରହିଲା । ତୋ ବଚନ ଅର୍ଥ ଚାତୁରୀଯୁକ୍ତ, ଅତଏବ ଅର୍ଥ ହେଲା । ତୋ କଟାକ୍ଷରେ କାମର ଉତ୍ପତ୍ତି ଅତଏବ କାମ ରହିଲା । ବସ୍ତ୍ର ଗ୍ରନ୍ଥିରେ

ନରେ ବେଦନା ନିବେଦନା ମରୁତେ ତା ସୁତ ଯେଣୁ ରାମଦୂତ ।
ହୋଇ ଆଣି ଦେଲା ସୀତା ଉଦନ୍ତ ।
ଶୀତଳ ହେଲେ ବିଷମ ବିଷସଙ୍ଗଗୁଣକୁ ନଲ୍ଲ ସେ ଜାତ ରେ । ସୁନ୍ଦରି !
ପରେ କି ଅଭିମାନ ମନ ସହିଁ । ସୁଖ ଭୁଞ୍ଜୁଛି ମୋତେ ନ ଶରୋଇଁ ।
ନିଚେଷ୍ଟ କରି ୧ପ୍ରଚେଷ୍ଟ ପଣ ଯାଇ ସୁଲୋଚନା ପାଶେ ରହିଁ ରେ । ୧୭ ।
ଅନେକରୂପେ ଆଶା-ତରୁ ଜନମ ହେଲା ୧ଆଶ୍ରମ ହୃଦପୁରେ ।
କେହି ସଫଳ ହେବ ଏ ବିଶ୍ୱରେ ।
ଦଇବ ବଳ ବିରହାନଳ ମେଳ ନ ପୁଣି ବିନାଶ କରେ ରେ । ସୁନ୍ଦରି ।
ଯେବେ ନିକଟରେ ହେବ ୨ମିଥୁନ । ୩ପୟୋଧର-ଜାତ-ନୀର ପତନ ।
ଉର୍ଦ୍ଧ୍ୱରୁ ହୋଇବ ସେହି ପଲ୍ଲବିବ ଏହି ଲିଭି ଯିବ ଘେନ ରେ । ୧୮ ।
ଅଭିମାନ କାହିଁ ଯା ସମାନ ହୋଇ ନାହିଁ ତା ଗୃହକୁ ବଚନ ।
ତାକୁ କି ବୋଲି କରନ୍ତି ବନ୍ଦନ ।
୧ସ୍ତବକସ୍ତନାର ୨ଯାବକ ଲେଖିବା ସେବକ ହେବା ମୋ ମନ ରେ । ସୁନ୍ଦରି ।
ଏତେକେ ମୁଁ ସର୍ବସୁଖ ପାଇବି । ଆନ ଶବ୍ଦେ ଅବା ଯୋଗ୍ୟ ହୋଇବି ।
ଅଧର ୩ଉରକୁ ପଲଙ୍କ, ୪ଉରୁକୁ ଉଦ୍ଧାସନ କରି ଦେବି ରେ । ୧୯ ।

---

ମୋକ୍ଷ (ପିଟିବା) ଅଛି । ଅତଏବ ମୋକ୍ଷ ରହିଲା । ଅତଏବ ତୁ ଏପରି ପ୍ରେମ କଳ୍ପଲତା କାହିଁକି ଶୀଘ୍ର ପ୍ରସନ୍ନ ନ ହେଉ ।

୧୭ — ଯେଉଁହେତୁ ସେ ପବନର ପୁତ୍ର ହନୁମାନ ରାମଚନ୍ଦ୍ରଙ୍କ ଦୂତ ହୋଇ ସୀତାଙ୍କ ବାର୍ତ୍ତା ଆଣିଦେଲା । ସେ ହେତୁରୁ ସେ ପବନଠାରେ ନିଜ ଦୁଃଖ ନିବେଦନ କରୁଅଛି । ସେ ପବନ ଶୀତଳ ହେଲେ ମଧ୍ୟ ବିଷମ ଅସହ୍ୟ ହେଲା । ସେ ପର ଆହାର ହେତୁ ବିଷସର୍ପ ଗୁଣକୁ ଜାତବସ୍ତୁ । ପବନଠାରେ ଯେବେ, ତାଠାରେ ଅଭିମାନ କଣ କରିବ । ସେଠାରେ ମୋ ନିଜ ମନ ମୋତେ ସଚେତ ନ କରି ନିଶ୍ଚେଷ୍ଟ କରିବାରେ ପ୍ରବଳ ଚେଷ୍ଟାରେ ଯାଇ ସୁଲୋଚନା ତୋ ପାଖେ ବାସରେ ରହୁଅଛି । ୧ ପ୍ରଚେଷ୍ଟ, ପ୍ରବଳ ।

୧୮ — ହୃଦପୁର ରୂପ ବର୍ଗୀଚାରେ ଆଶା ରୂପକ ବୃକ୍ଷ ଅନେକ ପ୍ରକାରେ ଜାତ ହୋଇଅଛି । ସେ କପରି ସଫଳ ହେବ, ଏହା ବିଚାର କରୁଅଛି । ଦୈବବଳରୁ ବିରହାନଳ ମିଳି ପୁଣି ତାକୁ ନାଶ କରିଲେ ଭଲ । ଯେବେ ନିକଟରେ ମିଳନ ହେବ । ତାହା ହେଲେ ବିପରୀତ ରତିରେ ସ୍ତନଜାତ ଜଳ ଉପରୁ ପଡ଼ିବ, ସେ ଆଶାବୃକ୍ଷ ପଲ୍ଲବିବ । ଏ ବିରହାଗ୍ନି ଲିଭିଯିବ । ଯେପରି ମିଥୁନମାସ ହେଲେ ମେଘଜାତ ଜଳ ଉପରୁ ପଡ଼ି ଗଛ ଫଳିଲେ ଓ ବନାଗ୍ନି ଲିଭିଯାଏ । ୧ ଆଶ୍ରମ, ବଗିଚା । ୨ ମିଥୁନ, ସ୍ତ୍ରୀ ପୁରୁଷ ଯୁଗଳ ଓ ଆଷାଢ଼ମାସ । ୩ ପୟୋଧର, ସ୍ତନ ଓ ମେଘ ।

୧୯ — କିନ୍ତୁ ଏହି ଅଭିମାନ ବୃଥା । ଯାହା ସମାନ ହୋଇ କାହିଁ ଅଛି କି । ଅତଏବ ତାକୁ ଗୃହକୁ ଘେନିବାକୁ କିଛି ବଚନ ନାହିଁ । ତେବେ ତାକୁ କଣ କହି ସ୍ତୁତି କରିବ । ସେ ସ୍ତବକସ୍ତନାର (ତୋର) ପାଦରେ ଅଳତା ଦେବା ସେବକ ହେବା ମୋର ମନ ହେଉଅଛି । ଏହା ହେଲେ ମୁଁ ସର୍ବସୁଖ

୧ପ୍ରମଦାବତଂସ କଟାକ୍ଷ ପତନ ସୃଷ୍ଟି ଆଜ୍ଞା ଅବଧାରିବା ।
ଗ୍ରନ୍ଥ ବିବସତରେ ଅନୁସରିବ ।
ଯାଣ ନ କଲେ ସ୍ମରପାଶବନ୍ଧନୁ ଜାଣିଥାଅ ନ ତରିବ ରେ । ସୁନ୍ଦରି !
୨ହଳାହଳ ଜ୍ୱାଳାବରଣେ ୩ଈଶାନ । ଇନ୍ଦୁକଳା କଲେ ଶିରେ ମଣ୍ଡନ ।
ମୋ ତାପ ନାଶକୁ ରମଣୀମଣି ତୁ ସେପରି କରିବ ଯେନ ରେ । ୨୦ ॥
ଦାତାଗଣ ଗଣନାରେ ସାର ତୁହି ମୁହିଁ ୧ତନୁ-ଦାନ ୨ମାର୍ଗଣ ।
ଦେଖ ବଳ ତୋ ଉଦରେ ଶରଣ ।
ଏଣିକି ଏଣିଇକ୍ଷଣୀର ମହତ୍ତ୍ୱ ମାଗିବା ଯାଏ ମୋ ଜାଣ ରେ । ସୁନ୍ଦରି !
ଭୃତ୍ୟ ଜଣାଇବା କଥା ଉଚିତ । ଯେଣୁ ପ୍ରଭୁ ତାର ସବୁ ଆୟତ୍ତ ।
ଯେନ ୩ସୁଭଗତ ମୋର ସୁଭଗତ ୪ଭଗତ ତୁହି ସତ ରେ । ୨୧ ॥
ବିକାଶକାଶହାସି ହାସ ରହସ ଅବକାଶ ବେଳେ ଚାହାଁ ॥
ଧାତା କୃପାରୁ କରେ ତୋ ପକାଇ ।
କସ ବକ୍ଷରେ ପଡିବା ଉପଯୁରେ ମାନସ ପ୍ରବୃତ୍ତ ହେଉରେ । ସୁନ୍ଦରି !
ଦନ୍ତାଳଧ୍ୱ ଗୁରୁସ୍ତନା ରମ୍ଭୋରୁ । ସବୁ ଜଣା ଯିବ ଏଥି ଉତ୍ତରୁ ।
ଅତନୁ ନାହିଁ ପତଙ୍ଗ ଦ୍ରାୟେ ହୋଇ ଅଗ୍ନିକି ଡେଇଁ ପ୍ରୀତରୁ ରେ । ୨୨ ।

---

ପାରିବ । ଅନ୍ୟଥା ଯେ ପଞ୍ଚ କରିବାକୁ ଯୋଗ୍ୟ ହେବ ଅବା । ପୁଣି ମୋ ଚରଣ ପଲ୍ଲବ ଧରିବେବା ଓ ଶରଣ ଉପାଗତ କରିବେବ । ୧-ସ୍ତବକ ଫୁଲପେଣ୍ଡା । ୨ଯାବକ, ଅଳତା । ୩ ଭର, ଗଣ । ୪ ଚିହ୍ନ, ଚସ ।

୨୦—ସ୍ତ୍ରୀ ଶ୍ରେଷ୍ଠ ତୋର କଟାକ୍ଷ ପଡିବା ସୃଷ୍ଟି ଜଣ ନ୍ୟାୟ ହେଉଅଛି ବୋଲି ଠିକ କରିବ । ତୋର ଧନର ଅନୁମତି ଅବ । ତୁ ଜାଣିଥା, ପାଶକୁ ନକଲେ, କାମପାଶ ବନ୍ଧନରୁ ତରିପାରିବ ନାହିଁ ଶିବ ବିଷଜ୍ୱାଳା ନିବାରଣ କରିବାକୁ ଚନ୍ଦ୍ରକଳାକୁ ମସ୍ତକରେ ଭୂଷଣ କଲେ । ହେ ରମଣୀ ମଣି ! ତୁ ମୋ ବିରହ ତାପ ନାଶ କରିବାକୁ ଶିବଙ୍କ ଚନ୍ଦ୍ରକଳାପରି, ମୁଁ ତୋତେ ସେହିପରି ଶିରୋଧାର୍ଯ୍ୟ କରିବ । ୧-ପ୍ରମଦାଗତଂସ, ସ୍ତ୍ରୀ ଶ୍ରେଷ୍ଠ । ୨ହଳାହଳ, ବିଷବିଶେଷ । ୩ଈଶାନ, ଶିବ ।

୨୧—ହେ ସୁନ୍ଦରୀ ! ତୁ ଦାତାମାନଙ୍କ ଗଣନାରେ ଶ୍ରେଷ୍ଠ ଅଟୁ । ମୁଁ ଅଙ୍ଗଦାନ ଗ୍ରହଣରେ ଯାଚକ ଅଟେ । ଶେଷରେ କହୁଅଛି । ମୁଁ ଦେହ ଦାନ ଗ୍ରହଣରେ ମାଗୁଥିଏ ଅଟେ । ଦେଖ ଦାନପଣିଆରେ ତୋଠାରେ ଦାନ ମହାଦାନ ବଳ ତୋ ଉଦରରେ ପ୍ରବେଶକ୍ରମେ ଶରଣ ନେଇଛି । ଏଣିକି ମୋ ମାଗିବାଯାଏ ମୃଗନୟନୀର ମହତ୍ତ୍ୱ ଅଛି । ସେବକର ମାଗିବା କଥା ଉଚିତ ଅଟେ । କାରଣ ଯେ ପ୍ରଭୁ ତାର ସବୁ ଅଧୀନ ଅଟେ ହେ ଜନନେ ? ତୁ ମୋର ଉଦ୍ଧାର ଭକ୍ତିକି ଗ୍ରହଣ କର । ନିଶ୍ଚୟ ତୁ ମୋର ଗୁରୁ ଦଶା ଅଟୁ । ୧ ତନୁଦାନ, ଅଙ୍ଗଦାନ ଓ ଦେହଦାନ ୨ ମାର୍ଗଣ, ଯାଚକ ମାଗୁଣିଆ । ୩ସୁଭଗତ, ଉତ୍ତମ ଭକ୍ତି ଓ ଶୁଭଦଶା । ୪ ଭଗବତ; ଗଜଗମନା ।

୨୨—ହେ ବିକଶିତ କାଶହାସିନୀ ? ବିଧାତା କୃପାରୁ ହସ ରହସ୍ୟ କୌତୁକ ସମୟରେ ମୋର ଏ ହାତ ତୋ ହାତରେ ପଡୁ । ତୋ ମନ କି ବକ୍ଷରେ ସେ ହାତ ପଡିବା ସମ୍ଭାବରେ ବଢୁ ।

ପଢ଼ି ପତ୍ରିକା ନରେଶଙ୍କର ପୁତ୍ରିକା ନେତ୍ରେ ଆନନ୍ଦ-ଅଶ୍ରୁ ଧାର ।
ହୃଦେ ପରମ-ସ୍ନେହ ଥିଲା ପୂର୍ଣ୍ଣ ।
୧ସଲିଲ ହୋଇ ୨ସଲିଳେ ଉଚ୍ଛୁଳିଲା କାଳେ ଘୋଳିଲା ପରି ସେ । ସୁନ୍ଦରୀ !
ଗଦଗଦ ହୋଇ ପଦ ନ ଫୁଟେ । ୩ଘନରସ ଉଦୟ ସମୟରେ ।
୪କଳକଣ୍ଠ କଣ୍ଠ ବରୋଧି କି କାନ୍ତ ବସନ୍ତ ହେବା ସୁମନରେ ସେ ॥
ଭବସ ବଧୂ ୧ସାଧୁ ଯଥା କରଣେ ହୋଏ ୨ଜଣାମୁଖ ପ୍ରବେଶେ ॥
ତଥା ପାରିଲ ଉନ୍ମୁଖ ଅବେଶେ ।
ଗତ ହୋଇଥିଲା ହାସହିଁ ଅଗତ ଜଗତମୋହନୀ ୩ଆସ୍ୟେ ସେ । ସୁନ୍ଦରୀ ।
ରାମ ମଧୁରମୂର୍ତ୍ତି ଧ୍ୟାୟି ଶତ । ଉପଇନ୍ଦ୍ର ଭଞ୍ଜ ଅତୃପତ ।
ରସିକ କୋବିଦ ଶ୍ରୁତି-ମୁଖ ସ୍ୱାଦ ମଧୁର ଛାନ୍ଦ ଏ କୃତ ହେ । ସୁଜନେ ।୨୪।

——(✲)——

## ତ୍ରୟୋବିଂଶ ଛାନ୍ଦ ।

ରାଗ କଲ୍ୟାଣ ଅହାରୀ ।

କାଦମ୍ବିନୀ ୧କାଦମ୍ବିନୀ-ଜିତ-କେଶୀ ପୁରତେ ଏକାଳେ ପ୍ରବେଶ ।
ଦେଖିଲା ୨ଶତପତ୍ର-ପତ୍ର-ନୟନା ପ୍ରେମପତ୍ର ଘେନ ଆବେଶ ।

---

ହେ ଦୟାନିଧି ସୁବୁଦ୍ଧିମାନ ଭକ୍ତମାନେ ଏହିପରି ଶ୍ରୀ ଜଣାଉଅଛି । ଉପେନ୍ଦ୍ରଭଞ୍ଜ । ମୁଁ ପ୍ରୀତ ହେବାର ପତଙ୍ଗପରି ନର୍ତ୍ତନ କରିଁ ପଢ଼ନ୍ତି ।

୨୩—ସେ ନରେଶଙ୍କ ପୁତ୍ରୀ ସୁନ୍ଦରୀ ସେ ପତ୍ରିକା ପଢ଼ି ଅକ୍ଷିରେ ଆନନ୍ଦାଶ୍ରୁଧାରଣ କଲେ । ପରମସ୍ନେହ ତା ହୃଦୟରେ ପୂରିଥିଲା । ସେ ସମୟରେ ସେ ସ୍ନେହଜଳରୂପରେ ଘନ ସହିତ ଘୋଳାହୋଇପଡ଼ି ଉଚ୍ଛୁଳି ଉଠିଲା । ଗଦ୍‌ଗଦ ହେବାରୁ କହିବାକୁ ପଦ ସ୍ଫୁରିଲା ନାହିଁ । ଯେ ହେତୁ ସେ ସମୟରେ ନବଘନରସ ଉଦୟ ହୋଇଥିଲା । ମେଘ କାଳରେ ଜଳ ବୃଷ୍ଟି ହେବା ସମୟରେ କୋକିଳର କଣ୍ଠରୁଦ୍ଧ ହୋଇପାରେ ହେଲା କି ? ଅତଏବ କାନ୍ତରୂପକ ବସନ୍ତ ହେବାକୁ ସ୍ମରଣ କଲେ । ୧ ସଲିଲ, ଜଳ । ୨ ସଲିଳେ, ଲୀଳା ସହିତରେ । ୩ ଘନରସ, ନବଘନରସ ଓ ମେଘଜଳ । ୪ କଳକଣ୍ଠ, କୋକିଳ ।

୨୪—ଜନଇନ୍ଦ୍ର ସନ୍ଧ୍ୟା ପ୍ରବେଶରେ ଯେପରି କିରଣୋଦ୍ଧାର ମୁଦ୍ରିତ ହୁଏ । ସେପରି ପ୍ରୀତିରେ ଉନ୍ମୁଖ ହେବାରେ ସେ ଜଗନ୍ମୋହିନୀର ମୁଖରେ ହାସ୍ୟ ଅଛି । ସେ ହାସ୍ୟ କିଅଛି ଲୁଚିଯାଇଥିଲା । ଉପେନ୍ଦ୍ରଭଞ୍ଜ ରାମଚନ୍ଦ୍ରଙ୍କର ମଧୁର ମୂର୍ତ୍ତି ଚିତ୍ତରେ ଧ୍ୟାନକରି ଅତୃପ୍ତ ହୋଇ ରସିକ ପଣ୍ଡିତମାନଙ୍କ କାନ ଓ ମୁଖର ସ୍ୱାଦ ମଧୁର ଏ ଛାନ୍ଦ କରିଅଛନ୍ତି । ୧ ସାଧୁ, ସୁନ୍ଦର । ୨ ଜଣାମୁଖ, ସନ୍ଧ୍ୟା । ୩ ଆସ୍ୟ, ମୁଖ ।



ତ୍ରୟୋବିଂଶ ଛାନ୍ଦ ।

୧—ଏକାଳେ କାଦମ୍ବିନୀ ସଖୀ ମେଘମାଳାଜିତ କେଶିନୀ ଜେମା ଆଗରେ ପ୍ରବେଶ ହେଲା, ପଦ୍ମନୟନା ସେ ଜେମା ପ୍ରେମପତ୍ରିକା ଘେନି ଚହିଁରେ ( ଆବେଶ ) ମନୋଦେଇଅଛି । ଚହିଁ ବେ ଯିବା ଅଭିବ ।

ସେ ³ଗତ । ଅଗତ ଧୂଳିକି କାକତ ।
ମଞ୍ଜିଷ୍ଠାରସ ସହିତ ⁴ସ୍ଥାଳୀ ଅଣି ବାଳୀ ଅଗରେ କଲା ସ୍ଥିତ । ୧ ।
କହିଲା ¹ଦକ୍ଷିଣପବନ ବହିଲା ²ହିମରଜ କଣ କ୍ଷେପଣ ।
ଏ ଭିତ୍ତିରୁ ³ଘନରସଯୁକ୍ତ ହୋଇଁ ନ ବହିବ କି ⁴ସମୀରଣ ।
ଶ୍ରବଣେ । ହୃଦୟ ପଦ୍ମ ବିକଶିଲା ।
ପଦ୍ମିନୀ ⁵ଯାମିନୀରୂପ ⁶ତ୍ରପା ତୁଟି କୃପା-ପ୍ରଭାତ ପ୍ରକାଶିଲା । ୨ ।
ଲେଖିଲା ଯାହା ପଦେ ପଦେ ସେ ଇନ୍ଦ୍ରପଦେ ସ୍ଥାପିବ କୁମାରଙ୍କୁ ।
ସଜନୀ ବେନି ¹ବର୍ଣ୍ଣ ଯେନି ବୋଇଲେ ମଧ୍ୟମଣି ହେବ ହାରକୁ ।
ଶୁଣି ତା । ଶଚୀକଳା ପାଶ ହୋଇଲା ।
ପାଇ ନାହିଁ କି ଗୋ ²ତରଳଶ୍ରୀବକୁ ତାହିଁ ସିନା ହେବ ବୋଇଲା ।୩।
ହୃପାପ୍ତ-ଉପାଧିକା ଉପାଧ୍ୟାୟୀ ସେ ମୁଦ ମୁଦାଙ୍କ ହସ୍ତେ ଧରେ ।
¹ଗୂଢବିଦ୍ୟା-ବିଦ୍ୟା ଅବଧୂତୀ ମିଳି ଧଇଲେ ତାର କର କରେ ।
ସେଠାରୁ । କଥା ପରସ୍ପରେ ଗମନେ ।
ପୁଷ୍ପପୁର ରାଜକୁମାର ବିହାର ଉପବନେ ସ୍ଥିତ ²ଜବନେ । ୪ ।

---

କର ଧମନ କାଗଜମଞ୍ଜିଷ୍ଠା ରସ ସହିତ ପାତ୍ର ଅଣି ସେ ବାଳୀ କେମା ଅଗରେ ରଖିଲା । ¹କାଦମ୍ବିନୀ, ମେଘମାଳା । ²ଶତପତ୍ର, ପଦ୍ମ । ³ଗତ, ଅଗତ, ପିବା, ଅପିବା । ⁴ସ୍ଥାଳୀ, ପାତ୍ର ।

୨—ସେ ସଖୀ କହିଲା, ଦକ୍ଷିଣ ବାୟୁ କର୍ପୂର-ଧୂଳୀ କ୍ଷେପଣକରି ବହିଲା ଅର୍ଥାତ୍ ଗ୍ରୀଷ୍ମରେ ଉତ୍ତପ୍ତବାୟୁ ଶୀତଳ ହୋଇ ବହିଲା । ଏଥିଉତ୍ତାରୁ ବର୍ଷାକାଳରେ ମେଘ ଜଳଯୁକ୍ତ ହୋଇ ପବନ ବହିବ । ଧ୍ୱନ୍ୟର୍ଥ । ତୋତେ ବରହ-ତାପତପ୍ତ କାନ୍ତ ଅନୁକୂଳ ହୋଇ କର୍ପୂର ଧୂଳତୁଲ୍ୟ ଶାନ୍ତିପ୍ରଦ ପତ୍ରିକା ଦେଇଅଛି । ଏଥିଉତ୍ତାରୁ ନବଉତ୍ସବଯୁକ୍ତ ପତ୍ରିକା ପବନ ପରି ନଯିବକି ? ସେ ପଦ୍ମିନୀ କେମାର ରାତ୍ରିପରି ଲଜ୍ଜା ତୁଟିଗଲା । କୃପାରୂପକ ପ୍ରଭାତ ପ୍ରକାଶ ହେଲା ହୃଦୟରୂପକ ପଦ୍ମ ବିକାଶିତ ହେଲା । ¹ଦକ୍ଷିଣ, ଦକ୍ଷିଣ ଦକ୍ଷିଣ, ଅନୁକୂଳ । ²ହିମରଜ, କର୍ପୂରଧୂଳି । ³ଘନରସ, ମେଘଜଳ ଓ ନବଉତ୍ସବ । ⁴ସମୀରଣ, ପବନ । ⁵ଯାମିନୀ, ରାତ୍ରି । ⁶ତ୍ରପା, ଲଜ୍ଜା ।

୩—ସେ କେମା ଯାହା ଲେଖିଲା । ତାହା ପଦେ ପଦେକ ରାଜକୁମାରକୁ ଇନ୍ଦ୍ରପଦରେ ରଖିବ । ଦୁଇସଖୀ ସେ ପତ୍ର ଲିଖିତ ଅକ୍ଷରମାନଙ୍କୁ ପଢ଼ି କହିଲେ, ଏ ପତ୍ର ରାଜପୁତ୍ରର ହାରକୁ ମଧ୍ୟମଣି ହେବ । ତାହା ଶୁଣି ଶଚୀକଳା ସଖୀ ପାଶ ହୋଇ କହିଲା. ସେ କୁମାର ଚଞ୍ଚଳ ଗ୍ରୀବକୁ ପାଇନାହିଁ କି ? ଅର୍ଥାତ୍ ପାଇଅଛି । ଏ ପତ୍ର ତାହ ତରଳ ( ମଧ୍ୟମଣି ) ହେବ ସିନା । କୁମାର ଏ ପତ୍ରକୁ କଣ୍ଠରେ ଲମ୍ବାଇବ । ¹ବର୍ଣ୍ଣ, ଅକ୍ଷର । ²ତରଳ, ଚଞ୍ଚଳ ଓ ମଧ୍ୟମଣି ।

୪—ହୃପାପ୍ତ ପଣ୍ଡିତା ଉପାଧ୍ୟାୟୀ ସେ ପତ୍ର ମୁଦାଇ ହସ୍ତରେ ଧରିଲା । ଅନ୍ତର୍ଦ୍ଧାନଗମନ ଔଷଧଜ୍ଞା ଅବଧୂତୀ ମିଳି ସେ ଉପାଧ୍ୟାୟୀର ହାତ ଧରିଲେ । ସେଠାରୁ ପରସ୍ପର କଥାବାର୍ତ୍ତା ହୋଇ ଗମନ କଲେ । ପୁଷ୍ପପୁର ରାଜପୁତ୍ରଙ୍କର ବିହାର ବଗିଚାରେ ଶୀଘ୍ର ପହଞ୍ଚିଲେ । ¹ଗୂଢବିଦ୍ୟାବତୀ, ଶୀଘ୍ର ଚମତ୍କାର ଔଷଧାଦିଜ୍ଞ । ²ଜବନେ, ଶୀଘ୍ରେ ।

ଦେଖିଲେ ୧ଅଶ୍ରବ ଅତି ଅଭିଳାଷ ଯେ ଦେଖିବ ଏହି ପ୍ରତୀତ ।
ମନରୁ ଉତ୍ପତ୍ତି ରତି କାମ ମୂର୍ତ୍ତିମନ୍ତେ କି ବଧିର ହେଉଛନ୍ତି ।
କୋକିଳ । ଗାୟକ ଭଳେ ଗାଏ ଗୀତ ।
ଝିଙ୍କାରି ଝଙ୍କାର ୨ଖଞ୍ଜରୀଟ ପ୍ରାନ୍ତହତ ପୁଙ୍ଖାଧ୍ୟବ ବଜତ । ୫ ।

ଶୁକ ଭରଦ୍ୱାଜ ବେଦକୁଳ ଦ୍ୱିଜ ୧ଶ୍ରୁତି-ମଞ୍ଜୁ-ବାକ୍ୟ ଉଚ୍ଚାର ।
ମଲ୍ଲି କଢ଼ୀ ଶଙ୍ଖ ଅସଂଖ୍ୟ ଅନେକ ୨କନକ ୩ମଞ୍ଜୁରୀ ମାଧୁରୀ ।
୪ମଧୁପ । ଚୁମ୍ବନେ ଧ୍ୱନି କରେ ଜାତ ।
ମରୁତ ୫ଅଧିକାରୀ ଯେନ ୬ସୁବାସ ୭ଭଙ୍ଗଣୀଠାରୁ ଗତାଗତ ।୬।

୧ସୁକୁଞ୍ଜକୁଟିର ସ୍ଥମ୍ଭାମଣ୍ଡପର ତଳେ ବେଦିକାର ନିର୍ମାଣ ।
୩କୁରୁବକ ପାବକ ଦୀପକ ପଲ୍ଲବ ପା. କୁଞ୍ଜାଗଣ ।
କେତକୀ । ମାଲତୀ ଦେଇଥିବା ମୁକୁଟ ।
୪କ୍ରମୁକ ନାରିକେଳ ପରିପୂରିତ ୫ଶାଳକ ସୁରଭି ପ୍ରକାଶ । ୭ ।
ହାରିଦ୍ର ସିନ୍ଦୂରୀ ପକ୍ୱଫଳ ଧରି ସନ୍ତକାର ଶୋଭା ବିଶେଷ ।
୧ଗବାକ୍ଷ ଟଙ୍କ ସମ୍ପୁଟଚୟ ମଧ୍ୟେ ସ୍ୱର୍ଣ୍ଣ ମାଣିକ୍ୟ ଜ୍ୟୋତି ଦିଶେ ।

---

୫— ସେ ଦେଖିଲେ, ସେ ବଧିର ଅତି ବ୍ୟଗ୍ର ହୋଇଅଛି । ତାକୁ ଯେ ଦେଖିବ, ତାର ଏହି ବିଶ୍ୱାସ ହେବ । ମନରୁ ଉତ୍ପନ୍ନ ହୋଇଥିବା ରତି ଓ କାମ ଦେହ ଧାରଣକରି ବଧିର ହେଉଅଛନ୍ତି କି । କୋକିଳରୂପ ଗାୟକ ମଧୁରଗାନ କରୁଅଛି । ଝିଙ୍କାରି ଶବ୍ଦ ଖଞ୍ଜରୀଟ ପ୍ରାପ୍ତ (ଟ) ହତ ଅର୍ଥାତ୍ ଖଞ୍ଜଣୀ ବାଦ୍ୟରେ ବଦଳ ହୋଇଅଛି । ୧ ଅଶ୍ରବ, ବଧିର । ୨ ଖଞ୍ଜରୀଟ, ଖଞ୍ଜଣୀ ।

୬— ଶୁକ ଓ ଭରଦ୍ୱାଜ ପକ୍ଷୀ ବେଦଜ୍ଞ ଦ୍ୱିଜପକ୍ଷର ବ୍ରାହ୍ମଣ ହୋଇ କର୍ଣ୍ଣମଧୁର ବାକ୍ୟକୁ ବେଦବାକ୍ୟ ବେଦବାକ୍ୟପରି ଉଚ୍ଚାରଣ କରୁଅଛନ୍ତି । ଅନେକ ମଲ୍ଲୀବଢ଼ୀ ଶଙ୍ଖ ଓ ଅନେକ ଚମ୍ପକଫୁଲ ମଞ୍ଜରୀ ମାଧୁରୀ ଧରନ୍ତି । ଏ ଦୁହିଁଙ୍କ ମଧ୍ୟରେ ବାଜାବାଜାପରି ଭ୍ରମର ଚୁମ୍ବନରେ ଶବ୍ଦ କରୁଅଛନ୍ତି । ବନକୋଣର କର୍ତ୍ତା ଭଙ୍ଗଣୀଚନ୍ଦ୍ର ଠାରୁ ଉତ୍ତମ ବସ୍ତୁ ଅଣି ଗମନା ଗମନାକଲାପରି ପବନ ଭଙ୍ଗଣୀ ଫୁଲରୁ ଉତ୍ତମ ସୁବାସ ବହୁଅଛି । ୧ ଶ୍ରୁତି, ବେଦ ଓ କାନ । ୨ କନକ ଚମ୍ପକଫୁଲ । ୩ ମଞ୍ଜୁରୀ, ମଞ୍ଜରୀ । ୪ ମଧୁପ, ମହୁଅ ଓ ଭ୍ରମର । ୫ ଅଧିକାରୀ, କର୍ତ୍ତା । ୬ ସୁବାସ, ଉତ୍ତମଲୁଗା ଓ ସୁଗନ୍ଧ । ୭ ଭଙ୍ଗଣୀ, ଭଙ୍ଗଣୀଫୁଲ ଓ ଚନ୍ଦ୍ର ।

୭— ଉତ୍ତମ ଲତାଗୃହ ସବୁ ଛାମୁଣ୍ଡିଆ, ତା ତଳେ ଗହମୂଳବେଦୀ ଚଟାଣ ବେଦୀ ତିଆର ହୋଇଅଛି । ପଡ଼ିଥିବା ନାଲିଅଁଳା ଫୁଲ ଦୀପ୍ତ ଅଗ୍ନିପରି ହୋଇଥିଲା । ବଉଳପତ୍ର ସବୁ ପାଟକପରି କେତକୀଫୁଲ ମାଳଦେଇଥିବା ଚଟାଣ ମୁକୁଟପରି ହୋଇଥିଲା । ଅନେକ ଗୁଆ ଓ ନଡ଼ିଆମାନେ ଥିଲେ । ସାଳଗଛ ସଳାମାନଙ୍କପରି ଓ ଚମ୍ପାଗଛ ସଳାମାନଙ୍କପରି ଓ ଚମ୍ପାଗଛ ବହାନ ସେବକପରି ଥିଲେ । ୧ କୁଞ୍ଜ, ଲତାଗୃହ । ୨ ଛପ୍ରାମଣ୍ଡପ, ଛାମୁଣ୍ଡିଆ । ୩ କୁରୁବକ, ନାଲିଝାଁଟି । ୪ କ୍ରମୁକ, ଗୁଆ ୫ ଶାଳକ, ସାଳଗଛ ଓ ସଳା । ସୁରଭି, ଚମ୍ପା ଓ ବସନ୍ତ ।

ଅଛନ୍ତେ । ବେଳି ୨ବଂଶରେ ଜାତ ଘୋଷ ।
୩ବ୍ରାହ୍ମଣୀରେ ପୁଣି ବଢ଼ିତ ହୋଇଛି ସାର ଅନୁରାଗ ପ୍ରକାଶ ।୮।
ଝଳ୍ପୁଲ ୧କର୍ପଦୀ ବୀଜ ୨କରକର ୩ରଙ୍ଗାଜବା ଜୁଟିତ ଦେଖାଇ ।
୪ଶୁକ୍ଳାନ୍ତ ପ୍ରକାରେ ୫ପ୍ରାକାର ଯହିଁରେ ୬ଅବାପଠାରେ ସମ୍ଭବଇ ।
ଯନ୍ତନେ । ପରାଗ କର୍ପୂର ପତନେ ।
୭ଶେଫାଳିକା ଆଳିସନାଢ଼ ୮ସଂଯୋଗ ହେବାକୁ ଶଯ୍ୟାକୁ ସୁମନେ ।୯।
ମଧ୍ୟେ ୧ସରସୀ ନୂତନେ ରସାରସି ରସିକ ରସିକା ଯେନ୍ତ ।
ନୀଳୋତ୍ପଳଦଳ ୨ଚଳଦ୍‌ଗଞ୍ଚଳ ମୀନ ଚଞ୍ଚଳେ ଢାଳେ କେଳ ।
ଅଛନ୍ତି । ସେ ୩କାମ-ଶବଳୀ ବଣରେ ।
ଫୁଲ ଶୈବାଳ ଚୂଳ ୪ଅଳିଆବଳୀ ବେଣୀ ଚଳନ୍ତ କମ୍ପିରେ ।୧୦।

---

୮—ଏବାହାରେ ଭଦ୍ୟଥରବା ଗଜୁକର୍ଣ୍ଣ ନର୍ମିତ ଫଳ୍ଗୁଅମାନଙ୍କ ମଧ୍ୟରୁ ହୀରା ଓ ମାଣିକ୍ୟର ଜ୍ୟୋତି ପ୍ରକାଶ ହେଉଥାଏ । ସେହିପରି ଏଠାରେ ଫଳଦଅ ଓ ସିନ୍ଦୂରୀ ପାଟଳ ଅମ୍ବମାନଙ୍କଧର ସହକାର ( ଅମ୍ବଗଛ ) ମାନେ ବିଶେଷ ଶୋଭା ପାଉଅଛନ୍ତି । ସେଠାରେ କନ୍ୟାହୁଳ ବ୍ୟଳରେ ଅଖଣ୍ଡିତଭାବେ ଆନନ୍ଦଧ୍ୱନି ହେଉଥାଏ । ଏଠାରେ ଦୂରବାଉଁଶଙ୍କ ଘର୍ଷଣରେ ଶବ୍ଦ ଜାତ ହେଉଅଛି । ସେଠାରେ ବ୍ରାହ୍ମଣ କନ୍ୟାଦ୍ୱାରା ବନ୍ଦାପନା ହେଉଥାଏ । ଏଠାରେ ବ୍ରାହ୍ମଣ ଝାଡ଼ୁଥିଗଛ ଦ୍ୱାରା ବଦ୍ଧିତ ହୋଇଅଛି ଉଦ୍ଭୁତ ସାର ଅନୁରାଗ ପ୍ରକାଶ ହୁଏ । ୧ ଗନ୍ଧ୍ୱଶୃଙ୍ଗ ସମ୍ପୂର୍ଣ୍ଣ, ଗନ୍ଧଳକ୍ଷିତ ଫଳୁଅ ସମୂହ । ୨ ବଂଶକୁଳ ଓ ବାଉଁଶ । ୩ ବ୍ରାହ୍ମଣୀ, ବ୍ରାହ୍ମଣ ସ୍ତ୍ରୀ ଓ ବାହ୍ମଣ ଝାଡ଼ିଅଗଛ ।

୯—ଏବାହାରେ ଚନ୍ଦ୍ରକାରଣୀ ହୁଙ୍ଗୁଳଦଅ କଉଡ଼ି କୁଥିଗେଲ ନମିତ୍ତ ଦେଖାଇବାପରି ପାଟଫାଟିଲା ଡାଳିମ୍ବ ମଞ୍ଜିସବୁ ପ୍ରକାଶିତହୋଇଅଛି । ଯେଉଁ ବଗିଚାରେ ଗଛମୂଳ ମଦାରେ ଅନ୍ତଃପୁରପରି ପାଚେରିସମ୍ଭବ ଅଛି ମଦାର ମଧ୍ୟ କଳଦ୍ୱାର ଶୁଦ୍ଧଥାଏ ଓ ପାଚେରି ଭୂଇଁପରି ଗୃହପାଶରେ ବନ୍ଧଥାଏ ଏବାହାରେ ଗୃହଅନ୍ତ ବାଡ଼ଥାଏ ଓ ମଧ୍ୟଭାଗ ବଣୁଥାଏ । ଏବାହାରେ ସଖୀମାନେ ବରକନ୍ୟାଙ୍କ ସଂଯୋଗ ନମିତ୍ତ କର୍ପୂରଚୂର୍ଣ୍ଣ ପକାଇ ପଲଙ୍କରେ ମଧୁଶଯ୍ୟା ସଜାଉଥାନ୍ତି । ଏଠାରେ ଗଙ୍ଗଶିଉଳି ଗଛମାନେ କର୍ପୂରପରି ଫୁଲ ଧୂଳିଯୁକ୍ତ ପୁଷ୍ପମାନଙ୍କୁ ପୁଷ୍ପଭୋଗ ହେବାକୁ ଶଯ୍ୟାପରି ସଜାଇ ପକାଇ ଅଛନ୍ତି । ୧ କପର୍ଦ୍ଦି, କଉଡ଼ି । ୨ କରକ, ଡାଳିମ୍ବ । ୩ ରଙ୍ଗଜବା, ଚନ୍ଦ୍ରକାରଣୀ । ୪ ଶୁଦ୍ଧାନ୍ତ ଅନ୍ତଃପୁର ଓ ଶୁଦ୍ଧମଧ୍ୟ । ୫ ପ୍ରାକାର ପାଚେରି । ୬ ଆବାପ, ମଦା । ୭ ଶେଫାଳିକା, ଗଙ୍ଗଶିଉଳି ୮ ସଂଯୋଗ, ସଂଯୋଗ ଦୃଷ୍ଟ ଯାଗ ।

୧୦—ଏବାହାରେ ନୂତନର ସାରସି ରସିକାପରି ଏ ବଗିଚାମଧ୍ୟ ପୁଷ୍କରିଣୀ ହୋଇଅଛି । ଏ ପୋଖରୀରେ ନୀଳକଇଁ ପାଖୁଡ଼ା ରସିକଙ୍କ ନୟନର ଚଞ୍ଚଳକଟାକ୍ଷପରି ହୋଇଅଛି । ଏ ପୋଖରୀରେ ମାଛ ଖେଳିବା ରସିକଙ୍କ ଚଞ୍ଚଳଚକ୍ଷୁ ଢଳାପରି ହୋଇଅଛି । ରସିକରସିକା କାମବାଣ ସମୂହରେ ଅଚ୍ଛନ୍ନ ହୋଇଥାନ୍ତି । ଏ ପୋଖରୀ କାମ ଓ ହଂସଗଣ ପକ୍ଷିମାନଙ୍କଦ୍ୱାରା ବେଷ୍ଟିତ ହୋଇଅଛି । ଏ ଏ ପୋଖରୀରେ ଶୈବାଳ ଉପରେ ଭ୍ରମରମାନେ ଉଡ଼ୁଅଛନ୍ତି । ଅତଏବ ରସିକାର କମ୍ପିତ ମସ୍ତକରେ ବେଣୀ ବଳିବାପରି ଦିଶୁଅଛି । ୧ ସରସୀ ପୁଷ୍କରିଣୀ ଚଳଦୃଗଞ୍ଚଳକଟାକ୍ଷ । ୩ କାମ-ଶବଳୀ, କନ୍ଦର୍ପଶର ସମୂହ ଓ କାମ ଓ ହଂସବର୍ଣ୍ଣାକ୍ଷୀ । ୪ ଅଳି ଆବଳୀ, ଭ୍ରମର ସମୂହ ।

[୧]ତରଙ୍ଗ ଉପର କର ଦେଇଁ ବଢ଼ାଇ [୨]ମରାଳଚୋରକ-[୩]ଉରସଜ ।
ହଂସଗଣ୍ଡରେ ପୁଞ୍ଜ ନାଦ [୪]ହଂସକ ଶବଦ ଛଳେ ସନ୍ଦେ ।
ପ୍ରଚଳ । ଫେନ ବସନ ଆଡ଼ ତେଣୁ ।
ଦରବିକାଶ [୫]କୋକନଦ-ମୁଖରେ ଝୃଷ୍ଟୁ ଥରନ୍ତି ଅଣୁ ଅଣୁ । ୧୧ ।

ଏସନ ବନସରସୀରେ କୁସୁମଶର-ଶରେ ହୋଇ ଉଚ୍ଛନ୍ନ ।
[୧]ଚତୁର ଚମ୍ପା ମଧ୍ୟ ଚନ୍ଦ୍ର-ବେଦରେ ଚତୁର କରନ୍ତି ଶୟନ ।
ଯେ ପୂରେ । ଜୀବନ ସେ ତଳରେ ରହୁ ।
[୩]କଳାକର କଳାକର ଶୁଭ୍ର [୪]ଅଭ୍ର ଅର୍ଦ୍ଧ-ଉଦୟ ପରି ହୋଇ । ୧୨ ।

[୧]ନବପଲ୍ଲବେ ବଟେଶ୍ୱ ସ୍ଥାନ-ଉଲ୍ଲାସେ ପୁରୁଷେ ବସି ସେ ଯାରୁଣେ ।
କିଛିଦୂରେ ଅଛି ବମନ ହୋଇଛି କି ହୋଇଲା ଇଛି ପୁରୁଷେ ।
ତା ଦେଖି । କେ କାହୁଁ ଆସିଲ ପ୍ରକାରେ ।
[୨]ସାଧୁଜନୀ ବେନି ହରଷ ବିରସ ଲପନେ କଥା ପରସ୍ପରେ । ୧୩ ।

ଜଟିଳା ଭଣି କିଂନରେଶନନ୍ଦନୀ-ପାଠପଠିମା ଯଥ ଦଶ ।
ପଣ୍ଡିତା ବୋଲେ କହିବାରୁ ଅକ୍ଷରେ କାଟି ରଖ ଗୋ ଏକାଦଶ ।
ସେ ଛଳ । ଏ ନଗରେ ତୁମ୍ଭ ନିବାସ ।
ପୁନରୁକ୍ତି ଦୂରୁଁ ଆଗତ କଦର୍ଥେ ଯଦର୍ଥେ କହି ହେବ କଷ୍ଟ । ୧୪ ।

---

୧୧—ରମଣୀ ତରଙ୍ଗରେ ସ୍ତନକୁ ଉଚ୍ଚ କରି ବଢ଼ାଏ । ଏ ପୋଖରୀରେ ଲହରୀ ପଡ଼ିବାରୁ ପ୍ରଫୁଲ୍ଲ ହୁଏ । ହଂସମାନଙ୍କ ଗଳାରେ ଧ୍ୱନି ନୂପୁର ଶବ୍ଦ ପରି ହୁଏ । ଏ ପୋଖରୀରେ ହଂସମାନେ ଶବ୍ଦ କରି ଗତି କରୁଅଛନ୍ତି । ଦରବିକଶିତ ରକ୍ତପଦ୍ମର ମୁଖରେ ଝୁଣ୍ଟୁ ଥରନ୍ତି, ତାଙ୍କୁ ଶ୍ୱେତ ଫେନପର ବସ୍ତ୍ର ଥିବା ପରି ଯାଏ । ୧ତରଙ୍ଗ, ଲହରୀ । ୨ମରାଳ ଚୋରକ, ହଂସଚୋରୀ । ୩ଉରସଜ, ସ୍ତନ । ୪ହଂସକ-ନୂପୁର । ୫କୋକନଦ, ରକ୍ତପଦ୍ମ ।

୧୨—ଏପରି ବନ ପୋଖରୀକୂଳରେ ସେ ଚତୁର ରମଣୀ କନ୍ଦର୍ପଶରରେ ଉଚ୍ଛନ୍ନ ହୋଇ ଚତୁର ଚମ୍ପାଗଛ ମଧ୍ୟରେ ଚନ୍ଦ୍ରକାନ୍ତ ବେଦୀରେ ଶୋଇଅଛି । ଯେ ତମ୍ପାପୁରରେ ଜୀବନସ୍ୱରୂପ ତେମା ଅଛି । ସେ ଚମ୍ପାଗଛ ତଳେ ରହିଅଛି । ଧଳା ମେଘରେ ଏବ କଳାବଶିଷ୍ଟ ଚନ୍ଦ୍ର ଅର୍ଦ୍ଧ ଉଦୟ ହେବାପରି ହୋଇଅଛି । ୧ ଚମ୍ପା ଗଛମାନେ, ଚନ୍ଦ୍ରକାନ୍ତରେ । ୨ଚନ୍ଦ୍ର, ସ୍ୱର୍ଣ୍ଣ ଓ କର୍ପୂର । ୩କଳାକର, ଏକଳଙ୍କ ଚଣ୍ଡି ଓ ଚନ୍ଦ୍ର । ୪ଅଭ୍ର, ମେଘ ।

୧୩—ସେ ରମଣୀଙ୍କ ନିକଟରେ ନବପଲ୍ଲବରେ ପୁରୁଷ ଜଣେ ବସି କରିଛନ୍ତି ପଦ୍ମକୁ ଚାହୁଁଥିଲା । ଅନ୍ୟ ଏକ ପୁରୁଷ ଜଣେ ହୋଇ କୋଳ ତାଙ୍କର ଲାଳିତ ହେଉ କିଛିଦୂରରେ ରହିଅଛି । ଦୁଇଜଣ ସାଧ୍ୱୀ (ମାତା) ତାହା ଦେଖି କାହୁଁ ଅଣିଲେ ହର୍ଷ ଓ ବିଷାଦ ମୁଖରେ ପରସ୍ପର କଥାବାର୍ତ୍ତା ହେଉଥିଲେ । ୧ନବପଲ୍ଲବ, ନୂଆପତ୍ର । ୨ସାଧୁଜନୀ, ମାତା ।

୧୪—ଜଟିଳ ଅବଧୂତୀ କହିଲା, ତୁମ୍ଭେ (କିଂନରେଶ) କୁବେର ନନ୍ଦନଙ୍କର ଶିକ୍ଷୟିତ୍ରୀ ପରି ଜଣାଉଛ । ସେ ପଣ୍ଡିତା ଉପାଧ୍ୟାୟୀ କହିଲା । ତୁମ୍ଭ କହିବା କଥାରୁ ଏକାଦଶ (୧୦) କାଟି ଦେଇ ଏକାଦଶ ଅକ୍ଷର ରଖ, ଅର୍ଥାତ୍ କିନ୍ନରେଶ ନନ୍ଦନୀ (ଯକ୍ଷପୁତ୍ରୀ)ର ଶିକ୍ଷୟିତ୍ରୀ ବୋଲି ଜାଣ । ପୁଣି ସେ ଛଳରେ କହିଲା । ଏ ନଗରରେ ତୁମ୍ଭ ନିବାସ କି ? ଉପାଧ୍ୟାୟୀ ପୁଣି କହିଲା, ଦୂରରୁ ଆସିଅଛି, ଅବଧୂତୀ କହିଲା, କାହିଁକି ଆସିଲ, ସେ କହିଲା, ଯହିଁର ଅର୍ଥରେ ତାହା କହି କଷ୍ଟହେବ । ୧କଦର୍ଥ, କାହିଁକି ଅର୍ଥରେ, ଯହିଁର ।

ତଥାପି କହିବା ତୁମ୍ଭେ କେ କହ ସେ କହେ ମୁଁ ସ୍ୱର୍ଗବୈଦ୍ୟଭଗିନୀ ।
୧ବୃନ୍ଦ-ଅନ୍ତକ ଅନ୍ତଃପୁର ଅବଲା ବିଭ୍ରମରୋଗ-ବିନାଶିନୀ ।
ଶୁଣି ତା । ଭଣିଲା ଆମ୍ଭ ବାଳାମଣି ।
ଅଦ୍ଭୁତେ କି ଦେଖି ଭୂତପଞ୍ଚକୃତ ଭୂତ ଲଗିଲା ପ୍ରତ୍ୟ ଅଣି । ୧୫ ।
ବାରବୀର ସରଦରେ ତା ଶଯ୍ୟା ବର୍ଜି ନାହିଁ ଚନ୍ଦ୍ରବଦନେ ।
ଜଳ ବହିତ ଘନବାର ସୁକେଶୀ ତନୁକୁ ନ ବାନ୍ଧି ସପନେ ।
ତପନ୍ତ । ସଦା ରହୁଅଛ ଶରୀରେ ।
ବ୍ୟାଧିଜନନୀ କ ଗୋଚର ନୁହଇ କରେ ଶଙ୍କାକୁ ଯେ ବଧିରେ । ୧୬ ।
କହେ ଏ ପଦ ହରିବ ସପ୍ରୟୋଗେ ଏ ତାପ ଶାନ୍ତକ ତାପସୀ ।
ବୃଷି ନଗରେ ତୃଣ ପ୍ରାୟେ ପଶିଲା କଳ୍ପନ ଘଷିଲା ବିଦୁଷୀ ।
ପୁଣି ସେ । କାହିଁରୁ କଲ ବୋଲି ପୁଚ୍ଛି ।
ସ୍ନାନ କାସାରୁ ସଞ୍ଚିତ ସପୁଟରୁ ବୋଲନ୍ତେ ବୋଇଲ ଭନ୍ମେ ଅଛି । ୧୭ ।
କି ଅଛି ଗିରେ ଛଳିଲା ଧୀରେ ସେହୁ ସୁନ୍ଦର ନବ ସରସୀତ ।
ତା ହୃଦପଦ୍ମ ସଙ୍ଗ ପାଣି ପରଶ ଅଙ୍ଗସ୍ଥ ୨ଶୀତରଜ ହତ ।

---

୧୫—ଉପାଧ୍ୟାୟୀ କହିଲା, ତଥାପି କହିବାକୁ ହେବ । ତୁମ୍ଭେ କିଏ କହ । ସେ କହିଲା, ମୁଁ ସ୍ୱର୍ଗବୈଦ୍ୟଙ୍କର ଭଉଣୀ ଅଟେ । ଇନ୍ଦ୍ରଙ୍କ ଅନ୍ତଃପୁରସ୍ଥ ସ୍ତ୍ରୀ ମାନଙ୍କର ଭ୍ରମରୋଗର ବିନାଶିକା ଅଟେ । ତାହା ଶୁଣି ଉପାଧ୍ୟାୟୀ କହିଲା, ଆମ୍ଭ ବାଳାମଣୀ କେମା ଆଶ୍ଚର୍ଯ୍ୟ ଭାବେ କଣ ଦେଖିଲା । ଭୂତପଞ୍ଚକୃତଭୂତ (କନ୍ଦର୍ପ) ଲଗିବାପରି ବସିଛନ୍ତି । ୧ବୃନ୍ଦଅନ୍ତକ, ଇନ୍ଦ୍ର । ଭୂତପଞ୍ଚକୃତ ଭୂତ, ଶିବସୃଷ୍ଟ ଭୂତଗଣ ଓ କନ୍ଦର୍ପ ।
୧୬—ବୈଦ୍ୟବିଧାଣର । ସରଦରେ (ଉପରେ) ତା ଶଯ୍ୟା 'ଶ' ଚିହ୍ନ ଓ ନଦଞ୍ଜ—ନୟନ) ବାର ବାର ଦିଲ (ଜର) ବର୍ଜି ଥାଉ କରୁଅଛି । ଚନ୍ଦ୍ର'ବ'ଦନେ (ଚନ୍ଦ୍ରବଦନେ—ଚନ୍ଦ୍ରଶାଳା ଗୃହରେ ସେ ଏବେ ନାହିଁ । ସୁକେଶୀ ତନୁକୁ ଘନ କା'ଳ (ଘନ'ସା'ଳ—କର୍ପୂର) 'ନ'ହିତ ('ଅ'ହିତ) କରନ୍ତ । ସ'ପ'ନେ (ସ'ପ'ନେ—ସ୍ୱପ୍ନରେ ଥାଉ) କବ'ବ'ହି (ମୁହୂର୍ତ୍ତ ପାଇ ।ଭୁ ନାହିଁ) ତପନ୍ତ ସଦା ଶରୀରରେ ରହୁଅଛି । ଏହି ବ୍ୟାଧି ଜନ'ନ' (କର୍ଣ୍ଣ'ନ') ଅଟେ । ଗୋଚର ନୁହଇ । ୧ଣ ହମନ୍ତେ ବଧିରେ ଚିନ୍ତା କରୁଅଛନ୍ତି ।
୧୭—ତାପସୀ ଅବଧୂତା ଏ ପଦ କହିଲା, ପ୍ରୟୋଗ ସହିତ ହେଲେ ଏ ତାପ ହରିବ । ଶାନ୍ତିକ କରିବ । ତାହିଁ ବିଦୁଷୀ ଉପାଧ୍ୟାୟୀ କହିଲା । ସେତେ ପ୍ରବେଶ କଲୁଣି, ବୃଷି ନଗରରେ ତୃଣପରି ସେ ସବୁ ଘଷିଦେଲା । ପୁଣି ଅବଧୂତା କହିଲା । କାହିଁରୁ କଲବୋଲି ପଚାରିବାରୁ ଉପାଧ୍ୟାୟୀ କହିଲା ଏ ସ୍ନାନ ପୁଷ୍କରିଣୀରୁ ପଦ୍ମ ନାଳଚନ୍ଦନ ଓ ସମ୍ପୁଟରୁ କର୍ପୂର ଆଣି କରୁ ବୋଲନ୍ତେ ସେ ବୋଇଲା ତହିଁ ଅଛି । ୧କାସାର, ପୁଷ୍କରିଣୀ । ସମ୍ପୁଟ, ପେଡ଼ିଥ ।
୧୮—ଉପାଧ୍ୟାୟୀ କହିଲା । କଣ ଅଛି ? ଅବଧୂତା ବାଚ୍ୟ ଉତ୍ତର ଧୀରେ କହିଲା । ସେହି ସୁନ୍ଦର ନୂଆ ଟୋକରୀ ଅଛି ତା ହୃଦ (ମଧ୍ୟ)ସ୍ଥିତ ପଦ୍ମନାଳ ସଙ୍ଗ ଓ ପାଣିର ସ୍ପର୍ଶ ( ଛିଞ୍ଚିବା ) ଏବଂ ଅଙ୍ଗସ୍ଥିତ କର୍ପୂର ହତ ହେବ । ଶେଷରେ ଅବ୍ୟାର୍ଥ । ସେହି ସୁନ୍ଦରପାତ୍ରେ ନବଯୌବନସ୍ଥିତ (କାର୍ଯ୍ୟକ୍ଷମ ଅଛି)

ମନ୍ଦ ଭଲ ଦୁଇ ହାସ ନେତ୍ରେ ଥୋଇ ସେ ବଧୂ ଗାଳନ୍ତି ସଗରୁ ।
ଏଥୁଁ କି ହୋଇବ ଏ ପ୍ରଶ୍ନ କହିବ ପୁଂସକୁ ତାରିବ ଉଦ୍‌ବେଗୁଁ ।
ଊର୍ଦ୍ଧ୍ୱକୁ । ଗୃହିଁ ସବାଙ୍କୁ କହେ ଜବ ।
ଆପୁଚ୍ଛା କଲ ଯା ହୋଇଛି ଦ୍ରବ୍ୟ ଗୃଷ ଏ ଜୀବ ଏକନାମ ହେବ ।୧୨।
କେତେ କର୍ଣ୍ଣକମୀ ନମିଣେ ମୋହନପ୍ରତିମା ସେ ବଶ ହେବାର ।
ଗୁପତମନ୍ତ୍ରର ଅମୃଠାରେ ଅଛି ଦେବା ଜପ କରୁ କୁମାର ।
ଫଳଦ ! ଏମନ୍ତ ପ୍ରକାରେ ହୋଇବ ।
ବହିବା ମାର ଚେତନ ଧନୁ ଶର ଏ ତା ବକ୍ଷସ୍ଥଳ ଲଭିବ । ୧୩ ।
ଦ୍ୱିଜ ଶୁଣି ଅବଧାନ କର ବୋଲୁଁ ଅର ବାମା କର ଧଇଲା ।
କରୁଣା ଧର ଅରୁଣାଧରଠାକୁ ଆଗ ଯିବା ଗୃଲ ବୋଇଲା ।
ଜଣଖ । ପ୍ରାପତ ଘରୁକୁ ମନ୍ତ୍ରରେ ।
ଆମ୍ଭେ ଲକ୍ଷଣାକ ଜନ ସିନା ବେନ ଲକ୍ଷଣା ଦେଲୁ ସୁମନାରେ । ୧୪ ।
କଲୁ ନସ ପ୍ରମାଣ ମାଣବକ-ମୃଗନେତ୍ରାର ହେଲୁ ମାଣବକ ।
୧ଭୂଷ୍ଣେ ଘଟେ ସେ ପୂଷ୍ଣେ ମାଳା ପାଇବ ନଷ୍ଟେ କର ଏହି ବିବେକ ।

---

୧୨—ସେ ସୁନ୍ଦରୀ ମନ୍ଦ ଓ ଭଲ ଦୁହିଙ୍କୁ ହାସ ଓ ଚକ୍ଷୁରେ ରଖି ଅର୍ଥାତ୍ ମନ୍ଦ ହାସ କରି ଏବଂ ସ୍ୱଚ୍ଛ ପର ନେତ୍ରକଟାକ୍ଷ ପାତକର ଅନୁସରଣ ହେବାରୁ ଚାଳ ଦେଇଅଛି । ଏଥିରୁ କଣହେବ, ଏ ପ୍ରଶ୍ନ କହିବ ଏବଂ କୁମାରଙ୍କୁ ଉଦ୍‌ବେଗରୁ ରକ୍ଷାକରିବ । ଉର୍ଦ୍ଧ୍ୱ ସବଙ୍କୁ ଉପରକୁ ଗୃହିଁ ବେଗେ କହିଲା । ତୁମ୍ଭେ ଯାହା ପ୍ରଶ୍ନକଲ ବର୍ତ୍ତମାନ ଦ୍ରବ୍ୟ ନକ୍ଷତ୍ର ହୋଇଅଛି । ଏ ବୃକ୍ଷଜୀବର ଏକ ନାମ ଭଲ ହେବ । ଭଲ, ଉତ୍ତମ ଓ ଘୃତ । ୨ଜବ, ଶୀଘ୍ର । ମୃଚ୍ଛା, ପ୍ରଶ୍ନ । ୪ରୃକ୍ଷ, ନକ୍ଷତ୍ର ଓ ବୃକ୍ଷ । ଭାଲୁର ଓ ବୃକ୍ଷନାମ ଭଲ୍ଲ ।

୧୩—କର୍ଣ୍ଣକର୍ମୀ କେତେ ମୋହନକାରୀ ପ୍ରତିମାଙ୍କୁ କରୁଅଛ ସେ ବଶ୍ୟ ହେବାର ଗୁପ୍ତମନ୍ତ୍ର ଅମୃଠାରେ ଅଛି—ଦେବା, କୁମାର ଜପକରୁ କହୁଅଛୁଁ । ଏ ପ୍ରକାରେ ସଫଳ ହେବ । କନ୍ଦର୍ପହାର ତାଙ୍କର ଧନୁ ଓ ଶର ସହିତ ମିଳନ ହେଲେ ଅଭି କାମ ବାଧା ହେବ ନାହିଁ । ଏ କ୍ରମର ତାର (କନ୍ଦର୍ପର) ବକ୍ଷସ୍ଥ ଉପରେ ସମ୍ଭୋଗକୁ ପାଇବ ।

୧୪—ଦ୍ୱିଜବଦ୍‌ଧାନଧ୍ୱନି । ବଧାନ କର ବୋଲି କହିବାରୁ ଅରବାମା ଉପାଧ୍ୟାୟୀ ହାତଧରି କହିଲା । ତ୍ୱୋବର ସେ ଅରୁଣାଧର ନେମାଠାକୁ ଗୃଲ ଅବସିବା । ଏହାଶୁଣି ଅବାଗ୍ରୀ ଉତ୍ତର କଲା । ସେ ଘରୁ ନେମାକୁ କୋଷ୍ଟ ନଲୁ ମିଳିଥ । ଅମ୍ଭେ ବିନା ଏକ ଲକ୍ଷଣାକ ଜନ ଅର୍ଥାତ୍ ସ୍ତ୍ରୀ ଲୋକ । ବଳୁ ବେନ ଲକ୍ଷଣ (ସ୍ତ୍ରୀପୁଂ ଲକ୍ଷଣ, ପୋଷା) ସୁମନାରେ ଫୁଲ ମଧ୍ୟରେ ଦ୍ୱିବଟିଁ ସେ ମନ୍ତ୍ର ପଣ୍ଡ ଦଅାଇ ଦେଲାଣି ।

୧୫—ସେ ପ୍ରମାଣକଲା, ମାଣବକ-ମୃଗ ନେତ୍ରାର (ହିଣ୍ମୃଗ ନେତ୍ରା) କେମାର ପାଇବା ମାଣବକ (ଅର୍ଦ୍ଧହାର) ମାନଙ୍କ (ଅର୍ଦ୍ଧମାଳା) ହେଲା । ଉର୍ଦ୍ଧ୍ୱ ସେ ଶୀଘ୍ର କହିଲା । ସେ ଅଟେ ଧ୍ୱଂସମାଳା ପାଇବ ଦେ ଅର୍ଦ୍ଧମାଳା ପାଉଅଛି । ଏହା ବିବେକକର । ଶୁକ୍ ପଣ୍ଟୁପ ଅର୍ଥୀ ପାର

ତେବେଙ୍କି । ୨ଧବଳପକ୍ଷ ପକ୍ଷ ପାଇ ।
ସକଳାରୂପେ ଉଦେ ହେଲେ ଚନ୍ଦ୍ର କି ସକଳ କଳା ପୂର୍ଣ୍ଣ ନୋହ୍ନ ୨୫ ।
ଦୋଷସୁ ଦୂର କରି ସେବୁଁ କୁମାର ଯୋଗଲୟକୁ ଧରିଥିଲା ।
ଗଉରୀ କଥା-ରସ କର୍ଣ୍ଣ-ବଦନେ ୧ଅଶନରୁ ଉଠି ବସିଲା ।
ବ୍ରହ୍ମାସ୍ତ୍ର । ବାସିତ ଜାମ୍ବବନ୍ତ ପରି ।
ତନ୍ଦ୍ରାର୍ଥୀ ମନ୍ତ୍ରି ଜ ଏ କଥା ଔଷଧି ଗନ୍ଧପବନ ବଳେ ଜଣ । ୨୬ ।
ଏକାଳେ ମିତ୍ରମେଳେ ମିଳେ ସେ ବେନି ଆଦରକୁ ପାଇ ବସିଲେ ।
୧ମୋଦପ୍ରଦ ମୁଦ ଦେବାରେ ସିଦ୍ଧିରେ ଶ୍ୱସିଲେ ଏମନ୍ତ ଘୋଷିଲେ ।
ନିକଟେ । ୨ ଈଶ୍ୱରସମ୍ପତ୍ତି ପାଇବ ।
ଯୁବତି-ଅର୍ଦ୍ଧାଙ୍ଗ ଦିଗବାସ କାମଜିତ ହୋଇ କାଳ ଯାପିବ । ୨୭ ।
ହୋଇ କୃତକୃତ୍ୟ ଜନ ୧କୋରକିତ କର ନୃପସୁତ ଯେନକ୍ରେ ।
ପବମାନ ପରି ବନ୍ଧ୍ୟାକୁ ଅଚିରେ ଗମନ କଲେ ସେ ତ୍ୱରିତେ ।
ପ୍ରବେଶ । ମାଲିନୀନଗରୀ ନାଗରୀ—
ରତ୍ନରେ କହିଲେ ଯତ୍ନପୂର୍ବେ କରି ଉଦନ୍ତ ଦେବାର ଶୁଶ୍ରୂଷା । ୨୮ ।
କୁମାରବର ନାମ ସାର୍ଥ ତାଠାରେ ଏ ପଦକୁ ଅଛି ଆଚରି ।
ବର୍ତ୍ତିକ ପଲଙ୍କ ଦ୍ୱିବର୍ଣ୍ଣ ଅତଙ୍କ ଜନମାଇ ବାଣବର୍ଷୀ ।

---

ଚନ୍ଦ୍ର କଳା ସହିତରେ ଉଦୟ ହେଲେ ତାର ସକଳ କଳାପୂର୍ଣ୍ଣ ହୁଏ ନାହିଁ କି ? ଅପୂର୍ଣ୍ଣ ରହେ ନାହିଁ । ୧ଚୂର୍ଣ୍ଣ, ଶୀଘ୍ର । ୨ପକ୍ଷ, ଅର୍ଦ୍ଧମାସ ଓ ସହାୟ ।

୨୬ – କୁମାର ସମସ୍ତ ଦୋଷ ଦୂର କରି ହରଙ୍କୁ ସେବା କରିବାକୁ ଯୋଗ ଲୟକୁ ଧରିଥିଲା । ଗୌରୀ ରାଜକୁମାରୀର କଥାରସ କର୍ଣ୍ଣରୂପକ ମୁଖରେ ଭୋଜନ କରିବାକୁ ବ୍ରହ୍ମାସ୍ତ୍ର ଦ୍ୱାପିତ ଲକ୍ଷ୍ମଣଙ୍କ ପରି ଉଠି ବସିଲା । ନିଦ୍ରାପ୍ରିୟ ଜାମ୍ବବାନ୍ ପରି ତନ୍ଦ୍ରାର୍ଥୀ ହୋଇଥିଲା । ଏ କେମାଁ କଥା ସେ ଔଷଧ ଗନ୍ଧ ପବନ ପରି ବଳେ କଲେ । ୧ଅଶନ, ଭୋଜନ ।

୨୭—ଏ ସମୟରେ ମିତ୍ରମାନଙ୍କ ମେଳରେ ସେ ଦୁହେଁ ମିଳିଲେ ବେ ଆଦରପାଇ ବସିଲେ । ଆନନ୍ଦ ଦାୟକ ଧରାଉ ଦେବାରେ କାର୍ଯ୍ୟସିଦ୍ଧି ହେବ ବୋଲି ଶ୍ୱସିଲେ ଏପରି ଘୋଷି ହେଲେ । ଆପଣ ନିକଟରେ ଈଶ୍ୱରଙ୍କର ସମ୍ପତ୍ତିକୁ ପାଇବ । ସେ ଯୁବତୀ ଅର୍ଦ୍ଧାଙ୍ଗ ଓ ଦିଗମ୍ବର ( ଉଲଙ୍ଗ ) ହୋଇ କାମକୁ ଜୟକରି କାଳ କଟାଇବ । ୧ ମୋଦପ୍ରଦମୁଦ, ଆନନ୍ଦ ଦାୟକ ପତ୍ର । ୨ ଈଶ୍ୱର, ଶିବ ।

୨୮—ରାଜପୁତ୍ର କୃତାର୍ଥ ହୋଇ ହାତଯୋଡ଼ି ଏକଥା ଗ୍ରହଣ କରନ୍ତେ ସେ ଅବିଳମ୍ବ ପବନପରି ବନ୍ଧ୍ୟା ଅତିକ୍ରମ କରି ଶୀଘ୍ର ଗମନକରି ମାଲିନୀନଗରରେ ପ୍ରବେଶ କଲେ । ସେ ନାଗରୀ ରତ୍ନ ହେମା ଅଗ୍ରେ ବାର୍ତ୍ତା ପହଞ୍ଚାଇବା ଶୁଶ୍ରୂଷା ଯତ୍ନ ପୂର୍ବକ କହିଲେ । ୧ ଯୋଡ଼ିତ, ମୁକୁଳିତ ।

୨୯—ସେ ରାଜପୁତ୍ରଠାରେ କୁମାରବର ନାମ ସାର୍ଥକ ହୋଇଅଛି । ଏ ଚିତ୍ରଲିପି ଏ ହେତୁ ପଦକୁ ଆଚରଣ କରିଅଛି । କୁମାର କହୁଅଛନ୍ତି ଏ ପତ୍ର (କ) ପୃଥ୍ୱୀକୁ ଲେଖ କରୁଅଛି । ଅର୍ଥାତ୍ ଭୂମିରେ

ଦ୍ଵାନ୍ତର । ଦୁଇବର୍ଣ୍ଣ କେହ୍ନ ସହର ।
କୋଟିବ୍ରହ୍ମାଣ୍ଡସୁନ୍ଦରୀର ହୋଇବ ନାରେନ୍ତରେ ଏହ ବଗୁର । ୨୯ ।
କୁରଙ୍ଗରେ କର ସୁଧାଂଶୁ ଏ ଚେନ୍ନ ନାମ ଯୁକ୍ତ ନାମ ସୁମର ।
କହେ ଉପଇନ୍ଦ୍ର ଭଞ୍ଜ ନବ ଶାରବର ପଦର ସେ ମାଧୁରୀ ।
ଏ ଛନ୍ଦେ । ଧ୍ଵନ କାକୁ-ଉକ୍ତି ରୂପକ ।
ଶ୍ଳେଷ ଲୁପ୍ତବର୍ଣ୍ଣ ଚ୍ୟୁତଦତ୍ତାକ୍ଷର ଅନ୍ତର୍ଲିପିକା ଅଦ୍ଭ ତର୍କ । ୩୦ ।



## ଚତୁର୍ବିଂଶ ଛାନ୍ଦ ।

ରାଗ ଶଙ୍କାଭୈରବ ।


ହେ ... ନ ଉପାୟୀ ନାରୀ ଭୁବିତ । ଚନ୍ଦ୍ର ହୋବାରୁ ଅନ୍ତରହିତ ।
ମନ୍ତ୍ର ୧କେତବେ କ ପ୍ରେମପଟର ଦେଲେ ବଗୁରେ ଅନ୍ତରଗତ
ସେ । ସୁନ୍ଦର । ୧ ।
ହେଲା ସେ ପଦ ସୁଖସାଗର । ମଜ୍ଜିବାକୁ ନେଇ ତତପର ।
ଖୋଜିବାକୁ ସ୍ନେହବାଣୀ ରତ୍ନମଣି ମନ ଉଦ୍ୟମ କଲା ତ୍ୱରିର ସେ । ୨ ।
ଯାର ରସିକ ଚନ୍ଦେ ତା ୧କେର । ମୁଦ-କୁମୁଦ କଲା ବସ୍ତାର ।
ସଂଶୟ-ତମକୁ ଦୂର କରି ଦେଇ ପ୍ରସନ୍ନତା ହାସେ ମନୋହର ସେ । ୩ ।

ଚୋଇଅଛି । ଅନ୍ୟ ଦୁଇବର୍ଣ୍ଣ (ମାର) ପଦାନ୍ତରେ ଭିତ୍ତି କରାଯାଇଅଛି । ପ୍ରାନ୍ତସ୍ଥଇବର୍ଣ୍ଣ (ବର) କୋଟି-ବ୍ରହ୍ମାଣ୍ଡ ସୁନ୍ଦରୀର କପଟ ହେବ ସନ୍ତା ଏହ ବଗୁର ହୋଇଅଛି ।
୩୦—କବି ବାରବର ଉପେନ୍ଦ୍ରଭଞ୍ଜ କୁରଙ୍ଗର ଏକନାମ ମୃଗ ଓ ସୁଧାଂଶୁର ଏକନାମ ଚନ୍ଦ୍ର, ଏ ଦେନନାମ ଯୁକ୍ତ ନାମ ରାମଚନ୍ଦ୍ର ଚରଣରେ ଲହୁଅଛନ୍ତି । ଏ ଛନ୍ଦରେ ପଦମାଧୁରୀ, ଶ୍ଳେଷ ଲୁପ୍ତବର୍ଣ୍ଣ, ଚ୍ୟୁତା-କ୍ଷର ଅନ୍ତର୍ଲିପି ପ୍ରଭୃତି ଅଛି । ଉର୍ଦ୍ଧ୍ୱଶାବର ୧ କୁରଙ୍ଗ, ମୃଗ । ୨ ସୁଧାଂଶୁ, ଚନ୍ଦ୍ର ।

——:୦:——

## ଚତୁର୍ବିଂଶ ଛନ୍ଦ ।

୧—ଉପାୟୀଙ୍କ ହେ ଅବେଂଗ ଓ ଉପାଧ୍ୟାୟୀ ସ୍ତ୍ରୀ ଦୁହେଁ ଲୋକୁ ଅନ୍ତରହେବାରୁ ମେ ସୁନ୍ଦର ସ୍ଵଜପୁଙ୍କ ମନରେ ବଗୁଇବ । ପ୍ରେମପଟାଇ ବ୍ୟାକରେ ବଣ ନବ ଦେଇଗଲେ କ । ୧ କପଟେ, ବ୍ୟାଜରେ ।
୨—ସେ ପଟାଇ ସୁଖ ସମୁଦ୍ରହେବ । ତହିଁରେ ବୁଡ଼ିବାକୁ ମୋ ଅଛି ତତ୍ପର ହେଲ । ସ୍ନେହପୂର୍ଣ୍ଣ ବଚନ ରୂପକ ଉତ୍କୃଷ୍ଟ ରତ୍ନ ଖୋଜିବାକୁ ମନ ଉଦ୍ୟମ ପ୍ରବୃତ୍ତକଲ ।
୩—ସେ ରସିକା ଶ୍ରେଷ୍ଠରୂମାବ ଚନ୍ଦ୍ର ଅଟେ, ଭାର ହାତରୂପକ କରଣ ଏ ହର୍ଷରୂପକ କର୍ଚ୍ଚ୍ଚ ପ୍ରକାଶେକଲ ଅବେବ ସନ୍ଦେହ ରୂପକ ଅନ୍ଧକାରକୁ ଦୂରକରି ହାସରେ ମନୋହର ପ୍ରସନ୍ନତା ହୋଇଲ । ୧ କଟ. ହାତ ଓ କରଣ ୨ ସଂଶୟତମ, ସନ୍ଦେହ ଅନ୍ଧକାର ।

ବର୍ଣ୍ଣଧରୁଁ ହାଣ୍ଡ୍ର କାକତ । ୧ବର୍ଣ୍ଣ ମଞ୍ଜି ସ୍ୱାରଙ୍ଗ ଲିଖିତ ।
ଅନୁରାଗସାର ୨ପଦ୍ମରାଗବାର ୩ସ୍ୱରୁ ସୁବର୍ଣ୍ଣଭୂମିରେ ଜାତ ସେ । ୪ ।
୧ପଙ୍କ୍ତି ଅବଶେଷରେ ବନ୍ଧ । ପଦ ବର୍ଣ୍ଣମାନଙ୍କେ ପୂଲ୍ ଶୋଭି ।
ହୁଗଲେ ରସ କି ସମ୍ଭ୍ରମଜନଶର ୨ଫଳ ପଙ୍କଜେ ଲକ୍ଷ୍ମୀଣ ସେହ୍ନ ସେ । ୫ ।
ଶୃଙ୍ଗ ଏ ଭବନାମାନ କଳା । ଅଙ୍ଗ ପୁଲକ ସଙ୍ଗ ହୋଇଲା ।
୧ଦର୍ଭହ୍ରାପିମା ୨ସନ୍ଦର୍ଭ-ଭାଷା ରସଗର୍ଭ ପଠନକୁ ଆରମ୍ଭିଲା ସେ । ୬ ।
ବଶେ ସୁବାବୃନ୍ଦପୁରନ୍ଦର । ଟୀକା ପ୍ରାପତରୁ ସୁରେଶ୍ୱର ।
ନେଲ ତ ମୋ ପଦ ନୟୁଣ ସର୍ଷଦ ହରେ ଏ ଦକେ ପଲକଦୂର ସେ । ୭ ।
ଚନ୍ଦ୍ର ନାଗରଗଣେ ଆପଣ । ପ୍ରତିବିମ୍ବ-ଧାରଣ-ଦର୍ପଣ ।
ଯେ ଗ୍ୟ ନୋହୁ ପୂର୍ଣ୍ଣଚନ୍ଦ୍ରମା କଳଙ୍କୀ କଣ ଅମାର୍ଜନ ବଶୁଁ ଜାଣ ହେ । ୮ ।
ବଶେ ତନୁଶୋଭା ଅତିଶୟ । ତନୁ ଶୋଭା କନ୍ଦର୍ପ ଉଦୟ ।
ଯଜୁର ଶ୍ୟାମ କାନ୍ତିରୁ ଅନୁମାନ ତୁମ୍ଭେ ଦେହ ସେ ସ୍ମର ନଷ୍ଟୟ ହେ । ୯ ।
ହୋଇ ନୃପଜନସାର ସାର । ଜାତକାରଣ ପ୍ରେମସୁଧାର ।
ଉପମା-ଉଦଧି ମନ୍ଥନ ମନ୍ଦର ବନ୍ଦ୍ୟ ପୁଣ୍ୟଜନ ଦେବଙ୍କର ହେ । ୧୦ ।

---

୪—ନବ ଦେହବର୍ଣ୍ଣ ସ୍ୱାବୁ ହରଦଥ କାଗଜରେ ଦନ୍ତି ସ୍ୱାରଙ୍ଗରେ ଅକ୍ଷରମାନଙ୍କୁ ଲେଖିଥିବାରୁ ଉତ୍କୃଷ୍ଟ ଅନୁରାଗ ପ୍ରକାଶ କରୁଅଛି । ଏତେବ ସୁବର୍ଣ୍ଣଭୂମିରେ ସୁନ୍ଦର ପଦ୍ମରାଗ ମଣିମାନ ଜାତ ହେଉଛି ଦଣ୍ଡ । ୧ ବର୍ଣ୍ଣ ଅକ୍ଷର ଓ ଜଳରଙ୍ଗ । ୨ ବାର, ସମୂହ । ୩ ଗର୍ଭ, ସୁନ୍ଦର ।

୫—ଏଥିରେ ଅକ୍ଷରମାନ ସବୁ ସରଳ ହୋଇଅଛି ଓ ପଦଶେଷରେ ଲଳିତ ଅର୍ଥ ଶୋଭା ପାଉଅଛି । ଅତଏବ ହୃଙ୍ଗଳର ଚକିତ କନ୍ଦର୍ପର ସମ୍ଭ୍ରମ ଶର ଏକ ? ସେହିଶରର ଅଗ୍ରଭାଗରେ ଫଳ ହୋଇଅଛି କି ? ୧ ପଙ୍କ୍ତି, ଧାଡ଼ି । ୨ ଫଳ, ଶେଷ ।

୬ ସେ କୃଷ୍ଣଭଜନ ଭେଟି ଏ ଭାବନାମାନଙ୍କର । ତାର ଅଙ୍ଗମାନ ରୋମାଞ୍ଚିତ ହେଲା । ଯହିଁ ଭକ୍ତ ସେ ଦର୍ଭହ୍ରାପିମା ଭକ୍ତଭୂମିଙ୍କର ରଚିତ ପ୍ରବନ୍ଧର ରସଗର୍ଭ ଭାଷା ପଢ଼ିବାକୁ ଆରମ୍ଭକଲା । ୧ଦର୍ଭ କାଶତୃଣ । ୨ ସନ୍ଦର୍ଭ, ପ୍ରବନ୍ଧ ।

୭—ହେ ବନ୍ଧେ ! ଅପଣ ସୁବାଗଣପ୍ରେ ଇନ୍ଦ୍ର ଟୀକା ପାଇବାରୁ, ମୋ ପାଦ ନେଇ ପୁଣି ମୋ ସମସ୍ତ ଭରଣ ନ କଲେ । ଏ ପ୍ରକାରେ ଇନ୍ଦ୍ର ଚକ୍ଷୁରୁ ପଲକଶୂନ୍ୟ ଅଛନ୍ତି କି ? ୧ ପୃଥିବୀର ଓ ସ୍ୱର୍ଗର, ଇନ୍ଦ୍ର ।

୮—ହେ ସୁନ୍ଦର ! ଅପଣ ନାଗରମାନଙ୍କ ମଧ୍ୟରେ ଚନ୍ଦ୍ର ଅଟନ୍ତି । ପୂର୍ଣ୍ଣଚନ୍ଦ୍ର ଅପଣଙ୍କ ପ୍ରତିବିମ୍ବ ଧାରଣ ସମର୍ଥ ଦର୍ପଣ ଯୋଗ୍ୟ ହୋଇ ନ ପାରି ଅମାର୍ଜନା ବଶରୁ କଳଙ୍କି ହୋଇଅଛି ଜାଣିବା ହେଉଛି ।

୯—ହେ ବନ୍ଧୁ ! ଅପଣଙ୍କର ଦେହ ଶୋଭାଅଧିକ ହେବାରୁ କନ୍ଦର୍ପଠାରେ ଅଳ୍ପ ଶୋଭା ଉଦୟ ହୋଇଅଛି । ଅପଣ ଶ୍ୟାମ ଓ କନ୍ଦର୍ପ କାନ୍ତିଥ ହୋଇଥିବାରୁ ଅନୁମାନ ହେଉଅଛି । ଅପଣଙ୍କ ଦେହ ସ୍ମରନଷ୍ଟେ ୧ ତନୁ, ଦେହ ଓ ଅଳ୍ପ ।

୧୦—ହେ ସୁନ୍ଦର ! ଅପଣ ନୃପଜନ ସଂସାରରେ ସାରଅଟ । ଉପମା ସମୁଦ୍ର ମନ୍ଥନରୁ ମନ୍ଦର ହୋଇ ପ୍ରେମାମୃତ ଜାତହେବାର କାରଣ ହୋଇଅଛ । ଏଣୁ ଅସୁର ଓ ଦେବତାଙ୍କର ବନ୍ଦନୀୟ ହୋଇଅଛ । ୧ ଉଦଧିସମୁଦ୍ର । ୨ ପୁଣ୍ୟଜନ, ରାକ୍ଷସ ।

ମହାମହା ପଣ୍ଡିତ ଏମନ୍ତେ । ଗଣିମାନ୍ତି ଗଣେଶଙ୍କ ଯେମନ୍ତେ ।
ଖଣ୍ଡିତ ହୋଇ ମଣ୍ଡିତ ଗଜମୁଣ୍ଡ ମୁହିଁ ଏହା ଭାବ ତାଙ୍କ ମତେ ହେ ।୧୧।
ବୀରଶ୍ରେଷ୍ଠ ମହାବଳବାନ । ୧ଅଧ ହେବାରେ ଅଧୋଭୁବନ ।
ସ୍ଥାନ କରି ଦେଲେ ବଳୀକି ବାମନ ସେହା ଲୁଚି ସେ ନେଉଛନ୍ତି ଧନ ହେ ।୧୨।
ଭାନୁ ଲଙ୍ଘିବା କି ନ ଲଙ୍ଘିବା । ତେଜ ସମେ କାହାକୁ ଗଣିବା ।
ଉଦେ ଅସ୍ତ ଅଛି ଦର୍ଶନେ ମୋହୁଛି ଯେବେ ୨ପଦ୍ମିନୀ ଅନୁସରିବା ହେ ।୧୩।
ଦାତାଗୁଣ ମାଳତୀ ବିକାଶ । ୧ସଉରଭ ଦିଗନ୍ତେ ପ୍ରକାଶ ।
୨ମାର୍ଗଣ ଭ୍ରମରଗଣ ଅନୁଗତେ ଦାନ ମଧୁରେ ଲଭନ୍ତି ତୋଷ ହେ ।୧୪।
କୀର୍ତ୍ତି-ସ୍ୱାତୀଜଳ-ପବନରେ । ୧ମୁକ୍ତା ଜନ୍ମଇ ଶ୍ରୁତି ଶୁକ୍ତିରେ ।
ବାଣୀ ଯେ ତୁମ୍ଭ ବାଣିଜ୍ୟ ବ୍ୟାଜରେ କେ ଅଛି ନ ରସେ ଜଗତରେ ହେ ।୧୫।
ଯେଉଁ ମୋହନ ୧ପାଶରେ ପଡ଼ି । କେବେ ମନ ଥିବ ବନ୍ଦୀ ହୋଇ ।
କି ଭାଗ୍ୟବନ୍ତ ମନାଇ ତବ ଶର ଯେହୁ ୨ଉଦନ୍ତ ବଦଳ ଲେଖାଇ ହେ ।୧୬।

---

୧୧—ହେ ସୁନ୍ଦର ! ଆପଣ ମହା ମହା ପଣ୍ଡିତ ଅଟନ୍ତି । ଏ ପଣ୍ଡିତ ପଣରେ ଗଣେଶଙ୍କୁ ଉପର ଗଣମା । ସେ ଗଣେଶ ପଣ୍ଡିତପଣରେ ଖଣ୍ଡିତ ହେବାରୁ ହାତୀମୁଣ୍ଡରେ ମଣ୍ଡିତ ହୋଇଅଛନ୍ତି । ମୁଁ ତାଙ୍କ ପକ୍ଷରେ ଏହା ଭାବେ ।

୧୨—ହେ ସୁନ୍ଦର ! ଆପଣ ବୀରଶ୍ରେଷ୍ଠ ମହା ବଳବାନ୍ ଅଟନ୍ତି । ଆପଣଙ୍କଠାରୁ ହାରି ପରିଶ୍ରମରେ ନଷ୍ଟ ହେବାରୁ ବଳିକୁ ପ୍ରଭୁବାମନ ଅଧୋଭୁବନ ପାତାଳସ୍ଥାନ ଦେଉଥିଲେ । ସେ ସେଠାରେ ଲୁଚି ଧନ ରଖିଅଛି । ୧ ଅଧ, ନଷ୍ଟ । ୨ ଅଧୋଭୁବନ, ପାତାଳ ।

୧୩—ହେ ସୁନ୍ଦର ! ଆପଣଙ୍କ ତେଜସମାନରେ କାହାକୁ ଲକ୍ଷ୍ୟ କରିବା, କିନ୍ତୁ ସୂର୍ଯ୍ୟଙ୍କୁ ଲକ୍ଷ କରିବା କି ନାହିଁ ସନ୍ଦେହ ହେଉଅଛି । କାରଣ, ତାଙ୍କର ଉଦୟ ଓ ଅସ୍ତ ଅଛି ଆପଣଙ୍କର ତାହା ନାହିଁ । ସେ ଆପଣଙ୍କଠାରୁ ପଦ୍ମିନୀ ଦେଖା ଦେବା ହେତୁ ଯାହା ମୋହିତ କରୁଅଛି । ତାହା ପଦ୍ମିନୀର ଅନୁସରିବା ଯେମନ ହେଉଅଛି । ୧ ଭାନୁ, ସୂର୍ଯ୍ୟ । ୨ ପଦ୍ମିନୀ, ପଦ୍ମଲତା ଓ ପଦ୍ମିନୀ ଜାତୀୟା ସ୍ତ୍ରୀ ।

୧୪—ହେ ସୁନ୍ଦର ! ଆପଣଙ୍କ ଦାତାପଣ ରୂପକ ମାଳତୀଫୁଲ ବିକାଶ ହେବାରୁ ତାର କୀର୍ତ୍ତି ସୁଗନ୍ଧ ଦିଗନ୍ତରେ ପ୍ରକାଶ ପାଉଅଛି । ମାଗୁଣିଆମାନେ ଭ୍ରମରମାନଙ୍କପରି ଅନୁଗତ ହୋଇ ଦାନରୂପ ମଧୁପାନେ ସନ୍ତୁଷ୍ଟ ହେଉଅଛନ୍ତି । ୧ ସୌରଭ, କୀର୍ତ୍ତି ଓ ସୁଗନ୍ଧ । ୨ ମାର୍ଗଣ, ମାଗୁଣିଆ ।

୧୫—ହେ ସୁନ୍ଦର ! ଆପଣଙ୍କ କୀର୍ତ୍ତିରୂପକ ସ୍ୱାତୀଜଳ ପବନରେ ଶୁଣିବାରୂପକ ଶାମୁକାରେ ସୁନ୍ଦରୀ ମୁକ୍ତା (ମୋକ୍ଷ ପ୍ରାପ୍ତ) ହୋଇଅଛି । ସ୍ୱାତୀଜଳରେ ଶାମୁକାରେ ମୁକ୍ତା ଜନ୍ମିଲାପରି ଆପଣଙ୍କ କୀର୍ତ୍ତିରେ ଶୁଣିବାରେ ସୁନ୍ଦରୀ ମୁକ୍ତା ହୋଇଅଛି । ଆପଣଙ୍କ ବାଣିଜ୍ୟଛଡ଼ା ସେ ମୁକ୍ତା ସୁନ୍ଦରୀ ଅନ୍ୟର ସେ କଦାପି ହେବେ ନାହିଁ । ଏ ବାଣୀ ହେଉଅଛି (ଅର୍ଥାତ୍) ଏହା କହୁଅଛି । ୧ ମୁକ୍ତା ମୋତି ଓ ମୋକ୍ଷପ୍ରାପ୍ତ । ୨ଶ୍ରୁତ ଶୁକ୍ତି, ଶୁଣିବା ଶାମୁକା ।

୧୬—ଅହେ ମୋହନ ! ଯେଉଁ ସୁନ୍ଦରୀର ମନ ଯାଇ ତୁମ୍ଭ ପାଶରେ କେତେ କାଳ ବନ୍ଦୀ ହୋଇଥିବ । ସେ ସୁନ୍ଦରୀ ଆପଣଙ୍କ ମନମନାଇ ବାର୍ତ୍ତା ଦେଇ 'ଲେଖାଇବ, ସେ କେଡ଼େ ଭାଗ୍ୟବନ୍ତ । ୧ପାଶ ଓ ପାଶ । ୨ ଉଦନ୍ତ ବାର୍ତ୍ତା ।

ହେଉ ପୀରତି କି ବଳାତ୍କାର । ଯେ ଲଭିଲା ନସ ପ୍ରେମପତ୍ରର ।
ତାହା ହାନି ଲାଭ କାହାର ହୋଇବ ବିବେକରେ କରିବ ବିଚାର ହେ ।୧୭।
ଭେଟେ ପ୍ରେଷିତ ଯେ ନେତ୍ର-ଦୂତୀ । ସଙ୍ଗେ ଲଭିଲା ସୁଖସମ୍ପତ୍ତି ।
ଉଜାଗର ରଙ୍ଗୁ ଜାଣି ତାପ ୧ଭୁଙ୍ଗୁ ଅଙ୍ଗୀକାର ପ୍ରଧାନ ଯୁବତୀ ହେ । ୧୮ ।
୧ତାରକର ପକ୍ଷପାତ ପାଇଁ । କୂଳେ ଭେଲା ପୁଣି ବସିଯାଇ ।
ଏଥୁଁ ଚମତ୍କାର ଅଛି କି ବିସ୍ମୟ ଏବେ କିରୂପେ ହୋଇବ ୨ତ୍ରାହି ହେ ।୧୯।
କୃପା-କଳ୍ପଦ୍ରୁମ ଯେ ବୋଲାଇ । ଅଗୋଚର ଫଳକୁ ନ ଦେଇ ।
ଆଶାକଲା ଜନ କର୍ମ ଆଦରିଲେ ଏଥୁଁ ଆସିବ କେଉଁ ବଡ଼ାଇ ହେ । ୨୦ ।
କରୁଣାର ସିନ୍ଧୁ କର ହୋଇ । ଯେତ୍ର କଳା-୧ରଙ୍ଗ ରତ୍ନଦାୟୀ ।
କେବଳ ମନ୍ଥିଲା ଜନ ଜରଜର କେବେ ତୃଷ୍ଣା-ତୃଷା ନ ଛୁଟଇ ହେ । ୨୧ ।
କରି ୧ତରଳ ସୁଶ୍ରୁତ ଭାବ । ନାନା ୨ରସ ସନ୍ଦର୍ଭର ଠାବ ।
୩ଅଭିଷକ ବ୍ୟାଧି ପ୍ରଦାନ ବିନାରେ ଅନୁଗତର କି ବିନାଶିବ ହେ । ୨୨ ।

---

୧୭—ପ୍ରୀତି ହେଉ କି ବଳାତ୍କାର ହେଉ । ଆପଣଙ୍କ ପ୍ରେମପତ୍ର ଯେ ସୁନ୍ଦରୀ ପାଇଲା, ତା ହାନି ଓ ଲାଭ କାହାର ହେବ । ଏହା ସ୍ୱୟଂ ବିବେଚନା କରି ଦେଖିବ ।

୧୮—ଭେଟବେଳେ ଯେଉଁ ନେତ୍ରରୂପକ ଦୂତୀକି ପଠାଇଥିଲ । ସେ ଆପଣଙ୍କ ସଙ୍ଗେ ସୁଖସମ୍ପତ୍ତି ଭୋଗକଲା ସେ କେବଳ ଉଜାଗର ରଙ୍ଗରୁ ଏହା ଜାଣିଲୁ । ଆପଣଙ୍କର ତାପ ଅଧିକାଂଶ ତାକୁ ପ୍ରଧାନ ଯୁବତୀରୂପେ ଅଙ୍ଗୀକାର କଲ । ୧ ଭୁଙ୍ଗୁ, ଅଧିକାଂଶ ।

୧୯—ପାରିକରିବା ଲୋକର ପକ୍ଷପାତପାଇଁ ମୁଁ ଭେଲାପୁଣି କୂଳରେ ବସି ଯାଇଅଛି । ଏହାଠାରୁ ଅଧିକ ଚମତ୍କାର କ'ଣଅଛି ବିସ୍ମୟକର । ଏବେ କିପରି ରକ୍ଷା ହେବ । ୧ ତାରକ, ପାରିକରିବା ଲୋକ । ୨ ତ୍ରାହି, ରକ୍ଷା ।

୨୦—କୃପା କଳ୍ପବୃକ୍ଷହୋଇ ଫଳକୁ ନ ଦେବା ଅଗୋଚର କଥା ଯଦି ଆଶାକଲା ଲୋକ କର୍ମକୁ ଆଦର କରେ, ତେବେ ଏହାଦ୍ୱାରା କି ବଡ଼ାଇ ହେବ ।

୨୧—ଯେ ଆପଣ ଦୟାର ସମୁଦ୍ରହୋଇ କଳାରୂପ ନାନା ରଙ୍ଗ ରତ୍ନ ଦାନ କରନ୍ତି ସେ ଆପଣ ତାହା କରୁନାହାନ୍ତି । ଅର୍ଥାତ୍ କାମକଳା କୌତୁକଦାନ କରୁନାହାନ୍ତି । ଆପଣଙ୍କଠାରୁ ମନ୍ଥିବା ଲୋକ କେବଳ ଭୟରେ ଜର୍ଜର ହେଉଅଛି । ତୃଷ୍ଣାରୂପ ତୃଷା କେବେ ଛୁଟୁ ନାହିଁ । ୧କଳାରଙ୍ଗ ରତ୍ନ-ଦାୟୀ, ନାନା ବର୍ଣ୍ଣ ରତ୍ନଦାତା ଓ କାମକଳା-କୌତୁକ-ପ୍ରଦ ।

୨୨—ଆପଣ ସ୍ୱଭାବ ଉତ୍ତମରୂପେ ଶୁଦ୍ଧ ହୋଇ ଭାବ କରିଅଛ ! ନାନାପ୍ରକାର ଶୃଙ୍ଗାର ରସ ସନ୍ଦର୍ଭର ସ୍ଥାନ ହୋଇଅଛ । ଅତଏବ ତରଳ ଓ ସୁଶ୍ରୁତ ଭାବ କରି ନାନାପ୍ରକାର ରସାତ୍ମକ ସନ୍ଦର୍ଭର ଠାବ ହୋଇଅଛ ତେବେ ରସଔଷଧ ପ୍ରଦାନ ବିନା ଅନୁଗତ ଲୋକର ବୈଦ୍ୟ ଅଜ୍ଞ ବ୍ୟାଧିକି ନାଶକରି ପାରିବକି ? । ୧ତରଳ ସୁଶ୍ରୁତ, ସୁନ୍ଦର ଶ୍ରୁତ, ତରଳ ସୁଶ୍ରୁତ ଗ୍ରନ୍ଥ । ୨ରସାତ୍ମକ ଓ ଶୃଙ୍ଗାର । ୩ଅଭିଷକ, ଅଜ୍ଞ ବୈଦ୍ୟ ।

ଯେ ବଜ୍ରାଙ୍ଗ ତ୍ରିପୁରବିଜୟୀ । ପୁଷ୍ପକାଣ୍ଡରେ ୧ଅତନୁ ତହିଁ ।
କି ଭେଦ କରିବ, ଅବଳା କୋମଳା ଗାତ୍ରେ ଅବଲମ୍ବେ ଗଳିଯାଇ ହେ ।୨୩।
ପ୍ରାଣ ୧ତ୍ରାଣ ହୋଇଛି କେବଳ । ମର୍ମସ୍ଥାନ ଯେ ହୃଦୟସ୍ଥଳ ।
ଆହେ ମୋହନ ତାହା ତୁମ୍ଭ ନିବାସ କରୁଅଛି କେଉଁ ଭାଗ୍ୟବଳ ହେ ।୨୪।
ତେବେ ୧କଦର୍ଥିତ ସିନା ଅଛି । କରତରେ କାଟି ହେବା ସ୍ଥିତି ।
ପ୍ରଭୁ କଣ୍ଠାରେ ପରେ ପଲ୍ଲବ ପାଇବାର କାର୍ଯ୍ୟକୁ ଅଙ୍କୁରି ହେ ।୨୫।
ପ୍ରୀତି ହୋଇ ଯେ ୧ନିଷ୍ଠା ସେ ଜଳ । ଜଳୁଁ ଜନମ ସିନା ଅନଳ ।
ଜଣାଏ ପରଶ ବିନା ଦରଶନେ କେବେ କରି ନ ପାରେ ଶୀତଳ ହେ ।୨୬।
ଏଣୁ ବିରହ ଅନଳ ସରି । ଯୁବା ଯୁବତୀ ୧ଗିରି ବଲ୍ଲରୀ ।
ତାହିଁରେ ସଞ୍ଚରି ତାହା ଭସ୍ମ କରି ନଷ୍ଟେ କୀଚକ ସମସ୍ତେ ମାରି ହେ ।୨୭।
ଯାହା ୧ସୁନୀତ ୨ସୁନୀତିସୁତ । ଧ୍ରୁବ ପର୍ଯ୍ୟନ୍ତେ ନିତି ବ୍ୟାପିତ ।
୩ସିଦ୍ଧି କଲି ଜନ ସିଦ୍ଧିକ କରିବ ତାଙ୍କୁ ବିନୟ କରି ରଚିତ ହେ ।୨୮।
ଏକେ କ୍ଷମାନିଧି ଦ୍ୱିକେ ଗୁଣୀ । ପୁଣି ରସିକ ମୁକୁଟମଣି ।
ଲେଶ କଥାକୁ ବିଶେଷରେ ଘେନିଲେ ବ୍ୟର୍ଥ ନୋହିବ ବାଳିଶ ବାଣୀ ହେ ।୨୯।

---

୨୩—ଯେ ଆପଣ ବଜ୍ରଶରୀର ଓ ତ୍ରିପୁରବିଜୟୀ ଶିବ, ସେହି ଆପଣଙ୍କଠାରେ ଦେହ-ହୀନ କନ୍ଦର୍ପ ଫୁଲ କାଣ୍ଡରେ ଭେଦ କରିପାରିବ କି ? ଅର୍ଥାତ୍ ପାରିବ ନାହିଁ । କିନ୍ତୁ କୋମଳାଙ୍ଗୀ ଅବଳା ସୁନ୍ଦରୀ ଦେହରେ ଅବଲମ୍ବରେ ଗଳି ଯାଉଅଛି । ୧ଅତନୁ; ଦେହଶୂନ୍ୟ; କନ୍ଦର୍ପ ।

୨୪—ଅହେ ମୋହନ ! କେବଳ ପ୍ରାଣରକ୍ଷା ହୋଇଅଛି । ଯେହେତୁ ଯେଉଁ ହୃଦୟ ମର୍ମସ୍ଥାନ ଅଟେ, ତାହାକୁ କେଉଁ ଭାଗ୍ୟବଳେ ଆପଣଙ୍କଠାରେ ନିବାସ କରୁଅଛି । ଅତଏବ ପ୍ରାଣ ଅଛି । ତ୍ରାଣ, ରକ୍ଷା ।

୨୫—ତେବେ କେବଳ ଅତିଶୟ ପୀଡ଼ିତ ହେଉଅଛି ସିନା । କରତରେ କାଟିହେବା ସ୍ଥିତି ହୋଇଅଛି । ଏପରି ପ୍ରଭୁ କଣ୍ଠାରେ ଯେବେ ପରିହାର ପଲ୍ଲବ ପାଇବାକୁ ହୁଏ, ତେବେ ତାହାର ଅଙ୍କୁରି ହେବ । କଦର୍ଥିତ, ପୀଡ଼ିତ ।

୨୬—ପ୍ରୀତିହୋଇଯାହା ଅଛି, ତାହା ନିଷ୍ଠାରୂପ ଜଳ ଅଟେ, ଜଳରୁ ଅଗ୍ନି ଜାତହୁଏ, ଏହା ଜଣାଅଛି । ପ୍ରୀତିରୂପଜଳରୁ ବିରହ ଅଗ୍ନି ଜାତହୁଏ । କିନ୍ତୁ ସ୍ପର୍ଶବ୍ୟତୀତ କେବଳ ଦର୍ଶନଦ୍ୱାରା ସେ ପ୍ରୀତିଜଳ କେବେ ଶୀତଳ କରିପାରେ ନାହିଁ । ୧ନିଷ୍ଠା, ଚେଷ୍ଟା ।

୨୭—ଏହି ପ୍ରୀତିରୁ ଜନ୍ମିଥିବାରୁ ବିରହ ଅଗ୍ନିପରି, ଯୁବା ପର୍ବତପରି, ଏବଂ ଯୁବତୀ ଲତାପରି, ସେ ବିରହାଗ୍ନି ତାହିଁରେ (ପର୍ବତରେ) ସଞ୍ଚାର କରେ ଏବଂ ତାହାକୁ (ଲତାକୁ) ଭସ୍ମକରେ । ଅତଏବ ଜଣାଯାଏ । ଏ ଜଗତରେ ସମସ୍ତେ ସ୍ନେହୀଲୋକଙ୍କୁ ମାରନ୍ତି । ୧ ଗିରି, ପର୍ବତ । ବଲ୍ଲରୀ, ଲତା ।

୨୮—ଯେ ଆପଣଙ୍କ ଉତ୍ତମ ନୀତି ଧ୍ରୁବଲୋକ ପର୍ଯ୍ୟନ୍ତ ନିତି ବ୍ୟାପୁଅଛି । ଏପରି ନିଷ୍ଠା କରିଥିବା ଲୋକ ଅବଶ୍ୟ କାର୍ଯ୍ୟ ସିଦ୍ଧି କରିପାରିବ । ଏଣୁ ତାଙ୍କୁ ବିନୟ କରୁଅଛି । ୧ ସୁନୀତ, ଉତ୍ତମ ବ୍ୟବହାର । ୨ସୁନୀତିସୁତ, ଧ୍ରୁବ । ୩ସିଦ୍ଧି, ଦୃଢ଼ତା ଓ କାର୍ଯ୍ୟସିଦ୍ଧି ।

୨୯—ଆପଣ ଏକେ କ୍ଷମାନିଧି, ଦ୍ୱିତୀୟେ ଗୁଣବାନ୍ । ପୁଣି ରସିକଶ୍ରେଷ୍ଠ । ଆମ୍ଭର ଏ ଅଳ୍ପ କଥାକୁ ବିଶେଷରୂପେ ଗ୍ରହଣ କଲେ, ଏ ମୂର୍ଖକଥା ବ୍ୟର୍ଥ ହେବନାହିଁ । ୧ବାଳିଶ, ମୂର୍ଖ ।

ହେଉ ପଡ଼ି ଉଦକ୍-ଉତ୍ତର । ସ୍ରବ ନେଣ ସେ ନାଗରବର ।
ମିଳସ୍ୟୁଗଳଙ୍କୁ କହେ ଏ ୧କବଚ ହେଲା ମଧୁର ଭ୍ରମନ୍ଧର ହେ । ସୁପାଣ ।୩୦।
ଶୁଣେ ସଖୀବଚନ ପ୍ରକାର । ପ୍ରତେ ହୋଏ ଏ ରସିକାଗିର ।
ପଦକେ ପଦକ ନେହ୍ଧ ସ୍ଥାନ ହେବ ହୃଦ ଗୋହ୍ନାଏ ଯିନା ମୋହୋର ।୩୧।
ଏହି କାଳେ ଚକୀକୃତ ଚାପ । କରି ପଞ୍ଚେଶୁ ପ୍ରହାରେ ଚୋପ ।
ଦେଖୁଁ ଦେଖୁଁ ଜାତଥାନ୍ତି କବକାର ଦୁଃଖସୁଖ ନୋହିଲା ସଂକ୍ଷେପ ହେ । କୋଣଦେ ।।
ଯାହାରେ କୋପ ମକରକେତନ । ତାର ରକ୍ଷା ହେବ କାହିଁ ସ୍ଥାନ ।
ହରିତ-ଅମ୍ବର ସେହି ନୀଳକଣ୍ଠ ନୃପନନ୍ଦନ କରଇ ଧ୍ୟାନ ହେ । କୋଣଦେ ।୩୩।



## ପଞ୍ଚବିଂଶ ଛାନ୍ଦ ।

ରାଗ ଚନ୍ଦ୍ରାଦେଶାକ୍ଷ, କାଫିକାମୋଦୀ, ମାଳବଗଉଡ଼ ।

ଆସାର ସଘନ କାଳ ହୋଇ ଉଦୟ । ଅଶିତ ପରବଳରୁ ଦରଶମୟ ।୧।
ସ୍ତନତହିଁ ସ୍ଫୁଟ କାଳକଣ୍ଠ ସରୁତ । ଅତରପ୍ରଗ୍ଧ ହିଁ ତାରୁ ଦଶେ ଦଶେତ ।୨।

*୩୦—ସେ ନାଗଶ୍ରେଷ୍ଠ ରାଜକୁମାର ସେ ଉତ୍ତମ ଉତ୍ତରପଟ ପଡ଼ି ହୃଦୟରେ ଅଶ୍ରୁ ପ୍ରେମାଶ୍ରୁ ତତକୁ ମିନ ଦୁହିଙ୍କ କହୁଅ । ହେ ସୁପାନ ମଧୁର ଭ୍ରମମାନଙ୍କର ସ୍ଥାନ ଏ ଉତ୍ତରପଟ ମୋର ସାକ୍ଷୁ ହେଲା । ୧ କବଚ, ସାଞ୍ଜୁ ।

*୩୧—ଅହେ ସୁପାନ ! ଏ ରସିକାମୋମାର ବଚନପଦ ପ୍ରତାଚ୍ଛୁଏ । ସଖୀବଚନପଦ ଶୁଣୁଅଛ ଏହାର ଗୋଡ଼ୁଏ ପଦରେ ଗୋଟିଏ ପଦର ଅଳଙ୍କାର ହୋଇଅଛି । ମୋ ହୃଦୟ ଗୋଡ଼ୁଏ ଯିନା, ତହିଁରେ ତପର ସ୍ଥାନ ହେବ ।

*୩୨—ଅହେ ଖୋଦମାନେ ! ଏ କାଳରେ କନ୍ଦର୍ପ ଧନୁକୁ ଟାଣି ଶାଣିବା ଭାବ ଚକ୍ଷାକାର ଗୋଳ କରି ବାଣମାନ ପ୍ରହାରକଲା । ଦେଖୁଁ ଦେଖୁଁ ସାତ୍ତ୍ୱିକ ବିକାରମାନ ଜାତହେଲା । ଦୁଃଖ ଓ ସୁଖ ସଂକ୍ଷିପ୍ତ ହେଲାନାହିଁ । ୧ ପଞ୍ଚେଶୁ, କନ୍ଦର୍ପ । ୨ ଚୋପ, ବାଣ ।

*୩୩—ଅହେ ପଣ୍ଡିତମାନେ ! କନ୍ଦର୍ପ ଯାହାଠାରେ କ୍ରୋଧ କରୁଛି, ତାର ରକ୍ଷାହେବାକୁ ସ୍ଥାନ କାହିଁ । ନୀଳକଣ୍ଠଙ୍କର ପୁତ୍ର ଉପେନ୍ଦ୍ରଭଞ୍ଜ ପୀତାମ୍ବର ସମଚନ୍ଦ୍ରଙ୍କୁ ଧ୍ୟାନ କରୁଅଛନ୍ତି । ୧ମକରକେତନ, କନ୍ଦର୍ପ ।



### ପଞ୍ଚବିଂଶ ଛାନ୍ଦ ।

ପ୍ରଥମ ରାଗ ଚନ୍ଦ୍ରାଦେଶାକ୍ଷ, ବର୍ଷାକାଳ ଅର୍ଥ, ପ୍ରତ୍ୟେକ ପାଦରୁ ଗୋଟିଏଗୋଟିଏ ଅକ୍ଷର କାଟିଦେଲେ ଦ୍ୱିତୀୟ ରାଗ କାଫି କାମୋଦୀ, ଶୀତକାଳ ଅର୍ଥ, ପୁଣି ଏକ ଏକ ଅକ୍ଷର କାଟିଦେଲେ ତୃତୀୟ ରାଗ ମାଳବଗଉଡ଼, ଗ୍ରୀଷ୍ମକାଳ ଅର୍ଥ ।

୧-୨—ଅସାର ( ଧାରବୃଷ୍ଟି ) ହାସ ସଘନ ( ନବୀନ ) କାଳ (ବର୍ଷା ସମୟ ) ଉଦୟହୋଇ ଅଶିତ ( କୃଷ୍ଣବର୍ଣ୍ଣ ) ପ୍ରବଳହେବାରୁ ଦରଶମୟ ( ଦର୍ଶ—ଅମାବାସ୍ୟାପରି ଅନ୍ଧକାରମୟ ) ହେଲା । ସ୍ତନତ ମେଘ ଗର୍ଜନହିଁ ( ନଭେ ) ସ୍ଫୁଟ ପ୍ରକାଶ ହେଲା । କାଳକଣ୍ଠ ( ମୟୂର ) ମାନେ ଧ୍ୱନିତ

କେକାର ସଙ୍ଗୀତରେ କାମୁକ ଉଲ୍ଲାସ । ଧରମଣି ଅଚ୍ଛାଦନେ ଘନ ବିଳାସ ।୩।
ଜପବନ ସୁଖ ଦାନକର ରଭସେ । ସ୍ତୋକରଃ ମସୃଣ ଯେ ଝିଲ୍ଲିକା ବସେ ।୪।
ସେ ଅବ୍ଦ ମକର ହର ଶର ମୋହିଲ । ନଦୀ ବଣ ସଲିଳେ ଅଧିକ ହୋଇଲ ॥
ଗାଢ଼ ରଚିତ କାମରେ ବିୟୋଗୀ ଶଙ୍କେ । ଯେନ ହାରବର ସେ ଯେ ଆସିବିଷକେ ॥
ଖାରତରୁ ସୁରୁ ଫୁଲସରେ ମଣ୍ଡନ । ଦମ୍ପତି ରସକାରକ ବିଦେଶୀ ଛନ୍ନ ।୭।
ଅଶନପାତ ପଣ୍ଡସେ ଏକା ଗୋଧରେ । ସୁମଂଶପାତ୍ତ ପାନ୍ଥ ସ୍ତ୍ରୀରୁ ବର୍ଗ୍ଗରେ ।୮।

---

( ଉଦ୍ଧତ ) ହେଲେ । ଦଣେ ( ସମାନଙ୍କର ) ଅତଉଦ୍ଧ (ଟହ୍ଲୁକୀ) ଭାଅ ( ଉତ୍ପଳ ) ଦଣେ, ବଖିଲେ । ଖାରସରନ ( ଶରଦ୍ = ପଦ୍ମନାଶକ ) ଉଦ୍‌ଦ୍ରୋଣ ଶୀତ ଦୁର୍ବଳ ହେବାରୁ କାକଉପଣ୍ଡ ପର (ଶଙ୍ଖ) ପ୍ରାପ୍ତ ଶୁଭ୍ର ସମ୍ବନ୍ଧହେଲା । ନଭଂ ( ଉଗରପାଦ ସୃଷ୍ଟ ) ଛ୍ରଂ ( ପକ୍ଷୀ ) କଳକଣ୍ଠ ( ଶୁକ ) ମାନେ ସବୁତ (ଧ୍ୱନ୍ଧଲ୍ଧ) ହେଲେ । ଭାର (ଲକ୍ଷନ)ମାନେ ଉଡ଼ପ୍ରସ୍ଥରେ ଦ୍ରମାନଙ୍କରେ ଦଶିଲେ । ଉସନ୍ତ ( କନକାଶକ ) କାଳ ଉଦ୍‌ଦ୍ରୋଣ ତପନ (ଗ୍ରୀଷ୍ମର) କଳରୁ ତର ( ଉଷ୍ମ )ର ସମ୍ବ ହେଲ ତହୁଁ ସବୁତ ( ହଣଦ ) କଳକଣ୍ଠ ( କୋକିଳ ) ମାନେ ଛୁଃ ପ୍ରକାଶିତ ହେଲେ । ଦଗମାନଙ୍କରେ ର-ପ୍ରଭୁ (ଅଳ୍ପ ପ୍ରଭା) ଉଚ୍ଚନଦିଲେ । ଦଡଭାଗ୍ୟ ଦେଖାଗଲା ।

୩-୪ — କାମୁକମାନେ କେକାର ( ମୟୂରର ) ସଙ୍ଗୀତରେ ଉଲ୍ଲାସ ହେଲେ ଘନ ( ମେଘ ) ଧରମଣି ପର୍ବତ ଶ୍ରେଷ୍ଠମାନମାନଙ୍କୁ ଅଚ୍ଛାଦନ କରି ବିଳାସ କଲା । ଜପବନ (କଦମ୍ବବନ) ପୁଷ୍ପରସେ ( ଶୀଘ୍ର ) ସୁଖଦାନକାରକ ହେଲା । ସ୍ତୋକରଃ ( ଗୁଞ୍ଜକଧ୍ୱନି ) ମସୃଣ ( ମଧୁର ) ହେଲା । ଝିଲ୍ଲିକା [ଖଦ୍ୟୋତ]ମାନେ ଗଛମାନଙ୍କରେ ବସିଲେ । କାମୁକମାନେ ଖାର [ଶୁକ] ମାନଙ୍କ ସଙ୍ଗୀତରେ ଉଲ୍ଲାସହେଲେ । ଉଷିକମାନେ ଉମଣୀ ଅଚ୍ଛାଦନେ ସ୍ତ୍ରୀମାନଙ୍କୁ ଘୋଡ଼ାଇ [ ଘନ ] ନବଭାବରେ ବିଳାସକଲେ । ପବନରଭସେ [ ବେଗରେ ] ସୁଖର [ ଦାନକର ] ସମ୍ପାଦକାରକ ହେଲା । ସ୍ତୋକରଃ [କାକ ମାନେ ଝିଲ୍ଲିକାଦଂଶ କାରକବେଶରୁ ମସୃଣ ଦେଖାଇଲେ । କାମୁକମାନେ ରସଗୀତରେ ଉଲ୍ଲାସହେଲେ । ଘନ [ ସାନ୍ଦ୍ର ] ମଣି ଅଚ୍ଛାଦନେ ଭବ୍ୟମାନ ଧାରଣକରି ବିଳାସ କଲେ ବନସ୍ତ୍ରୀଗତାନନ୍ଦ ହେଲ ରଭସେ [ଦୂର୍ଷତ୍ର ବଦ୍ଧାରକଦ୍ଧବାରର ] ଝିଲ୍ଲିକାବଂଶ [ ଝିଲ୍ଲିକାସ୍ତ୍ରୀ-ମାନଙ୍କପୋଲେ ] ରଃ ଧ୍ୱନି ମସୃଣ (ମଧୁର) ହେଲା ।

୫-୬ — ସେ ବର୍ଷାକାଳ ଅଦ୍ଭୁମକର ଓ ହର (ସର୍ପ, ମକର ଓ ବେଙ୍ଗ) ମାନଙ୍କର ଶର ମୋହିଲା । ନଦୀ ସଲିଳେ (ଜଳରେ) ବଣହୋଇ ଅଧିକ ହେଲା ବଢ଼ିଲା । ଗାଢ଼ ପକ୍ଷିବଣ ରଚିତ ହେଲା । ବିୟୋଗୀ ବରହୀମାନେ କାମରେ ଶଙ୍କିଲେ । ଯେ ବଷ ଜଳ ଅସି ବର୍ଷଇ ସେ ର (ଅଗ୍ନି) କି ? ଏହା ଯେନ ହାରକ ହାହାଧ୍ୱନି କଲେ । ଅଦ୍ଭୁମକର-ହର ସର୍ପ—କରଣ ରବି ମୋହିଲା । ନଦୀ ସଲିଳ କ୍ରୀଡ଼ାସହିତ ଲୋକମାନଙ୍କଙ୍କ ଅଧିକ ବୋଧହେଲା । କାମରେ ରଚିତର ଗାଢ଼ ବିୟୋଗୀ ବିରହୀମାନେ କହାଇ ହୃଦୟରୁ ତଷ ଅସି ଦେଖଇ କି ? ବୋଲି ଶଙ୍କିଲେ । ହୃମକର—ହର ତନ୍ତ୍ର—କରଣ ଧର ମୋହିଲା । ନଦୀ ସଲିଳ ଜଳରେ ଅଧିକ ବଣ ହେଲା । ବିୟୋଗିମାନେ କାମ ରଚିତ ପୀଡ଼ାରେ ହାର ବରଳୁ ମୁକ୍ତାମାଳା ଶ୍ରେଷ୍ଠର ଏ ଅଶୀବିଷ ସର୍ପ କି ? ବୋଲି ଶଙ୍କୁଅଛନ୍ତି ।

୭-୮ — ଖାରତରୁ (ଅଶ୍ବ ନିବୃକ୍ଷ) ସୁରୁ ଫୁଲ ସ୍ତବକ ଶରଦାର ମଣ୍ଡିତ ହେଲା । ଯେପରି ଖାର ଶରଦାର ଶୋଭିତ ହୋଇଥାଏ । ଦମ୍ପତି (ସ୍ତ୍ରୀପୁରୁଷଙ୍କର) ରସକାରକ ହେଲା । ବିଦେଶିମାନେ ଛନ୍ନ (ଗୁପ୍ତ) ହେଲେ । ଗୋଧରେ (ପର୍ବତମାନଙ୍କରେ) ଅଶନି ପାତ ପଣ୍ଡସେ ବଜ୍ରପାତ ବାଧା ଏକା ହେଲା ।

କାଶ ସୁରଭି ସୁମନା ପ୍ରକାଶ ହୋଇ । ମଧୁପରମ ସେଚକ ନିବାସ ତହିଁ ।୯।
ପଣାରଙ୍ଗ ସ୍ଥାନେ ସ୍ଥାନେ ହେଲେ ମଞ୍ଜୁଳ । ଦୁର୍ଦିନବରେ ଅବ ରତରେ ଚଞ୍ଚଳ ॥
ଘନଦୃଶରତକୁ ଝଟିତରେ ପ୍ରକାଶେ । ଧନାସାର ଭଦ୍ର ଶ୍ରୀଯୁକ୍ତଙ୍କ ପରଶେ ।୧୧।
ସୁଫକେତକୀ ଚହେ ଉତ୍ଫୁଲ ସୁଲକ୍ଷ । ବହୂ୍ୟପଦ୍ଧକାର ଯେ ଭ୍ରମରେ ମେଳନ ॥

---

ପାନ୍ଥ ( ପଥିକ ) ମାନେ ସ୍ତବ୍ଧ ( ସ୍ତବ୍ଧ ) ହୋଇ ସ୍ୱନ୍ତପା ( ଉତ୍ତମ ମନ୍ଦ ହାସ୍ୟଲକ୍ଷା ) କହୁଥ କରୁଥିଲେ । ଏକାଳ ରତକୁ ( ବୃଷ ଫର୍ଦ୍ଧେକ ହେତୁରୁ ) ଗୃହୁ (ମନୋହର) ଅଟେ । ଫୁଲନରେ ମଣ୍ଡନ (କାମଣର ମଣ୍ଡିତ) ଅର୍ଥାତ୍ କାମୁକପଠିମାନଙ୍କର ଉପକାରକ ଅଟେ । ସେ କାଳ ସନ୍ନ- ପାତ ଗେଶପରସ୍ପେ ବଦେଶିମାନଙ୍କୁ ଚୁମ୍ବକର । ପାନ୍ଥ ଏକା ହୋଇ ଗୋତ୍ରରେ (ପଥର ମାର୍ଗରେ) କରୁଥିଲେ ସ୍ତବ୍ଧ ( ସ୍ତ୍ରୀ ) ଏ ଦୁଃଖରେ ମନ୍ଦପାତ୍ରତ ( ମନ୍ଦପଦପାଟନେ ତୁର ) ଅଟେ । ତରୁ (ବୃକ୍ଷମାନେ) ଫୁଲ ଗୃହୁ (ମନୋହର) ଦେଖ ଉଲେ । ସବେ (ପୋଖରୀ ମାନେ) ମଧୁର ଫୁଲରେ ମଣ୍ଡିତ ହେଲେ । ସେକାଳରେ ବାଂପଶିମାନେ ନିଧାନ ( ମରଣ ) ହେବପଥ୍ୟ ଭବ ଛନ୍ଦୋହୁ କାଳର ଉତତ୍ୱାରକ ହେଲେ । ପାନ୍ଥସ୍ତବ୍ଧ (ପଥିକ ସ୍ତ୍ରୀ) କରୁଥିଲେ ଏକାନ୍ତରେ ଏକା ହୋଇ କରୁଥିଲ ଗୋଷ୍ଠରେ (ବୃନ୍ଦରେ) ଉତ୍ପାଦ ବୃଥା (ଲଜ୍ଜା) ହୁଅ ଅଟେ ।

୯—କାଶ-ସୁରଭି ସୁମନା ( କାଶିଣ-କଦମ୍ବ-ମାଳତୀ ) ଫୁଲମାନଙ୍କ ପ୍ରକାଶ ହେଲେ । ତହିଁରେ ପରମ ସେଚକ (ଅତଭ୍ରଚକର) ମଧୁନିବାସକଲ । ସୁରଭିର ( ସୁଗନ୍ଧଯୁକ୍ତ ) ସୁମନା ( କାଉପୁଷ୍ପ ) ପ୍ରକାଶ ହେଲ । ତହିଁ (ସେକାଳରେ) ନିବାସ (ଗୃହ) ସବୁ ଧୂପ ବାସ ସେଚକ (ରମଣୀୟ ଓ ତୃପ୍ତିକର) ହେଲା । ସୁରଭି ସୁମନା (ସୁଗନ୍ଧପୁଲ) ମାନ ପ୍ରକାଶିତ ହେଲା । ତହିଁ ( ଫୁଲଫୁଟିବା ଛାନରେ ) ନିବାସ ପରମ ସେଚକ ହେଲା ।

୧୦—ପଣାରଙ୍ଗ (ପଣାଶେଳ କୌତୁକ) ସ୍ଥାନେ ସ୍ଥାନେ ମଞ୍ଜୁଳ ହେଲ । ଦିନବରେ ( ଝଡମେଘାଚ୍ଛ- ନ୍ନଦବରେ ) ଅବ (ମେଷ) ରତରେ (ସୁରତରେ) ଚଞ୍ଚଳ ହେଲ । ସାରଙ୍ଗ ( ହଂସ ଓ ହରିଣ ) ମାନେ ସ୍ଥାନେ ମଞ୍ଜୁଳ ହେଲେ । ସାଜବରେ (ଅତପଦ୍ମମାନେ) ଅବରତରେ ( ସଦା ) ଚଞ୍ଚଳ ହେଲେ, ଅର୍ଥାତ୍ ଶୀତରେ କମ୍ପିଲେ । ରଙ୍ଗ ( ନୃତ୍ୟାଦ ) ସ୍ଥାନେ ମଞ୍ଜୁଳ ହେଲ । ନଗରେ ( ନଗର ମାନଙ୍କରେ ) ସେବେ ଅବର ସେଦବା ରଙ୍ଗ ( ଚତୁରେ ) ଚଞ୍ଚଳ ହେଲେ ।

୧୧—ସେକାଳ ଘନ ଦୃଶରତକୁ ( କୃଷ୍ଣପଅରକୁ ) ଝଟିତରେ (ଝଡ଼ଅବସ୍ଥାକୁ) ମଧ୍ୟ ପ୍ରକାଶ କଲା । ଧନା- ସାର (ଧନଶ୍ରେଷ୍ଠ) ମାନେ ଶ୍ରୀଯୁକ୍ତଙ୍କ (ସମ୍ପତ୍ତିଯୁକ୍ତ) ଥିବାରୁ ଭଦ (ମଙ୍ଗଳ) ସୁବାଦ ପରସ କଲେ । ଅନ୍ୟ ଅର୍ଥ । ଧନମାନେ ସାର (ଉତ୍କୃଷ୍ଟ) ଭଦ୍ର ମଙ୍ଗଳ କଲ । ଶ୍ରୀଯୁକ୍ତ (ସୁନ୍ଦର) ଜପ (ପଗଙ୍କ ବା ଛନ୍ଦ) କୁ ପରଶିଲେ । କ ( ଜଳ ଓ ମୃଣ୍ଡ ) ପାଳିବାର ଯେ (ସେ କୃପ ) ଝଟିତରେ ( ଲୁହୁଡ଼ର ଗତରେ ) ଦୃଶ୍ୟରେ ପ୍ରକାଶେ ଦୃଶ୍ୟବସ୍ତୁ ପ୍ରକାଶ ପାଇଲା ନାହିଁ ଶ୍ରୀଯୁକ୍ତ କ ( ସମ୍ପନ୍ନଶାଳୀ ) ଭଦ୍ର ଲୋକମାନେ ( ଜଣାର ) ରେଜେଇ ପରଶେ ବ୍ୟବହାର କଲେ ବୃଷତକୁ ( ଫଦତସ୍ୱପଥର- ମାନଙ୍କୁ ) ଅଗ୍ନି ଲାଗିବା ହାସ୍ୟ ଏକାଳ ଝଟିତରେ ପ୍ରକାଶ କଲା । ଲୋକମାନେ (ତନ୍ଦନଯୁକ୍ତ) କ (କର୍ପୂର) ପରଶେ (ବୋଧ) ହେଲେ ।

୧୨—ସୁଫକେତକୀ (ଫଯୋଗୀମାନେ) ଉତ୍ଫୁଲକ (ସେମାନ) କହିଲେ । ବହୂ୍ୟପଦ୍ଧକାର [କେସମାନେ] ଭ୍ରମରେ [ଦୂରବାହାର] ମେଳକ ( ମିଳିତହେଲେ ) ସ କେତକୀ [ ଅଭ୍ୟାସୀକାମୀଙ୍କେ ] ସେତ୍ତ ହୋଇ ଚହ୍ନ କ ଯିବେ ବୋଲି ଉତ୍ଫୁଲ୍ଲ ହୋଇ ସୁଲକ୍ଷ କହିଲେ । ଲୋକେ ବହୁସଦ୍ଧ କାର୍ଯ୍ୟେ ବୃଷ୍ଟ୍ୟ କାର୍ଯ୍ୟ ( ସବୁ ) ପଢ଼ାଇଲେ । ଭ୍ରମରେ ( ବକ୍ରମରେ ) ମେଳକ ମିଳିତହେଲେ । କେତକୀ ସୁଲକ୍ଷ ବହୁସମର ଉତ୍ଫୁଲ୍ଲ ହେଲ । ସହକାର ( ଅମ୍ବଗଛ ) ଦୃଷ୍ଟିତ ହେବାରୁ ଭ୍ରମର- ମାନଙ୍କରେ ମିଳିତ ହେଲେ ।

ଅଭସ୍ୱେ କାଳକଣ୍ଠକ ବଡ଼ିଲ ଅବସ୍ଥା । ବାମା ନଥିଲୀ ସେ କାନ୍ତେ ସୁମନ ବନ୍ଧା ॥
ଭେକୀ ରବ ସ୍ଫୁଟ ଘନେ ହରେ ସୁତନ୍ତ୍ର । ନକ୍ରଙ୍କ କେଳି ପ୍ରକଟ ହେଲା ବହୁତ ॥
ହରହରେ ଏ ସମସ୍ୱେ ତଳ୍ପା କାତର । ସୁକୁମାର ତନୁତାପ ଦବାନଳ ର ।୧୫
ଅକ ଜ୍ଞାନ ସ୍ଥାନ ଦଶା ଦେଖରେ ହୋଇ । ଘନ ରସେ କାନ୍ତାଲିଙ୍ଗନକୁ ଧ୍ୟାଇ ॥
ସଳାପିକା ମଞ୍ଜୁ କଳରବେ ନାଦାଇ । ଆପଦରେ ସ୍ଥିରଭଙ୍ଗ ପୁଲକ ବହି ।୧୬।

---

୧୩—କାଳକଣ୍ଠକ ( ଡାହୁକମାନେ ) ଅଭସ୍ୱେ ( ଗର୍ବରେ ) ବରସ୍ତ୍ରୀମାନଙ୍କୁ ଧ୍ୱନିଦ୍ୱାରା ଚଳନକଲେ । ନଥିଲୀ ବାମା (ପତ୍ନୀହୀନା ସ୍ତ୍ରୀ ) କାନ୍ତେ ( ସୁମନବନ୍ଧୁ ) ସମ୍ପୃକ୍ତ ହେଲେ । ଏକାଳେ ବାରହୁଁ ( ବାରମାନଙ୍କୁ ମୃଦା ) କଣ୍ଟକ ( ଶତ୍ରୁ ପର ) ଉପରେ ବଢ଼ିଲେ, ଅର୍ଥାତ୍ ଶୀତ ହେଲା । ମାନଅଳୀ ( ମାନଜନମାନେ ) କାନ୍ତଠାରେ ସୁମନକହିଲେ ( ପ୍ରସନ୍ନହୋଇଲେ ) ଶୀତରେ ଅଲଗା ହୋଇପାରଲେ ନାହିଁ । ସେକାଳେ କଣ୍ଟକ (କଣ୍ଟ କଡ଼ାକବା ) ବରସ୍ତ୍ରୀମାନଙ୍କୁ ଚଳନକଲା । କଥାଚଳତାମାନେ କାନ୍ତ (କମଳପ୍ରି) ସୁମନ (ପୁଷ୍ପ) ଧାରଣ କଲେ ।

୧୪—ଘନେ (ମେଘପୁଞ୍ଜ) ଭେକୀରବ ( ଭେକମାନଙ୍କ ସ୍ଫୁଟବୁଲି ଧ୍ୱନି ) ସ୍ଫୁଟ ( ପ୍ରକାଶହୋଇ ) ସ୍ୱତନ୍ତ୍ର ହରଣକଲେ । ନକ୍ରଙ୍କର କେଳି ( କ୍ରୀଡ଼ା ) ବହୁତ ପ୍ରକଟ ହେଲା । କେତକ ( କୁହୁଡ଼ିଫୁଲ ) ଘନତ୍ୱରେ ସ୍ଫୁଟ ( ଫୁଟିଲା ) ତାହା ସ୍ୱତନ୍ତ୍ରରେ ହର ( ମହାଦେବଙ୍କୁ ) ଦେଲେ । ନକ୍ରପକ୍ଷିମାନଙ୍କ କେଳି ବହୁତପ୍ରକଟ ହେଲା । ଗ୍ରୀଷ୍ମତାପରେ ଘନେ ( ମେଘପୁଞ୍ଜ ) ସ୍ଫୁଟ ( ପ୍ରକାଶମାନ ) ସ୍ୱତନ୍ତ୍ରହରଣ କରେ । ନ-କେଳି ( ଜଳ – କେଳି ) ବହୁତ ପ୍ରକଟ ହେଲା ।

୧୫—ଏ ସମୟରେ ସୁନ୍ଦରସୁନ୍ଦରୀ ଦୁହେଁ ଶରତରେ ତଳ୍ପାକାତରହେଲେ । ଦବାନଳ ସୁକୁମାରତନୁ କୋମଳଦେହ ତାପିତହେଲା । ଏ ସମୟେ ଶରତରେ ( ଏକାନ୍ତରେ ) କୁମାରତନ୍ତ୍ରା କାତର କୁମାର ଓ କୁମାରୀତଳ୍ପା କାତର କୁମାରଙ୍କର ଦବାନଳଟିତନୁ ତାପିତ ହେଲା । ଏ ସମୟରେ ଦୁହେଁ କାତର ହୋଇ ହରେ (ଶିବଙ୍କୁ ) ତଳ୍ପାକଲେ ମାର ( କନ୍ଦର୍ପ ) ଦବାନଳ ତାପିତକର ତନୁ କ୍ଷୟକଲା ।

୧୬—ନବାସରୁ ଘନରସେ ( ଜଳରେ ) ପୂର୍ଣ୍ଣହୋଇ କାନ୍ତ ( ପତିର – ସମୁଦ୍ରର ) ଆଲିଙ୍ଗନ କଲେ, ଅର୍ଥାତ୍ ଘରେ ପଡ଼ିଲ ଯେପରି ସ୍ତ୍ରୀ ନବଡ଼ବସରେ ପତିକୁ ଆଲିଙ୍ଗନକରେ । ଏହାଆଉ, ଏପରି ଦେଖିରେ ସ୍ଥାନ ଦଶାନନର ହୋଇଥିବାରୁ ଜ୍ଞାନ ଅକ ହେଲା, ଅର୍ଥାତ୍ ଦୁହିଙ୍କର ଭ୍ରମହେଲା । ଅଜ୍ଞାନ (ଜ୍ଞାନନଥିବାରୁ) ବ୍ୟବହାରରେ ସ୍ଥାନଦଣା ହେଲା । ଉଭୟ କାନ୍ତ ଓ କାନ୍ତା ଆଲିଙ୍ଗନକୁଧିଆଇ ଅନ୍ୟ ବିଷୟରେ ରହିଲେ ନାହିଁ । ଅନ୍ୟଦେଶରେ ଜ୍ଞାନ ସ୍ଥାନ ଦଶାହେଲା । ଉଭୟ କେବଳ କାନ୍ତ ( କମଳପ୍ରି ) ଆଲିଙ୍ଗନକୁ ଧ୍ୟାନ କରିବାରେ ରହିଲେ ।

୧୬—ସଳାପିକ ( ସ୍ୱରସଂଯୁକ୍ତ ) ହେବାରୁ ମଞ୍ଜୁ ( ମନୋହର ) କଳରବେ ( ପକ୍ଷିମାନଙ୍କର ମଧୁର ଧ୍ୱନିକୁ ) ନାଦା କଲେ । ଶରତ୍ ଆପଦରେ ସ୍ଥିରଭଙ୍ଗ ଓ ପୁଲକକୁ ବହିଲେ । ତାପିତ ( କାମତାପ ଯୁକ୍ତ ) ହେବାରୁ ମଞ୍ଜୁ କଳରବେ ପାଖମାନଙ୍କୁ ନାଦନ୍ତି । ଶୀତଯୋଗେ ପୁଲକ ବହିବାରୁ ଅର୍ଥାତ୍ ରୋମାଞ୍ଚହେବାରୁ ପରସ୍ପରପଦକ୍ଷେପଣ କରିବାରେ ସ୍ଥିରଭଙ୍ଗ ହେଲା । ପିକର ମଞ୍ଜୁ କଳରବକୁ ନାଦାକଲେ । ପରେ ଉପରେ ସ୍ଥିରଭଙ୍ଗ ଓ ପୁଲକ ବହିଲେ ।

ହେତୁସ୍ଥାନ ପିଷି କର ହେ କାଳକାନ୍ତ । ସ୍ୱପ୍ରାଣ ବଧିରେ ହୋଇବାକୁ ସହିତ ॥
ଦର୍ଦୁରତ ମଦନଜନ୍ମା କୁବୁଦ୍ଧିମନ୍ତ୍ରୀ । ସେହୁ ମକରକେତନ ମେଳ ଉନ୍ମତ୍ତ ।୧୯।
ଶିବ ଛଳବଚନ ଏ ପ୍ରକାରେ କହି । ପଥର ସମତରେ ସେ କଷଣ ସହି ।୨୦।
ଗଜଗତି ସୁରେଶେଶ୍ୱର ନାମ ଜପଇ । ମନୀଷା କରେ ଅରୁଣ ପ୍ରକାଶ ଯହିଁ ।୨୧।
ବଜନତ ଶୋକପୂର୍ଣ୍ଣ ଗୃହେ ଅଣାରେ । ସେବ ଶେଷରଞ୍ଜନ ହର ଜାହ୍ନ ସ୍ମରେ ॥

---

୧୮—ବଧିରେ ଯେବହେତୁକୁ ବର୍ଷାକାଳ ସ୍ୱପ୍ରାଣ ନାଶକରହବାଧା ସହିତ ହେବାକୁ ଅର୍ଥାତ୍ ବଡ଼ ଅବସ୍ଥାରେ ବର୍ଷାକାଳ ହେବାକୁ କହୁଲେ ହେ କାନ୍ତ ! ମନୋହର ତୁମ୍ଭେ କାଳ ଯମ ତ । ଯେହେତୁ ହେତୁସ୍ଥାନ କାଳକ୍ଷେତ୍ରକୁ ପିଷି କରୁଅଛ । ପ୍ରାଣ ପୀଡ଼ା ହେତୁରୁ ବଧିରେ ଅଧୀର ତାରେ ସହିତ ହେବାକୁ କହୁଲେ । ହେ କାଳ ତୁ କାନ୍ତ ସୁନ୍ଦରମାନଙ୍କୁ ସ୍ଥାନ କରିବାକୁ ଅର୍ଥାତ୍ ଅସ୍ଥିର କରିବାକୁ ନାନା ନାମକୁ ପିଷି କରୁଅଛୁ । ସ ପବନ ବଧିରେ ବଶେଷ ଧୀରତାରେ ସହିତ ହୋଇବାକୁ କହୁଲେ ହେ କାନ୍ତ ମନୋହର କାଳ ତୁମ୍ଭେ ସ୍ଥାନ ପିଷକୁ କାହିଁ କରୁଛ । ଅର୍ଥାତ୍ ବରସ୍ଥମାନଙ୍କୁ ପୀଡ଼ା ଦେଉଛ ।

୧୯—ଦର୍ଦୁର 'ବେଙ୍ଗ'ତ ମଦନଜନ୍ମା 'ଜଳଜାତ' ଅଟେ । ସେ ମକର କେତନେ 'ଜଳରେ' ମେଳ ହେବାକୁ ଉନ୍ମତ୍ତକୁ ଲଭ କୁବୁଦ୍ଧି ମନ୍ତ୍ରୀ ହେଉଛ । ରେ ଶୀତ ? ମଦନଜନ୍ମା 'ଅନଙ୍ଗଜାତବାସ' ହେବା ଭରୁ କୁବୁଦ୍ଧି ମନ୍ତ୍ରୀପରି ହୁଅତ 'ଚନ୍ଦ୍ର' ହୋଇ ଅହୁମକର କେତନେ 'ଚନ୍ଦ୍ରରେ' ମେଳ ହୋଇ ଉନ୍ମତ୍ତକରୁଛ । ଯେହେତୁ ଚନ୍ଦ୍ର ଶୀତ କରଣ ଅଟେ । ରେ ମଦନଜନ୍ମା 'କୋକିଳ' ତୁ ମକର କେତନେ 'କନ୍ଦର୍ପରେ' ମେଳହୋଇ ଉନ୍ମତ୍ତରେ ରତ ହୋଇଅଛୁ । ତୁ କନ୍ଦର୍ପର କୁବୁଦ୍ଧି ମନ୍ତ୍ରୀ ଅଟୁ ।

୨୦—ଶିବ 'କୋକିଳ' ଏପ୍ରକାର ଛଳବଚନକୁ କହି ପଥରର ସମତରେ 'ସମାନତାରେ' କଷଣକୁ ସହିଲେ ଏପ୍ରକାର ବଚନ 'ସ୍ନେହପୂର୍ଣ୍ଣ' ବଚନକୁ କହି ଅର 'କଷ' ସମତାରେ "ମରଣରେ କଷଣକୁ ସହିଲେ । ଏପ୍ରକାର ଛଳବଚନକୁ କହି ଶୋକରେ ଉତ୍ପନ୍ନ ମତ୍ତହୋଇ ସେ କଷଣକୁ ସହିଲେ ।

୨୧—ଗଜଗତି ରାଜପୁତ୍ରୀ ସୁରେଶ୍ୱର ଶିବ ସୁନ୍ଦରଙ୍କ ନାମ ଜପଇ ରାଜପୁତ୍ର ମଧ୍ୟ ସେ ଗଜପତି ସୁରେଶ୍ୱର ସୁନ୍ଦରଙ୍କ ନାମ ଜପଇ ଅଉ ଯହିଁରେ ମନୀଷା 'ଇଚ୍ଛା' ହୁଏ । ତହିଁ ଅରୁଣ ପ୍ରକାଶ ହୁଏ । ଯହିଁ ଯେଉଁ 'ଶୀତକାଳରେ' ମନୀଷାରେ 'ଚନ୍ଦ୍ରଠାରେ' ଅରୁଣ ପ୍ରକାଶ ହୁଏ, ସେହିକାଳରେ ଜଗତୀ ସୁରେଶ୍ୱର 'କୋଟିବ୍ରହ୍ମାଣ୍ଡସୁନ୍ଦରଙ୍କ' ନାମ ରାଜପୁତ୍ର ଜପନ୍ତି, ଓ ରାଜପୁତ୍ରୀ ଧାତ୍ରୀ ଜଗତୀ ସୁରେଶ୍ୱର ସଂସାର ସୁନ୍ଦରଙ୍କ ନାମ ଜପନ୍ତି । ଯେଉଁକାଳରେ ଶୀତରେ ଅରୁଣ ପ୍ରକାଶ ହୁଏ । ସୁନ୍ଦରୀ ତତ୍ତ୍ୱ ଗରମ ସମୟରେ ଭଲ ଲାଗେ ତାହିଁ ଏବଂ ରୋଗ ଜନ୍ମାଏ । ସେ କାଳରେ ଦୁହେଁ ଦୁହିଙ୍କ ନାମ ଜପ କରି ଜପନ୍ତି ।

୨୨—ବଜନତ (ବିଶେଷଜାତ) ଶୋକରେ ପୂର୍ଣ୍ଣହୋଇ ଅଣାରେ ଧାତ୍ରୀଙ୍କୁ ଗୃହଁ ଗଲେ । ଶେଷରଞ୍ଜନ ବାସୁକି ଭୂଷଣ 'ଶିବ' ଓ ହରଙ୍କୁ ସେବ ଜାହ୍ନବୋଲି ସ୍ମରଣ କରୁଥିଲେ । ପୂର୍ଣ୍ଣ ଶୋକଜନତ ହେବାକୁ ଅଣାରେ 'ଧରାକୁ' ଗୃହଁ ଗଲେ । ହର ସୂର୍ଯ୍ୟ ଓ ଚନ୍ଦ୍ର ଜାହ୍ନ ତଣ୍ଡରେ ଓ ବିଷ କଣ୍ଠ ସରଞ୍ଜନ ଅଟେ ଯାହାର ସେ ଶିବଙ୍କୁ ଜାହ୍ନବୋଲି ସ୍ମରଣ କଲେ । ଜନ୍ୟ ଶୋକ ପୂର୍ଣ୍ଣହୋଇ ଅଣାରେ ଗୃହଁ ଗଲେ । ଶେଷରଞ୍ଜନ 'ଶିବ' ଓ ହରଙ୍କୁ ଜାହ୍ନବୋଲି ସ୍ମରଣ କରୁଥିଲେ ।

ନବଜନକରେ ସେ ଶୟନରଚନା । ଈଶିବାରେ ସ୍ତୁତିଗିରେ କରେ ଅର୍ଚ୍ଚନା ॥
ବ୍ୟଞ୍ଜନ ବସିତ ଉପକରଣଜାଳେ । ଜାତପନ ଗର ବୃଦ୍ଧି ଅବ୍ଧ ମୃଣାଳେ ।୨୪।
ରସନାଧି ପ୍ରତିମା ସେ ତାହାର ହେଲେ । ବଳ ହେବ ସବଳୟ ବାଣୀଶୁଣିଲେ ॥
ବିପ୍ର ବରଣ କରିବାମାନସେ ଚିନ୍ତ । ଉପଚାର ବାର୍ତ୍ତା ଏ କଥାରେ ଅର୍ଥିତ ।୨୬
ସୁବାସ ସୁମନେ ପାଶ ହେବାରେ ଧ୍ୟାନ୍ତି । ଉଦ୍ବୋଧିତ ରସନାଧି ସର୍ବଦା ସେହି ॥
ନବରସଜ୍ଞାତା ନାହିଁ ସଙ୍ଗ ତାହାର । ସହିତ ରସରେ ଯୁକ୍ତ ଅନୁକ୍ଷଣର ।୨୮।

୨୩—ସେ ଦୁହେଁ ନବଜନକରେ ପଦ୍ମସମୂହରେ ଶୟନ ରଚନା କରୁଅଛନ୍ତି । ଈଶିବାରେ 'ଲକ୍ଷ୍ମୀ ଓ ଦୁର୍ଗାଙ୍କୁ ସ୍ତୁତିଗିରେ ବଚନରେ ଅର୍ଚ୍ଚନା କରୁଥିଲେ । ସେ ଦୁହେଁ ନବଜନକରେ 'ଧୂପସମୂହରେ) ଶୟନ ରଚନା କରୁଅଛନ୍ତି । ଶିବାରେ ଦୁର୍ଗାଙ୍କୁ ସ୍ତୁତିଗିରେ ଅର୍ଚ୍ଚନା କରୁଅଛନ୍ତି । ସେ ଶୟନ ରଚନା କରି କରେ ଜଳକୁ ଜନ୍ମ ଜାତକରନ୍ତି, ଅର୍ଥାତ୍ ଅଶ୍ରୁ ବିସର୍ଜନ କରନ୍ତି । ବାରେ "ବାର ମାନଙ୍କରେ' ସ୍ତୁତିଗିରେ ଦେବତାମାନଙ୍କୁ ଅର୍ଚ୍ଚନା କରନ୍ତି ।
୨୪—ଉପକରଣ ଜାଳେ 'ଉପଚାର ସାମଗ୍ରୀମାନଙ୍କ ମଧ୍ୟରେ' ବ୍ୟଞ୍ଜନ 'ଦର୍ପଣ'ରେ ବସିଲେ । ତାଙ୍କର ଅବ୍ଧ ମୃଣାଳ 'ପଦ୍ମମୃଣାଳରେ' ଗର 'ବିଷ' ବୃଦ୍ଧି ଉତ୍ପନ୍ନ ହେବ ।
ଜନମାନେ ଉପକରଣ ଜାଳେ ବସିଲେ । ଅବ୍ଧ 'ଓ ଚନ୍ଦ୍ର' ଓ ମୃଣାଳରେ କ୍ରମରେ ପନ 'ସୂର୍ଯ୍ୟ' ଓ ଗର ବୃଦ୍ଧି ହେବ । ଅଙ୍ଗ ଉପକରଣ ଜାଳେ ନ ବସିଲେ । ଅବ୍ଧ 'ପଦ୍ମ' ମୃଣାଳରେ ଦେବ 'ସର୍ପ' ବୃଦ୍ଧି ହେବ ।
୨୫—ସେ ରସନାଧି ( ରସପୂର୍ଣ୍ଣ ) ପ୍ରତିମା, ମୁଁ ତାହାର ହେଲେ ଓ ତାହାଠାରୁ ସବଳୟ ଜବମିଶ୍ରିତ ବାଣୀ ଶୁଣିଲେ ବଳହେବ । ଏହା ଭାବି କହିଲେ ସେ ରସନାଧି ନବଜରେ ମେଦପ୍ରତିମା ଲକ୍ଷ୍ମୀ ପତି, ମୁଁ ତାହାର ହେଲେ ଓ ସବ ଲୟବାଣୀ ଶୁଣିଲେ ବଳହେବ ଏହା ଭାବୁଥିଲେ । ରସନାଧିପ୍ରତିମା ସୌନ୍ଦର୍ଯ୍ୟଶାଳିନୀ ମୁଁ ତାହାର ହେଲେ ଓ ବାଣୀଶୁଣିଲେ ସବଳୟ ଜବମୋହିତ ହେବ, ଏହା ପରସ୍ପର ଭାବଲେ ।
୨୬—ଦେବାର୍ଚ୍ଚନା ନିମିତ୍ତ ବିପ୍ର ବ୍ରାହ୍ମଣ ବରଣ କରିବାକୁ ଚିନ୍ତାକଲେ, ଉପଚାର କେବଳ ବାର୍ତ୍ତା, ଅର୍ଥାତ୍ ପରସ୍ପର ବାର୍ତ୍ତା, ଶୁଣିବା ଉପଚାର ହେଉଅଛି । ଏ କଥାରେ କେବଳ ଅର୍ଥିତ ହୋଇଅଛି । ତପସ୍ବୀଙ୍କୁ ପ୍ରବରଣ 'ଶରୀରସ୍ଥ' ପରି କରିବାକୁ ମାନସରେ ଚିନ୍ତାକଲେ । ବାର୍ତ୍ତା ପତ୍ରବୋଲି ଏହିକଥାରେ ଅର୍ଥିତ ହୋଇଅଛି । ବରଣକରିବା ବିଷୟ କେବଳ ମାନସରେ ଚିନ୍ତାକଲେ, ଗଣ ବାର୍ତ୍ତା କଲେ, ଏ କଥାରେ ଅର୍ଥଯୁକ୍ତ ହେଲେ ଅର୍ଥି, ପୀଡ଼ା ।
୨୭—ସୁବାସ ସୁମନେ 'ବାସନାଯୁକ୍ତ ମାଳତୀପୁଷ୍ପ ମଧୁ' ପାଶ ହେବାରେ 'ନିକଟରେ ଫୁଟିବାକୁ' ସର୍ବଦା ଧ୍ୟାନକଲେ ସେ ରସନାଧି ସେହି ଉଦ୍ବୋଧିତ 'ପ୍ରାପ୍ତ' ହେବେ । ବାସ ଓ ସୁମନେ 'ବସ୍ତ୍ର ଓ ପୁଷ୍ପ' ପାଶ ବୃଦ୍ଧିହେବାରେ ଧ୍ୟାନକଲେ, ସର୍ବଦା ସେହି ରସନାଧି ପାଇଁ 'ଉଦ୍ବୋଧକ' ସମ୍ପନ୍ନ 'ହେବମନ ବହୁତହୋଇ ପାଶ 'ନିକଟ' ହେବାକୁ ଧ୍ୟାନକଲେ । ସେହି ରସନାଧି ସର୍ବଦା ଉଦ୍ବୋଧିତ ।
୨୮—ସେ ପୁରୁଷ ନବରସଜ୍ଞାତା 'ନୂତନ ରସବେତ୍ତା' ଅଟନ୍ତି, କିନ୍ତୁ ସଙ୍ଗନାହିଁ । ସ୍ତ୍ରୀ ନବରସ, କିନ୍ତୁ ତା ସଙ୍ଗ 'ସଂସର୍ଗ' ନାହିଁ ଜଗତ ତାହାର ସହିତ ଅନୁକ୍ଷଣର 'ସର୍ବଦା' ରସରେ ଯୁକ୍ତହେବ । କେବେ ତାହାର ସଙ୍ଗ ହେବ, ତତରସରେ ଅନୁକ୍ଷଣ ଯୁକ୍ତ ହେବ, ଏ କଥା କହିବାକୁ ବର୍ଣ୍ଣିତା 'କୋବିଦ' ନାହିଁ ସେ ପୁରୁଷ ରସଜ୍ଞତା, ତାହାର ସଙ୍ଗନାହିଁ ସେ ସ୍ତ୍ରୀରସଜ୍ଞା, ତାଙ୍କାହିଁ ଓ ତାହାର ସଙ୍ଗନାହିଁ । ଏହାଭବ ଅନୁକ୍ଷଣ ତତରସରେ 'ଉତ୍କଣ୍ଠାରେ' ଯୁକ୍ତହେଲେ । ପ୍ରଥମ ଉକ୍ତି ସ୍ତ୍ରୀର ଓ ଦ୍ୱିତୀୟ ଉକ୍ତି ପୁରୁଷର ଜାଣିବାକୁ ହେବ ।

ସୁକବି ରଚନେ କଷ୍ଟ ନିକାଳ ଗ୍ରନ୍ଥେ । ବସୁଦେବତୋଷଦାତା ଉପେନ୍ଦ୍ର ବନ୍ଦେ ॥
ବଖ୍ୟାତ ରସରେ ଇଚ୍ଛି ଲୁପ୍ତବର୍ଣ୍ଣର । ସୁମନରେ ମୋଦେ ଚନ୍ଦ୍ରଶୁନ ବସୁର ।୩୦

——✻——

## ଷଡ଼୍ବିଂଶ ଛାନ୍ଦ ।

### ରାଗ—କୁମ୍ଭକାମୋଦ ।


ାଣ ଗୁଣବନ୍ତେ ଶୁଣ ଏ ଚରିତ ପରମ ରହସ୍ୟ ।
ରହେ୧ ବସି କହେ ସଚିବେ୨ ମାଳବନଗର-୩ନରେଶ ।୧
ବରବରନାକୁ ବର କ କରିବା ବିସ୍ମୟ ମଗନେ ।
ବରଦ ନାରଦ ବାଣୀସ୍ବନ ଶୁଭେ ଏକାଳେ ଗଗନେ । ୨ ।
ସୁରଗଣ ବରଗଣ ଗଣି କରେ ସୁଲଗ୍ନ ବଖ୍ୟାତ ।
ରହିଲି କହିଲି ଯାଇ ମହଲାକୁ ସଜନି ଏ ସତ । ୩ ।
ସୁନ୍ଦରୀ ଉପରେ ନୃପତିନନ୍ଦନୀ ସନ୍ଧ୍ୟାରେ ବସିଲି ।
ଚନ୍ଦ୍ରମାମଣ୍ଡଳ ୧ଅଖଣ୍ଡଳଦିଗେ ଏମନ୍ତ ଦିଶିଲି । ୪ ।

---

୨୯—ବର୍ଷା ପ୍ରଭୃତ ନିକାଳବର୍ଣ୍ଣନା ଯୁକ୍ତ ଏ ଗ୍ରନ୍ଥ ଉତ୍ତମ ଏବ ବଶେଷରୂପେ ରଚନାରେ କଷ୍ଟଅଛି, ଅତଏବ ଉପେନ୍ଦ୍ରଭଞ୍ଜ ବସୁଦେବ ତୋଷଦାତା ଶ୍ରୀକୃଷ୍ଣ ଓ ସୁ'ଉତ୍ତମରୂପେ' ଦେବତୋଷ ଦାସ ସ୍ତମ୍ଭନ୍ତି ଏବ ଦେବୋତୋଷଦାତା ଶିବଙ୍କୁ ବନ୍ଦନ କରୁଅଛନ୍ତି ।
୩୦—ଜନେ ମନୁଷ୍ୟମାନେ ରସରେ ବଖ୍ୟାତ ଏ ଗ୍ରନ୍ଥ ଲୁପ୍ତ ବର୍ଣ୍ଣର 'ବର୍ଣ୍ଣ ଲୋପବଦବାକ୍ୟ' ଇଚ୍ଛାକର ସୁମନରେ ଚନ୍ଦ୍ରଗ୍ରନ୍ଥ ଚରଣରେ 'ଶୀଘ୍ର' ବସ୍ତୁରଚନ । ବଖ୍ୟାତ ଓ ଜାତ, ସୁମନ ଓ ମନର ସ୍ଥଳରେ ଅର୍ଥାତ ଓ ପୁରେ ପ୍ରଭେଦ ଅଛି ।

——:✻:——

### ଷଡ଼୍ବିଂଶ ଗ୍ରନ୍ଥ । ୪

୧—ଅହେ ଗୁଣବନ୍ତ ଲୋକମାନେ ପରମରହସ୍ୟ ଏ ଚରିତ ପୁଣି ଶୁଣ । ମାଳବ ନଗରରାଜା ଏକାନ୍ତରେ ବସି ମନ୍ତ୍ରୀକୁ କହିଲେ । ୧ ରହେ, ଏକାନ୍ତରେ । ୨ ସଚିବେ, ମନ୍ତ୍ରୀକୁ । ୩ ମାଳବନଗରନରେଶ ଚମ୍ପାପୁର ରାଜା ।
୨—ବରବର୍ଣ୍ଣା କେମାକୁ କ ବର କରିବା ବୋଲି ବିସ୍ମୟରେ ମଗ୍ନହେଲେ, ଏକାଳେ ବରଦ ହୋଇଥିବା ନାରଦଙ୍କର ବାଣୀଧ୍ବନି ଆକାଶରେ ଶୁଭିଲା ।
୩—ଜ୍ୟୋତିଷମାନଙ୍କ ଦ୍ବାରା ବଖ୍ୟାତରୂପେ କଥିତ ହୋଇଥିବା ଶୁଭଲଗ୍ନରେ ସୁରମାନଙ୍କ ବରବିଚାରି ସେଠାରେ ରହିଥିବା ସଜନି ଏସବୁ ସତକୁ ମହଲା କେମାଅଗେ କହିଲା । ୧ଗଣି, ଜ୍ୟୋତିଷ ।
୪—ସେ ରାଜକୁମାରୀ ସନ୍ଧ୍ୟାବେଳେ ସୁନ୍ଦରୀଉପରେ ବସିଲା । ପୂର୍ବଦିଗରେ ଚନ୍ଦ୍ରମଣ୍ଡଳ ଯେମନ୍ତ ଏପରି ଦେଖାଗଲା, ସାହା ଦେଖାଗଲା ଅଗରେ କୁହାଯିବ । ୧ ଅଖଣ୍ଡଳଦିଗେ, ପୂର୍ବଦିଗେ ।

୧ପୂର୍ବକକ୍ଷ ପୂର୍ବ ୨କନ୍ଦରୀ-ଦରୀରୁ ବାହାର ହେବାରେ ।
ଚନ୍ଦ୍ରନବନ ମେଳନ କରି ପଙ୍କ-ଅଙ୍କିତ ଶରୀରେ । ୫ ।
ମହୋଜ୍ଜ୍ୱଳ ୧କରେ ୨ପୁଷ୍କରେ ବର୍ଷିଛି ୩ଅମୃତପୃଷନ୍ତ ।
ସେହି ୪ଗ୍ରହାବଳୀ ଟଳଟଳ ଯେ ପ୍ରଚ୍ଛଦଗରେ ଦଶନ୍ତ । ୬ ।
ଶୋଭନ୍ତ ସେ ରାମରାଜା ୧କଉଶିକ ଆନନ୍ଦ ଦେବରେ ।
୨ସୁବେଳେ ବନ୍ଦିତ ୩ଲକ୍ଷ୍ମଣେ ସହିତ ସେ ୪ଋକ୍ଷ ସଙ୍ଗରେ । ୭ ।
୧ଅଧିକକର ପ୍ରତାପ ନାଶକର ୨ହରିତ ପ୍ରକାଶି ।
ଏକ ୩ବିଭୀଷଣ ଦରହର ୪ଗୁରୁ ଜଗତ ଉଲ୍ଲାସି । ୮ ।
ସାଧୁ ବିଧୁନାମ ୧ଦକ୍ଷିଣନାୟକ ଲକ୍ଷଣ ସମ୍ପୂର୍ଣ୍ଣେ ।
ମେଷ ବୃଷ ଯୋଗେ ୩ମିଥୁନ ସମ୍ଭୋଗେ କର୍କଟ ବିଧାନେ । ୯ ।

---

୫—ଐରାବତହସ୍ତୀ ପୂର୍ବପର୍ବତ କନ୍ଦରୀରୁ ବାହାରି ପଦ୍ମବନ ମର୍ଦ୍ଦନ କରି ତାଙ୍କ ଧୂଳିଧୂସର ଦେହରେ ବାହାରି ଆସୁଅଛି କି ? ଐରାବତ ଶୁକ୍ଳ ଓ ଚନ୍ଦ୍ରଉଦୟରେ ପଦ୍ମବନ ମୁଦ୍ରିତହୁଏ, ଏବଂ କଳଙ୍କ ପଙ୍କ ସଦୃଶ ଦୃଷ୍ଟ ହୋଇଅଛି । ୧ପୂର୍ବକକ୍ଷ, ଐରାବତ ହସ୍ତୀ ୨କନ୍ଦରୀ ଦରୀ, ପର୍ବତ କନ୍ଦର ।

୬—ହସ୍ତୀ ମହୋଜ୍ଜ୍ୱଳ ଶୁଣ୍ଡାରେ ପଦ୍ମପୃଷ୍ଠରେ ଜଳବିନ୍ଦୁମାନଙ୍କୁ ବର୍ଷେ, ଚନ୍ଦ୍ର ଅତିଉଜ୍ଜ୍ୱଳ କିରଣରେ ଆକାଶରେ ଅମୃତ ବିନ୍ଦୁ ବର୍ଷୁଛି । ସେହି ଅମୃତ ବିନ୍ଦୁ ତାରା ସମୂହ ରୂପେ ପ୍ରତି ଦଗରେ ଟଳ ଟଳ ହୋଇ ଦଶନ୍ତି । ୧କରେ, ଶୁଣ୍ଡାରେ ଓ କିରଣରେ । ୨ପୁଷ୍କରେ, ପଦ୍ମରେ ଓ ଆକାଶରେ । ୩ଅମୃତପୃଷନ୍ତ, ଜଳବିନ୍ଦୁ ଓ ସୁଧାବିନ୍ଦୁ । ୪ଗ୍ରହାବଳୀ, ନକ୍ଷତ୍ର ସମୂହ ।

୭—ପୁଣି ଯେ ଚନ୍ଦ୍ର ରାମଚନ୍ଦ୍ରଙ୍କ ସଦୃଶ ହୋଇଅଛି । ରାମ ବିଶ୍ୱାମିତ୍ରଙ୍କୁ ଆନନ୍ଦ ଦେଉଥିଲେ । ସୁବେଳ ପର୍ବତରେ ଭ୍ରାତା ଲକ୍ଷ୍ମଣଙ୍କ ସହିତରେ ଓ ଭାଲୁମାନଙ୍କ ସଙ୍ଗରେ ବନ୍ଦିତ ହୋଇଥିଲେ । ଚନ୍ଦ୍ରତାରାମାନଙ୍କୁ ଆନନ୍ଦ ଦେଉ ଅଛି । କଳଙ୍କସହିତରେ ନକ୍ଷତ୍ରମାନଙ୍କ ସଙ୍ଗରେ ଉତ୍ତମ ବେଳରେ ବନ୍ଦିତ ହୋଇଅଛି ୧କୌଶିକ, ବିଶ୍ୱାମିତ୍ର ଓ ପେଚା । ୨ସୁବେଳେ, ସୁବେଳ ପର୍ବତରେ ଏ ଭଲବେଳରେ । ୩ଲକ୍ଷ୍ମଣ, ସୌମିତ୍ରି ଓ କଳଙ୍କ । ୪ଋକ୍ଷ, ଭାଲୁ ଓ ନକ୍ଷତ୍ର ।

୮—ରାମଚନ୍ଦ୍ର ମର୍କଟମାନଙ୍କୁ ପ୍ରକାଶକରି ରାବଣର ପ୍ରତାପ ନାଶ କରିଥିଲେ । ବିଭୀଷଣ ନାମକ ଏକ ରାକ୍ଷସରସ୍ପୃହାର ହୋଇଥିଲେ । ଯାହାଙ୍କର ଶୋଭା ଜଗତକୁ ଉଲ୍ଲାସ କରିଥିଲା । ଚନ୍ଦ୍ର ସୂର୍ଯ୍ୟଙ୍କର ତାପନାଶକର ଓ ଦଶ ଦିଗ ମାନଙ୍କୁ ପ୍ରକାଶ କରୁଅଛି । ଏକ ବି (ପକ୍ଷି) ଚକୋରର ଭୀଷଣ ଉପ୍ନାଶକାରୀ ଅଟେ, ଯାହାର ଦୀପ୍ତି ଜଗତକୁ ଉଲ୍ଲାସ କରୁଅଛି । ୧ଅଧିକକର, ରାବଣ, ସୂର୍ଯ୍ୟ । ୨ହରିତ, ମର୍କଟ ଦିଗ । ୩ବିଭୀଷଣ, ରାବଣଭ୍ରାତା ଓ ପକ୍ଷିର ଭୀଷଣ, ରୂଚ, ଶୋଭା ଓ ଦୀପ୍ତି ।

୯—ଚନ୍ଦ୍ରର ବିଧୁନାମ ଉତ୍ତମ ହୋଇଅଛି । ସେହେତୁ ବିଧୁ 'ବିଷ୍ଣୁ' କୃଷ୍ଣାବତାରରେ ଦ୍ୱାତ୍ରିଂଶତ୍ ଲକ୍ଷଣରେ ପୂର୍ଣ୍ଣ ହୋଇ ବହୁତ ଗୋପୀମାନଙ୍କର ସମାନୁରାଗୀ ନାୟକ ହୋଇଥିଲେ । ସୁଯୋଗ ଦେଖି ମେଷ ବୃଷ ଓ କର୍କଟ ବିଧାନରେ ନାନାପ୍ରକାର ସମ୍ଭୋଗକରିବାକୁ ସୁଗମ ହୋଇଥିଲେ । ଚନ୍ଦ୍ର ସମ୍ପୂର୍ଣ୍ଣ ଅବସ୍ଥାରେ କଳଙ୍କ ଧାରଣ କରୁଅଛି । ସତାଇଶ ନକ୍ଷତ୍ରମାନଙ୍କର ସମାନସର୍ଶୀ

ସିଂହ ମଧ୍ୟ ୨କନ୍ୟା ସୁବାସ ହରଣ ସନ୍ତାପବାରଣ ।
୩ତୁଳା-ଖଳ.ସିମାବର୍ଗେ ୪ଅଳି ରଙ୍ଗେ ସଙ୍ଗମ କାରଣ । ୧୦ ।
୧ଧନୁ ୨ଗୁଣବନ୍ତେ ୩ମକରକେତନେ ଉଚ୍ଛନ୍ନକରନ୍ତା ।
୪କୁମ୍ଭଯୁକ୍ତ ୫ମୀନଗତ ଗୃରୁନେତ୍ରୀ ୬ତାରକାରଞ୍ଜିତା । ୧୧ ।
ରମ୍ୟମୂର୍ତ୍ତି ପକ୍ଷୀ ଅକ୍ଷି ବିମୋହନ ପାଷାଣ ଦ୍ରବାଇ ।
୧ପାଦ ପରଶେ ହରଷେ ବିକଶିତ ଲତିକା କରାଇ । ୧୨ ।
ଆନ୍ତର ସେ ଅସୁନ୍ଦରୀଙ୍କ ସୁନ୍ଦରୀ କରି ସେ ରମିତ ।
କରେ ରଜନୀକ ରଞ୍ଜନୀ କରି ଏ ପ୍ରକାଶେ ହେମନ୍ତ । ୧୩ ।

---

ନାୟକ । କ୍ରମବ୍ୟଧରେ—ମେଷ, ବୃଷ, ମିଥୁନ, କର୍କଟ ରାଶିମାନଙ୍କୁ ଯୋଗ ହୋଇଅଛନ୍ତି କରୁଅଛି । ୧ଦକ୍ଷିଣ, ସମାନୁରାଗୀ ବହୁ ସ୍ତ୍ରୀ ମାନଙ୍କଠାରେ । ୨ଲକ୍ଷଣ ଶୁଭଗନ୍ଧ ଓ କଳଙ୍କ । ୩ମିଥୁନ ଯୁଗଳ ଓ ଭୃଗପ୍ର ରାଶି ।

୧୦—ସିଂହକଟୀ ଗୋପକନ୍ୟା ମାନଙ୍କର ଉତ୍ତମବସ୍ତ୍ର ହରଣକରି କାମତାପ ବାରଣ କରିଥିଲେ । ସଙ୍ଗମ କାରଣରେ ତୁଲ୍ୟ ବୟସ୍କା ନାୟିକାମାନଙ୍କ କୌତୁକରେ ଅଡକରୁଥିଲେ । ଚନ୍ଦ୍ର ସିଂହ କନ୍ୟା ମାସରେ ଅର୍ଥାତ୍ ଶରତ୍କାଳରେ ଶୁକ୍ଳବର୍ଣ୍ଣର 'ଅଡ ଉତ୍ତଳଡାଇ' ଉତ୍ତମ ସ୍ଥାନରୁ ଏ । ସର୍ବଦା ସନ୍ତାପ ବାରଣକରେ । ତୁଳା ଓ ବୃଶ୍ଚିକ ରାଶିରେ ଚନ୍ଦ୍ରାଦରାଭ ରୂପ ନାୟିକାମାନଙ୍କ ସହିତ କୌତୁକରେ ସଙ୍ଗମ କାରଣ ହୁଏ । ୧ ସିଂହମଧ୍ୟ କନ୍ୟା ସିଂହକଟୀକନ୍ୟକା ଓ ସିଂହ ଓ କନ୍ୟାରାଶି । ୨ସୁବାସ ହରଣ, ଉତ୍ତମବସ୍ତ୍ର ହରଣକରି ଓ ଉତ୍ତମସ୍ଥାନ, ଶୁକ୍ଳତା । ୩ ତୁଳା, ରାଶିବିଶେଷ ଓ ସମାନ । ୪ ଅଳି, ବୃଶ୍ଚିକରାଶି ଓ ଅଳିକବଧ୍ୱା ।

୧୧—ବିଷ୍ଣୁ ରାମାବତାରରେ ଶିବ ଧନୁର ଗୁଣ ଯୁକ୍ତକରି ସ୍ତ୍ରୀନ କମ୍ପୃଥିବା କନ୍ଦନକା ଶୋଭନ ମୀନଗତ ଗୃରୁନେତ୍ରୀ ସୀତାଙ୍କୁ କନ୍ଦର୍ପରେ ଉତ୍ସନ୍ନକରନ୍ତା ହୋଇଥିଲେ । ଚନ୍ଦ୍ର ଶୀତଳତା ଗୁଣ ଯୁକ୍ତ ଅଟେ । ଧନୁ ଓ ମକର ରାଶିରେ କେବଳ ଅବସ୍ଥାନ କରେ । କୁମ୍ଭରାଶିଯୁକ୍ତହୁଏ, ମୀନରାଶିକୁ ଗତ କରେ, ସୁନ୍ଦରନୟନା ତାରାମାନଙ୍କ ଦ୍ୱାରା ରଞ୍ଜିତ ହୋଇଥାଏ । ୧ଧନୁ, ରାଶିବିଶେଷ ଓ ଧେନୁ । ୨ଗୁଣବନ୍ତ, ଗୁଣ ଓ ମୌର୍ବିଯୁକ୍ତ । ୩ମକରକେତନ, ମକର ରାଶି ସ୍ଥାନ ଓ କନ୍ଦର୍ପ । ୪କୁମ୍ଭ, ରାଶିବିଶେଷ ଓ କଳସ । ୫ମୀନ, ରାଶିବିଶେଷ ଓ ମତ୍ସ୍ୟ । ୬ତାରକା, ନକ୍ଷତ୍ର ଓ ଅକ୍ଷିକନୀନିକା ।

୧୨—ବିଷ୍ଣୁ ରାମଚନ୍ଦ୍ର ମନୋହର ମୂର୍ତ୍ତି ହୋଇଥିଲେ, ପକ୍ଷୀ କଳାପୂର୍ଣ୍ଣ ଅକ୍ଷିକୁ ମୋହିତ କରିଥିଲେ, ପାଦସ୍ପର୍ଶରେ ପାଷାଣ 'ପଥର' ହୋଇଥିବା ଅହଲ୍ୟାଙ୍କୁ ଉକ୍ତିରେ ଦ୍ରବାଇଥିଲେ । ଲତାମାନଙ୍କୁ ଦୋହଦ ପ୍ରକ୍ରିୟାରେ ହର୍ଷରେ ବିକାଶିତ କରାଇଥିଲେ । କମ୍ପା ଲତାପରି କୋମଳାଙ୍ଗୀ ସୀତାଙ୍କୁ ହର୍ଷରେ ପ୍ରଫୁଲ୍ଲ କରିଥିଲେ । ଏ ଚନ୍ଦ୍ର ମନୋହର ମୂର୍ତ୍ତି ଅଟେ, ପକ୍ଷୀଚକୋରର ଅକ୍ଷିକୁ ମୋହିତ କରୁଅଛି । କିରଣସ୍ପର୍ଶରେ ଚନ୍ଦ୍ରକାନ୍ତ ପଥରକୁ ଦ୍ରବାଉଅଛି କଇଁଲତାକୁ ହର୍ଷରେ ବିକଶିତ କରୁଅଛି । ୧ ପାଦ, ଚରଣ ଓ କିରଣ ।

୧୩—ଅନ୍ତର ସେ ବିଷ୍ଣୁ ଯୋଗର ଅସୁନ୍ଦରୀ କୁବ୍ଜାକୁ ସୁନ୍ଦରୀକରି ସମ୍ଭୋଗକରିଥିଲେ, ଏ ଚନ୍ଦ୍ର ସେହିପରି ରଜନୀ 'ରାତ୍ରୀକୁ' ରଞ୍ଜିତକରି ପ୍ରକାଶକରୁଅଛି ।

ଗୃହିଁ ଏ ସମସ୍ତ ହୋଇ ଭ୍ରମମସ୍ତ ହୋଇଲେ ଚତୁରୀ ।
୧ବାଣୀ ବାଣୀଜାରେ ରଚନା କଲ ସେ ଅଶେଷ ଚାତୁରୀ । ୧୪ ॥
ପତ କରିବା ମତ କରି ମୋ କେଶସମ୍ପତ୍ତି ଧ୍ୱଂସକୁ ।
୧ଜଗତୀ ଯୁବତୀ ରୂପ ଧରି ରତି ସୁକେଶ୍ୟାନ୍ତ ବେଶକୁ । ୧୫ ॥
ଦେଖ ମୁଖ ଶୋଭା କରୁଛୁ କସ୍ତୂରୀତିଳକ ମକରୀ ।
ମଣ୍ଡିଛୁ ନାସେ ମୁକୁତା ମୋଡ଼ିଜାଲି ୧ଚକୁରେ ମାଧୁରୀ । ୧୬ ॥
ଖଞ୍ଜିଛୁ ଉଚକୁଚରେ ସୁସଞ୍ଚରେ ସୁମାଳତେହ୍ଲିକ ।
ରଞ୍ଜିଛୁ ଚନ୍ଦ୍ର ରଜତ-କରି ଫୁଲ୍ଲ ଚହିଁରେ ଝଲକ । ୧୭ ।
ମଧୁରଗୋଷ୍ଠୀ ପଞ୍ଚମସ୍ୱର ଧରି ବଚନ ପ୍ରଚୁର ।
ତରେ ଅଭିସାର ୧ବିପ୍ରଲବ୍ଧା କେହ୍ନ ହୋଇବ ଚତୁର । ୧୮ ॥
ସଖି କହିଲ ଏମନ୍ତ ନୋହୁ ବରବର୍ଣ୍ଣିନୀ ତୁ ଯେନ ।
ପୂର୍ଣ୍ଣେନ୍ଦୁ ଲାଞ୍ଛନ ୧ନବ ତାରକାରେ ଗଗନ ମଣ୍ଡନ । ୧୯ ॥
ଗିରି ମଞ୍ଜରୀ କରଣ ଜଣି ପିକଧ୍ୱନରେ ଶୋଭିତ ।
ଯାହା ନାଥ ୧ପାର୍ଥସାରଥି ସେ ଅନେ ହୋଇ କ ଲୋଭିତ ।୨୦॥

---

୧୪—ସେ କେମା ଚତୁର ହେଲେ ଯୁବା ଏ ସମସ୍ତ ଗୃହଁ ଭ୍ରମମସ୍ତ 'ବାଉଳ' ହେଲ । ସେ ବାଣୀଜା-ସଖୀକୁ ଅଶେଷ ଚାତୁରୀ ଯୁକ୍ତବଚନ ରଚନାକଲା । ୧ ବାଣୀ, ବଚନ ।

୧୫—ଏହୁ ଜଗତ ମୋ କେଶସମ୍ପତ୍ତି ଧ୍ୱଂସକୁ ପତ କରିବାକୁ ମନକରି ସୁନ୍ଦର ରୂପଧରି ସୁକେଶାନ୍ତ ବେଶକୁ ଦେଖାଇଥିଲ । ୧ ଜଗତୀ, ଜଗତ ।

୧୬—ଦେଖ, ଚନ୍ଦ୍ରମୁଖ ହୋଇଅଛି । କପାଳ କସ୍ତୁରୀତିଳକ ଓ ଗଣ୍ଡଚନ୍ଦନମକରୀପତ୍ର ସେ ମୁଖର ଶୋଭା ବଧାନ କରୁଅଛି । ଶୁକଚାରୁନାସା ମଣ୍ଡିତ ମୁକ୍ତାହୋଇଅଛି । ଅନ୍ୟ ଚକ୍ଷୁସମୂହ ମୋଡ଼ିଜାଲି ହୋଇଅଛି । ଅକାଶ ବେଶଶୋଭାକୁ କରୁଅଛି । ୧ ଚକୁରମାଧୁରୀ, କେଶଶୋଭା ।

୧୭—ଚନ୍ଦ୍ର ପର୍ବତରେ ଲତା ମାଡ଼ିଛି, ତାହା ଉଚକୁଚରେ ମାଳ ବାନ୍ଧିଲା ପରି ହୋଇଅଛି ଚହିଁରେ ଚନ୍ଦ୍ରକିରଣ ରୂପାଜରି ହୋଇଅଛି । ଲତାର ଫୁଲ ସବୁ ଫୁଲ୍ଲ ଶୋଭାକୁ ବହୁଅଛି କି ।

୧୮—ମଧୁରଗୋଷ୍ଠୀ, ସେ ପିକର ପଞ୍ଚମସ୍ୱରକୁ ନିଜର ବଚନରୂପେ ପ୍ରଚୁରକରି ମୋ ପ୍ରିୟପତି ଅଭିସାର କରୁଅଛି । ଏବେ ସେ କିପରି ବିପ୍ରଲବ୍ଧା ହେବ । ତାହାବିଚାରକର । ୧ ଯେଉଁ ନାୟିକା ସଙ୍କେତସ୍ଥାନରେ ପ୍ରିୟକୁ ନ ଦେଖି ଦୁଃଖିତା ହୁଏ ।

୧୯—ତହୁଁ ସଖୀ କହିଲା ! ଏହାକୁହେଁ ହେ ବରବର୍ଣ୍ଣି ତୁ ଏହା ଜାଣେ । ମୁଖ ନୁହେଁ, ପୂର୍ଣ୍ଣଚନ୍ଦ୍ର, କସ୍ତୁରୀ ତିଳକ ନୁହେଁ, ଏ କଳଙ୍କ ନାସାମୋତି ନୁହେଁ, ଏ ଶୁକତାରା, ଏ ମୋତିଜାଲି ନୁହେଁ, ଏ ନକ୍ଷତ୍ରସମୂହ । କେଶ ନୁହେଁ ଏ ନକ୍ଷତ୍ର ସମୂହ ୧ ନବ ଶୁକତାରା ।

୨୦—କୁଚ ନୁହେଁ, ଏ ପର୍ବତ ! ଫୁଲଯୁକ୍ତ କାଞ୍ଚୋଲା ନୁହେଁ, ଏ ଫୁଲବେଣୀଯୁକ୍ତ ଲତାସମୂହ । ରୂପାଜରି ନୁହେ ଏ ଚନ୍ଦ୍ରକିରଣ । ଗୋଷ୍ଠୀ ନୁହେଁ ଏସବୁ ବଚନ ନୁହେଁ, ଏ ପିକଧ୍ୱନ । ଯେଉଁ ଜଗତନାଥ ଶ୍ରୀକୃଷ୍ଣ, ସେ ଜଗତରୂପ ନାୟିକା ବାହିଁ ଅନ୍ୟଠାରେ 'କେ ପରବେ' ଲୋଭକରିବ । ୧ ପାର୍ଥ ସାରଥି-ଅର୍ଜୁନସାରଥି—ଶ୍ରୀକୃଷ୍ଣ ।

ପତି ପ୍ରୀତି ନୋହୁଚ ¹ସପତ୍ନୀରେ ତୋ ଏତେ ଈର୍ଷା ।
ମନ୍ତ୍ରୀମଣ୍ଡନାରେ ମଣ୍ଡୁ କରୁଛୁ ଯେ ବଳିଭ ପ୍ରତ୍ୟାଶା । ୨୧ ।
ବୃଥା କଥାକୁ କ ବ୍ୟଥା ଶଚୀକଳା ବୋଇଲା ହସିତ ।
ତାରେ ଯୋଗୀ ଇନ୍ଦୁ କଇରବବନ୍ଧୁ ଯଥା ଏ ହେମନ୍ତ । ୨୨ ।
ଏକାଳେ ହଂସଜା-ସାର-କେଶୀ ପାଶେ ହଂସଜା ହୋଇଲା ।
ସ୍ମରୁଲୋଚନାରେ ଶୋଚନା-ରଚନା ନ କର ବୋଇଲା । ୨୩ ।
ଶୁଣିଲ ନୃପତି ମନ୍ତ୍ରୀ ଥିଲୁଅଛିଲେ ତୋ ବିଷ୍ଣୁ ବିଷୟୁ ।
¹ଧାତା-କୁମର ²ମହତୀନାଦେ ହତ କଲେ ସେ ସଂଶୟୁ । ୨୪ ।
ଶୁଭିଲ ସ୍ୱନ ଏମନ ତୋ ନଗରେ ଭ୍ରମିବ ¹କୁରଙ୍ଗେ ।
ଜାଣ ସେହି ବର ଯେ ତାର ସ୍ମମର ହରିବ ସୁରଙ୍ଗେ । ୨୫ ।
ପାରିଜାତମାଳା ମଣ୍ଡିବ ତା ଗଳା ଏ କାଳେ ଶୂନ୍ୟରୁ ।
ରାଜା ନିମନ୍ତ୍ରଣେ ଦୂତ ପ୍ରତିଦଶେ ଗଲେଣି ରମ୍ଭୋରୁ । ୨୬ ।
ପ୍ରକଟ କୁଞ୍ଜଳନ୍ମୁଖେ ଭିଜ ଚମତ୍କ ମେଲ ତା ।
¹ପ୍ରଥମଯୁଗ କରାଇଲା ସେ ଶବ୍ଦ ସଜନୀ ବାରତା । ୨୭ ।

---

୨୧—ହେ ମନ୍ତ୍ରୀମଣ୍ଡନା ! ପତିବ୍ରତାପଣରେ ତୋର ସପତ୍ନୀଠାରେ ଏତେ ଈର୍ଷା ହେଉଅଛି । ସୁତରାଂ ଯେ ତୋ ପତିକୁ ପ୍ରତ୍ୟାଶା କରୁଅଛି । ପୁଣି କଣ ହେବ । ¹ସପତ୍ନୀ, ସଉତୁଣୀ ।

୨୨—ଚନ୍ଦ୍ରକଳା ସଖୀ ଶୀଘ୍ର କହିଲା । ବୃଥା କଥାକୁ କାହିଁକି ବ୍ୟଥା କରୁଅଛ । ଯାହାକାରଣ ଚନ୍ଦ୍ର ଯେପରି ପୁଣି କୈରବବନ୍ଧୁ ହୋଇଅଛି ସେହିପରି ।

୨୩—ଏ କାଳେ କାଦମ୍ବିନୀ ସଖୀ ଯମୁନାଳହରୀ କେଶୀକନ୍ୟା ପାଖରେ ପ୍ରବେଶକରି କହିଲା ହେ ଚାରୁଲୋଚନା; ଶୋଚନାକରନାହିଁ ¹ ହଂସଜା ସାରକେଶୀ, ସୂର୍ଯ୍ୟତନୟା—ଯମୁନାଲହରୀ କେଶୀ ² ହଂସଜା କାଦମ୍ବିନୀ ସଖୀ ।

୨୪—ଶୁଣିଛ, ରାଜା ଓ ମନ୍ତ୍ରୀ ତୋ ବିଷୟ ବିଷୟ ଚିନ୍ତୁଥିଲେ । ବ୍ରହ୍ମପୁତ୍ର ନାରଦ ବୀଣାଧ୍ୱନି ଦ୍ୱାରା ତାହାଙ୍କ ସନ୍ଦେହ ଦୂରକଲେ । ¹ଧାତାକୁମର ନାରଦ । ମହତୀ, ନାରଦବୀଣା ।

୨୫—ଏପରି ଦୈବବାଣୀ ଶୁଭିଲା, ହେ ମହାରାଜ ? ତୁମ୍ଭ ନଗରରେ ଗୋଟିଏ ମୃଗ ଭ୍ରମଣ କରିବ । ଯେ ବୀର ତାର ଗମନ କୌଶଳରେ ହରଣ କରିବ ସେ କନ୍ୟାର ବର ହେବ, ଜାଣ । ¹କୁରଙ୍ଗ, ମୃଗ ।

୨୬—ମୃଗଧରଣକାଳରେ ଆକାଶରୁ ପାରିଜାତ ଫୁଲମାଳା ତା ଗଳାକୁ ମଣ୍ଡିତ କରିବ । ଅତଏବ ହେ ରମ୍ଭୋରୁ ଦୂତମାନେ ରାଜାମାନଙ୍କୁ ନିମନ୍ତ୍ରଣ କରିବାକୁ ଚାରିଆଡ଼କୁ ଗଲେଣି ।

୨୭—ଏହି ସମୟରେ ନଗର ଲୋକଙ୍କ ମୁଖରେ ପ୍ରକଟ ହେଲା । ଅନ୍ତର୍ଯ୍ୟାମୀଜନ ଚମତ୍କୃତ ମୃଗ ଗୋଟିଏ ମିଳିତ ହେଲା । ସେହି ଶବ୍ଦ କାଦମ୍ବିନୀ ସଖୀ କହିବା ବାର୍ତ୍ତାକୁ ସତ୍ୟ କରାଇଲା । ¹ପ୍ରଥମଯୁଗ, ସତ୍ୟ ।

ଶ୍ୟାମା କପୋଳ ପୁଲକ ଝଲକଲା ଅଳପ ସୁହାସ ।
ନାସା-ମଣ୍ଡନ ଚଳିଲା ଭଳି ଜାତ ହୋଇଲା ନିଶ୍ୱାସ । ୨୮ ।
ଜାଣିଲା ବାଣୀଜା ଗୁଣିଲା ମନ୍ଥିଲା ହରଷ ବରସେ ।
ସେହି କୁମର ଶ୍ୟାମର ଛନ୍ନାଇବ ଭଣିଲା ୧ରଭସେ । ୨୯ ।
କଳେବରର ପ୍ରସ୍ପର ସ୍ପଂସ-ଶୃର କେମନ୍ତେ ଜାଣିବ ।
ସଙ୍କେତୁଁ ପୁଷ୍ପକେତୁ ସୁବସାନକୁ ଏ ପୁରେ ଆଣିବ । ୩୦ ।
ରମଣୀ ୧ଉରଗମଣି ଯେ ୨ଉରରୁ ବାହାର ହାରକୁ ।
କରିଥିଲା ଛନ୍ନେ କି ୩ମୃଗଲାଞ୍ଛନେ ନ ପାଇ ଦେବାକୁ । ୩୧ ।
ସୁଜାଣ ବୟସୀ ଭାଷିଲେ ରେ ନବବୟସୀରତନ ।
ଇଭଲିଁ ତୁ ତାହା ବକ୍ଷସ୍ଥ ହେବାର ଉଦ୍ୟମେ ଏମାନ । ୩୨ ।
ସାରିଲେ ୧ଯାମିନୀ ଜାଗରେ କାମିନୀ ଆରତ ପ୍ରବୃତ୍ତେ ।
୧ଆଦିତ୍ୟ ଉଦିତ ଜଗତ ମୋଦିତ ସମସ୍ତ ପ୍ରକାରେ । ୩୩ ।
୧ତାପ ଘନ ୨ଅପସରି ୩ତପଙ୍କର ଯା ୪କର ସ୍ଫୁରଣେ ।
*ପ୍ରାଚୀଭୂଷଣ ଅନେକ ନେତ୍ର ସୁଖଦାୟକ ହରି ସେ । ୩୪ ।

---

୨୮—ଏହି ସମୟ ଶ୍ୟାମାର ଗଣ୍ଡସ୍ଥଳ ରୋମାଞ୍ଚିତ ହୋଇ ମୁଖରେ ଅଳପ ହାସ ପ୍ରକାଶ ହେଲା । ନାସା-ମଣି ହଲିଲା ଭଳି ସର୍ଦ୍ଦଶ୍ୱାସ ଜାତହେଲା ।

୨୯—ଏସବୁ ଲକ୍ଷଣରୁ ବାଣୀଜା ସଖି ଜାଣିଲା ଓ ବିଚାରି ଦେଖିଲା । ମନରେ ଦବାଉ ହେବ-ବୋଲି ହର୍ଷରେ ଓ ସ୍ୱଚ୍ଛନ୍ଦ ମୃଗଶ୍ୟାମର ଦାସ୍ଥ ଥିବା ନ ପାଇବ, ବୋଲି ସନ୍ଦେହରେ ଦୁଃଖରେ ମନ୍ଥିଲା । କିନ୍ତୁ ହର୍ଷ ଓ ବେଗରେ କହିଲା, ସେହି କୁମର ଶ୍ୟାମର ଛନ୍ନାଇବ । ୧ରଭସ, ବେଗ ଓ ହର୍ଷ ।

୩୦—ସଖୀମାନେ ବିଚାରି କଲେ, ମାଳତୀ ଘରେ ରହିଥିବା ପୁଷ୍ପପୁର ଏକ ପ୍ରକୃତ ସୂଚନାରୁ ଜାଣିବ ଓ ପୁଷ୍ପକେତୁ ପୁଂ-ସଙ୍କେତକୁ ଏ ନଗରକୁ ଆଣିବ ।

୩୧—ରମଣୀ ଜେମା ଦରିଦ୍ରରେ ସାପ ବିଚାରି ଯେ ହାରକୁ ଗଳାରୁ କାଢ଼ି ପକାଇ ଥିଲା ତାହା ସଖୀମାନଙ୍କୁ ପ୍ରଭସ୍ଥାନ ଦେବାକୁ ଛନ୍ନେ ଗୋଟିଏ ଚନ୍ଦ୍ରକିରଣରେ ଏକାକାର ହୋଇ ଥିବାରୁ ପାଇଲା ନାହିଁ । ୧ଉରଗ, ସାପ । ୨ଉର, ଛାତି । ୩ମୃଗଲାଞ୍ଛନ, ଚନ୍ଦ୍ର ।

୩୨—ଚତୁରୀ ସଖୀମାନେ କହିଲେ, ହେ ନବବୟସୀ ରମଣୀ ତୁ ତାହାଙ୍କର ବକ୍ଷସ୍ଥ ହେବୁ ବୋଲି ଉଦ୍ୟମ କରୁଥିବା ଅମ୍ଭେମାନେ ଏ ସନ୍ଧାନ ଲଭିଲୁଁ ସେ, ଅଉତଥି ଖୋଜୁଅଛୁ ।

୩୩—ସେହି କାମିନୀମାନେ ଉଜାଗର ହୋଇ ଆର୍ତ୍ତ ହୋଇ ରାତ୍ରି ସାରିଲେ । ସୂର୍ଯ୍ୟ ଉଦୟ ହେଲା । ଜଗତ ସବୁପ୍ରକାରରେ ଆନନ୍ଦିତ ହେଲା । ୧ଯାମିନୀ, ରାତ୍ରି । ଆଦିତ୍ୟ, ସୂର୍ଯ୍ୟ ।

୩୪—ସେ ସୂର୍ଯ୍ୟ ହରି ଅର୍ଥାତ୍ ଇନ୍ଦ୍ର ଅଟନ୍ତି । ସେ ଇନ୍ଦ୍ରଙ୍କର ହସ୍ତସ୍ପର୍ଶ (କୁଳିଶ ବା) ଅସୁରୀସମୂହଙ୍କର ବକ୍ଷବିଦାରଣ୍ୟ ଅଟେ । ସେ ଇନ୍ଦ୍ର ପୂର୍ବଦିଗର ଅଧିପତି ହେବୁ ଭୂଷଣ ଅଟନ୍ତି । ଅନେକ ନେତ୍ର ସହସ୍ରାକ୍ଷ ଅଟନ୍ତି, ସୁଖଦାତା ଅଟନ୍ତି । ସେ ସୂର୍ଯ୍ୟଙ୍କର କିରଣ ସ୍ଫୁରଣରେ ତପସ୍ୱୀମାନଙ୍କର ଆବର

ମନୋହର ମୃଗଧର ଅସ୍ତ ବ୍ୟସ୍ତ କ୍ଷଣକେ କରି ସେ ।
[1]ଦନ୍ତକ ଛଦାନ୍ତ ବହୁରି ସରକ୍ତ ଶରୀରେ ହରି ସେ । ୩୫ ।
[1]ମନ୍ଦ ଜୀବ [2]ତୋଷ-[2]ଛାଙ୍ଗ କାଳ-ଦଣ୍ଡେ ପ୍ରତାପେ ଧରି ସେ ।
ସ୍ୱଭାବେ ଦକ୍ଷିଣ ଦିଗଜାତ କର ନକ୍ଷତ୍ର ହରି ସେ । ୩୬ ।
ରଥସ୍ଥିତ ପକ୍ଷିବର ପୁଣି [1]ତମଖଣ୍ଡନକାରୀ ସେ ।
ଘନବନ୍ଧୁ ନାମ [2]ଜଲଜଧାରଣ ପ୍ରମାଣ ହରି ସେ । ୩୭ ।
ଚତୁର କ୍ରମରେ ହରି ପଞ୍ଚ ନାମ ଜାଣିମ ଭଲଟଲ ।
ଏ କାଳେ ସ୍ନାନେ ବେନି ସଖୀ ମାଲତୀ-[1]କାସାରେ ଚଳିଲେ । ୩୮
[1]ପୁରୁଷ-ଚୂଡ଼ାପୁରୁଷ ବସିଅଛନ୍ତି ସେ କୂଳେ ଥିକୂଳେ ।
ଯାହା ଦୃଷ୍ଟାନ୍ତର କହିଲ ଉତ୍ତର ପାଇଲ [2]ଚପଳେ । ୩୯ ।

---

ବଡ଼ହତାପ ଅପସାରିତ ହୁଏ । ଯେ ସୂର୍ଯ୍ୟ ବୃନ୍ଦାବନର ଭୂଷଣ ହୋଇ 'ଉଦୟହୋଇ' ଅନେକ ଗୁଣିଙ୍କର ଜେନ ସୁଖ ପ୍ରଦାନ କରେ । [1]ତାପଘନ, ତାପସ୍ = ତାପନାଶକ ଓ ନବତ୍ତତାପ । [2]ଅପସରି, ଅନ୍ତରୀ ଓ ଅପସାରିତ ହେବା । [3]ଚକ୍ର, ଚକ୍ରବାକ ଓ ସମୂହ । [4]କର, କିରଣ ଓ ହସ୍ତ । [5]ପ୍ରାତ, ବୃନ୍ଦାବନ ।

୩୫—ସେ ସୂର୍ଯ୍ୟ ହରି ( ସିଂହ ) ଅଟନ୍ତି । ସିଂହ ମନୋହର ମୃଗକୁ ଧରେ ଓ କ୍ଷଣକେ ଅସ୍ତବ୍ୟସ୍ତ କରି ପକାଏ ଏବଂ ହାତୀକୁ ବଦାରି ରକ୍ତାକ୍ତ ଦେହରେ ବଦାରି କରେ । ଏ ସୂର୍ଯ୍ୟ ମନୋହର ମୃଗଧର (ଚନ୍ଦ୍ର) କୁ କ୍ଷଣକେ ଅସ୍ତବ୍ୟସ୍ତ କରି ହାଟପରି ଅନ୍ଧାରକୁ ବଦାରି ରକ୍ତବର୍ଣ୍ଣ ଦେହରେ ବଦାର କରୁଅଛି । [1] ଦନ୍ତୀ, ହାତୀ ।

୩୬—ସେ ସୂର୍ଯ୍ୟ ନକ୍ଷତ୍ର ହରି (ଯମ) ଅଟନ୍ତି । ଯମରନାମ ମନ୍ଦ, ଯମ ଜୀବମାନଙ୍କର ଆନନ୍ଦ ଶତ୍ରୁବାସ । ନିଜର କାଳଦଣ୍ଡ ନାମକ ଅସ୍ତ୍ର ହାତ ପ୍ରଭାବ ଧରିଅଛି । ସ୍ୱଭାବରେ ଦକ୍ଷିଣ ଦିଗରେ ଅଧିପତିରୂପେ ବସିଛନ୍ତି ଅଛି । ଏ ସୂର୍ଯ୍ୟ କାଳ ଓ ଜୀବମାନଙ୍କର ଆନନ୍ଦ ଦାୟକ ଅଟନ୍ତି । ଦଣ୍ଡ ପ୍ରହର କାଳରେ ସମ୍ପ୍ରତି ଧାରଣ କରିଅଛନ୍ତି । ଅୟନଗତ ଅନୁସାରେ ଦକ୍ଷିଣ ଦିଗରେ ବିରାଜିତ ହୁଅନ୍ତି । [1] ମନ୍ଦ, ଯମ ଓ କାଳ । [2] ତାଜ୍ଞା, ଶତ୍ରୁବାସ ଓ ତାରା ।

୩୭—ସେ ସୂର୍ଯ୍ୟ ହରି ( ବିଷ୍ଣୁ ) ବୋଲି ପ୍ରମାଣିତ ହେଉଅଛନ୍ତି । ପକ୍ଷିବର ଗରୁଡ଼ ବିଷ୍ଣୁଙ୍କ ରଥରେ ଧ୍ୱଜରୂପେ ଥାଏ । ପୁଣି ବିଷ୍ଣୁ ଗତ୍ତକୁ ଖଣ୍ଡନ କରିଥିଲେ । ତାଙ୍କର ନାମ ଘନବନ୍ଧୁ ଓ ସେ ପଦ୍ମଧାରଣ କରିଅଛନ୍ତି । ଏ ସୂର୍ଯ୍ୟଙ୍କ ରଥରେ ପକ୍ଷିବର ଅରୁଣ ସାରଥିରୂପେ ଥାଏ । ସୂର୍ଯ୍ୟ ଅନ୍ଧକାର ନାଶକାରୀ ଓ ଘନବନ୍ଧୁ ଅଟନ୍ତି । ଏ ମଧ୍ୟ ପଦ୍ମଧାରଣ କରିଅଛନ୍ତି । [1] ତମ, ଗତ୍ତ ଓ ଅନ୍ଧକାର । [2] ଜଳଜ, ପଦ୍ମ ।

୩୮—ଚତୁର ଲୋକମାନେ ଭଲରେ କ୍ରମରେ ହରି ଶବ୍ଦର ପାଞ୍ଚ ଅର୍ଥ ଜାଣିବେ । ଏ ସମୟରେ କେମାର ସଖୀ ଦୁହେଁ ସ୍ନାନକରିବାକୁ ମାଳତୀର ପୋଖରୀକୁ ଗଲେ । [1] କାସାର, ଶ୍ରେଷ୍ଠ ପୋଖରୀ ।

୩୯—ସଜ୍ଜପୁରୁଷ ଗୁପ୍ତ ଦୂତ ସେ ପୋଖରୀ କୂଳରେ ଅଲୁଚ ହୋଇ ବସିଥିଲେ । ସେ ଦୃଷ୍ଟାନ୍ତ ହାସ ଯାହା କହୁଥିଲେ ତାହାର ଉତ୍ତର ଶୀଘ୍ର ପାଉଥିଲେ । [1] ପୁରୁଷ ଚୂଡ଼ ପୁରୁଷ, ସଜ୍ଜପୁରୁଷ ଗୁପ୍ତ ଦୂତ । [2] ଚପଳେ, ଶୀଘ୍ର ।

ଶୁଣିଲ୍ଲ ପତ୍ରିକା ଦେବାର ବିବାହ-ନିର୍ବାହ ଚରିତ ।
ଯେଜଣ ସନ୍ଦେହ-୧ସନ୍ଦେଶ ସ୍ୱଦେଶ ଚଳିଲ୍ଲ ତ୍ୱରିତ । ୪୦ ।
ଅଳ୍ପଦିନେ ନୃପନନ୍ଦନ ଭେଟିଲ୍ଲ ୧ବିଳାସ-ବିପିନେ ।
ଜଳେ ପଦ୍ମ-୨ତଳ୍ପେ ଶୋଇ ବାଳା ନାମ ଉଚ୍ଛ୍ୱାସନିଶ୍ୱାସନେ । ୪୧ ।
୧ତୁଷାର-ରଜ ଦେବାର ୨ତୁଷାନଳ ପ୍ରକାରେ ତାପନ ।
ଘଷେ ଅସ ବସ ଘଷ ରସନିଧି ଦର୍ଶନ ବିଧାନ । ୪୨ ।
କହେ ୧ଫଳାଶନ ମଦନଶଲାକା କଥାର ଗୁରୁତ୍ୱ ।
ଯେବେ ତନମିତ୍ର ଶୁଣିଲେ ବିଚାର ବଶ ସେ ଚତୁରତ୍ୱ । ୪୩ ।
ଧାତ୍ରୀ ଉପାଧ୍ୟାୟୀ ସଙ୍ଗ କଥାରଙ୍ଗ କହନ୍ତୁ ସେ ତଦନ୍ତ ।
ସ୍ମରିଲେ ଶଉର ମନ୍ତ୍ରର ବ୍ୟାଜର ସେ ଦେଲେ ଉଦନ୍ତ । ୪୪ ।
ମାଳୀପୁରେ ସ୍ତୁତି ଫୁଲମାଳା ଗୁନ୍ଥି ସେନେହୀ କୁସୁମ ।
ନାମ ଶୁଣି ଗୁଣି ହୋଇଲେ କହଇ କ କର୍ମ କ କର୍ମ । ୪୫ ।
ଗଭିଗର୍ଭେ ପତ୍ର ଦେବା ନେବା ଶିଶୁବାଳିକା ସୁଜାଣ ।
ପରସ୍ପର ଗୀତ ଇଙ୍ଗିତ ଶୁଣିଲେ ବିରହୀ ପ୍ରମାଣ । ୪୬ ।

---

୪୦—ସେ ଦୂତ, ବିବାହ ନିର୍ବାହ ହେବ ବୋଲି ରାଜାମାନଙ୍କୁ ନିମନ୍ତ୍ରଣ କରିବାକୁ ପତ୍ର ଦିଆହୋଇଥିବା କଥା ଶୁଣିଲା ଏବଂ ଯେ ମୃଗଠାରୁ ଭ୍ରମର କାଟିବ ସେ କେମାରୀ ପତି ହେବ । ଏହି ସନ୍ଦେହପୂର୍ଣ୍ଣ ବାର୍ତ୍ତା ଘେନି ସ୍ୱଦେଶକୁ ଶୀଘ୍ର ଗଲା । ୧ ସନ୍ଦେଶ, ବାର୍ତ୍ତା ।

୪୧—ଯାଇ ଅଳ୍ପଦିନରେ ବଗିଚାରେ ରାଜପୁତ୍ରଙ୍କୁ ଭେଟିଲା । ସେ ରାଜପୁତ୍ର ପଦ୍ମପତ୍ର ଶେଯରେ ଶୋଇ ଅତିବ ଉତ୍ସୁକ ହୋଇ ରାଜକୁମାରୀର ନାମ ଜପୁଥିଲେ । ୧ ବିଳାସ ବିପିନ, ବଗିଚା । ୨ ତଳ୍ପ, ଶଯ୍ୟା ।

୪୨—ରାଜପୁତ୍ରଙ୍କ ଦେହରେ ବୋଳା ହୋଇଥିବା କର୍ପୂର ତଷ୍ଟ ଅଗ୍ନିପରି ତାପ ଦେଉଥିଲା । ଭ୍ରମର କହିଲେ ଅସ, ବସ, ସେ ରସନିଧି କେମାରୀ ଦର୍ଶନବ୍ୟାପାର କହ । ୧ ତୁଷାର ରଜ, କର୍ପୂର । ୨ ତୁଷାନଳ, ତଷ୍ଟାଗ୍ନି ।

୪୩—ସେ ଦୂତ ଶୁଅସାରୀଙ୍କର କଥାବାର୍ତ୍ତା ଗୁରୁଡ଼ି କହିଲା । ସେ ତନମିତ୍ର ତାହାଶୁଣି ମନକୁ ଆଣିଲେ, ସେ ଚତୁରୀ କେମା ବଡ଼ବ ଭାବେ ବଶ ହୋଇଅଛି । ୧ ଫଳାଶନ, ଶୁକ, ମଦନଶଲାକା, ସାରୀ ।

୪୪—ସେଠାରେ ଉପାଧ୍ୟାୟୀ ସଙ୍ଗେ ଯେ କଥା ରଙ୍ଗ ହୋଇଥିଲା, ଦୂତ ତାହା ସ୍ମରଣକରି ତାହାର ତତ୍ତ୍ୱମାନ କହନ୍ତେ ସେମାନେ ତତ୍ତ୍ୱରେ ଶ୍ରବଣେ ସେ ଏଠାରୁ ଅସି ମନ୍ତ୍ରବ୍ୟାଜରେ ଉଦନ୍ତପତ୍ର ଦେଲେ ।

୪୫—ଦୂତ ମାଳୀଘରେ ବହୁ ଫୁଲମାଳା ଗୁନ୍ଥିବା ଓ କେମା ସେହି କୁସୁମପାଠ ନାମ ଶୁଣି ଗୁଣିହେଲେ ଅମ୍ଭେମାନେ କି କର୍ମକରିଲୁ ଯାହା ଏପରି ଅଦ୍ଭୁତଗୀର ଉଦନ୍ତଦେବା ଜାଣି ନ ପାରିଲୁଁ ।

୪୬—ଫୁଲଗଛ ମଧ୍ୟରେ ପୂର୍ବରୁ ପତ୍ରଦେବା ଓ ସୁଜାଣ ବାଳିକା ତାହାନେବା, ଏବଂ ପରସ୍ପରଙ୍କର ଇଙ୍ଗିତ ଗୀତ ଶୁଣି ବିରହିଣୀ ହେବା ଶୁଣି ପ୍ରମାଣ କଲେ ।

ପୁଣି ଭଣି ଦେଇ ପଚାର ଉତ୍ତର ନ ପାଇ କାତରେ ।
କ କଥା ବୋଲି ୧ତଡ଼ାଗତୀରେ ବସି ପାଞ୍ଚୁଁ ମୁଁ ଚିତ୍ତରେ । ୪୭ ।
ଆନନ୍ଦମୁଖୀ ବେନି ସଖୀ ଦେଖିଲି ପ୍ରଭାତୁଁ ସେଠାରେ ।
ଏସନ ପ୍ରସନ୍ନ କଲି କେ କାହାକୁ କହିଲି ପ୍ରକାରେ । ୪୮ ।
କେତେ ବର୍ଷ ୧ମନୁ ଭେଦ ବର୍ଷ ମନୁ ଅଶେଷ ପ୍ରମାଣ ।
କୋଟିବ୍ରହ୍ମାଣ୍ଡେ ଏକବୋଲି କଲେ ଯେ ଗୋଟିଏ ନିର୍ମାଣ ।୪୯।
ଏମନ୍ତ ୧ମତ୍ତକାଶିନୀ ଏ କେମନ୍ତ ଅନେକ ସୁଗାଢ଼ ।
ଲଭି ଦଶେ ଦଂଶ ସେ ଦଶେ ଆଶାସ୍ୱୀ ପୁରୁଷେ ବରଣ । ୫୦ ।
ବୋଲନ୍ତାଇ ଚନ୍ଦ୍ର ନୋହେ ରାଜପୁତ୍ର ବନାଶେ ଉତ୍ପାତ ।
ଯେଣୁ ଜୀବଦାତା କଳଲ ପୁରୁଷେ ଏ କଥା ନୋହେତ ।୫୧।
କହିଲି ଯାହା ପ୍ରଥମା ଶୁଣ ତାହା ମୋ ବାଣୀ ଶ୍ରବଣେ ।
ଅଷ୍ଟାପଦଗୋରୀ ଅଷ୍ଟତଗେ ପୂର ଅଷ୍ଟମ ଲକ୍ଷଣେ । ୫୨ ।
୧ମୁଗ୍ଧା କେତେ ସଙ୍ଗ ବପ୍ରଲବ୍ଧା ହୋଇ ସଙ୍କେତୁଁ ଆସିଲି ।
ମନ ଅଭିସାରୀ ଭୁଲେ ଅଭିସାର କରଣେ ରସିଲି । ୫୩ ।

---

୪୭—ପୁଣି ପୁଣି କହିଲ, ମୁଁ ପଚାରିଲି ଉତ୍ତର ନ ପାଇ ଏ ତ କଥା ହେବ ବୋଲି ପୋଖରୀକୂଳେ କାତରେ ବସି ମନରେ ପାଞ୍ଚୁଥିଲି । ୧ ତଡ଼ାଗ, ପୋଖରୀ ।

୪୮—ସେଠାରେ ଆନନ୍ଦମୁଖୀ ଜେମାର ଯୋଡ଼ାଏ ସଖୀଙ୍କୁ ସକାଳୁ ଦେଖିଲି । ତାଏ କାହାକୁ କହିବାପରି ଏପରି ପ୍ରଶ୍ନ କଲି ।

୪୯—ବିଧାତା କେତେ ମନ୍ୱନ୍ତରକାଳ ଧରାରେ ନିର୍ମାଣବର୍ଷ ମନୁଙ୍କ ଭେଦ ସମସ୍ତରୂପେ ପ୍ରମାଣ କରି କୋଟିବ୍ରହ୍ମାଣ୍ଡରେ ଏ ଏକ ବୋଲି ଗୋଟିଏ ନିର୍ମାଣ କଲେ । ମନୁ, ମନଙ୍କ ଓ ମନ୍ୱନ୍ତର । ଏ କଳ୍ପ ଚୌଦଟି ଯୁଗରେ ଗୋଟିଏ ମନ୍ୱନ୍ତର ।

୫୦—ଏପରି ସୁନ୍ଦରୀ ଏ କପରି ଅନେକ ଉତ୍ତମ ଗନ୍ଧୀର ପାଇ ଅଶାସ୍ତ୍ରୀ ପୁରୁଷଙ୍କୁ ଦଶଦିଗରେ ବରଣରୂପେ ଦେଖାଯାଉଅଛି । ୧ମତ୍ତକାଶିନୀ, ସୁନ୍ଦରୀ ।

୫୧—ବୋଲନ୍ତାଇ ଅବା ଏହା ଅପୂର୍ବ ନୁହେ, ରାଜପୁତ୍ର ବନାଶ ନିମିତ୍ତ ଏ ଉତ୍ପାତ ହୋଇଅଛି । ତଥାପି ଏ କଥା ନୁହେଁ । ଯେ ସୁନ୍ଦରୀ ତାହାଙ୍କ ଦ୍ୱାରା ଜନ୍ମପାଇଥିବା ପୁରୁଷ କନ୍ଦର୍ପଙ୍କୁ ଜୀବ ଦେଉଅଛି, ସେ କିପରି ଜୀବନ ନେବାକୁ ଜାଣିବ ।

୫୨—ପ୍ରଥମା ସଖୀ ଯାହା କହିଲା, ତାହା ମୋ କଥା ଶୁଣିବା ଦାଏ ଶୁଣ । ସ୍ୱର୍ଣ୍ଣଗୋରୀ ଜେମା ଅଷ୍ଟନାୟିକା ଲକ୍ଷଣ ଧରି ଆଠଦିଗରେ ପୂର ରହିଲାପରି ହୋଇଅଛି ।

୫୩—ମୁଗ୍ଧାବସ୍ଥା ପ୍ରାପ୍ତ ଏହି ଜେମା ନାୟକ ସହିତ କେଳିଦ୍ୱାରା ସଙ୍ଗରେ ମୋହିତ ହୋଇଥିଲା । ଅବସ୍ଥା ଅନୁସାରେ ନାୟିକା ମୁଗ୍ଧା, ମଧ୍ୟା, ପ୍ରଗଳ୍ଭା ଭେଦରେ ତିନିପ୍ରକାର ହୁଏ, ସେହି ତିନିପ୍ରକାର ନାୟିକା କାର୍ଯ୍ୟ ଅନୁସାରେ ପ୍ରତ୍ୟେକେ ପୁଣି ଆଠପ୍ରକାର ହୁଅନ୍ତି । ଜେମାର ସେ ସବୁ କାର୍ଯ୍ୟ ନ ଥିଲେ ସୁଦ୍ଧା କବି ଚାତୁରୀରେ ସେ ଲକ୍ଷଣମାନ ବର୍ଣ୍ଣନ କରିଅଛନ୍ତି । ପୁଣି ସେହି କେଳିସଙ୍ଗକୁ ବାଧା ହୋଇ ସଙ୍କେତ ସ୍ଥଳକୁ ବିପ୍ରଲବ୍ଧା ନାୟିକାପରି ହୋଇ ଆସିଲା । ୧ ମୁଗ୍ଧା, ନାୟିକା ଭେଦ ଓ

ନବନବ ଭବ ଭବନାକୁ ଯେଣୁ ବରହୋତ୍କଣ୍ଠିତା ।
ନିରଖେଣ ଗଲା ପର ଏହି ଚନ୍ଦ୍ରାରୁ କଳହାନ୍ତରିତା ॥ ୫୪ ॥

ଅତି ମନୋହାରୀ ଏ ବଟେଙ୍କୁ କର ଖଣ୍ଡିତା ପ୍ରକୃତି ।
ବାଞ୍ଛାରେ ହୋଉଛି ସ୍ୱାଧୀନଭର୍ତ୍ତୃକା ପ୍ରକାର ପୀରତି ॥ ୫୫ ॥

ବାସକସଜ୍ଜା ଉନ୍ନିଦ୍ର ପ୍ରାପ୍ତି-ଅଶା-ମାର୍ଗକୁ ନିରେଖି ।
ସ୍ୱପନ ସଙ୍ଗ ବଞ୍ଚେକୁଁ ସେ ପ୍ରୋଷିତଭର୍ତ୍ତୃକା କି ଦୁଃଖୀ ॥ ୫୬ ॥

ଦ୍ୱିଜାସ୍ୟା କହି ଜଗଜୟୀ [1]ଜଙ୍ଗମମୂର୍ତ୍ତି କି [2]ରୂପାସ୍ତ୍ର ।
[3]ଭବ ଦମ୍ଭନାଶେ ମୋହନାସ୍ତ୍ର କର କଲା କି [4]ସୁମନ୍ତ୍ର ॥ ୫୭ ॥

ପରୀକ୍ଷା ପାଇ ପ୍ରୟୋଗ କଲା ଯହିଁ ସଂସାରେ ସେ ଧନ୍ୟ ।
ଏକୁଁ ଅନେକ ହୋଇ ତାଙ୍କୁ ବଶି ଯେ କରଇ ଉଚ୍ଛନ୍ନ ॥ ୫୮ ॥

---

ମୋହିତା । [2] ବପ୍ରଲବ୍ଧା, ଦଶାରତା ଓ ନାୟିକା ଭେଦ । ( ଯେ ନାୟକ ସଙ୍ଗ ନ ପାଇ ସଙ୍କେତ ସ୍ଥାନରୁ ହତାଶ ହୋଇ ଫେରିଥାଏ, ସେ ବିପ୍ରଲବ୍ଧା ) । ତ୍ରିସ୍ତ୍ର ନାଟକରୁ ଅଭିସାର କରିଥିବା ମନ ସହିତ ଅଭିସାର କରିବାକୁ ଇଚ୍ଛିଲ ଅତଏବ ଅଭିସାରିକା ନାୟିକା ହେଲା । ଯେ ପ୍ରିୟକୁ କାମନା କରି ସଙ୍କେତ ସ୍ଥାନକୁ ଗମନ କରେ ତାହାକୁ ଅଭିସାରିକା କହନ୍ତି ।

୫୪—ନୂଆ ନୂଆ ଭାବ ଭାବନା କରିବା ହେତୁ ବିରହୋତ୍କଣ୍ଠିତା ପରି ହୋଇଅଛି । ତାଠାରେ ମୋ. ଅନ୍ତି ଜାଣି ନପାରି ସେ ପୁରୁଷ ନିରଖ ହୋଇଗଲା ପରେ ଏହି ଚନ୍ଦ୍ରାସ୍ତୁ କଳହାନ୍ତରିତା ନାୟିକା ପରି ହୋଇଅଛି । ( ଯେ ନାୟକ ସହିତ କଳହ କରି ଅନୁତାପ କରେ, ତାକୁ କଳହାନ୍ତରିତା କହନ୍ତି । )

୫୫—ତାଙ୍କର ଅତ୍ୟ ମନୋହାରିଣୀ ଅଙ୍ଗ, ଏହି ବଟାଙ୍କରୁ ଖଣ୍ଡିତା ନାୟିକାପ୍ରକୃତି କରିଅଛି । ଅନ୍ୟ ସ୍ତ୍ରୀ ଠାରେ ନାୟକର ଆସକ୍ତି ଥିବା ବୁଝିପାରି ଈର୍ଷାଯୁକ୍ତ ହେବା ନାୟିକାର ନାମ ଖଣ୍ଡିତା । ସ୍ୱାଧୀନଭର୍ତ୍ତୃକା ନାୟିକା ପରି ପ୍ରୀତି କରିବାକୁ ବାଞ୍ଛା କରୁଅଛି । ଗୁଣରେ ନାୟକକୁ ନିଜର ଅଧୀନ କରି ରଖିଥିବା ନାୟିକାର ନାମ ସ୍ୱାଧୀନଭର୍ତ୍ତୃକା ।

୫୬—ପ୍ରାପ୍ତିଅଶାରୂପ ବାଟକୁ ଗୃହି ଅର୍ଥାତ୍ ପ୍ରତ୍ୟାଶାରେ ଉନ୍ନିଦ୍ର ରହିବାରୁ ବାସକସଜ୍ଜା ନାୟିକା ପରି ହୋଇଅଛି । ବେଶଭୂଷା ହୋଇ ଗୃହ ସଜାଇଁ ଉପକରଣମାନ ରଖି ନାୟକ ଅପେକ୍ଷାରେ ଥିବା ନାୟିକାର ନାମ ବାସକସଜ୍ଜା ସ୍ୱପ୍ନ ସମ୍ଭୋଗ ଅନୁଭବରୁ ସେ ପ୍ରୋଷିତଭର୍ତ୍ତୃକା ନାୟିକା ପରି କି ଦୁଃଖୀ ହୋଇଅଛି । ( ପତି ପ୍ରବାସରେ ଥିବା ନାୟିକାର ନାମ ପ୍ରୋଷିତଭର୍ତ୍ତୃକା ) ।

୫୭—ଦ୍ୱିଜାସ୍ୟା ଶଶୀ କହନ୍ତି, କନ୍ଦର୍ପ ଜଗଜ୍ଜୟକାରୀ ଚଳ ପ୍ରତିମାକୁ ମହାଦେବଙ୍କ ଧୈର୍ଯ୍ୟ ନାଶ କରିବାକୁ ଅଭିମନ୍ତ୍ରିତ କଲା । [1] ଜଙ୍ଗମ, ଚଳ । [2] ରୂପାସ୍ତ୍ର, କାମ । [3] ଭବ, ଶିବ । [4] ମନ୍ତ୍ର, ଅଭିମନ୍ତ୍ରିତ ।

୫୮—ପରୀକ୍ଷା କରିବାକୁ ଯାହାଙ୍କଠାରେ ପ୍ରୟୋଗ କଲା । ସେ ଏ ସଂସାରରେ ଧନ୍ୟ ଅଟନ୍ତି ଅଭିଏକ ତାଙ୍କୁ ଏକରୁ ଅନେକ ହୋଇ ବଶି ଉଚ୍ଛନ୍ନ କରଇ ।

ଜଦଗଧ ସାର ଶରଣ୍ଡ-ଅନଲେ ତା ୧ଆନ ସମ୍ମତେ ।
ସାର୍ଥ କରିବାରୁ ଅନର୍ଥ ହୋଇଛି ତରିବ କ ସତେ । ୫୯ ।
ମୋ ପ୍ରଶ୍ନେ ବୋଇଲେ ଏ କଥା ହୋଇଲା ଏବେ ଏ ସ୍ଥାନେ ।
ସରିଲେ କାହିଁ ସନ୍ତତେ ଦହ ହେଲେ ସଗରନନ୍ଦନେ । ୬୦ ।
୧ହରିପଦ-ଗୁପ୍ତ-ଜଳ ପରଶରୁ ଯେ ପୁଣି ଗୃମର ।
୨ହରିର ଛେଦ ପାରିଜାତମାଳାକୁ ଲଭିବ ସେ ବର । ୬୧ ।
କଲେ ନିୟମ ୧ଅମରଋଷି ବୀଣାବଚନେ ଜନକ ।
ପାଇବେ ତର ତାର କନ୍ଧ କୁମର ସ୍ତମ୍ଭରେ ଏତେକ । ୬୨ ।
ଭରସା ନ କଲେ କହ ଶୋଭା ନିଧି ଦର୍ଶନ ଦେଇଛି ।
ସେ ରସାଳସା ସୁଲୋଚନା ରୁକ୍ମିଣୀ ପରସ୍ପେ ହୋଇଛି ।୬୩।
ଉଦ୍ୟମ କର ମାଧବ ପରି ନୋହିଁ ମାଧବ ସମାନେ ।
୨ତନୁବନ୍ତେ ଧନୁ ଧରି ନ ପାରିବେ ୩ଅତନୁ କମ୍ପନେ । ୬୪ ।
ଅନାୟାସେ ସାର-କିରୀଟି ପଦବୀ ସୁନ୍ଦର ଲଭିବେ ।
୨ନୀପପୁଷ୍ପ ପରି ଦେହ ଧରି ସ୍ପଷ୍ଟ ବଇରୀ ଭଳିବେ । ୬୫ ।

---

୫୯—ବୀର ନଳର ଅଗ୍ରହକୁ ତା' ସମ୍ମତରେ ସଫଳ କରିବାରୁ ଅର୍ଥାତ୍ ତାହାର ସମ୍ମତ ଥିବା ଜଣା ପଡ଼ିବାରୁ ଏ ଅନର୍ଥ ହୋଇଅଛି ଏବଂ ବୀର ରାଜପୁତ୍ର ବଡ଼ବାନଳରେ ଦଗ୍ଧ ହେଉଅଛି । ଏବେ ସତେ ତରିବ କି । ୧ ଆନ, ଆଣ ଅର୍ଥାତ୍ ଅଗ୍ରହ ।

୬୦-୬୧—ଏହି ପୂର୍ବୋକ୍ତ ପ୍ରକାରରେ ମୁଁ ପଚାରିବାରୁ ସେମାନେ ବୋଇଲେ, ସଗର ରାଜାଙ୍କ ପୁତ୍ରମାନେ କପିଳଙ୍କ କ୍ରୋଧାଗ୍ନିରେ କି ଅଣ ସର୍ବଦା ଦହ ହେଲେ କି ? ଗଙ୍ଗାଜଳ ସ୍ପର୍ଶରୁ ତରିଲେ କାହିଁକି ? ଏବେ ଏ ସ୍ଥାନରେ ଏକଥା ହେଲା. ଯେଉଁ ବ୍ୟକ୍ତି ମୃଗର ସ୍ତମ୍ଭ ଛେଦନ କରି ଆକାଶରୁ ପାରିଜାତମାଳା ପାଇବ ସେ ଏବେ ନାରୀବର ହେବ । ୧ ହରିପଦ ଗୁପ୍ତା, ଗଙ୍ଗା । ୨ହରି, ମୃଗ ।

୬୨—ଦେବର୍ଷି ନାରଦଙ୍କ ବୀଣା ବଚନରେ ପିତା ଏହି ନିୟମ କଲେ, ରାଜକୁମାର ସ୍ତମ୍ଭରେ ଏତେକ କର, ତୁମ୍ଭେ ପାଇଲେ ନାହିଁ ତର ଓ ସୁନ୍ଦରୀର ତାର । ୧ ଅମରଋଷି, ନାରଦ ।

୬୩—ସେ ରାଜପୁତ୍ରଙ୍କୁ କହ, ସେ ଶୋଭାନିଧି ଯେମା ସେ ଭରସା କରି ନ ଥାନ୍ତା, ତେବେ କାହିଁକି ଦେଖାଦେଇଥାନ୍ତା । ସେ ରସାଳସା, ଯେମା ସୁଲୋଚନା ଓ ରୁକ୍ମିଣୀ ମାଧବ ଓ ଶ୍ରୀକୃଷ୍ଣଙ୍କୁ ଚାହିଁ ରହିସ ପରି ହୋଇଅଛି ଅର୍ଥାତ୍ ତୁମ୍ଭଙ୍କୁ ଅପେକ୍ଷା କରୁଅଛି ।

୬୪—ତୁମ୍ଭେ ଶ୍ରୀକୃଷ୍ଣପରି ଉଦ୍ୟମ କର, ମାଧବପରି ହୁଅ ନାହିଁ । ମାଧବ ଯେପରି ଉଦ୍ୟମ କରି ନ ପାରି ସୁଲୋଚନାକୁ ପାଇଲା ନାହିଁ ଏବଂ ଶ୍ରୀକୃଷ୍ଣ ଉଦ୍ୟମକରି ରୁକ୍ମିଣୀଙ୍କୁ ପାଇଥିଲେ । ୧ମାଧବ, ଶ୍ରୀକୃଷ୍ଣ । ୨ ତନୁବନ୍ତେ, ଦେହଧାରୀମାନେ । ୩ ଅତନୁ, କନ୍ଦର୍ପ । କନ୍ଦର୍ପର କମ୍ପନ ହେତୁରୁ ଅନ୍ୟ ଦେହଧାରୀ ଅର୍ଥାତ୍ ପୁରୁଷମାନେ ଧନୁ ଧରିପାରିବେ ନାହିଁ ।

୬୫—ସେ ସୁନ୍ଦର ରାଜପୁତ୍ର ଅନାୟାସରେ ବୀର ଅର୍ଜୁନ ପରି ପଦବୀ ଲଭିବେ ଅର୍ଥାତ୍ କାର୍ଯ୍ୟ ସିଦ୍ଧ କରିବେ । ବୈରୀମାନେ କଦମ୍ବଫୁଲ ପରି ଶରୀରକୁ ରୋମାଞ୍ଚ କରି ଯୁଦ୍ଧ କ୍ଷେତ୍ରରେ ସ୍ପଷ୍ଟ ଯୋଇଲ ପରି କାମ୍ପବକାରରୁ ଚଳପଡ଼ିବେ । ୧ କିରୀଟୀ, ଅର୍ଜୁନ । ୨ ନୀପପୁଷ୍ପ, କଦମ୍ବଫୁଲ ।

୧ଅବଧାନ କରେ କହିଲି କହିଲେ ଯେ ଯେତେ ବଚନ ।
୨ଶିଖୀ ଶିଖଣ୍ଡୀ ହୋଇଛୁ ଯା ଶୋଭି କେ ପ୍ରମାଣ ଏମାନ ।୬୬।

ଅଶ୍ଳେଷ ଧ୍ୱନି ଶ୍ଳେଷ ଛଳ ବିରୋଧ ରୂପକ ଉତ୍ସାହ ।
ସୁରସଜନିତ ଦୂତ ଗିର ଶୁଣି ଅଧିକ ସୁସ୍ନେହ । ୬୭ ।

ଜନକକୁମାରୀ ଅଜ୍ଞା ଅବଧାରି ଯେ ମାରି ମାରୀଚ ।
ତାଙ୍କ କୃପାରୁ ସେ ପାରି ହେବେ ବୋଲି ଧଇଲି ୧ନାରାଚ ।୬୮।

ପଙ୍କ୍ତି ବଦ୍ଧଦାନ ସ୍ୟନ୍ଦନ ସାରଥି ହୋଇ ଯେ ସମ୍ଭବ ।
ମଞ୍ଜୁଳ ମଙ୍ଗଳଯୁକ୍ତ ନାମ ବହି ରକ୍ଷଣେ ପୃଥିବୀ । ୬୯ ।

ପାଦେ ଉପଯୋଗି ଇନ୍ଦ୍ର ଯେ ସର୍ବଦା ଧୀବର ଆନନ୍ଦେ ।
ସବୁ ଦୁଇବର୍ଣ୍ଣ ନାମେ ଅଣି ବୁଧେ ମଜ୍ଜିବ ସେ ପଦେ । ୭୦ ।



---

୬୬—ସେ ଯେତେ ବଚନ କହିଲେ, ତାହାସବୁ ମୁଁ ଅପଣଙ୍କ ମନୋଯୋଗ ପକ୍ଷରେ କହିଲି । ଏ କଥାମାନ ଅବଶ୍ୟ ପ୍ରମାଣ ହେବ । ଯାହାର ମସ୍ତକରେ ଶୋଭା ଅର୍ଥାତ୍ କେଶ ଶୋଭା ମୟୂରପର ହେବାରୁ ଶିଖଣ୍ଡି ହୋଇଅଛୁ ଅତଏବ ଶିଖଣ୍ଡିତ୍ୱ ଦେଖି ଶ୍ରୀଷ୍ଣ ଧନୁର୍ଧର ନ ପାରିଲାପରି ଅନ୍ୟ ବୀରମାନେ ଧନୁଧରି ପାରିବେ ନାହିଁ । ୧ ଅବଧାନ, ମନୋଯୋଗ । ୨ ଶିଖୀ, ମୟୂର ।

୬୭—ଧ୍ୱନି, ଶ୍ଳେଷ, ଛଳ, ବିରୋଧ, ରୂପକ, ଉତ୍ସାହ ମିଶ୍ରିତ ସୁରସ ପ୍ରକାଶକ ଦୂତର ବଚନ ଶୁଣି ରଘୁପତି ଅଧିକ ସ୍ନେହଯୁକ୍ତ ହେଲେ । ୧ ଅଶ୍ଳେଷ, ମିଶ୍ରିତ ।

୬୮—ଯେ ରାମଚନ୍ଦ୍ର ଜନକକୁମାରୀ ସୀତାଙ୍କ ଅଜ୍ଞା ଅନୁରୋଧରେ ମାରୀଚ ମାୟାମୃଗକୁ ମାରିଥିଲେ । ସେ ରାଜପୁତ୍ର ତାଙ୍କ କୃପାରୁ ଉଦ୍ଧାର ହେବ ବୋଲି ଶର ଧାରଣ କଲି । ୧ ନାରାଚ, ଶର ।

୬୯—ଯେ ପଙ୍କ୍ତିବଦ୍ଧଦାନ (ଦଶ) ସ୍ୟନ୍ଦନ (ରଥ) ସାରଥି (ସୂତ) ହୋଇ ଅର୍ଥାତ୍ ଦଶରଥ ପୁତ୍ର ରୂପରେ ଜାତ ହୋଇ ମଞ୍ଜୁଳ (ରାମ) ମଙ୍ଗଳ (ଭଦ୍ର) ଯୁକ୍ତ ନାମ ଅର୍ଥାତ୍ ରାମଭଦ୍ର ନାମ ବହି ପୃଥିବୀ ରକ୍ଷା କରିବାକୁ ଜାତ ହୋଇଥିଲେ ।

୭୦—ଉପଯୋଗିଇନ୍ଦ୍ର ଅର୍ଥାତ୍ ଉପେନ୍ଦ୍ର-ବିଷ୍ଣୁ ଯେଉଁ ପାଦରେ ଆନନ୍ଦେ ଧୀବର (ଦାସ) ହୋଇଅଛି । ଅତେବ ବୁଧଜନମାନେ ନାମରେ ଦୁଇବର୍ଣ୍ଣ ଅଣି ଅର୍ଥାତ୍ ରାମ ନାମ ଗ୍ରହଣକରି ସେ ରାମ ପାଦରେ ମଜ୍ଜିବ ।

## ସପ୍ତତ୍ରିଂଶ ଛାନ୍ଦ ।

ରାଗ ପାହାଡ଼ିଆ କେଦାର ।


ଣ ସୁବୁଦ୍ଧି କଲେ ଦୃଗ୍ଗ୍ୟର ଦେଶ ଦେଶକେ ସନ୍ଦେଶ ସ୍ଥିର
ବିଶ୍ବାନନ୍ଦକ ଚମ୍ପାଛତ୍ରର ନୃପତି ନରେନ୍ଦ୍ର ଯେ ।
୧ବନ୍ଦାରୁ ବୃନ୍ଦାରକ-ବୃନ୍ଦଙ୍କ ବନ୍ଦନ ନନ୍ଦସୁତ ନନ୍ଦକ-
ଧରେ ବନ୍ଦନ କରେ ମାନକ ଖାର ପ୍ରଭୃଚ୍ଛେ ଯେ ।
ସମଭାବରେ ଯାହା ମିତ୍ର ବଇରୀ ଯେ । ପାଇ ଅଚଳଶିରୀ ଅଚଳଶିରୀ ଯେ ।
ମହିଷୀ ସଙ୍ଗେ ବନବିହାର ମହିଷି ସଙ୍ଗେ ବନବିହାର
ଚନ୍ଦ୍ରାତପର ଚନ୍ଦ୍ରାତପର ତଳେ ବିହର ଯେ । ୧ ।
ବରବର୍ଣ୍ଣିନୀ ଛବିରେ ଶୋଭ ବରବର୍ଣ୍ଣିନୀ କବିରେ ସେହ
୧ଭବରେ ନାହିଁ ଭୁବରେ କାହିଁ ଅଛି ନନ୍ଦନୀ ଯେ ।
୨ସୁସମେ ସନେ ନ ପାଇ ବରେ ପାଇଛି ବରେ ସେ ସ୍ୱୟମ୍ବରେ
ଲକ୍ଷଣା ଏବେ ସେ ଆଡ଼ମ୍ବରେ ଲୋକବନ୍ଦନୀ ଯେ ।
ନାଭିତଳକ ସାବଣ୍ୟଫଳକ ବତ ଯେ । ଯେନ ଶବ ବଶବ ଯାଗୁର ସୁତ ଯେ

---

### ସପ୍ତତ୍ରିଂଶ ଛାନ୍ଦ ।

୧—ଅହେ ସୁବୁଦ୍ଧି ଜନମାନେ ଶୁଣ, ଗୁଣମାନେ ଦେଶ ଦେଶକେ ଏହି ବାର୍ତ୍ତା ପ୍ରଗ୍ରଭକଲେ । ଚମ୍ପାନଗର ସ୍ୱଜାଶ୍ୱାନନ୍ଦକ ନାମ୍ୟ ବନ୍ଦନକାରୀ ଦେବତା ସମୂହଙ୍କ ଦାରା ବନ୍ଦନୀୟ ନନ୍ଦକନାମକ ଖଡ୍ଗଧାରୀ ନନ୍ଦସୁତ ଶ୍ରୀକୃଷ୍ଣଙ୍କୁ କେବଳ ପୂଜାକରନ୍ତି । ଯାହାଙ୍କର ଖାର ପଣିଅରେ ଓ ପ୍ରଭୁତ୍ୱରେ ଶତ୍ରୁ ଓ ମିତ୍ରମାନେ ସମାନଭାବରେ ଅଛନ୍ତି । ମିତ୍ରମାନେ ଅଚଳସମ୍ପତ୍ତି ପାଇଅଛନ୍ତି, ଏବଂ ଶତ୍ରୁମାନେ ମଧ୍ୟ ଅଚଳ ଶ୍ରୀ ଅର୍ଥାତ୍ ପର୍ବତରେ ବୁଲିବା ଭାଗ୍ୟପାଇ ଅଛନ୍ତି । ମିତ୍ରମାନେ ମହିଷୀ (ପାଟରାଣୀ) ମାନଙ୍କ ସହିତବନରେ ବିହାରକରୁ ଅଛନ୍ତି । ଶତ୍ରୁମାନେ ମଧ୍ୟ ମହିଷୀ (ମଇଁଷି) ମାନଙ୍କ ସହିତ ବଣରେ ବୁଲୁଅଛନ୍ତି । ମିତ୍ରମାନେ ଚନ୍ଦ୍ରାତପ ତଳେ ବିହାର କରୁଅଛନ୍ତି ଏବଂ ଶତ୍ରୁମାନେ ଚନ୍ଦ୍ର ଓ ସୂର୍ଯ୍ୟ କିରଣତଳେ ବୁଲୁଅଛନ୍ତି ୧ ବନ୍ଦାରୁ ବୃନ୍ଦାରକ ବୃନ୍ଦ, ବନ୍ଦନକାରୀ-ଦେବସମୂହ ।

୨—ସେ ରାଜାଙ୍କର ଗୋଟିଏ ନନ୍ଦନୀ ଅଛି, ସେହି ବର ବର୍ଣ୍ଣନାଛବିରେ ଶୋଭା ପାଉଅଛି । କବିମାନଙ୍କ ବର୍ଣ୍ଣନାରେ ତାପରି ବର (ଶ୍ରେଷ୍ଠ) ସ୍ୱର୍ଗରେ ନାହିଁ ମର୍ତ୍ତ୍ୟରେ ଅବା କାହିଁ । ସେ ରୂପ ବଳରେ ଶୋଭାରେ ସମାନବର ନ ପାଇବାରୁ ସ୍ୱୟମ୍ବର ଦ୍ୱାରାରେ ଏକବର ପାଇଅଛି । ଏବେ ସେ ଲକ୍ଷଣାରେ ଆଡ଼ମ୍ବର ହୋଇଅଛି । ସେ ନାଭୀତଳକ ବନ୍ୟଫଳପରି ହୋଇଅଛି । ଏ ଯେନ ବଳିଷ୍ଠ ଅଙ୍ଗରେ ଅର୍ଥାତ୍ ଗଣ୍ଡସ୍ଥଳାଦି ସ୍ଥାନରେ ଯୁକ୍ତ ହୋଇଅଛି ଏବଂ ଯାଗୁର (କଟିକିଙ୍କିଣୀ) ପ୍ରଭୃତିରେ ଶୋଭିତ ହୋଇଅଛି । ତାଳ ମଧ୍ୟ ଯତ୍ନ ବଢ଼ିଲେ ହୋଇଥାଏ । ସୁନ୍ଦର ମଧ୍ୟ ଲମ୍ବା ହୋଇଥାଏ । ଏ କୁମାରୀ ଯୌବନମଣ୍ଡଳରେ ପ୍ରବେଶ ଆରମ୍ଭ କରିଅଛି ସତ ଜାଣିବାପାଇଁ ଶିବସ୍ତୁତି ପ୍ରକାରେ ଶ୍ରେଷ୍ଠ ଓ ଅନେକ ସ୍ୱଭାବ ବୃଦ୍ଧି ହୋଇଅଛି । ସେ ଏପରି ବଧୀରଭାବ କରିପାରୁଛି । ତାହାର

ଶୋଭାମଣ୍ଡଳେ ୪ବରଗ୍ରହ ସବ ୫ଭୂତନାଥରେ ପୁଣି ରଞ୍ଜିତ
ଜମ୍ବ୍ୱାର୍ଥେ ନାନା ସୁମନାର୍ଚ୍ଚିତ ବିଧାତା କୃତ ଯେ । ୨ ।
ହେଉ ନୃପତି ହେଲି କୁମାର ଯେହ୍ନୁ ମଣ୍ଡିବ ତହିଁ ଭ୍ରମର
ଯୋଡ଼ିଲା କ୍ଷଣି ୧ତରେ କାମର ଯେହ୍ନୁ ମଣ୍ଡିବ ତହିଁ ଗୁମର
ଝୁଙ୍କା ପଡ଼ିବ ପାଣି ୨କୃପାଣେ ବୋଲିବ ଧନ୍ୱୀ ବନ୍ଧିବ ବାଣ
ସନ୍ଧିଲା ମାନେ ଛୁଟିବ ଗୁଣ କସ କରିବ ଯେ ।
କବି ଦୂତଙ୍କ ଉକ୍ତି ମୁକ୍ତିପଦସ୍ତ ଯେ । କେହ୍ନ ଲୁଟିବା ଭାବ ରାଜନେ ହସ ଯେ ।
ଯତିଙ୍ଗ ପ୍ରସ୍ତାବରେ ବାହାର ୩ଧନଞ୍ଜୟରେ ସେନେହଭର
ନ ଦେଇ କେହ୍ନ ପ୍ରତିଉତ୍ତର ମୁନିଙ୍କ ପରି ଯେ । ୩ ।
ପାଟଳପୁଷ୍ପ ସଭାରେ ପାଦ ଚାଳନ୍ତେ ନେଇ ଜାଣି ବଡ଼ିମ
କବିତ୍ୱ କୃତ ୧ବନ୍ଦୀ ପଠିତ ଦେଇ ଉତ୍ତର ଯେ ।
ଗୋଟିଏ ଚମ୍ପା ବୃକ୍ଷ ଭିତରେ ଅଛି ଯେତେକ ଦେଶମାତ୍ରରେ
କେତେ କହିବା ପ୍ରଭୁ ତଥିରେ ଶାନ୍ତି ସାଗର ଯେ ।
ଯେବା ୨କ୍ଷମ ହେବାକୁ ମିତ୍ର ବଇରୀ ଯେ । ଯହିଁ ୩ପୂର୍ବନରେଶ ଏମନ୍ତ କରି ଯେ

---

ଦେହ ମଧ୍ୟ ମଣ୍ଡଳାକାରରେ ଶୋଭାପାଉଥାଏ । ଶିବ ମୂର୍ତ୍ତିରେ ରଞ୍ଜିତ ହୋଇଥାଏ । ଜମ୍ବୁ ଉଦ୍ଦେଶ୍ୟରେ ନାନାପୁଷ୍ପରେ ଶୋଭିତ ହୋଇଅଛି । ୧ ଦଳରେ, ସ୍ୱର୍ଗରେ । ୨ ମୃଣାଳ, ଶୋଭାରେ ୩ ଫଳକ, ଢାଲ । ୪ ବରଗ୍ରହ ସୁବ ଓ ଦେହ । ୫ ଭୂତନାଥ, ଶିବ ।

୨—ରାଜାହେଉ ବା ରାଜକୁମାର ହେଉ ସେ ମୃଗୟାଗମନ ହେତନବରୁ ସେ ଢାଲ ରୂପିଣୀ ରାଜକନ୍ୟାଠାରେ ମଣ୍ଡିବ । ଢାଲପରି ତାକୁ ଛାତିରେ ଯୋଡ଼ିବାକ୍ଷଣି କାମର ଗର୍ବ ଯିବ । ତା ହାତରୁ ଖଡ୍ଗ ଝୁଙ୍କିପଡ଼ିବ, ତୁମ୍ଭେ ଧନ୍ୟ ବୋଲିବ ସେ କନ୍ଦର୍ପରୂପ ଧନ୍ୱୀ ଖଡ୍ଗ ଖସିଲେ ମଧ୍ୟ ବାଣ ବନ୍ଧିବ । କିନ୍ତୁ ସେ ବାଣ ସନ୍ଧାନ କରିମାତ୍ରେ ତାର ଧନୁର୍ଗୁଣ ଛିଣ୍ଡି ପଡ଼ିବ । ଅର୍ଥାତ୍ ତାର ଗୁଣ ସ୍ୱରୂପ ଭ୍ରମରମାନେ ପଦ୍ମଗନ୍ଧା ସୁନ୍ଦରୀରୂପାର ତା ଧନୁରୁ ଛିଣ୍ଡି ଚାଲିଆସିବେ । ଆଉ ସେ କଅଣ କରିବ । ଏପରି ଦୂତଙ୍କ କଥାକୁ ମୁକ୍ତିପଦକ୍ତ ମନେକରି କୌଣସି ରାଜାମାନେ ଲୁଟକରିବା ବୋଲି ବିଚାରି ହସିଲେ । କେତେ କେତେକ ଅର୍ଜୁନଠାରେ ସ୍ନେହଭର ହୋଇ ପତିଙ୍ଗ ବାହାରିବାପରି ବାହାରିବେ । କେହି ପ୍ରତ୍ୟୁତ୍ତର ନ ଦେଇ ମୌନ ହୋଇଥିଲେ । ୧ ଉରେ, ଛାତିରେ । ୨ କୃପାଣ, ଖଡ୍ଗ । ୩ ଧନଞ୍ଜୟ, ଅଗ୍ନି ।

୩—ଦୂତ ପାଟଳୀପୁଷ୍ପ ରାଜସଭାରେ ପହଞ୍ଚି ଏପରି କହନ୍ତେ, ପାତ୍ର ଅଧିକାରୀଙ୍କଠାରୁ ଦେବାକୁ ଯୋଗ୍ୟ ଭଟ ଜାଣିପାରି ବନ୍ଦୀ କବିତାପାଠରେ ଉତ୍ତର ଦେଲେ । ଏ ରାଜଧାନୀର ନାମ ପୁଷ୍ପପୁର, କିନ୍ତୁ ଚମ୍ପାପୁଷ୍ପମାନଙ୍କମଧ୍ୟରେ ଗୋଟିଏ ସିନା, ଆଉ ଯେତେ ଦେଶମାତ୍ର ଅଛନ୍ତି, ତାହା ଏହାର ଲକ୍ଷଣହୀନ, କେତେଅବା କହିବା, ସେହି ପୁଷ୍ପପୁରର ରାଜା ଶାନ୍ତି ସାଗର ଅଟନ୍ତି । ଏହାଙ୍କର ମିତ୍ର ବା ଶତ୍ରୁ ହେବାକୁ ଏ ସମର୍ଥ ଅଛି । ଯେଉଁରାଜ୍ୟରେ ପୂର୍ବ ରାଜା ଜରାସନ୍ଧ ଏପରିକାର୍ଯ୍ୟ କରିଥିଲେ । ଶଙ୍ଖଧାରୀ ଶ୍ରୀକୃଷ୍ଣଙ୍କଠାରେ ଭୟଭୀତ ହୋଇ ନିଜସ୍ଥାନ ମଥୁରାଛାଡ଼ି ସମୁଦ୍ର ମଧ୍ୟରେ ଦ୍ୱାରକାପୁରୀ

୪ଦରକରରେ ଯେ ଦରକର ସ୍ଥାନ ଛଡ଼ାଇ ସିନ୍ଧୁ ମଧ୍ୟର
କରାଇ ୫ପୃଷ୍ଠଭେଦନ ସାର ୬ସମର୍ଥ ପଦ୍ମ ଯେ । ୪ ।
ଶିବ ସୁନ୍ଦର ପୁତ୍ର କୁମାର କରନ୍ତି ସ୍ୱାନମୂରର୍ତ୍ତିମାନ
ପୂର୍ଣ୍ଣ ସମ୍ପୂର୍ଣ୍ଣ ଗୁଣଗଣର ନବୀନଯୁବା ଯେ ।
୧ଜିଷ୍ଣୁ-ପଦକୁ ଯେଣୁ ବହନ୍ତି ସୁନ୍ଦରୀ-୨ପୁରନ୍ଦରୀ ବାଞ୍ଛିତ
ଏ ଯେନ ଆଜ ଲକ୍ଷଲକ୍ଷିତ କରନ୍ତି କେବା ଯେ ।
ଏତ ସମ୍ରାଟ ଆଜ୍ଞାହେବ କି ନାହିଁ ଯେ । ଶୁଣି ଗୁଣି ୩ପୁରୋଧା ପ୍ରସ୍ତାବେ କହୁ ଯେ
ଡାକଲେ ରଣେ କି ଜୁତପଣେ ନବର୍ତ୍ତେ ନାହିଁ କ୍ଷତ୍ରିୟ ଗୁଣେ
କଥିତ ଯୁଧିଷ୍ଠିର ପୁରାଣେ ବ୍ୟାସହିଁ ଲିହି ଯେ । ୫ ।
୧ସତବ ଭଣି ଯେ ୨ଦ୍ୱୀପେଶ୍ୱର କବଣେ ତାଙ୍କୁ ଯେ ଦ୍ୱୀପେଶ୍ୱର
୩କେଶରୀ ଛବି ଧାରଣ ଶର ୪କରକଞ୍ଜଲେ ଯେ ।
ସେ ରୁଣ୍ଡ ହୋଇଥିବେ ଯେ ତହିଁ ଦର୍ଶନେ ୫ହ୍ରୀଦଶରେ ଥୋଇ
ମୁକ୍ତାମୁକୁଟ ଲୋଟାଉ ମୃଣ୍ମ ବନମବଲେ ଯେ ।
ମୃଗପୁଚ୍ଛ ଛେଦନ କେତେମାତବ ଯେ । ଆଜ୍ଞା ହେଉ ବଜାଯୁ କରୁ କୁମାର ଯେ

---

ବାରବା ବଗର ତାଙ୍କୁ ଫଲୁଅମଧରେ ରଗିସପର ବଗରଥିଲେ । ୧ ବନ୍ଦୀ, ଭାଟ । ୨ କ୍ଷମ, ସମର୍ଥ
୩ ନରେଶ, ରାଜା । ୪ ଦରବର, ଶଙ୍ଖଧାର ଓ ଭଦ୍ରକାରକ । ୫ ପୃଷ୍ଠ ଭେଦନ, ପୃଷ୍ଠ । ୬ ସ୍ୱପୃଷ୍ଠ
ପଲ୍ଲଥା ।

୫—ଏ ପ୍ରକାର ରାଜକୁମାରଙ୍କ ଶିବଙ୍କସଦୃଶ କନ୍ଦର୍ପଙ୍କୁ ସୁନ୍ଦରପଣରେ ସ୍ୱାନମୂର୍ତ୍ତି କରୁଅଛନ୍ତି । ପୁଣି ସବୁ ଗୁଣମାନଙ୍କରେ ନିପୁଣ ଓ ନବଯୁବାମାନଙ୍କ ମଧ୍ୟରେ ସେ ହେବୁ ଇନ୍ଦ୍ରପଦକୁ ବହୁଅଛନ୍ତି । ଏବ ସୁନ୍ଦରୀମାନଙ୍କ ମଧ୍ୟରେ ଇନ୍ଦ୍ରାଣୀ ସ୍ୱରୂପା କେମାକୁ ଇଚ୍ଛା କରୁଅଛନ୍ତି । ଏ ହେବୁ ଅଜ କଏ ଅବା ଏହାଙ୍କ ସଙ୍ଗେ ଲକ୍ଷିତ ହେବ । ଏତ ସମ୍ରାଟ ଅନ୍ତ ସ୍ୱୟମ୍ବରକୁ ଅଜ୍ଞ ହେବକି ନାହିଁ । ପୁରୋହିତ ଏହା ଶୁଣି ମନେବଶୁରବଉ କହିଲେ ପୁଷ୍ପବଷପ୍ରରେ ଓ ଜୁଆଖେଳ ଦଣ୍ଡପ୍ରରେ ଡାକଲେ କ୍ଷତ୍ରିୟ ନିଜ ଧର୍ମଅନୁସାରେ ନବର୍ତ୍ତେ ନାହିଁ । ଏହା ପୁରାଣରେ ଯୁଧିଷ୍ଠିରଙ୍କ ସମ୍ବନ୍ଧରେ କୁହାଯାଇ ଥିବାର ବେଦବ୍ୟାସ ଲେଖି ଅଛନ୍ତି । ୧ ବନ୍ଧୁ, ଇନ୍ଦ୍ର । ୨ପୁରନ୍ଦରୀ ଇନ୍ଦ୍ରାଣୀ ପୁରୋଧା, ପୁରୋହିତ ।

୬—ମନ୍ତ୍ରୀ କହିଲେ, କୁମାର ଯେଉଁ ଦ୍ୱୀପେଶ୍ୱର ରାଜାମାନଙ୍କୁ ତୃପ୍ତି ଶ୍ରେଷ୍ଠ କରିବାକୁ ସିଂହଯୋଗ୍ୟ ଧାରଣ କର ଶର ବ୍ୟାଜରେ ବଶମାନଙ୍କୁ ଧାରଣ କର ଅଛନ୍ତି । ସେହି ରାଜାମାନେ ସିନା ସେଠାରେ ରୁଣ୍ଡ ହୋଇଥିବେ, ଦେଖିବା ମାତ୍ରେ ସେମାନଙ୍କୁ ଲଜ୍ଜାରେ ସେମାନେ ମୁଣ୍ଡ ନତ୍ରକର ରହିବାରୁ ପରାକ୍ରମରେ ମୃଗ ଚମର ଛେଦନ କରିବା କୁମାରଙ୍କର କେତେ ମାତ୍ର ହେବ । ଅର୍ଥାତ୍ ଅକ୍ଲେଶରେ କୁମାର ଚମର କାଟି ପାରିବେ । ଅତଏବ ଅଜ୍ଞା ହେଉ, କୁମାର ବଜେ କରନ୍ତୁ । ଅପଣଙ୍କର ବଳେ କରିବା ଅବଶ୍ୟକ ନାହିଁ । ଯେପରି ଦଶରଥ ଥାଇଁ ରାମଚନ୍ଦ୍ର ଉସ୍ୱଙ୍କର ଶିବଧନୁ ଭାଙ୍ଗିବାକୁ ସମର୍ଥ ହୋଇଥିଲେ । ଏଥିରେ ରାଜା ସମ୍ମତ ହେବାରୁ ମନ୍ତ୍ରିଶ୍ରେଷ୍ଠ କୁମାରଙ୍କୁ କହିବାକୁ ଶୀଘ୍ର ଗମନ

[୬]ଅଜନନ୍ଦନ ଥାଉଁ ଶ୍ରୀରାମ [୭]ସ୍ମର-କୋଦଣ୍ଡ ଖଣ୍ଡନେ କ୍ଷମ
ରାଜା ସମ୍ମତେ ମନ୍ତ୍ରୀ ଉତ୍ତମ ଗମେ ସତ୍ୱର ଗମେ ସତ୍ୱର ଯେ ।୬।
ଏମନ୍ତ କାଳେ ପୋଷ୍ଟାର ଭୁଲେ ଦ୍ୱିମିତ ଥାଇ ନୃପଜ ଭାଳେ
ରାଜନ ସନମତ ନ କଲେ କରିବା କସ ହେ ।
ହୃଦନନ୍ଦନ ମଦନ ଶର-ଚନ୍ଦେ କରିବ ରାହୁ ପ୍ରକାର
ମୋହିନୀ ପରଷିବା ସୁଧାର ପାନେ ମୋ ଆଶ ହେ ।
ଚନ୍ଦ୍ର [୧]ବଦ୍ଧଦପଣ ପୂର୍ଣ ବହିଛି ଯେ । ଯଶୋବନ୍ତ ବୋଲେ ଏ ନୁହଇ କଷ୍ଟ ହେ
ଅମରବର ଭାବ କାମର କଲେ ଅନେକଖଣ୍ଡ ଶରୀର
ଦେବତା ଭୋଗ ଯୋଗ [୨]ସମୀର ଦେଶେ ଅଛି ହେ । ୭ ।
[୧]ମଳୟ ଧରେ [୨]ମଳୟଧର ଶୋଭା ଚନ୍ଦନଗନ୍ଧ ପ୍ରସ୍ତାର
ତୁମ୍ଭେ ଜନକ-ପ୍ରାଣ ବିହାର କର ତହିଁରେ ଯେ ।
ବିରହ-[୩]ଉରଗରେ ଗ୍ରାସିତ [୪]ମଧୁରକାଳ ହୋଏ ଆଗତ

---

କଲେ । ୧ସଚିବ, ମନ୍ତ୍ରୀ । ୨ଦିଗ୍‌ଦେଶର ଦ୍ୱିପମାନଙ୍କ ରାଜା ଓ ହସ୍ତିଶ୍ରେଷ୍ଠ । ୩କେଶରୀ, ସିଂହ । ୪କରଟ, ହସ୍ତୀ । ୫ଦ୍ରାଘିମ, ଲମ୍ବା ଶୁଣ୍ଡ ଗୁଡ଼ା । ୬ଅଜନନ୍ଦନ, ଦଶରଥ । ୭ସ୍ମର କୋଦଣ୍ଡ, ରସ୍ୱକର ଓ ଶିବଙ୍କ ଧନୁ ।

୭—ଏ ସମୟରେ ରାଜପୁତ୍ର ଦ୍ୱିଧାମଗ୍ନ ହୋଇଥିବା ଅବସ୍ଥାରେ ପୋଷ୍ଟା ସହିତ ଭୁଲି ଥିଲେ । ରାଜା ସମ୍ମତ ନ କଲେ କଣ କରିବା, ତାର ରାହୁକୁ ଚନ୍ଦ୍ରାଂଶ ଛେଦନ କଲାପରି, ତାର ପୁତ୍ର କାମ ଶର ରୂପ ଚନ୍ଦ୍ର ଦ୍ୱାରା ମୋତେ ଛେଦନ କରିବ । ରାହୁ ମୋହିନୀ ରୂପଧର ପରଷିଥିବା ଅମୃତରେ ରାହୁର ଆଶା ଥିଲାପରି ମୋର ମୋହିନୀ ରାଜ କୁମାରୀର ଅଧରାମୃତ ପାନରେ ଆଶା ଅଛି । ଚନ୍ଦ୍ର ମଧ୍ୟ ରାହୁଠାରେ ଶତ୍ରୁପଣ ବହୁକାଳ ପରେ ମୋଠାରେ ଶତ୍ରୁତା କରୁଅଛି । ଯଶୋବନ୍ତ ବୋଲନ୍ତି ଏକଥା କଷ୍ଟ ନୁହେଁ । କନ୍ଦର୍ପର ଅମର ବର (ଦେବଶ୍ରେଷ୍ଠ) ଇନ୍ଦ୍ର ଭାବ ଅଛି, ଇନ୍ଦ୍ର ମାତୃଦେବଙ୍କ ଗର୍ଭରେ ପ୍ରବେଶ କରି ବଜ୍ର ଦ୍ୱାରା ପବନର ଶରୀର ଅନେକ ଖଣ୍ଡ କଲେ ଯିବା ସେ ଜନମ ଦେବତା ଭୋଗ ଅମୃତ ପାନ ସୁଯୋଗ ପାଇ ଥିଲାପରି ଆପଣଙ୍କର ରାଜକୁମାରୀ ଭୋଗ ଯୋଗ ଅଛି । ୧ବନ୍ଧିତ ପଣ, ଶତ୍ରୁପଣ । ୨ସମୀର, ପବନ ।

୮—ତୁମ୍ଭ ପୁର ମଳୟ ପର୍ବତ ଶୋଭା ଧାରଣ କରିଅଛି । ମଳୟ ପର୍ବତ ଚନ୍ଦନର ସୁବାସ ବିସ୍ତାର କରେ । ତହିଁରେ ଜୀବମାନଙ୍କର ପ୍ରାଣ (ବାୟୁ) ବିହାର କରେ, ସେ ପବନ ସର୍ପ ଦ୍ୱାରା ଭକ୍ଷିତ ହୁଏ । ତହିଁରେ ଯେବେ ଚମ୍ପାଫୁଲ ପ୍ରସ୍ଫୁଟିତ ହୁଏ । ଯେବେ ତାକୁ ସମସ୍ତେ ଦକ୍ଷିଣ ପବନ ବୋଲି କହନ୍ତି । ସେହି ପୁଷ୍ପବତୀ ପଦ୍ମ ଲତାର ବାସନା ହରଣ କରି ଆନନ୍ଦ ହେତୁ କ୍ରୀଡ଼ାବଶରୁ ପୁଷ୍କରିଣୀରେ ସ୍ନାନକରି ଶୀତଳ ହୋଇ ଚଳଇ । ତୁମ୍ଭପୁରୀ ଚନ୍ଦନ ସୁଗନ୍ଧ ବିସ୍ତାର କରୁଅଛି । ତୁମ୍ଭେ ତହିଁରେ ପିତୃ ପ୍ରାଣ ଓ ଦେବ ପ୍ରାଣ ସ୍ୱରୂପ ହୋଇଅଛ, ବିହାର କରୁଅଛ ବିରହରୂପ ସର୍ପଦ୍ୱାରା ଗ୍ରସ୍ତ ହୋଇଅଛ । ମନୋହର କାଳ ଆଗତ ହୋଇଅଛି । ନସ୍ତେ ଏବେ ଉଭୁଙ୍କ ବଳ ଦ୍ୱାରରେ ଗମନ କରିବ । ଯେବେ ତୁମ୍ଭ ପ୍ରବେଶରେ ଚମ୍ପା ହସର ଅଙ୍କୁରିତ ହେବ । ତେବେ ସମସ୍ତେ ତୁମ୍ଭଙ୍କୁ

ନିଶ୍ଚେ ଉତ୍ତର ହେବ ବହୁତ ବଳାତକାର ହେ ।
ଯେବେ ⁶ଚମ୍ପାପ୍ରଫୁଲ୍ଲସହକେଳିହେବ ହେ । ଏବେ ⁷ଦକ୍ଷିଣବୋଲି ବୋଲିବେ ସବେ
ନଗାନପୁଷ୍ପବତୀ ପଦ୍ମିନୀ ବାସ ହରଣେ ପ୍ରମୋଦ ଯେବ
କ୍ରୀଡ଼ାବଣରେ ତଡ଼ାଗସ୍ନାନୀ ହୋଇ ଚଳିବ ହେ । ୮ ।
ଏକାଳେ ଗୃହେଁ ଆସିବା ମନ୍ତ୍ରୀ କହିଲା ବିଦ୍ୟାନିଧି ଝଟିତ
ସନ୍ଦେହ-¹ସିନ୍ଧୁ ଗ୍ରାମ ଅଗସ୍ତି ଅଇଲା ମିତ ହେ ।
ତାପ-ବାତାପିସୂଦନ ହେବ ଶକ୍ତ- ବିନ୍ଧ୍ୟର ବୃଦ୍ଧି ନାଶିବ
ଉଚ୍ଚ ²ଦକ୍ଷିଣ ଉଦୟ ଯିବ ହୋଇ ଗଜତ ହେ ।
ଯେବେ ଏ ହୋଇଲା ଏ ହେବ ଅବଶ୍ୟ ହେ । ³ସୁରତରଙ୍ଗିଣୀରଗୁପ୍ତ ପ୍ରକାଶହେ
⁴ରସଚରଙ୍ଗେ ଅଗ ଉସାଇ କନ୍ଦର୍ପ-⁵କଣ୍ଠ-ଗଜକୁ ଦେଇ
ସଲିଳେ କେଳି ମନ ମଜ୍ଜାଇ କରିବ ତୋଷ ହେ । ୯ ।
ସମସ୍ତ ମନ୍ତ୍ରୀ ସମତେ କହି ପବନେ ଯେଉଁ ପୁନରେ ନାହିଁ
ବେନି ପବନ ସଂଯୁକ୍ତେ ସେହି ପାଇଲା ପ୍ରାୟ ସେ ।
ରସ ପ୍ରକଟ ହୋଇଲା କେତେ ପ୍ରଥମ ସିନ୍ଧୁ ବୃଦ୍ଧି କ୍ରମକ୍ରେ
ଦ୍ୱିତୀୟେ ସାର ହେବା ଜଗତେ ଶତେ ଉଦୟ ସେ ।

---

ନୂଆ ପୁଷ୍ପବତୀ ପଦ୍ମିନୀ ନାୟିକା ସଜ ଭୂମିବର ବସ୍ତ୍ର କ୍ରୀଡ଼ା କୌତୁକରେ ହରଣ କରି ଆନନ୍ଦ ଦେଇବା ପୁଷ୍କରିଣୀରେ ସ୍ନାନକରି ଥିବି । ¹ଜଳସ୍ଥ, ସୁଦୃଢ଼ ପୁର । ²ଧନ, ପଦ୍ମ । ³ଲହରୀ, ସର୍ପ । ⁴ମଧୁର, କୋମଳ ଓ ମନୋହର । ⁵ତମ୍ପା, ପୁଷ୍ପବିଶେଷ । ⁶ଦକ୍ଷଣ, ଦକ୍ଷିଣ ଦିଗକୁ ଆଗତ ଓ ଅନୁକୂଳ ନାୟକ ।

୯—ଏସମୟରେ ବିଦ୍ୟାନିଧି ମନ୍ତ୍ରୀ ଅସିବା ଗୃହେଁ ଝଟିତ କହିଲା । ଅହେ ମିତ ଆମ୍ଭ ସନ୍ଦେହ ରୂପକ ସମୁଦ୍ରକୁ ପାନ କରିବାକୁ ଅଗସ୍ତି ମହର୍ଷି ସ୍ୱରୂପ ମନ୍ତ୍ରୀ ଅସିଲେଣି । ଏ ଆମ୍ଭ ସନ୍ତାପରୂପକ ବାତାପି ଅସୁରକୁ ଅବଶ୍ୟ ନାଶ କରିବେ । ଆମ୍ଭ ଚିନ୍ତା ରୂପକ ବିନ୍ଧ୍ୟ ପର୍ବତର ବୃଦ୍ଧିକୁ ନାଶ କରିବେ । ଅତ୍ୟୁଚ୍ଚ ଦକ୍ଷିଣ ଉଦୟ ଯିବ ଉନ୍ନ ଅର୍ଥାତ୍ ଅଗସ୍ତି ଦକ୍ଷିଣରେ ଉଦୟ ହେବାପରି ଅନୁକୂଳ ହୋଇ ଉଦୟ ହେଲେ ଗଙ୍ଗାଙ୍କ ପରି କୋଟିବ୍ରହ୍ମାଣ୍ଡସୁନ୍ଦରୀର ଗୁପ୍ତ ଅବସ୍ଥା ପ୍ରକାଶ ହେବ (ଗଙ୍ଗା ଅଗସ୍ତି ଉଦୟରେ ସ୍ୱଚ୍ଛରୂପରେ ପ୍ରକାଶିତ ହେଲେ) ଗଙ୍ଗା ଯେପରି ଜୀବଗଣଙ୍କୁ ଜଳଦାନ କରିବାପରି କନ୍ଦର୍ପ ରୂପକ ଜୀବଗଣଙ୍କୁ ରସ [ ଜଳ ] ତରଙ୍ଗରେ ଉସାଇ ଦେବ । ସଲିଳ ( ଜଳରେ ପରି ) କ୍ରୀଡ଼ା ସନ୍ତୁତ ରଙ୍ଗୀରେ ମନ ଓ କେଳିମଜ୍ଜନ ସନ୍ତୋଷ ବଧାନ କରିବ । ¹ସିନ୍ଧୁ, ସମୁଦ୍ର । ²ଦକ୍ଷିଣ, ଦିଗ ଓ ଅନୁକୂଳ ³ସୁରତରଙ୍ଗିଣୀ, ଗଙ୍ଗା ଓ ରତ ତରଙ୍ଗିଣୀ । ⁴ରସ, ଜଳ ଓ ଶୃଙ୍ଗାର । ⁵କନ୍ଦର୍ପ, ଜୀବଗଣ ।

୧୦—ମନ୍ତ୍ରୀ ରାଜାଙ୍କ ନିକଟରେ ହୋଇଥିବା ସମସ୍ତ କଥା ଗୋପ ସହିତରେ କହିଲେ । ପୂର୍ବର ସଜନୀ ପତାରେ ଯେଉଁ ପ୍ରାଣପବନ ଲଘୁପ୍ରାୟ ହୋଇଥିଲା, ବର୍ତ୍ତମାନ ମନ୍ତ୍ରୀଙ୍କ କଥା ଶୁଣି ବେନି ପବନ ଅର୍ଥାତ୍ ବାହ୍ୟ ପବନ ସ୍ପର୍ଶରେ ଓ ପ୍ରାଣବାୟୁ ପ୍ରବେଶରେ ସେହି ପୁନର୍ଜୀବ ପାଇଲା ପ୍ରାୟ ହେଲେ । ସେତେବେଳେ କେତେକ ପ୍ରକଟ ହେଲା । ପ୍ରଥମ ରସ ଶୃଙ୍ଗାର ସମୁଦ୍ର ବଢ଼ିବାକୁ ଓ କିଏସି

ଥିଲା ତୃତୀୟ ଲୋପ ହେଲା ତ୍ୱରିତ ଯେ । ବନେ ଚତୁର୍ଥ ସଞ୍ଚାରି ସମସ୍ତ ଯେ
ବଦନେ ହୋଏ ପଞ୍ଚମ ଜାତ ଷଷ୍ଠ ଇସ୍ପୁରେ କରିବ ସ୍ଥିତି
ହୁଡ଼ିଲା ସପ୍ତ ଅଷ୍ଟମ ମାଣ ନବରଞ୍ଜିତ ଯେ । ୧୦ ।
ଜ୍ୟୋତିଷଗଣ୍ଡେ ସେ ସଙ୍ଗେ ଥିଲା ହୋଇଲା ଅନୁକୂଳ ବୋଇଲା
ସୁନ୍ଦରୀ ଅଙ୍ଗମାନ ଧାଇଁଲା ଶୁଭ ପ୍ରଧାନ ସେ ।
ହାସ ନୟନ ଗୁଣିଲା କ୍ଷଣି ଗୋପୀ ଧିବରୀ ଡାକଲେ ଶୁଣି
ଦଧି ମତ୍ସ୍ୟ ଗୋ ଭାବନ୍ତେ ପୁଣି କଣ୍ଠ ଗମନ ଯେ ।
ପାରାବତ ସମସ୍ତ ହଂସ ଗଳିବା ଯେ । ଦଶିଯାଉଁ ପୁଲକମୟ ସେ ଯୁବା ଯେ ।
ସୁମରୁଁ ଉରୁ କଦଳୀତରୁ ଦଶେ ଯାମଳ ଜ୍ୱଳନ୍ତେ ଗୁରୁ
ଦଶା ପାଲଟ ହେଲା ବଗ୍ରରୁ ମହାଙ୍କୁରିବା ଯେ । ୧୧ ।
ଲକ୍ଷିତ ଉଚ୍ଚ ଶୋଭାଏ ଦେଖା ସ୍ତନ ଶବୁକ ଅଧର ଯୋଖା
କୁମ୍ଭେ କ ପୂଗ ପଲ୍ଲବଶାଖା ସ୍ଥାପି ତତ୍କାଳ ଯେ ।

---

ରସ ଶୀଘ୍ର ଜଗତରେ ପାର ହେବାକୁ ଚିତ୍ତରେ ଉଦୟ ହେଲା । ଦୃତ୍ୟେଚସ କରୁଣ ଥିଲା, ଶୀଘ୍ର ଲୋପ ପାଇଲା । ଚତୁର୍ଥରସ ଅଦ୍ଭୁତବନେ ସଞ୍ଚାର କରିବାରେ ମନନ୍ତହେଲା, ଅର୍ଥାତ୍ ବନରେ ଯେଉଁ ଅଦ୍ଭୁତ ମୂର୍ତ୍ତି ଦେଖିଥିଲା, ତାହା ମନେ ରଖିଥିବାରେ ଗର୍ବିତ ହେଲା । ପଞ୍ଚମ ରସହାସ୍ୟ ମୁଖରେ ଜାତ ହେଲା । ଷଷ୍ଠରସ ଭୟାନକ ଶତ୍ରୁମାନଙ୍କଠାରେ ସ୍ଥିତ କରିବବୋଲି ନିଶ୍ଚିତ ହେଲା । ତନ୍ତୁ ସପ୍ତମରସ ବୀଭତ୍ସ ଓ ଅଷ୍ଟମରସ ରୌଦ୍ର ଦୁହିଁଙ୍କୁ ମାତ୍ର ହୁଡ଼ିଲା ଅର୍ଥାତ୍ ସେ ଦୁହିଙ୍କର ଚିହ୍ନ ପ୍ରକାଶ ହେଲା ନାହିଁ । ନବମ ଶାନ୍ତ ରସ ଦ୍ୱାରା ରଞ୍ଜିତ ହେଲା ।

୧୧—ସେହି ସମୟରେ ଜ୍ୟୋତିଷ ଗଣ ସାଙ୍ଗରେ ଥିଲେ ଶୁଭ ଅନୁକୂଳବେଳ ହେଲା ବୋଲି ସେ କହିଲେ । ତହୁଁ ସକଳ ପ୍ରଧାନ ଶୁଭସୂଚକ ରାଜପୁତ୍ରୀର ଅଙ୍ଗମାନ ଧାଇଁ କଲେ, ସୁନ୍ଦରୀର ହାସ ଓ ଚକ୍ଷୁକୁ ରାଜପୁତ୍ର ଗୁଣି ହେଲାବେଳକୁ ଗୋପାଙ୍ଗନୀ ଓ କେଉଟଣୀ ଦୁହେଁ ଡାକଲେ, କ୍ରମରେ, ଦହି ନେବ ଗୋ, ମାଛନେବ ଗୋ, ଅତଏବ ସୁନ୍ଦରୀର ହାସ ଦହିତୁଲ୍ୟ ଓ ଚକ୍ଷୁ ମତ୍ସ୍ୟତୁଲ୍ୟ । ପୁଣି ରାଜପୁତ୍ର ସୁନ୍ଦରୀର କଣ୍ଠ ଓ ଗମନକୁ ଭାବନ୍ତେ ପାରାବାର ଓ ହଂସ ଗଳିବା ଦେଖିବାରୁ ସେ ଯୁବରାଜଙ୍କ ରୋମାଞ୍ଚ ପୂର୍ଣ୍ଣହେଲେ, ଯେ ହେତୁ ସୁନ୍ଦରୀର କଣ୍ଠ ପାରାବତ କଣ୍ଠତୁଲ୍ୟ ଓ ଗତି ହଂସଗତି ତୁଲ୍ୟ ଅଟେ । ରାଜପୁତ୍ର ସୁନ୍ଦରୀର ଉରୁ ସ୍ମରଣ କରନ୍ତେ ସୁନ୍ଦରକାନ୍ତା ଓ ଲଟା କଦଳୀଗଛ ଦେଖିଗଲା । ତହୁଁ ରାଜପୁତ୍ର ଦଶା ପରିବର୍ତ୍ତନ ହେଲା ବୋଲି ତାଙ୍କରବଦନ ବଡ଼ ଅନନ୍ଦିତ ହେଲା ଯେହେତୁ ସୁନ୍ଦରୀର ଉରୁ ଓ ଲଟା କଦଳୀଗଛପରି ।

୧୨—ସୁନ୍ଦରୀ ଉଜଳେ ମୁହଁ ପୋତି ଠିଆହୋଇଥିବା ଶୋଭାକୁ ରାଜପୁତ୍ର ଭାବନା କଲା, ତହିଁରେ ସ୍ତନ ଓ ଚିବୁକ ଏବ ଓଷ୍ଠ ଯୋଗା ହୋଇ ଥିବାପରି ଥିଲା ଅତଏବ ପୂର୍ଣ୍ଣକୁମ୍ଭ ଉପରେ ସୁପ୍ତ ଓ ପଲ୍ଲବ ଆମ୍ରପତ୍ର ସେ ସମୟରେ ଅଣି ଥୁଆହେଇଥିବ ଦେଖିଯାଉଥିବ । କୁଚ କୁମ୍ଭପରି, ଚିବୁକ ସୁପରି, ଓଠ କର୍ଣ୍ଣ ନଅମ୍ରପତ୍ରପରି ସେ ସମୟରେ ଯେଉଁକୁ ଉଚ୍ଛଳିତା କୁପକ ବ୍ରାହ୍ମଣ ବରଣ ହେସ, ଅର୍ଥାତ୍ ସର୍ବେଶ୍ୱର ଲକ୍ଷିତ ହେଲେ । ଅତଏବ ନଂଲାଭପେଣ କାର୍ଯ୍ୟମାନ ହେଲେ । ସୁନ୍ଦରୀର ଶେଷ

'କୋମଳ ନବନୀତ ପ୍ରମାଣୁ ଦନ୍ତ ତଣ୍ଡୁଳ ଯେ ।
ଦୂର୍ବାଙ୍କୁର ସୁବର୍ଣ୍ଣାଲଙ୍କାର ଦୃଶ ଯେ । ହୋଏ ସୁକର୍ମ ଅତଶୟ ପ୍ରକାଶ ଯେ ।
ମୁଖେ ଦର୍ପଣ ଦୃଷ୍ଟି ରଚନା ଯେଉଁ ନିଲ କାନ୍ତିକ ଗୋରୋଚନା
ବାଣୀ ମଙ୍ଗଳାଷ୍ଟକ ଭାବନା କରେ ମାନସ ଯେ । ୧୬ ।
ଆଣିଲ ପୁଷ୍ପକଳାପ ବେଢଣେ ୧ଗନ୍ଧସାରକୁ ଶ୍ରୀଅଙ୍ଗବାସେ
ଦୀପ କାମ-ତମସ ନାଶେ ସିଦ୍ଧାର୍ଥ ଜାତ ଯେ ।
ମନ୍ତ୍ରୀ ବଚନେ ୨ପୁରୋଧାପୁତ ଲୋକାଗ୍ରରେ ମଙ୍ଗଳ କୃତ
ଯେ ବରଣତ ସେ ଆରତିର ଦୃଷ୍ଟ ଲଭିଲେ ଯେ ।
ସେହି ସମୟେ ପୁଣି ଯେ ପାଠଯୋଷୀ ଯେ । ଦୁର୍ଗା ମାଧବ ଲକ୍ଷ୍ମୀ ନୃସିଂହ ଭାଷିଲେ
ବିଜୟୀ ହୋଇ ରାଜସମାଜେ କନ୍ୟାରତନ ଲାଭ ଲଭି ଯେ ।
ସହରେ କର ବାହୁଡ଼ା ବିଜେ ଦ୍ୱିଜେ ମନାସେ ଯେ । ୧୭ ।
ଧରାଇ ମୋତି-୧ବିତାନ ପରେ ଅମାରୀଶୃଙ୍ଗ କରୀପୃଷ୍ଠରେ
ଭାବ ଜନତ କି ନଖକ୍ଷତ ଦେବି ଏମନ୍ତ ଯେ ।
ଶୁଣି ଭଗରଡ଼ାକ ନାଗରୀ ସ୍ୱନ ଯେ । କଣ୍ଟି ନ ମଣି ସାଜ ବାହାର ସୈନ୍ୟ ଯେ ।
ଆସନ କଲା ୨ସାଦ ପ୍ରକାରେ ଅଙ୍କୁଶ ଧୃତ ଯେ ।

କୋମଳତା ନବନୀତ ରୂପେ ଭାବନା କଲା । ସୁନ୍ଦରୀର ଦନ୍ତମାନେ ତଣ୍ଡୁଳ ରୂପରେ ଓ ଦୂବ ରୂପରେ ଅଙ୍କୁର ଏବଂ ସୁବର୍ଣ୍ଣ ଅଳଙ୍କାରମାନ ଭାବନା କରାଗଲା । ଏସବୁ ମଙ୍ଗଳାରୋପଣ ଉପକରଣ । ଅତଏବ ଅତିଶୟ ସୁକର୍ମ ପ୍ରକାଶ ହେଲା । ସୁନ୍ଦରୀ ମୁଖରେ ଦର୍ପଣ ଭାବନା ହେଲା । ସୁନ୍ଦରୀର ଦେହ ବର୍ଣ୍ଣ ଗୋରୋଚନା ରୂପେ ଭାବନା କରାଗଲା । ସୁନ୍ଦରୀର ବାଣୀ ( ବଚନ )କୁ ମଙ୍ଗଳାଷ୍ଟକ ରୂପେ ମନରେ ଭାବିଲା ।

୧୭—ସୁନ୍ଦରୀର ବେଣୀ ରଚନା ଫୁଲମାଳ ଓ ଶ୍ରୀଅଙ୍ଗ ସୁବାସ ଚନ୍ଦନରୂପେ ଗଣିତ ହେଲା । କାମାନ୍ଧକାର ନାଶ କରିବାକୁ ସୁନ୍ଦରୀର ଶୋଭାଦୀପ ହୋଇଥିଲା । ବର୍ତ୍ତମାନ ଯାହା ସେ ସିଦ୍ଧାର୍ଥ (କୃତକାର୍ଯ୍ୟ) ହେଲେ, ତାହା ସିଦ୍ଧାର୍ଥ ( ସୋରିଷ ) ହେଲା । ପୁରୋହିତ ପୁତ୍ର ମନ୍ତ୍ରୀ କହିବାରୁ ଲୋକାଚାର ହେତୁରୁ ଯେଉଁ ମଙ୍ଗଳାରୋପଣ କଲେ, ତହିଁରେ ତାର ରାଜପୁତ୍ରଙ୍କର ଚିତ୍ତ ହୃଷ୍ଟ ହେଲା । ପୁଣି ସେ ସମୟରେ ପାଠଯୋଷୀ ଅସି ଦୁର୍ଗା ମାଧବ ଲକ୍ଷ୍ମୀ ନୃସିଂହ ଏହା କହିଲେ । ରାଜାମାନଙ୍କ ମଧ୍ୟରେ ବିଜୟୀ ହୋଇ କନ୍ୟାରତ୍ନ ଲାଭକରି ଶୀଘ୍ର ବାହୁଡ଼ା କରିବେ, ଏହା ବ୍ରାହ୍ମଣମାନେ ମନାସୁଥିଲେ ।
୧ଗନ୍ଧସାର, ଚନ୍ଦନ, ୨ପୁରୋଧା, ପୁରୋହିତ ।

୧୮—ରାଜପୁତ୍ର ଅମାରୀଯୁକ୍ତ ହାତୀଉପରେ ଅଶ୍ୱାରୋହୀପରି ବସି ନିଜ ଉପରେ ମୁକ୍ତାଯୁକ୍ତ ଚାନ୍ଦୁଆ ଧରାଇ ଅଙ୍କୁଶଧରି ହାତୀର କୁମ୍ଭସ୍ଥଳରେ ଆଘାତ କରୁଥିଲେ, ତାଙ୍କ ମନରେ ଏପରି ଭାବ ଜାତ ହୋଇଥିବ କି ? ଏ କୁମ୍ଭ ସ୍ତନସଙ୍ଗେ ଲକ୍ଷ୍ୟ ହେବାରୁ ଗର୍ବିତ ହୋଇଅଛି, ଅତଏବ ଏହାକୁ ଆଘାତ କରିବ, ମୁଁ ମଧ୍ୟପ୍ରିୟା ସ୍ତନରେ ଏହିପରି ନଖକ୍ଷତ କରିବ । ସୈନ୍ୟମାନେ ଭଗରମାନଙ୍କ ଡାକ ଓ ନାଗରୀ ଶବ୍ଦ ଶୁଣି ବନ୍ଧ ବଜାଇ ନକରି ସଜ୍ଜିତ ହୋଇ ବାହାରିଲେ । ରାଜପୁତ୍ର ଜାଣେ ମନକୁ

କୁମ୍ଭରେ ଯାଉକୁଡ଼ ଲକ୍ଷିତ ନୋହିଲା ଉରଜେ କ ଏ ଗର୍ବିତ
ଜାଣି ମନକୁ ପ୍ରିୟାପାଶକୁ ପେଷି ଲେଖିଲେ ଆଖିରେ ତାଙ୍କୁ
କଲେ ³ବିଦେହ ଶରେ ଦେହକୁ ଲକ୍ଷ୍ୟବିଧାନ ଯେ । ୧୪ ।
ବେଗ କରନ୍ତେ ଗତ ମନ୍ଥର ସିଂହାବଲୋକନର ପ୍ରକାର
ପୁରୁଷେ କରୁଁ ଯେ ଅଙ୍ଗୀକାର ସ୍ପୃହା ଯୁବତି ଯେ ।
ଏକ ଅଦ୍ଭୁତ ମଣୁ ଅଦ୍ଭୁତ ଥିଲ ଅଦ୍ଭୁତ ହେଲ ସମ୍ଭୂତ
ଚନ୍ଦ୍ରେ ଉଦ୍ଭବ ¹ଜଳଜୁଁ ଜାତ ସଲିଳପଦ୍ମ ଯେ ।
ନାରୀ ମାତ୍ର ବାଣିଜ୍ୟ ସଙ୍ଗତେ ଗଲେ ଯେ । ସୀତାରାମ ଏ କାର୍ଯ୍ୟେ ମନାଇ ଥିଲେ
²ଆଖେଟଲୀଳା ଭ୍ରମ ତୁଟିଲ ହୃଦଗହନେ କାମ ପୋଟିଲ
ବହନେ ଧୈର୍ଯ୍ୟ ମୃଗ କାଟିଲ ରାମା କର୍ମିଲେ ଯେ । ୧୫ ।
ଜାତ ସନ୍ତାପ ଶାନ୍ତ ହେବାରେ ବୃଷ୍ଟି ପ୍ରବାସ କଏ ତଗ୍ରରେ
ତାଲ ଲୋତକ ସ୍ତନ ଉପରେ ମୁଖ ଜବେଣି ଯେ ।
ପ୍ରାଣପୁରୁଷ ଦୂର ହୋଇବ କେହ ଶରୀର ପୁଣି ରହିବ
କେତେ ଉତ୍କଣ୍ଠ କରେ ଦଇବ ହୋଇଲେ ଘୋଷି ଯେ ।
ପୁଂସଗଣ ଭାବନା ଏମନ୍ତ ହେଲ ଯେ । ରାଜସେବକ ଧାତା କପାଇ କଲ ଯେ ।
ପ୍ରିୟା ଛାମୁରୁ ମେଲାଣି ହୋଇ ଆସିବା ତର ସହିରେ କାହିଁ
କ ପାଶୁଥିବ ପରାଣ ସହ ତୋଳାପିତୁଲା ଯେ । ୧୬ ।

---

ପ୍ରିୟା ପାଶକୁ ପଠାଇଲା ଓ ପ୍ରିୟାକୁ ଅକ୍ଷିରେ ଲେଖି ରଖିଲା, ଅର୍ଥାତ୍ ମନରେ ସର୍ବଦା ପ୍ରିୟାର ସ୍ମରଣାଦର ଭାବଅବରେ ପ୍ରିୟାକୁ ଦେଖିଲା ପ୍ରାୟ ହେଲା । ନଜ ଦେହକୁ କାମ ଶରର ଲକ୍ଷ୍ୟ କଲା । ¹ ଚନ୍ଦ୍ର, ଚାନ୍ଦୁଅ । ² ସାଗ, ଅଖ୍ୟାନ୍ଦେଳ । ³ ବିଦେହ, କନ୍ଦର୍ପ ।

୧୪—ଦେବେଶ ମନ୍ଥର କରନ୍ତେ ଅର୍ଥାତ୍ ମନ୍ଦଗତି ହେବାରୁ ସେନାସ୍ଥ ପୁରୁଷମାନେ ସିଂହାବଲୋକନ ପ୍ରକାର ଅଙ୍ଗୀକାର କଲେ, ଅର୍ଥାତ୍ ପଛକୁ ଲେଉଟି ଚାହୁଁଥିଲେ । ଯୁବତୀମାନେ ତାହାଁ ଏକ ଅଦ୍ଭୁତ ହେଲାବୋଲି କହୁଥିଲେ କଲୁ ଅଦ୍ଭୁତ ଅବସ୍ଥା ଥିଲା । ଏବେ ପୁଣି ଅଦ୍ଭୁତ ଜାତ ହେଲା । ଯାହା କି ଚନ୍ଦ୍ରରେ ଜାତ ହୋଇଥିବା ପଦ୍ମରୁ ଜଳବନ୍ଦୁ ସବୁ ବାହାରିଲା । ଅର୍ଥାତ୍ ଯୁବତୀମାନଙ୍କ ମୁଖସ୍ଥିତ ଅକ୍ଷିରୁ ଲୁହ ବହିଲା । ସେମାନେ ସ୍ୱଦଳେ ବଣିକାସ୍ତ୍ରୀମାନଙ୍କ ସଙ୍ଗେ କେବଳ ସ୍ତ୍ରୀମାନେ ଯାନ୍ତି । ପୁଣି ବଙ୍ଗରେ ଯିବା ବଣସ୍ୱରେ ସୀତା ରାମଚନ୍ଦ୍ରଙ୍କ ମନାଇଥିଲେ ମାତ୍ର ବିଭ୍ରମ ହେତୁରୁ ମୃଗୟାଲୀଳା ଘଟିଲା । ହୃଦୟରୂପକ ବନରେ କାମ ଆସି ପୋଟିଲ । ଶୀଘ୍ର ସ୍ତ୍ରୀମାନଙ୍କର ଧୈର୍ଯ୍ୟରୂପକ ମୃଗକୁ କାଟିଲା, ଅତଏବ ରାମାମାନେ ଅଛଲେ । ¹ଜଳଜୁଁ ପଦ୍ମରୁ । ²ଆଖେଟଲୀଳା, ମୃଗୟାବ୍ୟାପାର ।

୧୬—କୌଣସି ସୈନ୍ୟ କାମିକା ଜାତ ହୋଇଥିବା ନିଜ ସନ୍ତାପ ଶାନ୍ତ ହେବାକୁ "ପ୍ରବାସବୃଷ୍ଟି" ଏହା ବୋଲୁଥିଲା । ସ୍ତନ ଉପରେ ମୁହଁ ରଖି ଲୁହ ଢାଳୁଥିଲା । ବଳତ ତାପ ଶାନ୍ତିପାଇଁ ଶିବ

ଘଣା ହୋଇବ ବରଷାକାଳ ଘୋଟିବ ସନ୍ଧ୍ୟା ଘନପଟଳ
୧ହିମାଂଶୁ ଜ୍ୟୋତ୍ସ୍ନା ଲୋତଜାଳ ଉଧତ ବେଳ ଯେ ।
ପଡ଼ିବ ପିକରବ ୨କୁଳିଶ ପ୍ରାବ ଦମ୍ଭଗିରି-୩ଶୀର୍ଷ
ବଢ଼ିବ ଶୋକନଦୀ ବିଶେଷ ଉତ୍କ୍ରାନ୍ତ ଜଳେ ଯେ ।
୧୭-୪ଭ୍ରମିରେ ଭ୍ରମି ମୁଁ ବୁଡ଼ିବା ଯେ । ମାର-ମକରମୁଖେ ନଷ୍ଟେ ପଡ଼ିବା ଯେ
ତରୁଣୀ-ମଣି ଜାନୁ-୫ତରଣୀ ଅବଲମ୍ବକୁ ନ ପାଇ ପୁଣି
କି ଦଣ୍ଡିକଲେ କୋଦଣ୍ଡପାଣି କେହ୍ନେ ତରିବା ଯେ । ୧୭ ।
ତ ଚଳେ ଚଳେ ଶୃଙ୍ଗାର ବୀର ରସ ବିରୋଧୀ ବଳାତକାର
ହେଲା ଅଦ୍ଭୁତ ଦେଖା ସେଠାର ଜନ୍ମ ହେବାରେ ଯେ ।
ପଦାତିପନ୍ତି ରଥୀ ସଞ୍ଜତ ମାହୁନ୍ତ ପାଦଯାନ ହରତ
ସାମଗ୍ରୀ ଚଳେ ବାନ୍ଧବ ଭୃତ୍ୟ ଭାରବାହକରେ ଯେ ।
ଯୋଗୀ ଯୋଗ ନୋହିଲ ଜନସଂକୁଳେ ଯେ । ମହାହରଷ ବଶ ଚପଳେ ଚଞ୍ଚଳ
ନୃପତିପୁରେ ବିଜୟ କୃତ ସେ ଚତୁରଙ୍ଗ ରଙ୍ଗେ ଗମିତ
ହେମନ୍ତରୂପେ ହୁଏ ଲକ୍ଷିତ ସୁନ୍ଦରୀ ଭୁଲେ ଯେ । ୧୮ ।

---

ଲଗ୍ନରେ ଦେହ ତଡ଼ାଉ ଅନୁଶୋଚ କରୁଥିଲା କି ? ପ୍ରାଣସ୍ୱରୂପ ପ୍ରିୟ ଦେବ, ତାହାର ପୁଣି କପଟ ଲହୁବ । ଯେବେ ବ ବଚନ ସାଧନା କଲେ ଏହା କେହୁ ସ୍ୱାମୀଙ୍କ ଯୋଷିତ୍ ହେଲେ । ପୁଣି ଧନୁଷ-ମାନଙ୍କର ଏପରି ଭାବନା ଦେଖ । ଯାହାକୁ ଅମ୍ଭମାନଙ୍କ ବଧାଇ ବାହୁଁ କି ଘୃତ ସେବକ ବଲା । ଯେହେତୁ ପ୍ରିୟା ପାଶରୁ ମେଲାଣି ମାଗି ଆସିବାକୁ ସମୟ ନାହିଁ । ଭୋଳା ବିଚୁଳା ପ୍ରାଣସାହୁ କଥଣ ବଳାଉଥିବ ।

୧୭—ଏବେ ସ୍ତ୍ରୀ ବର୍ଷାକାଳଠାରୁ ଦେବ, ସନ୍ଧ୍ୟାରୂପକ ମେଘମାଳ ଘୋଟିବ, ଚନ୍ଦ୍ର କିରଣ ଚନ୍ଦ୍ରାତପରୁ ଲୁଚିବ । କୋକିଳ ଧ୍ୱନିରୂପ ବଜ୍ରଧ୍ୱନି ହେବ । ଧୈର୍ଯ୍ୟରୂପକ ପର୍ବତର ଶୃଙ୍ଗ ଛେଦିପଡ଼ିବ । ଉତ୍କଣ୍ଠା ରୂପକ ଜଳରେ ଶୋକ ରୂପକ ନଦୀ ବିଶେଷ ବଢ଼ିବ, ବାଧକରୂପକ ଘୂର୍ଣ୍ଣିରେ ଭ୍ରମି ଭ୍ରମି ପଡ଼ିବା ପରେ କନ୍ଦର୍ପରୂପକ ମକର ମୁହଁରେ ନଷ୍ଟେ ପଡ଼ିବା । ଯୁବତୀ ଉରୁର ଜାନୁ ରୂପକ ନୌକା ଅଲଭ୍ୟ ନ ପାଇଁ କେଉଁ ଭରିବା । ଅହୋ କୋଦଣ୍ଡପାଣି ରାମଚନ୍ଦ୍ର କି ଦଣ୍ଡବିଧାନ କଲେ । ୧ହିମାଂଶୁ ଜ୍ୟୋସ୍ନା, ଚନ୍ଦ୍ର କିରଣ । ୨କୁଳିଶ, ବଜ୍ର । ୩ଶୀର୍ଷ, ଶିଖର । ୪ଭ୍ରମି, ଘୂର୍ଣ୍ଣି ଓ ଭ୍ରମ । ୫ତରଣୀ, ନୌକା ।

●—ଶୃଙ୍ଗାର ଓ ବୀର ରସ ଦୁହେଁ ପରସ୍ପର ବିରୋଧି ଅଟନ୍ତି । ଏକର ଉଦୟ ହେଲେ ଅନ୍ୟଟି ରହି ନ ପାରେ । କିନ୍ତୁ ସେଠାରେ ବଳାତ୍କାରରେ ଦୁହିଙ୍କ ଜନ୍ମ ହେବାର ଅଦ୍ଭୁତ ଦେଖାଗଲା । ଯେଉଁ ସୈନ୍ୟମାନେ ଶୃଙ୍ଗାର ହେତୁରୁ ପ୍ରିୟାମାନଙ୍କୁ ଛାଡ଼ି ନ ପାରୁ ନ ଥିଲେ, ସେ ବୀର ଉତ୍ସାହ ହେତୁରୁ ଶୁଣି କରୁଥିଲେ । ଚତୁରଙ୍ଗ ବଳ ଯାଉଥିଲା, ପାଇକଶ୍ରେଣୀ ରଥାରୋହୀମାନେ ଅଶ୍ୱାରୋହୀ ଏବଂ ଗଜାରୋହୀମାନେ ଯାଉଥିଲେ ଅନେକ ଭୃତ୍ୟମାନେ ଓ ବନ୍ଧୁମାନେ ପାଦଯାନରେ ( ଗୁଡ଼ ଯାଉଥିଲେ ) ବାନ୍ଧୀମାନେ ମଧ୍ୟ ଶୀଘ୍ର ଯାଉଥିଲେ । ଏତେ ଜନସଂକୁଳ ହୋଇଥିଲା ଯେ,

ଏତେକେ ତାର ନୋହିଲା ପ୍ରିଓ ନିଦ୍ରା ପ୍ରବେଶ ହୋଇବ ତୁଣ୍ଡି
ସ୍ୱପନ ଯୋଗେ ହେବତ ରତିରସ ପ୍ରସାର ଯେ ।
ତହିଁ ହେବ ¹ଉତ୍ତରକୁରୁ ଭୋଗ ଯେ । ଯଥା ଦିବା ବିୟୋଗ ସନ୍ଧେ ସଂଯୋଗ
ତପେ ମନାଇଁ ବ୍ରହ୍ମର୍ଷିଙ୍କି ଆଣିଲେ ସେ ବିଚ୍ଛେଦଘାତକୀ
ନୋହିବ ନିକ ଆଣ କତକ ଗଳ୍ପ ଉଦ୍ବେଗ ଯେ । ୧୩ ।
ନୃପନନ୍ଦନା କୁମରବରେ କେବଳ ଦଶେ ଅଷ୍ଟ ଦିଗରେ
ଏହି କଳ୍ପନା ବୁଦ୍ଧି ସ୍ୱପ୍ନରେ କର ନିଶ୍ଚୟ ଯେ ।
ପୁଣି କୁମୁଦ ହାସେ ପ୍ରକାଶମାନ ଯେ । କରେ ଅଞ୍ଜନ କେଶେ ¹ଚରମେ ସ୍ଥାନ
ଭୂଷିତ ପୁଷ୍ପଦନ୍ତ ଶୋଭିତ ସୌନ୍ଦର୍ଯ୍ୟ ସାର୍ବଭୌମ ଉଚିତ
ସୁପ୍ରତୀକରେ ସାର ଜଗତ ଶତରଞ୍ଜନ ଯେ । ୧୪ ।
ତନୁସ୍ୱପ୍ନେ ରହିବା ଠାବେ ବୀଣାବାଦନ ଶ୍ରବଣେ ଦ୍ରବେ
ବାଳା ପ୍ରବୀଣାପଦ ସ୍ୱସ୍ୱେ ଆଶ୍ଳେଷ କରେ ଯେ ।

---

ନିଦ୍ରା ପ୍ରବେଶ ହେଲେ ସ୍ୱପ୍ନ ହୋଇଥିବ । ତା ହେଉଛି ରତିରସ ପ୍ରସାର ହେବ ଅତଏବ ସେ ସ୍ୱପ୍ନରେ ସ୍ୱର୍ଗ ଭୋଗହେବ, ସ୍ୱର୍ଗରେ ଯେପରି ଦିନରେ ବିୟୋଗ ଓ ସନ୍ଧିରେ ସଂଯୋଗ ହୁଏ । ଯେଉଁ ତପସ୍ୟାବଳରେ ବ୍ରହ୍ମର୍ଷିଙ୍କ ମନାଇ ଅଣାଯାଏ, ତାହାହେଲେ ସେ ବିଚ୍ଛେଦଘାତକୀ ହେବ ନାହିଁ ତ । ବ୍ରହ୍ମବାଦଗର୍ଭି ହେଲେ ସର୍ବଦା ସଂଯୋଗ ସମ୍ଭବ । ଏକଥା ନିଜକୁ ଅଣ । ଏବେ ଉଦ୍ବେଗ ଗଳ୍ପ ତ ।
¹ ଉତ୍ତର କୁରୁଭୋଗ, ସ୍ୱର୍ଗଭୋଗ ।

୧୪—ସେ ରାଜକୁମାରୀ କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ସେହି ରାଜକୁମାରଙ୍କୁ କେବଳ ଅଷ୍ଟଦିଗରେ ଦେଖାଗଲା । ଏହି କଳ୍ପନା ବୁଦ୍ଧି ବଳରେ ନିଶ୍ଚୟ କରୁଅଛି । ଯେତ ତାର ପରୁଷ ଐରାବତ ( ହାତୀଙ୍କ ), ପୂର୍ବଦିଗ ହସ୍ତୀ, ଅତଏବ ପୂର୍ବ ଦିଗରେ ଦେଖିଲା । ତାର ନେତ୍ର ପୁଣ୍ଡରୀକ (ଶ୍ୱେତପଦ୍ମ) ଅଗ୍ନିକୋଣ ହସ୍ତୀ, ଅତଏବ ଅଗ୍ନିକୋଣରେ ଦେଖିଲା । ଏକ୍ଷଣେମେବ ଗମନ ଠାଣିରେ ବାମନ ( ଦକ୍ଷିଣଦିଗ ହସ୍ତୀ ) ଅତଏବ ଦକ୍ଷିଣ ଦିଗରେ ଦେଖିଲା । ପୁଣି ହାସରେ କୁମୁଦ (କଇଁ) ନୈଋତଦିଗ ହସ୍ତୀ ପ୍ରକାଶମାନ ହୁଏ । ଅତଏବ ନୈଋତ କୋଣରେ ଦେଖିଲା । ପିଠିରେ ଲୋଟୁଥିବା କେଶରେ ଅଞ୍ଜନ (କଜ୍ଜଳ) ପଶ୍ଚିମଦିଗ ହସ୍ତୀ ଶୋଭା କରେ, ଅତଏବ ପଶ୍ଚିମ ଦିଗରେ ଦେଖିଲା । ସେ ହୃଦ ପୁଷ୍ପଦନ୍ତ ଦନ୍ତରେ ଶୋଭିତ ( ବାୟୁକୋଣ ହସ୍ତୀ ) ପଶ୍ଚାତନ୍ତ । ଅତଏବ ବାୟୁକୋଣରେ ଦେଖିଲା ସେ ସୌନ୍ଦର୍ଯ୍ୟରେ ସାର୍ବଭୌମ ( ସମ୍ରାଟ ) ହୋଇ ଅଛି ( ଉତ୍ତରଦିଗ ହସ୍ତୀ ) ଅତଏବ ଉତ୍ତର ଦିଗରେ ଦେଖିଲା । ସ୍ତନରେ ( ସ୍ତନର ଅଗ୍ରଭାଗ )ରେ ଉତ୍କୃଷ୍ଟ ଅଛି ଜଗତର ମନରଞ୍ଜକ କାରଣୀ । ସୁପ୍ରତୀକ (ଈଶାନ୍ୟଦିଗ ହସ୍ତୀ) ଅତଏବ ଈଶାନ୍ୟରେ ଦେଖୁଅଛି । ¹ଚରମ, ପୃଷ୍ଠ ।

୧୫—ରାଜପୁତ୍ର ସ୍ୱପ୍ନରେ ବରଷ୍ଟକ ତନ୍ଦ୍ରାମଗ୍ନ ହୋଇ ରହିବା ଠାରେ ବୀଣା ବାଦନ ଶ୍ରବଣରେ ଦ୍ରବୀଭୂତ ହୋଇ ଦର୍ଶନ କରେ । ବାଳା ରାଜପୁତ୍ରୀ ପ୍ରବୀଣା (ପଣ୍ଡିତା ଓ ଉତ୍କୃଷ୍ଟ ବୀଣା) ତେବେ ସ୍ୱସ୍ୱରେ ଅଶ୍ଳେଷ (ଆଲିଙ୍ଗନ) କରୁଅଛି । କେଉଁରେ ବୀଣାପର ଗୁଣାନୁବାଦିନୀ, ବୀଣା ଗୁଣଦ୍ୱାରା ସ୍ୱରକ୍ୟାରଣୀ, ସ୍ୱରଳୀ ସପ୍ତସ୍ୱର ସଂଯୁକ୍ତା । ବୀଣା ଭୂମିପର ସ୍ତନର ଉପରୁଜ ଓ ପିଠାରେ ଶୋଭିତ ଥାଏ । ବୀଣା

ସ୍ୱର୍ଣ ଲୁବ୍ଧାଙ୍ଗୀତ ବେଷରେ ଶୋଭିତ ଭୂମି କୁଚ ସ୍ଥିତରେ
ବେଣୀ ହେମାଳୀ ପ୍ରବାଳସାରେ ଯୁକ୍ତ ସ୍ୱାଗତରେ ଯେ ।
ଜାତ ଇଙ୍ଗିତଗୀତ ସ୍ୱରାଗତସ୍ୱରେ ଯେ । ସିନ୍ଧୁ କଚ୍ଛପ କଟି ଜଘନ ଧରେ ଯେ ।
ଭ୍ରମେ ବଦେଲ୍ଲା ଧାତା [1]ବାହ୍ଲୀକା ଯୁଗ୍ମ ମୋ ଉରୁସ୍ଥିତ ହେବ କ
ପୋଷ୍ଟା ତାର ଏ ସ୍ୱବନା ତର୍କି କହେ ସୁଧୀରେ ଯେ । ୨୫ ।
ନବନାଗରୀ ଶୋଭି ନଗରୀ [1]ଦ୍ୱିଜଶ୍ରେଣୀରେ ମହାମାଧୁରୀ
[2]ରାଜା ବଦନେ ପ୍ରସନ୍ନ ଧରି [3]ଉରଜେ ଦକ୍ଷା ଯେ ।
ସୁରୁଚ ସୁନ୍ଦହାସରେ କରି [4]ମାଲୀବ୍ରଜରେ ପୂଜିତ ପୂରି
ପାଟଳି ଗମନକୁ ଆଦରି କରୁଛୁ କକ୍ଷା ଯେ ।
ଅର୍ଦ୍ଧପ୍ରୟୋଗ ଅର୍ଥେ ମନ୍ତ୍ରିକ ଭଣି ଯେ । ଅଛୁ ସଭେଦ ବୋଇଲୁ ତୁ କ ପୁଣି ।
ଅର୍ଦ୍ଧ ପରତେ ହୋଇଛୁ ସତ ନୋହୁଛୁ ବେନି ଅଙ୍ଗ ମିଶ୍ରିତ
ଏ ଯେଉଁ କଣଅଛୁ ଉଦିତ ଏମନ୍ତ ବାଣୀ । ୨୬ ।
ତେଣେ ରମଣୀମଣିକି ଦଣେ ଦଣେ ସୁନ୍ଦରରତନ ଭୂଷଣ
ଯେଣ ସେ ବଜ୍ରଧର ଅନଦେଣ ଶିଖାରେ ଶୋଭେ ଯେ ।

---

ପ୍ରବାଳସାର (ଉତ୍କୃଷ୍ଟ ବାଣାଦଣ୍ଡ)ରେ ଓ ସ୍ୱାଗମ ଛନ୍ଦ ଦ୍ୱାରା ଯୁକ୍ତ ହୋଇଥାଏ । ଏ ସୁନ୍ଦରୀ ବେଣୀ ହେମାବଳୀରୂପକ ବୀଣା ଦଣ୍ଡରେ ଓ ରାଗ (ସ୍ନେହ) ରେ ଯୁକ୍ତ ହୋଇଅଛି । ବୀଣା ସ୍ୱପ୍ରସ୍ୱରକୁ ଜାତ କରେ ସୁନ୍ଦରୀ ଇଙ୍ଗିତ ଗୀତକୁ ଜାତ କରୁଅଛି । ସିନ୍ଧୁ ଓ କଚ୍ଛପୀ ଭେଦରେ ବୀଣା ପ୍ରକାର ଦୁଇକୁ ସୁନ୍ଦରୀ କଟି ଓ ଜଘନରେ ଧାରଣ କରିଅଛି । ବନେଲ୍ଲା ବିଧାତା ଭ୍ରମରେ ପଡ଼ିଅଛି । ସୁଗଳ ବାଣୀଦ୍ୱୟ ଏ ସୁନ୍ଦରୀ ମୋ ଉରୁରେ ସ୍ଥିତ ହେବକି ? ସେ ସୁନ୍ଦରୀଙ୍କର ଏ ସ୍ୱବନାକୁ ତର୍କି ପୋଷ୍ଟା କହିଲା । [1]ବହ୍ଲୀ, ବୀଣା ।

୨୬—ସେ ନବନାଗରୀ ଶୋଭିତ ନଗରୀ ହୋଇଅଛି । ନଗରୀ ବ୍ରାହ୍ମଣ ଶ୍ରେଣୀରେ ବଡ଼ ସୁନ୍ଦର ହୋଇଥାଏ । ସେଠାରେ ରାଜା ବଦନରେ ପ୍ରସନ୍ନ ଭାବକୁ ଧରି ଥାଆନ୍ତି । ପୁଣି ସେ ନଗରୀ ବୈଶ୍ୟମାନଙ୍କ ଦ୍ୱାରା ନିପୁଣ (ବାଣିଜ୍ୟ ପୂର୍ଣ୍ଣ) ଏବଂ ଶୂଦ୍ରମାନଙ୍କ ଦ୍ୱାରା ବଡ଼ ସୁହାସ (ସୁନ୍ଦର) ହୋଇଥାଏ ମାଳୀ ଓ ଗୋପାଳମାନଙ୍କ ଦ୍ୱାରା ପୂର୍ଣ୍ଣ ଥାଏ । ପାଟଳିମାନଙ୍କ ଗମନକୁ ଆଦରି ଥାଏ । ଏ ସୁନ୍ଦରୀ ଦନ୍ତ ଶ୍ରେଣୀଦ୍ୱାରା ଅତି ମଧୁର ହୋଇଅଛି । ଚନ୍ଦ୍ର ମୁଖରେ ପ୍ରସନ୍ନତା ଧାରଣ କରିଅଛି । ସ୍ତନଦ୍ୱାରା ନିପୁଣା ହୋଇଅଛି । ଉତ୍ତମ ମନ୍ଦହାସରେ ମନୋହର ହୋଇଅଛି । ମାଳା ସମୂହରେ ପୂଜିତା ଅଛି । ପାଟଳି ପୁଷ୍ପ ଅର୍ଥରେ ପାଟଳି ଯେ ପ୍ରୟୋଗ ହେବାକୁ ମନ୍ତ୍ରୀପୁତ୍ର କହିଲେ । ତୁ କେଉଁଣ ବୋଇଲୁ କୋଟି ଏ ନାମର ଅର୍ଦ୍ଧ ପ୍ରୟୋଗ କଲୁ ପୁଣି 'ସ'ର ଭେଦ ଅଛି, ଶୂଦ୍ର ଦ୍ୱାରା ଓ ଶୂଦ୍ରଦ୍ୱାରା ସେହି ତାଳବ୍ୟ ଓ ଦନ୍ତ୍ୟର ଭେଦ ଅଛି । ଏହା ଶୁଣି ପୋଷ୍ଟା କହିଲା, ଅର୍ଦ୍ଧେ ପରତେ ହୋଇଅଛି, ଏବଂ ବେନି ଅଙ୍ଗ ମିଶ୍ରିତ ହୋଇନାହିଁ, ଏ ଯେଉଁ ଅର୍ଦ୍ଧପ୍ରୟୋଗ ଏବଂ ଭେଦଯୁକ୍ତ ବାଣୀ ଉଦିତ ହୋଇଅଛି । [1]ଦ୍ୱିଜ, ବ୍ରାହ୍ମଣ ଓ ଦନ୍ତ [2]ରାଜା, ନୃପତି ଓ ଚନ୍ଦ୍ର । [3]ଉରଜ, ସ୍ତନ ଓ ବୈଶ୍ୟ । [4]ମାଳିବ୍ରଜ, ମାଳୀ-ଗହଳ ଓ ମାଳାସମୂହ ।

୨୭—ତେଣେ ରମଣୀମଣି କୋଟିବ୍ରହ୍ମାଣ୍ଡ ସୁନ୍ଦରୀକୁ ସୁନ୍ଦର ରତ୍ନ ଭୂଷଣ ପ୍ରତ୍ୟଙ୍ଗରେ ଦେଖାଯାଉଅଛି । ଯେହେତୁ ସେ ରତ୍ନଭୂଷଣ ସର୍ବଦା ବଜ୍ରଧର (ହୀରାଭୂଷିତ) ଅତଏବ ପ୍ରତ୍ୟଙ୍ଗରେ ଇନ୍ଦ୍ର ହୃଦତ ହେଲା ।

ମନ୍ଦ ହାସରେ ରାଜ ସାକ୍ଷାତ ସେ ପୁଣ୍ୟଜନ ସିନ୍ଧୁରେ ସ୍ଥିତ
ସଦାଗତ ଯେ ଅଳକାଯୁକ୍ତ ଗଉରୀ ମୋହ ଯେ ।
ମୀନନୟନା ଲଗ୍ନ ଯେମନ୍ତ ସାଟରେ ଯେ । ପୁଂସଲଗ୍ନ ରାମାରେ ସେହି ପ୍ରକାରେ ।
ନାରୀ-ପୁରୁଷେ ସାର ଏ ବେନି କି ଯୋନାଯୋନ ଯେନ ଅବନ
ଜାତ ହୋଇଲେ ମିତ ମିତଣୀ ପ୍ରଶଂସା କରେ ଯେ । ୧୭ ।
ଏହି ସମୟେ ନୃପନନ୍ଦନ ନୃପନନ୍ଦନା ପ୍ରୀତି ବନ୍ଧନ
ସଖା ସଖୀଙ୍କ ଆଗେ କଥନ ରସ ରହସ୍ୟେ ଯେ ।
ପୀରତି ସୂର୍ଯ୍ୟ ଚନ୍ଦ୍ର ହୋଇଛି ସେ ମୁଁ ସୁଶୀଳ ସୁଶୀଳା ଛନ୍ତି
ଦିନ ରଜନୀ ଉଦୟ ଅଛି ପରଶ ବଶେ ଯେ ।
ଦେଖ ବିରହାନଳ ଜାତ କରଇ ଯେ । ଲେଖ କ୍ଷଣ କ୍ଷଣକେ ଦ୍ରବାଇ ଦେଇ ଯେ
ଦ୍ୱିମଣି କେଉଁ ରୂପେ ମିଶିଲ ପ୍ରାଣୁ ଅଧିକ ପରକୁ କଲ
ଏ ଚମତ୍କାର କାହୁଁ ଶିଖିଲ ବିଧାତା ବିହି ଯେ । ୧୮ ।

---

ଶିଖାରେ ( ମୁକୁଟରେ ) ଶୋଭା ହୋଉଅଛନ୍ତି, ଅତଏବ ଶିଖାଶୋଭୀ ଅଗ୍ନି ସୂଚିତ ହେଲା । ମନ୍ଦହାସରେ ରଞ୍ଜିତ ଅଛନ୍ତି, ଅତଏବ ହାସରେ ରଞ୍ଜିତ ମନ୍ଦ [ଯମ] ଦକ୍ଷିଣ ଦିଗରେ ସୂଚିତ ହେଲା । ସେ ସାକ୍ଷାତ ପୁଣ୍ୟଜନ [ଧର୍ମାତ୍ମା] ପୁଣ୍ୟଜନ ( ନୈଋତ ) ସୂଚିତ ହେଲା । ଏ ରାଜପୁତ୍ର ସିନ୍ଧୁରେ [ହାତୀରେ] ସ୍ଥିତ ଅଛନ୍ତି, ଅତଏବ ସିନ୍ଧୁରେ [ସମୁଦ୍ରରେ] ସ୍ଥିତ ବରୁଣ ପଶ୍ଚିମଦିଗ ସୂଚିତ ହେଲା । ଏ ରାଜପୁତ୍ର ସଦାଗତ [ଅଶ୍ୱ], ଅତଏବ ସଦାଗତ ବାୟୁ, ବାୟବ୍ୟଦିଗ ସୂଚିତ ହେଲା । ଏ ସବୁ ଅଳକା ( ଚୂର୍ଣ୍ଣକୁନ୍ତଳା ) ରେ ଯୁକ୍ତ ଅତଏବ ଅଳକାପୁରୀଯୁକ୍ତ କୁବେର ଉତ୍ତରଦିଗ ସୂଚିତହେଲା । ଏ ଗୌରୀ ( ସୁନ୍ଦରୀ ) ସ୍ତ୍ରୀମାନଙ୍କୁ ମୋହିତ କରୁଅଛନ୍ତି । ଅତଏବ ଗୌରୀ ମୋହ ଶିବ, ଈଶାନ୍ୟଦିଗ ସୂଚିତହେଲା । ଏହି ମୀନନୟନା ରାଜପୁତ୍ରୀର ବୀର ରାଜପୁତ୍ରଠାରେ ଯେପରି ଆସକ୍ତ ସେ ପୁରୁଷଙ୍କର ସେ ସୁନ୍ଦରୀଠାରେ ସେ ପ୍ରକାର ଆସକ୍ତି । ଏ ଦୁହେଁ ସ୍ତ୍ରୀ ପୁରୁଷଙ୍କ ମଧ୍ୟରେ ଉତ୍କୃଷ୍ଟ ଅଟନ୍ତି । ମିତଣୀ ଓ ମିତମାନେ ସେ ଦୁହିଙ୍କୁ ଯୋଡ଼ା ଯୋଡ଼ି କରିବା ଯେନ ପୃଥିବୀରେ ଜାତହୋଇ ପ୍ରଶଂସା କରୁଅଛନ୍ତି ।

୧୮—ଏହି ସମୟରେ ରାଜପୁତ୍ର ଓ ରାଜପୁତ୍ରୀ ଦୁହେଁ ପ୍ରୀତିକି ପ୍ରଶଂସାକରି ମିତ ଓ ମିତଣୀଙ୍କ ଅଗରେ ରସ କୌତୁକରେ କହୁଅଛନ୍ତି । ଦେଖ ପ୍ରୀତି ସୂର୍ଯ୍ୟ ଚନ୍ଦ୍ରପରି ହୋଇଅଛି । ସେ ଓ ମୁଁ ଅମ୍ଭେ ଦୁହେଁ ସୁଶୀଳ ଓ ସୁଶୀଳା ଅର୍ଥାତ୍ ସୂର୍ଯ୍ୟକାନ୍ତ ଓ ଚନ୍ଦ୍ରକାନ୍ତ ମଣି ଅଟୁଁ, ଅମ୍ଭେ ଦୁହେଁ ଯେହେତୁ ତାକୁ ଇଚ୍ଛାକରୁଅଛୁ । ସୂର୍ଯ୍ୟଚନ୍ଦ୍ରପରି ପ୍ରୀତିର ଦିନ ଓ ରାତିରେ ଉଦୟ ଅଛି । ସେ ପ୍ରୀତି ସ୍ପର୍ଶକଲେ କେତେବେଳେ ବିରହାଗ୍ନିକୁ ଜାତ କରୁଅଛି, ସୂର୍ଯ୍ୟକିରଣସ୍ପର୍ଶରେ ସୂର୍ଯ୍ୟକାନ୍ତମଣିରୁ ଅଗ୍ନିବାହାରିଲା ପରି କ୍ଷଣ କ୍ଷଣକେ ଦ୍ରବାଇ ଦିଏ, ଚନ୍ଦ୍ରକିରଣ ସ୍ପର୍ଶରେ ଚନ୍ଦ୍ରକାନ୍ତମଣି ଦ୍ରବିବାପରି । ଦୁଇପ୍ରକାର ଦ୍ୟୁମଣି ଅର୍ଥାତ୍ ସୂର୍ଯ୍ୟଚନ୍ଦ୍ର ଏବଂ ଦୁଇପ୍ରକାର ମଣି ସୂର୍ଯ୍ୟକାନ୍ତ ଓ ଚନ୍ଦ୍ରକାନ୍ତ କପରି ମିଶିଲା ଯେ, ପରଲୋକକୁ ପ୍ରାଣଠାରୁ ଅଧିକ କରାଇଲା । ବିଧାତା ତୁମ୍ଭେ ଏ ଚମତ୍କାରଜନକବ୍ୟାପାର ବିଧାନକରି କାହାଠାରୁ ଶିଖିଥିଲ ।

କହିଲେ ସଖା ସଖୀ ତାଙ୍କର ଶୁଣୁଁ କହିଲୁ ଏ ଚମତ୍କାର
ତହୁଁ କହିବ ବେନି ଶରୀର ଜଡ଼ିବା ସତ୍ୟ ସେ ।
ଦୁହେଁ ଦୁହିଙ୍କ ଦୃଷ୍ଟ ହୋଇବ ଲକ୍ଷ୍ୟକୁ ଆଉ ପ୍ରୀତି ନ ଥିବ
ଜାଣି ଦିବସ ସରିବ ଲବ ପ୍ରାୟ ସ୍ୱଭାବ ସେ ।
ଭୃଙ୍ଗ ପୁଷ୍ପ ସ୍ନେହରେ ଅଛି କି ଶଙ୍କା ସେ । ଶୁଣି ମୂକ ରସିକ ଘଟେ ରସିକା ସେ
କଣ୍ଟକ ରହି ସଂଯୋଗ ନାହିଁ କେତକୀ ମଧୁବ୍ରତର ତହିଁ
କୁରଙ୍ଗରଙ୍ଗ ଯେମନ୍ତ ହୋଇ ଜଣାଇ ଦେଲା ସେ । ୨୯ ।

ବୋଇଲ ଅଳୀ କର୍ପାଇ ଶକ୍ତ ନୋହିଲୁ ହୁଏ କରମବନ୍ତ
କରିଅଛନ୍ତି ସମୁଦ୍ର ତଳୁ କେବଳ ନରେ ସେ ।
ନରେ ସମସ୍ତେ ଇନ୍ଦ୍ର ହୋଇଛନ୍ତି ନରେ ଧରଣୀ ଟେକି ଧରିଛନ୍ତି
ଏ ସ୍ୱୟମ୍ବରେ ସୁଯୋଗ ଅଛି କୁମରବରେ ସେ ।
ସୀତା ରାମ କଲେଟି ପୂର୍ବକାଳରେ ସେ । ଜଳେ ଗିରିବନ୍ଧନ କୀର୍ତ୍ତି ବାନରେ ସେ
ବିଷୟ ହୋଇଛିତ ଅନ୍ତର ଶାନ୍ତ ସେ ବେନି ପଦ୍ମପୟର
ଉପେନ୍ଦ୍ର ଶିରବର ଭ୍ରମର ସଦା ତଥିରେ ସେ । ୩୦ ।



---

୨୯—ଏହା ଶୁଣି ସେ ପ୍ରିୟପ୍ରିୟା ଦୁହିଙ୍କର ମିତ୍ର ଓ ମିତ୍ରଣୀମାନେ କହିଲେ, ଦେଖ ବିଧାତା ଯେହେତୁ ଏ ଚମତ୍କାର ବିଧାନ କରିଅଛି, ବୋଧହୁଏ, ସେହି ହେତୁରୁ ଦୁଇଶରୀରର ଜଡ଼ିବା ଅବସ୍ଥା ଅବଶ୍ୟ ବିଧାନ କରିବ । ଦୁହେଁ ଦୁହିଁଙ୍କର ଦୃଷ୍ଟିଗମ ହେବ ( ପରହେବା କହିବାରୁ ବିପରୀତ ହେବ ମଧ୍ୟ ସୂଚିତହେଲା ) ତୁମ୍ଭ ଦୁହିଁଙ୍କପ୍ରୀତିର ଅନ୍ୟ ଲକ୍ଷ୍ୟ ରହିବ ନାହିଁ । ଦିନଗତ ଲବପରି ଯାଇଯିବ । ଭ୍ରମର ଓ ପୁଷ୍ପରସ୍ନେହ ବିଷୟରେ ଅଉ କଣ ଶଙ୍କା ଅଛି । ଏହା ଶୁଣି ରସିକରାଜପୁତ୍ର ତୁନିହେଲା । କିନ୍ତୁ ରସିକା ଜେମା କହିଲା, ଦେଖ କଣ୍ଟାଥିବାରୁ କେତକୀ ଓ ଭ୍ରମର ସଂଯୋଗ ହୋଇପାରୁ ନାହିଁ ସେହିପରି ଅମ୍ଭର ଏଥିରେ ମୃଗପୁଚ୍ଛ ଛେଦନ ନ୍ୟାୟ ଦେବା ଜଣାଉଅଛି ।

୩୦—ସଖୀ କହିଲା, ହେ ସୁନ୍ଦରି । କାହିଁକି ଭାବୁଛୁ, କର୍ମବଳରେ ନହେବା କଥା ହୁଏ । ଅଗସ୍ତିମହର୍ଷି ମନୁଷ୍ୟ ସେ ସମୁଦ୍ରକୁ ଚଳୁକରିଥିଲେ, ସମସ୍ତରେ ମନୁଷ୍ୟ ନହୁଷମହାରାଜ ସ୍ୱର୍ଗରେ ଇନ୍ଦ୍ର ହୋଇଥିଲେ ନର ଅର୍ଜୁନ ମଧ୍ୟ ଧନୁ ତୁଳରେ ପୃଥିବୀକୁ ଟେକିଥିଲେ, ଏ ସ୍ୱୟଂବରରେ ରାଜପୁତ୍ରଙ୍କ ନିଶ୍ଚୟ ସୁଯୋଗ ଅଛି । ସେ ସୀତାରାମ ପୂର୍ବକାଳରେ ମାଙ୍କଡ଼ମାନଙ୍କ ଦ୍ୱାରା ସମୁଦ୍ରଜଳରେ ପର୍ବତମାନଙ୍କ ଦ୍ୱାରା ସେତୁ ବାନ୍ଧି କୀର୍ତ୍ତି ରଖିଅଛନ୍ତି । ସେହି ଯୁଗଳଙ୍କ ପାଦପଦ୍ମକୁ ବିଷୟଚିନ୍ତା ତୁଲାଇବା ଚିନ୍ତାକର । ଶାଇବର ଉପେନ୍ଦ୍ର ଭଞ୍ଜ ସେହି ପାଦପଦ୍ମରେ ସର୍ବଦା ଭ୍ରମର ଅଟେ ।

## ଅଷ୍ଟବିଂଶ ଛାନ୍ଦ ।

### ରାଗ ବସନ୍ତବରାଡ଼ି ।

ଙ୍କ ସୁଜନ ରଞ୍ଜନ ପଦମାନ ମାନସେ କରିବ ସଂଗ୍ରହ ।
ଥିଲ ବ୍ୟୁତ୍ପତ୍ତି ନରପନ୍ତ ବାନରମୁଷ୍ଟି ପରକାର ।
ଗ୍ରଡ଼ନ୍ତ । ନାହିଁ ଅମ୍ଭେ ବଡ଼ ଏ ଗର୍ବ ।
ଏ ଗୀତ ସବିତା ପଦ ପ୍ରଭାବରେ ତାମସ ତମସ ନାଶିବ ॥
ଶରଜମାନ ୧ନାରାଜ ଧନୁର୍ଦ୍ଧର ରାଜବଂଶୀ-ରାଜନନ୍ଦନ ।
କନ୍ୟାରତ୍ନ ଲଭ ଆବେଶେ ସ୍ୱବେଶେ ପ୍ରବେଶ ଚମ୍ପାବତୀପୁର ।
ଗୃହିଁଲେ । ଅମରେ ରହିଲେ ସ୍ତବଧେ ।
ବ୍ରହ୍ମାଣ୍ଡଭାଣ୍ଡ ତୂର୍ଣ୍ଣରେ ପୂର୍ଣ୍ଣ ହେଲା ଯେଉଁ ବାଜତୂର ଶବଦେ । ୨ ।
୧ପତଙ୍ଗହୟ ୨ପତଙ୍ଗ ଯେ ୩ଆତଙ୍କ ଦେଖି ୪ଚେଲ ଦଣ୍ଡପନ୍ତ ।
ଛନ୍ଦ ହେବା ବନ୍ଦୀହେବା ପାଶ ଜାଲ ଭ୍ରମେ ଉଦ୍‌ବେଗ ବେଗ ଗତ ।
ପାଦାନ୍ତ । ବଳ ପ୍ରବଳରେ ଗମନ୍ତେ ।
୫ରେଣୁଏ ଅଣୁଏ ଛିଦ୍ର ନ ରଖିଲେ ଆକାଶ ପ୍ରକାଶ ନମନ୍ତେ । ୩ ।

---

### ଅଷ୍ଟବିଂଶ ଛାନ୍ଦ ।

୧—ଅହେ ସଜ୍ଜନମାନେ ସୁଜନ ପ୍ରୀତିଦାୟକ ପଦମାନଙ୍କୁ ମନରେ ସଂଗ୍ରହ କରିବ । ଅଳ୍ପଜ୍ଞାନ ଜାତ ହୋଇଥିବା ଲୋକମାନେ 'ଅମ୍ଭେ ବଡ଼' ଏ ଗର୍ବକୁ ମାଙ୍କଡ଼ ମୁଠାପରି ଧରିନ୍ତୁନାହିଁ । କିନ୍ତୁ ଏ ଗୀତ ସୂର୍ଯ୍ୟ କିରଣ ସ୍ୱରୂପ ପଦମାନଙ୍କ ପ୍ରଭାବରେ ତମୋଗୁଣୀ ଲୋକମାନଙ୍କର ଅଜ୍ଞାନ ନାଶକରିବ । ୧ ପଦ, ଶବ୍ଦ ଓ କିରଣ ।

୨—ଶରମାନଙ୍କ ଦ୍ୱାରା ବିରାଜିତ ଧନୁର୍ଦ୍ଧାରୀ ବଂଶଜ କ୍ଷତ୍ରିୟବଂଶୀୟ ରାଜାମାନେ କନ୍ୟା ରତ୍ନଲାଭ ଆଶାରେ ସୁବେଶ ଧାରଣକରି ଚମ୍ପାବତୀପୁରରେ ପ୍ରବେଶକଲେ । ଦେବତାମାନେ ରହି ସ୍ତବ୍ଧହୋଇ ରହିଲେ ଯେ ଜଗତର ବାଜବାଜା ବାଜାଶବ୍ଦରେ ସମସ୍ତ ବ୍ରହ୍ମାଣ୍ଡରୂପ ଭାଣ୍ଡ ଶୀଘ୍ର ପୂର୍ଣ୍ଣ ହେଲା । ୧ ନାରାଜ, ଶର ।

୩—ସୂର୍ଯ୍ୟଙ୍କର ଘୋଡ଼ା ଓ ପକ୍ଷୀ ଅରୁଣ ପତାକା ଓ ପତାକାଦଣ୍ଡ ସମୂହ ଦେଖି ଭୟକଲେ । ଘୋଡ଼ାମାନେ ବିଚାରିଲେ ଏ ପତାକା ପାଶସମୂହରେ ଅମ୍ଭେମାନେ ଛନ୍ଦହୋଇ ପଡ଼ିଯିବା, ଏବଂ ଅରୁଣ ପତାକା ଦଣ୍ଡମାନଙ୍କୁ ଜାଲରେ ଭ୍ରମକରି ନିଜେ ତହିଁରେ ବନ୍ଦ ହେବାକୁ ଭୟକଲେ, ଏବଂ ସେମାନେ ଉଦ୍‌ବେଗରେ ଗମନକଲେ । ପଦାତମାନେ ପ୍ରବଳବେଗରେ ଗମନକରିବାରୁ ଉଡ଼ୁଥିବା ଧୂଳିମାନେ ଆକାଶ ପ୍ରକାଶହେବାକୁ ଅଣୁ ଏ ପ୍ରମାଣ ଛିଦ୍ର ରଖି ନ ଥିଲେ, ଅର୍ଥାତ୍ ସମସ୍ତ ଆକାଶରେ ଧୂଳି ବ୍ୟାପ୍ତହେଲା । ୧ ପତଙ୍ଗହୟ, ସୂର୍ଯ୍ୟଙ୍କ ଘୋଡ଼ା । ୨ ପତଙ୍ଗ, ପକ୍ଷୀ । ୩ ଆତଙ୍କ, ଭୟ । ୪ ଚେଲ, ପତାକା । ୫ ରେଣୁ, ଧୂଳି ।

୧କୁଞ୍ଜର କୁଞ୍ଜର ପୁଞ୍ଜ ଗମନେ ସୁମନେ ୨ସୁମନେଶ ଘଟିଲ ।
ପକ୍ଷହନ୍ତା ମୁହିଁ କାହା ପକ୍ଷ ପାଇ ୩ଅଚଳ ୪ଅଚଳାରେ ଚଳେ ।
ସଭଙ୍ଗ । ଅଭଙ୍ଗ ରୂପକକୁ ଧ୍ୟାୟି ।
୫ଦନ୍ତ- କଟକ ଶୃଙ୍ଗ ପୃଥୁଳକାୟ ଶିକଳା-ଧାତୁଧାରେ ଶୋହି । ୪ ।
୧ସିନ୍ଧୁ ଜାତକୂଳେ ପ୍ରବଳ ୨ତରଙ୍ଗେ ୩ବାଡ଼ବ ରଙ୍ଗେ ୪ଭ୍ରମବନ୍ଧି ।
ସିନ୍ଧୁ ଜାତକୂଳେ ପ୍ରବଳ ତରଙ୍ଗେ ବାଡ଼ବ ରଙ୍ଗେ ଭ୍ରମ ବନ୍ଧି ।
ଶତ୍ରୁରେ । ସଙ୍ଗାପକକ ଶ୍ରବ ଇଚ୍ଛି ।
ମେଳ ୫ତ୍ରିବେଣୀ ରଙ୍ଗ ଦେଶେ କ ଦେଶେ ଅକାଳେ ପ୍ରଳୟ ହେଉଛି । ୫ ।
ରଥେ ୧ଘନ ଘନପଥେ ଯେ ଗମନ ୨ଅମ୍ବରମଣ୍ଡନେ ରୁଚିର ।
ଗୃଧ୍ର-ଦର୍ପଣ ଝଟ ଝଟ ଝଟକେ ନେଇ ଅଟକ ନିରନ୍ତର ।
ପ୍ରକଟ । ଚକ୍ର କଟକଟ ରଟରେ ।
୩କେକୀ ଟେକି ପିଚ୍ଛ ୪ଗଣକ ଗଣିଲେ କହେଉଛି ୫ଭୁଜସ୍ତମ୍ଭରେ । ୬ ।

---

୪—ହସ୍ତି ଶ୍ରେଷ୍ଠ ସମୂହଙ୍କ ଗମନରେ ଉତ୍ସମନରେ ଚିନ୍ତା କରନ୍ତି, ମୁଁ ତ ପର୍ବତମାନଙ୍କର ପକ୍ଷଚ୍ଛେଦନ କରିଛି, ଏବେ ପର୍ବତମାନେ କାହାର ସହାୟତାରେ ପୃଥିବୀରେ ଚାଲୁଅଛନ୍ତି । ଏଠାରେ ସଭଙ୍ଗ ଓ ଅଭଙ୍ଗ ଦୁଇପ୍ରକାର ରୂପକ ବର୍ଣ୍ଣନ କରୁଅଛୁଁ । ହସ୍ତିମାନେ ଦନ୍ତ ଓ ଗଣ୍ଡସ୍ଥଳ ଦ୍ୱାରା ଏବଂ ଶିକଳାଂ ରୂପକଥିବୁ ଧାତୁରେ ଶୋଭିତ ଅଟନ୍ତି, ଉଚ୍ଚ ଓ ପୃଥୁଳ ଶରୀର ଅଟନ୍ତି । ପର୍ବତମାନେ ଶୃଙ୍ଗ ଓ ନିତମ୍ବଦ୍ୱାରା ଏବଂ ଶିକଳାପରି ଧାତୁଧାର ଦ୍ୱାରା ଶୋଭିତ ଅଟନ୍ତି, ଉଚ୍ଚ ଓ ପୃଥୁଳ ଶରୀର ଅଟନ୍ତି । ଶିକଳା ଧାତୁ ଧାରଠାରେ ସଭଙ୍ଗ, ଅନ୍ୟତ୍ର ଅଭଙ୍ଗ ହେବ । ୧ କୁଞ୍ଜର କୁଞ୍ଜର ପୁଞ୍ଜର ହସ୍ତିଶ୍ରେଷ୍ଠ ସମୂହର । ୨ ସୁମନେଶ, ଇନ୍ଦ୍ର । ୩ ଅଚଳ, ପର୍ବତ । ୪ ଅଚଳା ପୃଥ୍ବୀ । ୫ ଦନ୍ତ କଟକ, ଦାନ୍ତ ୬ ଗଣ୍ଡସ୍ଥଳ ଓ ଶୃଙ୍ଗ ନିତମ୍ବ । ୭ ଶୃଙ୍ଗ ଛେ ।

୫—ଏ ସ୍ଥାନ ସମୁଦ୍ର ପରି ହୋଇଅଛି । ସମୁଦ୍ର ପ୍ରବଳରେ ଏବଂ ବାଡ଼ବାଗ୍ନି କ୍ରୀଡ଼ାରୁ ଓ ଜଳଭଉଁରି ବନ୍ଧିରୁ ମଧ୍ୟରେ ଜାତକରେ । ଏଠାରେ ସିନ୍ଧୁଦେଶ ଜାତଘୋଟକ କୁଳ ପ୍ରବଳ ଅଶ୍ୱଳୀରେ ଓ ଅବାଡ଼ବ ( ଘୋଡ଼ା ) ମାନେ କୌତୁକରେ ଚକର ହେଉଅଛନ୍ତି । ଏପରି ସଙ୍ଗ ଦମନ ସ୍ୱରକୁ ମନରେ ଇଚ୍ଛା କରୁଅଛନ୍ତି । ଧଳା କଳା ଓ ରକ୍ତବର୍ଣ୍ଣ ହେଉଥିବାରୁ ଗଙ୍ଗା ଯମୁନା ସରସ୍ୱତୀ ର ବିଷୟରେ ମେଳ ହୋଇଥିବା ଶୋଭା ଦେଖାଯାଏ । ଅକାଳରେ ପ୍ରଳୟ ହେବ କି । ୧ ସିନ୍ଧୁ, ସମୁଦ୍ର ଓ ଦେଶ ବଦେଶ । ୨ ତରଙ୍ଗ, ଲହରୀ ଓ ଗୃହାଳୀ । ୩ ବାଡ଼ବ, ବାଡ଼ବାଗ୍ନି ଓ ଘୋଡ଼ା ୪ ଭ୍ରମ, ଭଉଁରୀ ଓ ଚକ୍ର । ୫ ତ୍ରିବେଣୀ, ଗଙ୍ଗା ଯମୁନା ସରସ୍ୱତୀ ।

୬—ରଥମାନେ ମେଘପରି ହୋଇଅଛନ୍ତି । ମେଘ ( ଜଳପଥେ ) ଆକାଶରେ ଗମନ କରନ୍ତି । ରଥମାନେ ସାନ୍ଦ୍ର ହୋଇ ପଥରେ ଗମନ କରୁଅଛନ୍ତି । ମେଘ ଆକାଶକୁ ମଣ୍ଡନ କରିବାରେ ସୁନ୍ଦର, ରଥମାନେ ବସ୍ତ୍ରଭୂଷଣରେ ସୁନ୍ଦର ହୋଇଅଛନ୍ତି । ମେଘରେ ବିଜୁଳିର ରଥରେ ଗୃଧ୍ରଦର୍ପଣ ଝଟ ଝଟ ଝଟକରେ ସବୁବେଳେ ଅଟକ କରୁଅଛି । ପ୍ରକଟ ହେଉଥିବା ଚକମାନଙ୍କର କଟକଟ ଶବ୍ଦରେ ମୟୂରମାନେ ମେଘଗର୍ଜ୍ଜନ ଶଙ୍କାରେ ପିଚ୍ଛ ଟେକୁଅଛନ୍ତି । ଜ୍ୟୋତିଷମାନେ ଏହା ଦେଖି ଗଣନା କଲେ । ମଙ୍ଗଳ ସ୍ତମ୍ଭରେ ଅଛନ୍ତି, ବର୍ଷାଗମନ କାହିଁ ହେବ । ମଙ୍ଗଳସ୍ତମ୍ଭରେ ବର୍ଷା ହୁଏ ନାହିଁ । ୧ ଘନ ମେଘ ଓ ସାନ୍ଦ୍ର । ୨ ଅମ୍ବର, ଆକାଶ ଓ ବସ୍ତ୍ର । ୩ କେକୀ, ମୟୂର । ୪ ଗଣକ, ଜ୍ୟୋତିଷ । ୫ ଭୁଜ, ମଙ୍ଗଳ ସ୍ତମ୍ଭ ।

ମନ୍ତ୍ରୀବର ନବଟେ କହେ ନୃପବର୍ଗ ଅଗ୍ରଧାନ ବଣ୍ଡାନନ୍ଦଙ୍କୁ ।
କାନ୍ତାଦି କାଣ୍ଡ ପ୍ରକାଶ ଅନେକ ଜନ କୃତ ୧ଶ୍ଳୋକ ବୃନ୍ଦଙ୍କୁ ।
ଉତ୍ତମ । ୨ବର୍ଣ୍ଣ ଉଜ୍ଜ୍ୱଳ ସର୍ବେ ତହିଁ ।
ଉପବନ ହେବ ସ୍ତବକେ ପୁସ୍ତକ ଲେଖାଅକ୍ଷର ଦେବା ରଖାଇ ।୭।
ରାଜା ସମ୍ମତ ଏରୂପେ ଶେଷପତ୍ର ଭବ ଉଦୟ ହେବା ଅଛି ।
୧ଗୁଣ ସଂଯୋଗରେ ପୂଜନ କରିବା ଗଣେଶ୍ୱର ଜାତ ଅଛି ।
ସଚିବ । ଜାଣନ୍ତି ସେ ଯେତେକ ରାଜନ ।
ତେତେକେ ଆଦର କରି ରଖି ୨ଉଦ୍ୟାନେ ରହିବାସ ଦେଲେ ବାହନ ।୮।
ସେ ବନ ନନ୍ଦନ ସମାନ ବନ୍ଦନ ସଦା ୧ସୁମନାବର ଥାଇ ।
ପାଶେ କଉଶିକୀ ସେ ମନ୍ଦାକିନୀ କି ୨ସୁରସନ୍ତାପକୁ ହରଇ ।
ଦେଖନ୍ତି । ରାଜନେ ଦୁହିଙ୍କ ଶୋଭନ ।
କରନ୍ତି ସଙ୍କୁଳ ୩ପରଭୃତ ସ୍ୱନ ସଲିଳେ ପତଙ୍ଗ ସ୍ନାନ ।୯।

---

୭—ରାଜାମାନେ ଏକତ୍ର ହେବାର ଦେଖି ମନ୍ତ୍ରୀଶ୍ରେଷ୍ଠ ବଣ୍ଡାନନ୍ଦ ରାଜାଙ୍କୁ କହିଲେ । ଏ ନୃପବର୍ଗ ଅଗ୍ରଧାନ ସ୍ଥିର ହୋଇଅଛନ୍ତି । ଅନେକମାନ ଗ୍ରନ୍ଥ କାନ୍ତାଦି ବର୍ଗକାଣ୍ଡ ଅନେକଙ୍କ ଉକ୍ତ କୃତ ଶ୍ଳୋକ ବୃନ୍ଦଙ୍କୁ ପ୍ରକାଶ କରୁଅଛି । ରାଜାମାନେ କାନ୍ତାଦି ( ବେଶ ଭୂଷାଦି ) କାଣ୍ଡ ପ୍ରଭୃତି ଶ୍ଳୋକମାନଙ୍କୁ ପ୍ରକାଶ କରୁଅଛନ୍ତି । ଏମାନେ ବାସ୍ତବରେ ଅନେକ ଜନ ଅଛନ୍ତି । କୃତ ସଂଶୋଧନି ଅଛନ୍ତି । ଅଗ୍ରଧାନରେ ଉତ୍ତମ ଅକ୍ଷର ଓ ସର୍ବନାମ ଉଜ୍ଜ୍ୱଳ ଭାବରେ ଅଛନ୍ତି । ଏ ରାଜାମାନେ ସର୍ବେ ଉତ୍ତମ ଜାତୀୟ ଓ ଉଜ୍ଜ୍ୱଳ ଅଟନ୍ତି । ଏମାନଙ୍କ ପକ୍ଷରେ ଉପବନ ସ୍ତବକରେ ପୁସ୍ତକପରି ହେବ, ତହିଁରେ ଏମାନଙ୍କୁ ଅକ୍ଷରଲେଖା ଦେବା ଭାବେ ( ଧାଡ଼ି ଧାଡ଼ି କରି ) ରଖାଇଦେବା । ୧ ଶ୍ଳୋକ, ପଦ୍ୟ ଓ ଯଶ । ୨ ବର୍ଣ୍ଣ, ଅକ୍ଷର ଓ ଜାତି ।

୮—ଏ କଥାରେ ରାଜା ସମ୍ମତ ହେଲେ. ଏ ରୂପେ କହିଲେ,—ପୁସ୍ତକର ଶେଷ ପତ୍ରରେ ଏବେ ଲେଖା ହେବାର ଉଚିତ ଅଛି, ସେଥିରେ ଡୋର ସଂଯୁକ୍ତ ହୋଇଥାଏ, ଗଣେଶ୍ୱର ଯାହା ଅଛି. ପୁସ୍ତକକୁ ପୂଜା କରିବାକୁ ହେବ । ଏଠାକୁ ଗଣେଶ୍ୱର (ରାଜଗଣେଶ୍ୱର) ଜାତ ଅର୍ଥାତ୍ ବାପ୍ରିୟାର ରାଜପୁତ୍ର ପୁଷ୍ପକେତୁ ଅଛନ୍ତି । ସେ ଶେଷ (ବାହାନପୁତ୍ର) ହୋଇ ଉତ୍ସବରେ ଉଦୟ (ଏକତ୍ର) ହେବାର ଅଛି । ଅତଏବ ସମସ୍ତଙ୍କୁ ଗୁଣ ସଂଯୋଗ ଅନୁସାରେ ପୂଜା କରିବାକୁ ହେବ । ଏହା ଶୁଣି ସଚିବ ଜାଣନ୍ତି । ଯେ ଯେତେ ରାଜା, ତାଙ୍କୁ ସେ ଆଦରରେ କରିଗଲେ ରଖାଇ ଶୀଘ୍ର ରହିବାକୁ ଦେଇ ପୂଜା କଲେ । ୧ଗୁଣ, ଡୋର ଓ ଶୌର୍ଯ୍ୟାଦି । ୨ଉଦ୍ୟାନ ବଗିଚା ।

୯—ସେ ବନ ଇନ୍ଦ୍ରଙ୍କ ନନ୍ଦନ ବନ ସମାନ ବନ୍ଦନୀୟ ହୋଇଅଛି । ନନ୍ଦନରେ ସର୍ବଦା ଇନ୍ଦ୍ର ଥାନ୍ତି, ଏଠାରେ ସର୍ବଦା ଅନେକ ଭଲ ଫୁଲ ଅଛି । ସ୍ୱର୍ଗଙ୍ଗା ପରି କୌଶିକୀ ନଦୀ ଏହା ନିକଟରେ ଅଛି, ମନ୍ଦାକିନୀ ଦେବତାମାନଙ୍କର ତାପ ହରଣ କରୁଅଛି ଏ ନଦୀ ଲୋକମାନଙ୍କର ସୂର୍ଯ୍ୟ ଜନିତ ତାପ ହରଣ କରୁଅଛି । ଉକ୍ତ ରାଜାମାନେ ବନ ଓ ନଦୀ ଦୁହିଙ୍କର ଶୋଭା ଦେଖୁ ଅଛନ୍ତି । ଉପବନରେ କୋକିଳମାନେ ଲୀଳା ସହିତ ଧ୍ୱନି କରୁ ଅଛନ୍ତି ଏବଂ ନଦୀ ଜଳରେ ଭୃଙ୍ଗମାନେ ସ୍ନାନ କରୁଅଛନ୍ତି । ୧ସୁମନାବର, ଇନ୍ଦ୍ର ଓ ଉତ୍ତମ ଫୁଲ । ୨ସୁର, ଦେବତା ଓ ସୂର୍ଯ୍ୟ । ୩ପରଭୃତ କୋକିଳ ଓ ଭ୍ରମର ।

ଖେଳୁଛନ୍ତି ୧କଳକଣ୍ଠ ଚଳୁଛନ୍ତି କଳକଣ୍ଠ ୨ଅମ୍ବରଚର ।
ଜାହିଁ କୁମୁଦ ଚନ୍ଦନ ର ସୁସ୍ୱାଦ ନାହିଁ କୁମୁଦ ଗନ୍ଧସାର ।
ଭ୍ରମରେ । ରଞ୍ଜିତ ଭ୍ରମରେ ରଞ୍ଜିତ ।
ଜେ ମଧୁର ବାସ ଜେ ମଧୁର ବାସ ବେନି ମଧୁର ବାସ ସତ । ୧୦ ।
ମାଳତୀପୁର ମାଳତୀ ଫୁଲ ତୋଳନ୍ତି ସେ ବନେ ମାଳିକା ରଚନେ ।
ଲକ୍ଷ ନୃପତି ଲକ୍ଷ୍ୟ ଲୋଭେ ପ୍ରବେଶ ଶୁଣି ଜେତେ ଦେଖି ଲୋଚନେ ।
ବାନ୍ଧୁଣୁ । ମଗଧଦେଶ ମନ୍ତ୍ରିପୁତ ।
ଯେଉଁ ଫୁଲମାଗି ଯହିଁରେ ସୁରାଗୀ ନୃପଜାଠାରେ ହେବ ଖ୍ୟାତ । ୧୧ ।
ଶୁଦ୍ଧାନ୍ତେ ଜେମା-ସଖୀ କଥା ଏକାନ୍ତେ କେବକାମ ରତି ଲାଳସ ।
ଆସିଲେ କି ନାହିଁ କିକରି ଜାଣିମା ଶୁଣି ରମଣୀମଣି ହସେ ।
ପ୍ରସ୍ଥାନ । ନ କରିଥିଲେ ସେ ପ୍ରସ୍ଥାନ ।
କରିବ ଟିକି ୨ଶମନ-ଭବନକୁ ଜୀବନ ବୁଝ ଏ ବିଧାନ । ୧୨ ।
ବାଣୀକା କହେ ୧ସାରଙ୍ଗଚଞ୍ଚଳାକ୍ଷି ଗ୍ରହ ଆଶଙ୍କା ଏଥି ନାହିଁ ।
ଅବାଧ୍ୟ ବରଷେ ତା ନୀର ତୃଷାର୍ତ୍ତ ଜାଣି ସାରଙ୍ଗ ଥାଏ ଯହିଁ ।

---

୧୦—ଉପବନରେ ମୟୂର ଓ କୋକିଳମାନେ ସର୍ବଦା ଖେଳୁଅଛନ୍ତି । ନଦୀରେ ହଂସମାନେ ସର୍ବଦା ପହଁରୁଅଛନ୍ତି । ଉପବନରେ କେଉଁଠାରେ ଧାତକୀ ଓ ଚନ୍ଦନ ବୃକ୍ଷ ଉତ୍ପାଦିତ ହୋଇ ଅଛନ୍ତି । ନଦୀରେ କେଉଁଠାରେ କଇଁର ଉତ୍କୃଷ୍ଟ ଗନ୍ଧ ହେଉଅଛି । ଉପବନ ଭ୍ରମରମାନଙ୍କ ଦ୍ୱାରା ଶୋଭିତ ହୋଇଅଛି । ନଦୀ ଜଳ ଭ୍ରମରେ ଶୋଭିତ ହୋଇ ଯେ (ବନ) ବସନ୍ତକାଳର ବାସସ୍ଥାନ, ଯେ (ନଦୀ) ମଧୁର ଜଳର ବାସସ୍ଥାନ । ବେନି (ଦୁହେଁ) ମଧୁର ସୌନ୍ଦର୍ଯ୍ୟର ବାସସ୍ଥାନ ଅଟନ୍ତି । ୧କଳକଣ୍ଠ, କୋକିଳ ମୟୂର ଓ ହଂସ । ୨ଅମ୍ବରଚର, ସର୍ବଦା । ୩କୁମୁଦ, ଧାତକୀ ଓ କଇଁ, । ୪ଗନ୍ଧସାର, ଚନ୍ଦନ ଓ ଉତ୍କୃଷ୍ଟ ଗନ୍ଧ । ୫ଭ୍ରମର, ଭ୍ରମରମାନଙ୍କ ଦ୍ୱାରା ଓ ଜଳ ଘୂର୍ଣ୍ଣିଦ୍ୱାରା ।

୧୧—ମାଳତୀପୁର (ଚମ୍ପାପୁର) ମାଳତୀ ମାଳା ଗୁନ୍ଥିବା ପାଇଁ ସେବକରେ ଫୁଲ ତୋଳନ୍ତି ଲକ୍ଷ୍ୟସ୍ଥଳୀର ରଜାଏ ଲକ୍ଷ ବନ୍ଧିବା ଲୋଭରେ ସେଠାରେ ପ୍ରବେଶ ହୋଇ ଥିଲେ, ଦେଖିଲ । ଜେତେ ରଜାଙ୍କ ନାମ ଶୁଣି ଓ ଜେତେ ରଜାଙ୍କୁ ଦେଖି ବାନ୍ଧୁଣିବା ବେଳରୁ ମଗଧ ଦେଶ ମନ୍ତ୍ରିପୁତ୍ର ଯେଉଁ ଫୁଲ ମାଗିଥିଲେ ଓ ଯେଉଁ ଫୁଲରେ ଅନୁରାଗୀ ହୋଇଥିଲେ । ତାହା ରାଜକୁମାରୀ ନିକଟରେ ପ୍ରକାଶ ହେବ ।

୧୨—ନୃପତି କନ୍ଦର୍ପ ପୁଷ୍ପକେତୁ ଉଚ୍ଚ ସ୍ୱରୂପ ରାଜକୁମାରସେବରେ ଏଠାକୁ ଆସିଲେ କି ନାହିଁ, ଏହା କିପରି ଜାଣିବା । ଏହି କଥା ରାଜପୁତ୍ରୀ ସଖୀ ଅନ୍ତଃପୁରରେ ଏକାନ୍ତରେ କଥା ବାର୍ତ୍ତା ହୋଇଥିବାର ଶୁଣି ରମଣୀମଣି କୋଟିବ୍ରହ୍ମାଣ୍ଡସୁନ୍ଦରୀ ହସୁଛ । ସେ ରାଜପୁତ୍ର ଏଠାକୁ ପ୍ରସ୍ଥାନ କରି ନ ଥିଲେ ମୋର ଏ ଜୀବନ ଯମପୁରକୁ ପ୍ରସ୍ଥାନ କରିବ । ଏ କଥା ନିଶ୍ଚୟ ଜାଣ । ୧ଶୁଦ୍ଧାନ୍ତ, ଅନ୍ତଃପୁର । ୨ଶମନ ଭବନ, ଯମପୁର ।

୧୩—ବାଣୀକା ସଖୀ କହୁଛି । ହେ ସାରଙ୍ଗ ଚଞ୍ଚଳାକ୍ଷୀ ? ଏଥିରେ ଗ୍ରହଦୋଷ ଆଶଙ୍କା ଅଦ୍ୟାବଧି ନାହିଁ । ଯେପରି ତୃଷାର୍ତ୍ତ ଚାତକ ଯେଉଁଠାରେ ଥାଏ, ତାହା ଜାଣି ମେଘ ଜଳ ବର୍ଷଣ କରେ, କି ହେଲେ

ନୋହିଲେ । ଜଳଦ ବୋଲନ୍ତି କେ ଘନେ ।
ସେ ରସଦ-ମୂର୍ତ୍ତି ତୁ ତାହା ତୃଷାର୍ତ୍ତ ଅଛିବେନ ରସ ପ୍ରଦାନେ ।୧୩।
କହେ କାଦମ୍ବିନୀ ସମସ୍ତ ହେଲାନ ହରଷ-ନଦୀ ଉଛୁଳିବ ।
୧ମୀନ-ବନ୍ଧ ଅସ୍ତବ୍ୟସ୍ତ ଲଭି ଲଜ୍ଜା-ହଂସ ଦୂରକୁ ପଳାଇବ ।
କ ପୁଣି । ମାଳିନୀ ଏକାଳେ ଥଇଲା ।
ଶଚୀକଳା ଫୁଲମାଳା ଗୁନ୍ଥି ଆଜ ଅଳ୍ପ କାହିଁକ ପଶୁରିଲା । ୧୪ ।
ପଶୁରିଲାକୁ ଉଚ୍ଚାରିଲା ପ୍ରସନ୍ନ-ଆନନେ ସେ କେଳିକାନନେ ॥
ନରନାୟକ ଯେତେକ ପୃଥ୍ୱୀଯାକ ପୂରି ଗଲେ ତହିଁ ସଘନେ ।
ଦେଖି ମୁଁ । ଜାଣିଲି ତିନ ତଥ୍ୟ କରି ।
ସମ୍ପଦେ ମଦେ ପ୍ରମୋଦେ ଶୌର୍ଯ୍ୟପଦେ ଅଧିକ କହୁଛି ବିସ୍ତରି ।୧୫।
କିଷ୍ଟେ ତ୍ରିପୁର ଜାଣିଛୁ କାଶୀଶ୍ୱର ନୁହଇ କାଶୀଶ୍ୱର ସେହୁ ।
୨ବିଦେହରାଜା ଆସିଅଛି ବିଦେହରାଜା ଏଥି ଏ ଯେମନ ନାହିଁ ।
୩କୋଦଣ୍ଡ । କାଣ୍ଡ ଯହିଁରେ ତା ନିର୍ମାଣ ।
ସେ ପୁର ନୃପଜ ବିଜେ ଚନ୍ଦ୍ରପ୍ରଭା ସ୍ୱଭାବେ ସେ ୪ଜ୍ୟୋତିରିଙ୍ଗଣ ।୧୬।

---

୧୩ ତାକୁ କାହିଁକି ଜଳଦ ବୋଲନ୍ତି । ସେହିପରି ସେ ରାଜପୁତ୍ର ରସଦ ମୂର୍ତ୍ତି ଅଟନ୍ତି, ତୁ ତାଙ୍କଠାରେ ତୃଷାତୁର ହୋଇଅଛୁ ସେ ଏହା ଜାଣି ଅବଶ୍ୟ ରସ ପ୍ରଦାନ କରିବାକୁ ଅଛିବେଣି । ୧ସାରଙ୍ଗ, ଚକ୍ଷୁର ଓ ଗତିକ ।

୧୪—ତହିଁ ଉତ୍ତରୁ କାଦମ୍ବିନୀ ସଖୀ କହିଲା । ସମସ୍ତ ହେଲଣି, ଆନନ୍ଦ ରୂପକ ନଦୀ ଉଚ୍ଛୁଳିବ, ବସ୍ତ୍ରଗ୍ରନ୍ଥି ରୂପକ ବନ୍ଧ ଭଳି ଅସ୍ତବ୍ୟସ୍ତ ହେବ । ଲଜ୍ଜା ରୂପକ ହଂସ ଦୂରକୁ ପଳାଇ ଯିବ । ଏହି ସମୟରେ ମାଳତୀ କହିଣ ବଗର ଅଛେକ । ଶଚୀକଳା ସଖୀ ତା ଫୁଲମାଳ ଗୁନ୍ଥି ପଶୁରିଲା । ଅଜ କାହିଁକି ଅଳ୍ପମାନ ଅଣିତ ? ୧ମୀନ, ବସ୍ତ୍ରଗ୍ରନ୍ଥି ।

୧୫—ଏହା ପଶୁରିବାରୁ ମାଳତୀ ପ୍ରସନ୍ନ ମୁଖରେ କହିଲା । ମୁଁ ଅଜ ଉପବନରେ ଦେଖିଲି, ପୃଥ୍ୱୀ ଯାକରେ ଯେତେ ରାଜା ଥିଲେ, ସେ ସମସ୍ତେ ସେଠାରେ ଘନ ଭାବେ ପୂରି ରହିଅଛନ୍ତି । ତହିଁ ମଧ୍ୟରୁ ତିନ ଦେଶରେ ରାଜାଙ୍କୁ ମୁଁ ଠିକ କରି ଜାଣିଲି । ସେ ତିନ ରାଜା ସମ୍ପତ୍ତିରେ, ରାଜାଭିମାନରେ, ଆନନ୍ଦାନୁଭବରେ ଏବଂ ଶୌର୍ଯ୍ୟପଣିଆରେ ସମସ୍ତଙ୍କଠାରୁ ଅଧିକ ଅଟନ୍ତି । ମୁଁ ତାହା ବିସ୍ତର କହୁଅଛି, ଶୁଣ ।

୧୬—ସ୍ୱର୍ଗ ମର୍ତ୍ତ୍ୟ ପାତାଳ ତିନପୁରକୁ ଜାଣିଅଛ କିଷ୍ଟେ ? କିନ୍ତୁ ତ୍ରିପୁର ଦହନକାରୀ ଶିବ ନୁହନ୍ତି । ସେ କାଶୀ ରାଜା ଅଟନ୍ତି । ବିଦେହ ଦେଶ ରାଜା ମଧ୍ୟ ଆସିଅଛନ୍ତି । ତାଙ୍କ ସୌନ୍ଦର୍ଯ୍ୟରେ କନ୍ଦର୍ପ ଏଠାରେ ରହି ପାରୁ ନାହିଁ । ସେ କନ୍ଦର୍ପର ଚନ୍ଦ୍ର ଶର ଯହିଁରେ ତିଆରି ହୋଇଅଛି, ସେ ପୁର ଅର୍ଥାତ୍ ପୁଷ୍ପପୁର ରାଜପୁତ୍ର ମଧ୍ୟ ବିଜେ କରି ଅଛନ୍ତି । ସେ ସ୍ୱଭାବରେ ଚନ୍ଦ୍ରପର ପ୍ରଭା ଧାରଣ କରିଅଛନ୍ତି, ତାଙ୍କ ଆଗେ ଅନ୍ୟ ରାଜାମାନେ ଜୁଳୁଜୁଳିଆ ପୋକପରି ଦିଶୁଅଛନ୍ତି । ୧କାଶୀଶ୍ୱର, ଶିବ ଓ କାଶୀରାଜା । ୨ବିଦେହ, ଦେହହୀନ ଓ କନ୍ଦର୍ପ । ୩କୋଦଣ୍ଡ, ଧନୁ । ୪ଜ୍ୟୋତିରିଙ୍ଗଣ, ଜୁଳୁଜୁଳିଆ ପୋକ ।

ବାଳା ସେ । ³ପଦ୍ମନାଳ ପରି ଦେହୀ ।
ଭଣ୍ଡ ପ୍ରବେଶ ଶ୍ରବଣରେ କନକ-⁴କଣ୍ଟକୀଫଳ ଲକ୍ଷ୍ୟ ବହି । ୨୦ ।
ଦେଇ ଶାଢୀ ଚୂଡ଼ି ଗୁଣା ମୁଦ ବଳା ସୁବର୍ଣ୍ଣେ ରଜତେ ଚପଳେ ।
ମାଜଣା କରାଇ ଉମାଙ୍କୁ ଶିବଙ୍କୁ ଘା ଜଣା ସଖୀଏ କହନ୍ତିଲେ ।
ସେ ଧନ । ଯାମକ ନେଇ ଏ ¹ପୋଷାକେ ।
ପ୍ରେମ-ବାଣିଜ୍ୟ ଲାଭ ଲଭି ²ନିଧନ କରୁ ବରହ ଦୁର୍ଦ୍ଦଶାରେ । ୨୧ ।
ପାଞ୍ଚୁରୁ ଧନ ସେ କାହିଁ ଲଭି କେଉଁ ପାଇବ ସେନ ତୁ ଗୁଣିକ ।
ଓଷ୍ଠ ମାଣିକ୍ୟରୁ ଜାତ କରାଇବ ଅନୁରାଗ-ବାଣୀ ମାଣିକ ।
ସୁହାସ । ମୋତି କରାଇ ଅତଯାତ ।
ହୃଦ-ଭଣ୍ଡାରେ ଅର୍ଜନ ଦନ୍ତ-ହୀରା ଥଆଇ ହୋଇବ ତୃପତ । ୨୨ ।
ଏମନ୍ତ ଶୁଣି ସେ ମାଳିକତରୁଣୀ ମେଲାଣି ହୋଇ ଯିବାବେଳେ ।
¹ତଟିନୀ-ତଟରେ ସୁବାକରେ ଭେଟି ନେଉଛି ଭଙ୍ଗୀ ଚେଷ୍ଟା ମେଳେ ।
କହିଲା । ଅପରାଧ କ୍ଷମା କରାଇ ।
ମୋ ହାତ ଖଞ୍ଜା ତାମ୍ବୂଳ ପଦ୍ମଦଳ ଶଯ୍ୟାକୁ ଗଲ୍ଲ ତହିଁ ପାଇଁ । ୨୩ ।
ରେ ବମ୍ବାଧର ନିଯୋଗ ପାନ ଧରି ନବୀରୁ¹ ସନାଳ ସାରସ ।
କରକେ ଉତ୍ପାଟୁଁ ଗୋଟିଏ କୂଳରେ ବକୁଳ ତଳରେ ପ୍ରବେଶ ।

---

ଶୁଣି ପୁଲକ ହେବାରୁ ସ୍ୱର୍ଣ୍ଣକଣ୍ଟକ ଫଳ ସଦୃଶ ଲକ୍ଷ୍ୟ ହେଲା । ¹ସେତୁ, ସର । ²କଉଞ୍ଜ, ପଦ୍ମିନୀ । ³ଟେଣ୍ଡୁରସାଳ, ପାଚିଲା ଆମ୍ବ । ⁴କଣ୍ଟକୀଫଳ, ପଣସ ।

୨୧—ମାଳିକାଣ୍ଟୁ ରୂପା ଓ ସୁନାର ଚୂଡ଼ିବଳା, ଗୁଣା, ମୁଦ ପ୍ରଭୃତି ଅଳଙ୍କାର ଓ ଶାଢ଼ୀ ଉପହାର ଦେଇ ସଖୀମାନେ କହିଲେ, ତୁ ଯାଇଁ ଉମା ମହେଶ୍ୱରଙ୍କ ମାଜଣା କରାଇ ଏ କଥା ଜଣାଅ । ଏ ପୋଷାକ ସେ ଧନ ନିଅ । ଏ ପ୍ରେମ ବାଣିଜ୍ୟରେ ଲାଭପାଇ ବିରହଦୁର୍ଦ୍ଦଶାରୁ ବିନାଶ କରୁ । ¹ପୋଷା, ସ୍ତ୍ରୀ । ²ନିଧନ, ବିନାଶ ।

୨୨—ତୁ ମନରେ ଚାହୁଁଛୁ ! ସେ ଧନ କାହିଁ, କିପରି ଅବା ସେ ଘର ପାଇବ । କିନ୍ତୁ ତୁଚ୍ଛ ଗୁଣିକ, ଏପରି ନହେ । ଏ ସୁନ୍ଦରୀପ୍ରିୟଙ୍କ ପାଇଲେ, ଓଷ୍ଠରୂପକ ମାଣିକ୍ୟରୁ ସ୍ନେହପୂର୍ଣ୍ଣ ବଚନରୂପକ ମାଣିକ୍ୟ ଜାତ କରେଇବ । ସୁହାସରୂପକ ମୋତି ଆଉଯାଉ କରାଇ ଦନ୍ତହୀରାରେ ( ହୃଦ ଭଣ୍ଡାରରେ ) ଅର୍ଜନ କରିଥିବା ଦନ୍ତରୂପକ ହୀରା ଥୁଆଇ ତୃପ୍ତ ହେବ । ଅର୍ଥାତ୍ ସହାସ କଥାବାର୍ତ୍ତା ହୋଇ ଓ ଦନ୍ତରେ ଦନ୍ତ ଦେଇ ଚୁମ୍ବନ କରିଲେ ତୃପ୍ତ ହେବ ।

୨୩—ସେମାନଙ୍କ ଏପରି ଶୁଣି ମେଲାଣି ହୋଇଯିବାବେଳେ ନଦୀତଟରେ ତରୁଣ ଚେଷ୍ଟା ଭଙ୍ଗୀରେ ସୁନ୍ଦରର ଆଗମନ ସଦୃଶ ଦେଖି ସେଠାରେ ପ୍ରବେଶ ହେଲା । ସେ ଅପରାଧ କ୍ଷମା କରିବାକୁ ପ୍ରାର୍ଥନା କରି କହିଲା ମୋର ହାତଖଞ୍ଜା ପାନ ଓ ପଦ୍ମପତ୍ର ଶଯ୍ୟା ସନ୍ତୋଷ କରିବାକୁ ଯାଇଥିଲି । ¹ତଟିନୀ, ନଦୀ ।

୨୪—ଅହେ ବିମ୍ବାଧର ! ମୁଁ ନିଯୋଗ ପାନ ହାତ ରେ ଧରି ଅନ୍ୟ ହାତରେ ନଦୀରୁ ନାଡ଼ସୁଦ୍ଧା ପଦ୍ମ ଓ ପଦ୍ମପାନେ ଦେଖିଲି । ନଦୀ କୂଳରେ ବକୁଳବୃକ୍ଷ ମୂଳରେ ଜଣେ ଚନ୍ଦ୍ରବଦନ ଜଣେ ଯୁବକ ଦେଖି

ଜଗତ । ବନ୍ଧନ ଘଞ୍ଜନନନ୍ଦନେ ।
ଦେଖି ନ ଥିବ କାହା ଅଖି ଯେମନ୍ତ ସୁନ୍ଦର ଚଉଦଭୁବନେ । ୨୪ ।
କଳାକେ ଚନ୍ଦ୍ରକୁ ତୁଲା କେ କରିବ ଏସନ ପ୍ରସନ୍ନ ବଦନ ।
ସେହି ୧ବପୁ ଚାହିଁ ହରବପୁ ବେ ନ ରଖି ବୋଲାଇ ମଦନ ।
ପୁରୁଷ । ଭୁଷଣ ସେ କଣ୍ଠେ ଥାନ୍ତି ।
ନନ୍ଦଙ୍କ ଭୁବ ଗୋପାଳ-ଶେଖରଙ୍କର ଲକ୍ଷଣ ଇଚ୍ଛା ତୋ ସଙ୍ଗତ । ୨୫ ।
୧ନରବରଜ ଭାଳଲେ ଯେ ୨ମାରଜନେଜ ଦ୍ୱିଜମିଶ ଉପରେ ।
ସେ ମୋତେ ପୁଚ୍ଛିଲେ ହେ ବାଲେ ଏ ହିତ ନୋହେଛିକଦା ପ୍ରେତନ୍ତରେ
ସହଜେ । ଏ ଶ୍ୱାସପ୍ରସୂନ ବୋଲଇ ।
କରଗ୍ରହଣଯୋଗ୍ୟ ଜନ ନ ମିଳି ପ୍ରବୃତ୍ତ ଘବ ଅଛି ପାଇ । ୨୬ ।
୧ଶଳପର୍ଣ୍ଣି ଫଳ ରସାଳହୁଅଯୁ ପର କର୍କଶ ମଧ୍ୟେ ଥାଇ ।
ଜାତ ୨ଜମ୍ପୁଟେ ଏ ହିତ ହେବ ନାଥ ଏମନ୍ତ ବ୍ୟାଧି ଥିଲେ ହୋଇ ।
ସଙ୍କେତ । ଦେଖି ବୋଇଲି ଦଥ ଦେଲେ ।
ମୃଟରେ ତବକଣ୍ଠେ ଥିଲି ସୁରଭି *ସୁରଭିମାଳା ଖର ଗଲେ । ୨୭ ।
ଧଇଲି ହରିତବର୍ଣ୍ଣରୁ କହିଲି ଗଡା ଗେଣ୍ଡୁ ଏ ୧ଗୋଶୀର୍ଷରେ ।
ଙ୍ଗେଏ ସନ୍ଦେହ ଦେଖ ତତ୍ତ୍ୱର ଏ ଫଳ ହେବ କେଉଁ ବଣରେ ।

---

ପ୍ରବେଶ କରଥିବ । ଚଉଦ ଭୁବନରେ ଯେପରି ସୁନ୍ଦର ପୁରୁଷ କାହାର ଅଖି ଦେଖି ନ ଥିବ । ୧ ଶରୀର ସାରସ, ନାଭିପୁଷ୍ପ, ପଦ୍ମ ।

୨୫—ଯେଉଁ ଭଳ ତାଙ୍କ ମୁଖର ଏକ କଳାକୁ ଚନ୍ଦ୍ର ସମାନ କରିବ । ଏପରି ପ୍ରସନ୍ନ ମୁଖ ହୋଇଅଛି । ହର ଉପ କନ୍ଦର୍ପ ସେ ଶରୀରକୁ ଚାହିଁ ଅନେଶ୍ୱର ମଦନ ବୋଲଉଛି । ଅର୍ଥାତ୍ ମଦ (ଗର୍ବ) ନାହିଁ କାହା କହା କହୁଅଛି କି । ସେ ନନ୍ଦପୁ ପୁରୁଷ ଭୂଷଣ (ପୁରୁଷଶ୍ରେଷ୍ଠ) ହୃଦରେ ଥାନ୍ତି । ତୁ ଗୋପାଳ ଶେଖରଙ୍କ ( ରାଜ ଶ୍ରେଷ୍ଠଙ୍କର ) ଚିହ୍ନ ଅଛି, ଏଣୁ ଗୋପାଳଶେଖର ଶବ୍ଦର ବ୍ୟାଖ୍ୟା । ତାଙ୍କ ଏହି ଲକ୍ଷଣକୁ ତେ ତୋ ସଙ୍ଗତ ଲକ୍ଷଣ ଅଛନ୍ତି । ୧ ବପୁ, ଶରୀର ।

୨୬—ସେହି ଜନବିଶ୍ୱ ବ୍ରାହ୍ମଣମାନେ ସେଠାରେ ଉପ୍ରେକ୍ଷା କଲେ, ଅର୍ଥାତ୍ ପାଖରେ । ତହିଁ ସେ ବ୍ରାହ୍ମଣ ମୋତେ ପଚାରିଲେ ଏ ପ୍ରେତଦ୍ୱାର ସେବ କରିବାରେ ପାପ ଗ୍ରହଣ ନୁହେଁ । ସେପାଇଁ ଏହି ପ୍ରେତ କରିବ ନୁହେଁ ତ । ଏ ହିତକାରେ ପତ ପ୍ରବୃତ୍ତ ହୋଇପାର, ଏଣେଣ ବକ୍ଷରୂପ ଦେଖାଇବ । ବୋଧହୁଏ ଏ ନିୟମ କରି ଗ୍ରହଣ ଯୋଗ୍ୟଜନ ( ବିଦ୍ୟା ଓ ଯୋଗ୍ୟତା ) ମିଳିବାକୁ ହରି ପାଉଅଛି । ୧ ନରବରଜ, ଯୁବପୁତ୍ର । ୨ ଘଟକ, ପଦ୍ମ ।

୨୭—ଏ ଶ୍ରୀଫଳ ଫଳ, ଅମୃତ ମଧୁ ଦେଇ କହା ମଧ୍ୟରେ କୌଣସି ପଦାର୍ଥ ଏ ଦେହରେ କହୁ । ( ଉପରେକ୍ତ ) ବ୍ୟାଧି ହୋଇଥିଲେ, ଏ ହିତକର ହେବ ନାଥ ! ପୂର୍ବେ ଭୁମ୍ଭ କଣ୍ଠରେ ଯେଉଁ ପୁଷ୍ପମାଳ ଥିଲ, ତାହା ସେହି ଖର ପଡ଼ିଗଲା ଗଳାରେ ଥିବାର ସଙ୍କେତ ଦେଖି ବୋଇଲି ଦଣ୍ଡ, ଯେ ଦେଲେ । ୧ ଶଳପର୍ଣ୍ଣୀ, ବେଲ । ୨ ଜମ୍ପୁଟ, ଦେହ । * ସୁରଭି ପୁଷ୍ପମାଳା, ସୁଗନ୍ଧିମାଳ ।

ଯେନ ଯେ । ଅଳୀ ଅଙ୍ଗୁଳି ଘାତ କଲୁ ।
ହୃଦୟ ଉଦୟ କଠିନକୁ ଜାଣି ସ୍ୱର୍ଗ ଶୋଭାଙ୍ଗୀ ହସ୍ତ ଦେଲୁ ।୨୮।
ସୁନାପଟା ଖୋଲା ବ୍ୟକତ ମର୍କତ ମିନା ଫୁଙ୍କା ଲିପି ଝଲଇ ।
ଅଦ୍ଭୁତ କେତକୀପତ୍ରେ ଅଳି ଅଳି ହୋଇ କି ୧ମିଳନ୍ଦ ମିଳଇ ।
୨ପରାଗ । ଯୋଗ ହୋଇଥିଲା ପରତେ ।
ସେ ୩ଗନ୍ଧସାରଶେଷ କାହିଁ ବହନ୍ତି ପଡ଼ିଲା ଉତ୍ଫୁଲ୍ଲ ଶରୀରେ ।୨୯।
ରମା ଯେ ନ୍ତ ୧ଅଭିରାମା ତେମନ୍ତ ନାମ ପୁଣି ବହି ବହିଲା ।
ଉର୍ବଶୀ ଅପୂର୍ବ ସୁନ୍ଦରୀ ସ୍ୱର୍ଗରେ ତୋହୋ ଯେନ ଏବେ ହୋଇଲା ।
ସୁବେଶୀ । ଅରମ୍ଭା ଅକାର ସ୍ୱୀକାରେ ।
ରମ୍ଭା ବୋଲାଇଲା ତିଲୋତ୍ତମା ହେଲା ତିଳେ ୨ସୁଷମା ସମାନରେ ।୩୦।
ଗୁଣ ତୁଳନାରେ ତୁଳନା ନୋହୁଛି ରତିଠାରୁ ରତି ବୋଲାଇଛୁ ।
ଜଘକାନ୍ତି ତାହାଠାରେ ଥିବା ନାହିଁ ୧ପଞ୍ଚବିଂଶିଖେ ବଢାଇଛୁ ।

---

୨୮—ମୁଁ ସେ ପଦାର୍ଥକୁ ଧରିବି. ହୃଦୟବର୍ଣ୍ଣ ପଣ୍ଡିତାରୁ କହୁଛି । ଏ ଉଦରରେ ଗଢ଼ା ହୋଇଥିବା କେଉଁ ବ? ଅଗୋ ବହୂଣ, ଏବେ ଦେଖ, ଏ ହେଉଁ ହେତୁରୁ ପଳାଉଛ । ମୋର ଏ ସନ୍ଦେହ ଖଣ୍ଡନ ହେଲା । ସଖି ତାହା ତତ୍ପର କରି ଅଙ୍ଗୁଳି ଅଘାତ କଲା । ତାହା ମଧ୍ୟରେ ଥିବା କଠିନ ପଦାର୍ଥକୁ ହାତ ତୋଳି ଜାଣି ସ୍ୱର୍ଗ ଶୋଭାଙ୍ଗୀ ନେମା ହାତରେ ଦେଲା । ୧ ଗୋଶୀର୍ଷ, ଚନ୍ଦନ ।

୨୯—ସୁନା ପଟା ଖୋଲାଖୋଲି ମଧ୍ୟରେ ବ୍ୟକ୍ତିରୂପେ ମରକତ ମିନାଫୁଙ୍କା ଦେଖାଯାଏ କେତକୀ ପତ୍ରରେ ଅଳି ଝଲକ ହୋଇଅଛି । କେତକୀ ପତ୍ରର ଧାଡ଼ି ଧାଡ଼ି ହୋଇ ଭ୍ରମର ମିଳିତ ହୋଇଥିବା ଅଦ୍ଭୁତ ଦିଶେ । ସେ ଭ୍ରମରମାନଙ୍କ ଦେହରେ ପୁଲକ ଯୋଗ ହୋଇଥିବା ପରି ସେ ଯୋଗ ଗନ୍ଧଶେଷ କାହିଁ ଲାଗିଅଛି । ଯେମା ସେ ପଦକ ଗୋଶୀର୍ଷ ଦେହରେ ପଡ଼ିଲା । ୧ ମିଳିନ୍ଦ ଭ୍ରମର । ୨ ପରାଗ, ପୁଲକ । ୩ ଗନ୍ଧସାର, ଚନ୍ଦନ ।

୩୦—ପଦରେ ଲେଖାଅଛି. ହେ ରମା ତୁ ଯେପରି ସୁନ୍ଦର, ସେହିପରି ପୁଣି ସେହିପରି ନାମ (କୋଟିବ୍ରହ୍ମାଣ୍ଡ ସୁନ୍ଦରୀ) ଧାରଣ କରିଅଛ । ସ୍ୱର୍ଗରେ ଅପୂର୍ବସୁନ୍ଦରୀ ଉର୍ବଶୀ ଏବେ ତୋ ଯେନ ଅପୂର୍ବସୁନ୍ଦରୀ (ଉର୍ବଶୀ) ହୋଇଲା । ଅର ଏକ ସୁବେଶୀ—ଅରମ୍ଭ (ସୌନ୍ଦର୍ଯ୍ୟ ଗର୍ବିତ) ଅକାର ସ୍ୱୀକାରରେ (ରୂପରେ ଲୁଚି ହୋଇଲେ) ରମ୍ଭା ବୋଲାଇଲା । ଯଦ୍ୟପି ତିଳକୁ ସମାନ ସ୍ୱୀକାର ହେଲେ ତିଳୋ ହେଲା, ଅର୍ଥାତ୍ କରଣୀ ସୁନ୍ଦରୀ ଏକଅଙ୍ଗ ଅଳ୍ପସଙ୍ଗେ ତୁଳନା କରାଗଲା । ତିଳମାତ୍ର ଯୋଗରୁ ସମାନ ନ ହେବାରୁ ଅନ୍ୟ ଜଣେ ତିଲୋତ୍ତମା ହେଲା । ୧ ଅଭିରାମା, ସୁନ୍ଦରୀ । ୨ ସୁଷମା, ଚରମଶୋଭା ।

୩୧—କନ୍ଦର୍ପ ପତ୍ନୀ ଗୁଣ ତୁଳନାରେ ସମ୍ପୂର୍ଣ୍ଣ ସମାନ ନୋହୁ ରତିରେ ସମାନ ହେବାରୁ ରତି ବୋଲାଉଅଛି । କନ୍ଦର୍ପ ଭସ୍ମ ହେବା ଅନନ୍ତରୁ,ତାହାଠାରେ ଥିବା ନାହାଁର (ବାମ୍ଭର) ଅଧର ଅଙ୍ଗୋଟିର, ନାଭିରୀ, ପଦ ଓ ଶାଳ, ବୃକ୍ଷଫଳରେ ରଚନା ଯୋଗ-ବଢାଇଅଛି । ସେହି ହେତୁରୁ ସେ ଶର ସବୁ ତେ ଚକ୍ଷୁରେ ଉଦୟ ହୋଇଅଛି । ଯୋ ଚକ୍ଷୁରେ ନାମବର ପଞ୍ଚବିଂଶ ଶୁଣ । ତିନ୍ତୁ ଏବେ

ତୋ ନେତ୍ରେ । ଚକ୍ଷୁଁ ସେ ସାକ୍ଷାତ ଜଳଦସ୍ଥ ।
ନୀଳ ଘନ ଥିଲା ନୀଳାମ୍ବର ହେଲା ଜାତ ୨ତରଙ୍ଗେ ୩ଜୁବାଳୟ ।୩୧।
ବର୍ଣ୍ଣନ ବଧୂ ସେବି କଲା ତବର ହୃଦେ ହୋଇ ନବମାଳତୀ ।
ଶ୍ରବଣେ ତପୀ ବଳରେ ଚ୍ୟୁତ ହୋଇ ବ୍ୟାପେ ସେ ଯାଇଥିବ ଏତା ।
ନଶ୍ବସ୍ଥ । ଗ୍ରୀବ ଉପମାସୃଷ୍ଟିରେ ।
ଭଜିଲା ଜନ ମୁଁ ଅଶୋକ ଜନମୁଁ ସମ୍ପୂର୍ଣ୍ଣ କାମନା ବୃଷ୍ଟିରେ ।୩୨।
ଶିବଳୀ ୧ତ୍ରିପଥଗା ପାଶେ ଉଦରେ ସେମାଳୀ କଳ୍ପବୃକ୍ଷ ଜାତ ।
ଅଧରେ ମନ୍ଦାର ଶ୍ରୀଅଙ୍ଗ ସୁଗନ୍ଧ ପାରିଜାତକ ଆମୋଦିତ ।
କ୍ଷୀଣ କଟି । ସୁଖ ସନ୍ତାନ ଜାତ କରୁ ।
ଶୀତଳତ ହରିଚନ୍ଦନ କାମଦ ଦେହରୁ ପାଞ୍ଚ ବୃକ୍ଷରୁ ।୩୩।
ମୃଗପଛ ପୁଚ୍ଛ କଦା ନୋହେ ଲକ୍ଷ୍ୟ ତୋ କେଶ ଗର୍ଭିତ ଲଜ୍ଜାଇ ।
ଛେଦନ କରି ନିବେଦନ କରଇ ଏ ଦୋଷ କ୍ଷମା କରେ ମେତେ ।
ତୋ ଇଚ୍ଛା । ଚୂଡ଼ା ବନ୍ଧନ କରିବାରେ ।
ଥିଲେ ଚନ୍ଦ୍ରଙ୍କରେ ବସିଲା ପ୍ରକାରେ ଯୋଗ କହୁଅଛନ୍ତି ଏପ୍ରକାରେ ।୩୪।

---

ସହଚରୀଙ୍କ ସଂଯୋଗରୁ ପଦ୍ମ ସମୂହ ( ଗୁଚ୍ଛଳ୍ୟ ) ଜାତ ହୋଇଅଛି । ୧ ଦଣ୍ଡ, ଧନ, ୨ ତରଙ୍ଗ, ଲହରୀ । ୩ ଜୁବାଳୟ, ଶମଦଘର୍ମ ।

୩୨—ତୋ କଣ୍ଠ ବଦମାନଙ୍କ ଗଳାରେ ନବମାଳତୀ (ବୃକ୍ଷମାଳ) ହୋଇ ବର୍ଣ୍ଣନା ବଧୂଙ୍କ ସେବି କରୁଅଛି । ଅର୍ଥାତ୍ କବିମାନେ ତୋତେ ବର୍ଣ୍ଣନା ବଧୂଙ୍କ ଗଳାଦ୍ୱାରେ ହାର ଭଳି ଅଛନ୍ତି । ତପୀ ( ତପସ୍ୱୀ ) ମାନେ ଶ୍ରବଣ କରିବାରୁ ବଳବୃଥ ହୋଇ ଏତା ବ୍ୟାପି ଯାଇଥିବ । ତତ୍ ଉପମା ସୃଷ୍ଟିରେ ନଷ୍ଟପ୍ରାୟ ଘଟନା, ( ତତ୍ ) ରେ ଶୋଭା ପାଇବ । ମୁଁ ତୋ ଭଜିଲା ଜନ, ତୋ ଦୃଷ୍ଟିରେ ଅଶୋକ ( ଶୋକଶୂନ୍ୟ ଅବସ୍ଥା ) କରୁ । ମୋ କାମନା ସମ୍ପୂର୍ଣ୍ଣ ହେଉ ।

୩୩—ତୋ ଉଦରରେ ତ୍ରିବଳୀରୂପ ସ୍ୱର୍ଗୀୟାନଦୀ ତୀରରେ ରୋମାବଳୀ ରୂପ କଳ୍ପବୃକ୍ଷ ଜାତ ହୋଇଅଛି । ତୋ ଅଧର ମନ୍ଦାରପରି, ଶ୍ରୀଅଙ୍ଗ ସୁଗନ୍ଧ ପାରିଜାତ ପରି ଆନନ୍ଦିତ କରୁଅଛି । ତୁ କଟୀଷରେ ସୁଖ ସନ୍ତାନ ( ସୁଖ ସମୂହ ) ଜାତ କରୁଅଛୁ । ସନ୍ତାନ ନାମକ ଦେବବୃକ୍ଷ ଜାତ ହେବାର ସୂଚିତ ହେଲା । ତୋ ଦେହ ଶୀତଳତା ହରିଚନ୍ଦନ ପରି, ଅତଏବ ତୁ ପାଞ୍ଚପ୍ରକାର ଦେବତରୁ ହେଲୁ । ମନ୍ଦାର, ପାରିଜାତକ, ସନ୍ତାନ ହରିଚନ୍ଦନ କଳ୍ପବୃକ୍ଷ ଏହି ପାଞ୍ଚ ଦେବତରୁ । ଅତଏବ କାହିଁକି କାମଦା ( କାମନା ପୂର୍ଣ୍ଣକାରିଣୀ ) ନ ହେବୁ । ୧ ତ୍ରିପଥଗା, ସ୍ୱର୍ଗଙ୍ଗା ।

୩୪—ମୃଗର ପୁଚ୍ଛକୁ ପଦା ପୁଚ୍ଛ ପାଣି ତୋ କେଶ ଗର୍ଭିତ (ଲଜ୍ଜା) ହୋଇତ ଲକ୍ଷ୍ୟ ନୁହେଁ । ସେହେତୁ ଏ ଦୋଷ କ୍ଷମାକରେ ମୃଗପୁଚ୍ଛ ଛେଦନକରି ନିବେଦନ କରଇ । ତହିଁରେ ଚୂଡ଼ା ବାନ୍ଧିବାରେ ଇଚ୍ଛା ଥିଲେ କରିବୁ । ଚନ୍ଦ୍ର କରରେ ବସିଲାପରି ଏ ମୃଗର ଯୋଗ ହେଉଅଛି ।

ହେ ବାଳାମଣି ଦେଲା ଜାଳାଙ୍ଗନା ନେଲା ବନ୍ଦ୍ୟାନ୍ଧି ଭେଟି ସଖୀ ।
ଏ କସ ପତ୍ରରୁଁ ¹ଉଗ୍ରରେ ଏ ସନ୍ଧ୍ୟା-ବନ୍ଦନା ବୋଲୁଁ ସେ ଦେଖି ।
ପ୍ରାତଃସ୍ମରଣି ଏହି । ହେବ ବୋଲି ଗଲା ଦେଇ ସେ । ୩ ।
ହେ ଦେଲା ସେ କୁମାରେ ସେ ଅଭୁର ମାରେ ଶର ପ୍ରହାରବା ବଶେ ।
ବୋଇଲା ପୁଣି କସ ଏଥି ଲେଖିବା ଶୁଣି ଯଶୋବନ୍ତ ଘୋଷ ସେ ।
¹ଅନନ୍ତ ଶୋଭା ଏ ପତ୍ର । ହେବ ²ତାରତତେ ଚନ୍ଦ୍ର ସେ । ୪ ।
ହେ ଅଡ଼ଣି ଜାଣି ଯୋଡ଼ିଲା ହୃଦେ ଅଣି ଭେଦ ନୋହିବା ଉଦ୍ବେଗେ ।
ଏ କାଳେ ରଜନୀ¹ମୁଖ ପରକନ୍ଟି ଘୋଟିଗଲା ଗୃହଦଗେ ସେ ।
²ତମ ତା ସଙ୍ଗେ ବାହାର । ଲୋକ କଲା ଇଚ୍ଛା କରି ସେ ।୫।
ହେ ଉତ୍ତରେ ହିମାଦ୍ରି କାଳୀ ଜନ୍ମସ୍ଥାନ ଭ୍ରମଣି ବେଳ ତା ହୋଇ ।
ଦକ୍ଷିଣରେ ¹କାଳିପୁର ସ୍ୱର୍ଗଙ୍କାକୁ ସନ୍ଧ୍ୟା ସ୍ମରି ଆସଇ ସେ ।
ଏଣୁ ²କାଳ ପୂରି କି ସେ । ଦୁଇ ଦଗରେ ବିଶେଷେ ।୬।
ହେ ଅରୁଣ ସଙ୍ଗ ବାରୁଣୀ ରଙ୍ଗ ¹ବିଧୁ-ପ୍ରସାଦ ପୂର୍ବ ଧବଳ ।
ଗୃହିଦଗ ନାଶ ନ ଦଶୁଁ ²ରେମାଳୀ ଛଦ୍ମ ମୁକୁତାମାଳୀ ।

---

୩—ସେ ବାଳାମଣି ଜେମା ପତ୍ରର ଦେଇ, ଗୋଟିଏ ବାଳକା ତାକୁ ନେଇ । ବନ୍ଦ୍ୟାନ୍ଧି ତାକୁ ଭେଟି ଖୁସୀ ହୋଇ ଏ କସ ବୋଲି ପଚାରିବାରୁ, ସେ କହିଲା ଶିବଙ୍କ ବକ୍ଷସ୍ଥଳେ ଏ ସନ୍ଧ୍ୟା ବନ୍ଦନା ହେବ । ଏହା ବୋଲିବାରୁ ସେ ଦେଖିଲା । ତହୁଁ ବାଳକା କହିଲା ଏ ପ୍ରାତଃସ୍ମରଣୀୟ ହେବ, ଏହା କହିଲେ । ¹ଉଗ୍ର, ଶିବ ।
୪—ସେ ପତ୍ର ବନ୍ଦ୍ୟାନ୍ଧି ନେଇ କୁମାରଙ୍କୁ ଦେଲା । ସେ କୁମାର ଶର ପ୍ରହାର କରିବା ହେତୁରୁ କାମରେ ଅଭୁର ହୋଇଅଛି । ଏ ଲଗା କାଗଜ ଦେଖି ବୋଇଲା ଏଥିରେ ପୁଣି କଣ ଲେଖିବା ଶୁଣି ଯଶୋବନ୍ତ ହସିଲା । ଏ ପତ୍ର ସୁନ୍ଦର ଦେଖାଯାଉଛି । ଏହାର ଶୋଭା ଅକାଶର ଶୋଭାପରି । ରାତିରେ ଅକାଶରେ ଶୋଭା ତାରାମାନଙ୍କ ଯୋଗ ହେଲା ପରେ, ଏ ସନ୍ଧିରେ ଅତି ଉଜ୍ଜ୍ୱଳ ଚନ୍ଦ୍ର ଉଦ୍ଧିତ ହେବ । ଏପତ୍ର ଅକ୍ଷରରେ ପତ୍ରାହେବ । ¹ଅନନ୍ତ, ଅକାଶ । ²ତାରତତେ, ତାରକାମାନଙ୍କ ଯୋଗ ଓ ଅତି ଉଜ୍ଜ୍ୱଳ ଚନ୍ଦ୍ରେ ।
୫—କୁମାର ସେ ପତ୍ରକୁ ଅଡ଼ଣି କରି କାମଶର ଭେଦ ନ ହେବ ବୋଲି ଉଦ୍‌ବେଗରେ ହୃଦୟରେ ଅଣି ଯୋଡ଼ିଲା । ଏକାଳେ ସନ୍ଧ୍ୟାକାଳ ପ୍ରବଳ ରହିଅଛି ଘୋଟିଗଲା । ତା ସଙ୍ଗେ ଅନ୍ଧକାର ବାହାର ଜଗତକୁ କଳାକରି ଦେବାକୁ ଇଚ୍ଛାକଲା । ¹ରଜନୀ ମୁଖ, ସନ୍ଧ୍ୟା । ²ତମ, ଅନ୍ଧକାର ।
୬—ଉତ୍ତର ଦଗରେ ହିମାଳୟ କାଳୀ ଦେବୀଙ୍କର ଜନ୍ମସ୍ଥାନ ଅଟେ, ତାହାଙ୍କର ଭ୍ରମଣି ବେଳ ହେବାରୁ ସେ ଭ୍ରମଣ କରିବାକୁ ବାହାରିଲେ କି ? ଦକ୍ଷିଣରେ ଯମପୁର ଅଛି, ସେ ଯମ ସ୍ୱର୍ଗଙ୍କାକୁ ସନ୍ଧ୍ୟା ସ୍ମରଣ କରିବାକୁ ଅସିଲେକି ? ଏହେତୁ ଉତ୍ତର ଦକ୍ଷିଣ ଦୁଇ ଦଗରେ କଳା ବର୍ଣ୍ଣ ବିଶେଷରୂପେ ପୂରିଗଲା କି ? ¹କାଳପୁର, ଯମପୁର । ²କାଳ, କଳାବର୍ଣ୍ଣ ।
୭—ବାରୁଣୀ (ପଶ୍ଚିମଦଗ) ଅରୁଣେ ସଙ୍ଗରୁ ରକ୍ତବର୍ଣ୍ଣ ହେଲା । ଚନ୍ଦ୍ରଙ୍କର ପ୍ରସନ୍ନତା ପୂର୍ବ ଦଗକୁ ଧବଳ କଲା । ଗୃହଦଗ ମଧ୍ୟରୁ ଉତ୍ତର ଓ ଦକ୍ଷିଣ ନଭର ସ୍ୱାମୀମାନଙ୍କର ରେମାବଳୀ ଓ ଛଦ୍ମ

ଏଣୁ ଜଳଦକା ଥାଇ । ବନ୍ଧୁ ଦେଉଛୁ ପଣାଇ । ୧୧ ।

ହେ କାଞ୍ଚନଗୌରୀ ହୃଦୟସମ୍ପୁଟକ କଟକ୍ଷ କାଚରେ ନିର୍ମିତ ।
ପ୍ରୀତି ଯେ ମାଣିକ୍ୟ ଗୁପତେ ରଖିଲେ ଅନୁରାଗ ତମ୍ଭ ଖ୍ୟାତ ।
ବାଣୀ-ପ୍ରବାହେ ବିଳାସ । ସଦା କରେ କୀର୍ତ୍ତି-ହଂସ । ୧୨ ।

ହେ ଦ୍ରବଣ କରଇ ଶଉକୁ ତଉକ ଶ୍ରବଣେ ଘଡ଼ୁଲି ମାନ ।
ଯିବା ଜୀବକୁ ଫେରଉଥାଇ ରଖାଇ ହୋଇ ସଞ୍ଜୀବିନମନ୍ତ୍ର ।
୪ତକ ଦେବବନ୍ଦନ । କୋଟିହେ ପଲକ ପତନ । ୧୩ ।

ହେ ରସିକ-ଶେଖର ଶୋଭା-ମନ୍ଦର କର ପଦ୍ମନେଷ ଦେଇ ।
ଏତେ ଅନୁସର ଯେ ପୁଣି ଶ୍ରୀହସ୍ତେ ଦେଲ ଅନୁଗ୍ରହ ପାଇ ।
ମସ୍ତକେ ମଣ୍ଡିବ କାହିଁ । ଏ ଗର୍ବ ଜଳଧି କାହିଁ । ୧୪ ।

ହେ ଫଟିଲି ମାନରେ ଗୃଦ୍ଧିଲ ମିଶରେ ଟୋଇଲି ଘନକଳ୍ପନା ।
ହେଉତକ ଲେଖାଇ ଚତୁରୀ ଗୁରୁରୀ ବଡ଼ ଯୋଜାଯୋଜ ଯୋଜନା ।
ତାପର ଟିପ୍ପଣେ ଭାବ । କାହିଁ ନ ଥିଲା କୋଳ୍ପବ । ୧୫ ।

---

ରରେ ଏ ବାଣୀ ଅଛି । ଯଦାବୁଣଗର୍ କାଳ ଜଗରୁ ତୁଷାର (ହିମ) ଜାତ ହୁଏ । ପୁଣି ସେ ଜଡ଼ଭାବ ଭଜେ ( ଶିଶିର କାଳରୂପ ଧରେ ) ଏଥେନ ଏକାଳ ବଣନ୍ତୁ ତନ କ୍ଷୀଣ ଭାବ ଭଜେ ଯିନା । ତହିଁ ହଗରୁ ଅଗ୍ରେ ସୂଯତାପ ନ୍ମନ୍ତ କାଳ ହେବାରୁ ଗ୍ରୀଷ୍ମକାଳ ହୁଏ । ସେ ସମୟରେ ସ୍ତନଶୋଭ (କର୍ଣ୍ଣିକଗୋଲ) ଘନକାଳ ହେବାରୁ ବର୍ଷାମୃ ( ଜଳନ୍ନୀ ) ଅଶ୍ରଧାରି ଜଡ଼ିବାରୁ ଦବାନଳ ଥରେଇ ହୁଏ । ଭଣାପଟେ ନାହିଁ ।

୧୨—ମନା ତୋର ଅସ୍ତ ମଳୀର ହୃଦୟରୂପକ ସମ୍ପୁଟ ନକ୍ଷେ କାଚରେ ରଅନ ହୋଇଅଛି । ଯେହେତୁ ପ୍ରୀତି ରୂପକ ମାଣିକ୍ୟ ତହିଁରେ ଗୁପ୍ତରେ ରଖିଛୁ ତାହାର ପ୍ରଭାବସ୍ଥ ଅନୁରାଗ ପ୍ରକଶିତ ହେଉଅଛି । ଏବଂ ତୁମର କୀର୍ତ୍ତିରୂପକ ହଂସ ତା ବଚନ ପ୍ରବାହରେ ସଦା ବିଳାସ କରୁଅଛି । ଅର୍ଥାତ୍ ସଦା ତୁମ୍ଭ ଗୁଣ ଗାଉଛ । ୧ ସମ୍ପୁଟ, ପତ୍ରଅ ।

୧୩—ତୁମ୍ଭ ବଚନ କାନରେ ପଡ଼ିବା ମାତ୍ରେ ଜନକୁ ଦ୍ରବାଇ ଦେଉଅଛି । ସଙ୍ଗୀତ ମନ୍ତ୍ର ହୋଇଯିବା ଜୀବନକୁ ଲେଉଟାଇ ଅଣି ଦେଉଅଛି । ତୁମ୍ଭ ଦର୍ଶୀ ଦେବତାମାନଙ୍କପର ନିମେଷ ହୋଇଅଛି । ଯେହେତୁ ଅଉ ପଲକ ପଡୁନାହିଁ ।

୧୪—ହେ ରସିକ ବ୍ରଜର ଅମୃ ହରୀ ନନ୍ଦର ପଦ୍ମନେଷକୁ ତୁମ୍ଭ ଶୋଭା ଦେଇ ବହୁଦେଉଅଛି । ଅର୍ଥାତ୍ ମନ୍ଦତା ଅଧିକ ଶୋଭା ଦର୍ଶନ କରୁତ । ତୁମ୍ଭର ଭଲ, ଯେ ଏପରି ଅନୁସନ୍ଧି, ମେ ପୁଣି ତୁମ୍ଭେ ଶ୍ରୀ ହସ୍ତରେ ଦେବା ଅନୁଗ୍ରହ ମୁଖ ପୁଣୁ ପାଇଲେ ମସ୍ତକରେ ମଣ୍ଡିବ କାହିଁ ମୁଁ ? ଏ ଗର୍ବ କହିଁ । ୧ଶେଖର, ଶ୍ରେଷ୍ଠ । ୨ପଦ୍ମ, ବନ୍ଧୁର ବକ୍ର ।

୧୫—ଗଢନ୍ତିକ ମେ ଚତୁରୀମାନେ ମିଶର ତାହିଁ କହିଲା । ଏ ପତ୍ର ହସନା ବହୁଗ ଯେପରି ଲେଖାଇ ହେଉକୁ ବଡ ଯୋଜାଯୋଜ ଭାବରେ ପୂର୍ଣ୍ଣ । ତାପର ଟିପ୍ପଣୀ ଭେଦ କାହିଁ ବା ନଥିଲା, ବା ହେବ ନାହିଁ, ଏହା ଭବନା କର ।

ହେ ଅତି ସୁନ୍ଦରି ରସଗର୍ଭ ଭାଷାରେ ତା କଣା କଲାଣି ମୋତେ ।
ସ୍ନେହେ ମ୍ଳାନ କଲା ବଚନମାନଙ୍କୁ ପୁନଃପୁନଃ କି ନିମନ୍ତେ ।
ନବଲଳନା ଲେଖଇ । ସେ ପ୍ରଭୁ ମୁଁ ତା ଶନସ୍ଥୀ । ୧୬ ।

ହେ ସଖି ସୁକୃତ କହିଲା ନ ଯେନ କି କଣା ସେବକକୁ ପୋଷି ।
୧ଶ୍ରୁତ-ମୁଖେ ପାନ କରିବାକୁ ବେଳେ ବେଳେ ଦିଏ ୨ସୁଧାରାଶି ।
ପ୍ରମାଣ ଏ କଥା ମିତ । ବୋଲି ବୀର କୃତକୃତ । ୧୭ ।

ହେ ଏସମୟେ ସନ୍ଧ୍ୟା ଅନ୍ତର ୧ଭୁବନେ ତମିର ରହିଲା ପୂରି ।
ମିଶିଗଲା ୨ଶଶୀପ୍ରଭା ବେଢ଼ମଣ୍ଡ ହୋଇଲେ କି ଧରାଧର ।
ପ୍ରହରକେ ଧ୍ୱନିକାରୀ । କପୋତ ହୁଁ କୃତେ କରି । ୧୮ ।

ହେ ପଞ୍ଚବଟୀରେ କରଣ୍ଡିଲ ଦୁଇ ବନଭୂମି ଶବ୍ଦ ଦିଶି ।
ସେ କି ଶିଷ୍ୟଗଣ କରନ୍ତି ବନ୍ଧାଣ ବଳବାନ କଷାକଷି ।
ପ୍ରକମ୍ପି ପବନେ ତହିଁ । କେ କାହାକୁ ପେଲି ଦେଇ । ୧୯ ।

ହେ ୧ଶାଖୀ ସାକ୍ଷୀ ପରି ପୁଷ୍ପ-ହାସ ଧରି କଉତୁକ ଅବଧାନୀ ।
ଶୃଙ୍ଗାରରେ ବୀରରସ ବ୍ୟଭିଚାରୀ ଲକ୍ଷଣା ସମୟ ଯେଣି ।
ରତି ଯେ ରଣ ବୋଲାଇ । ତା ପ୍ରକାଶ କାଳ ଏହି । ୨୦ ।

---

୧୬—ସେ ସୁନ୍ଦରୀ ସରସତ ରସ ଗର୍ଭ ଏକ ଭାଷାରେ ମୋତେ ତା କଣା କଲାଣି । ଯେବେ ସେ ନବ ଯୁବତୀ କାହିଁକି ସ୍ନେହାର୍ଦ୍ର ବଚନମାନଙ୍କୁ ପୁନଃ ପୁନଃ ଲେଖୁଅଛି ସେତ ପ୍ରଭୁ, ମୁଁ ତାର ବନିତା ଦାସୀ ।

୧୭—ହେ ସଖି ମିତ୍ର ପୁନ କହିଲା । ତୁମ୍ଭେ ଜାଣୁନାହିଁ କି ? ସୁନ୍ଦରୀ କଣା ସେବକକୁ ପୋଷିଥିବାରୁ ସମୟ ସମୟରେ କାନରୂପ ମୁହଁରେ ପିଇବାକୁ ଅମୃତ ପ୍ରବାହ ଦାନ ଦେଉଅଛି । ବୀର ଏହା ଶୁଣି କୃତକୃତ୍ୟ ହୋଇ କହିଲା । ହେ ମିତ ଏକଥା ପ୍ରମାଣ । ୧ଶ୍ରୁତ-ମୁଖେ, କାନରୂପକ ମୁହଁରେ । ୨ ସୁଧାରାଶି ଅମୃତ ପ୍ରବାହ ।

୧୮—ଏ ସମୟରେ ସନ୍ଧ୍ୟାକାଳ ଅନ୍ତର ହେଲା । ଜଗତରେ ଅନ୍ଧାର ପୂରିରହିଲା । ତା ସଙ୍ଗେ ଚନ୍ଦ୍ରର ପ୍ରଭାଟକ ମିଶିଗଲା । ଅତଏବ ଜାଣିଅ ଓ ଗୋଟି ମାଲଯୋଡ଼େ ଧରା ଧରି ହୋଇଅଛନ୍ତି କି, ଏପରି ଦିଶିଲା । ମାଲ ଦୁହିଙ୍କର ହୁଁକାର ଦେଇବା ପରିବ ପହରକେଥ କପୋତମାନଙ୍କର ରବ ଶୁଣାଗଲା । ୧ ଭୁବନେ, ଜଗତେ । ୨ ଶଶିପ୍ରଭା, ଚନ୍ଦ୍ରକିରଣ ।

୧୯—ପନମାନଙ୍କ ଘର ଓ ଚନ୍ଦ୍ର କିରଣ ଅଗ୍ନ ଏ ଦୁହିଙ୍କ ହାସ୍ୟ ବନଭୂମି ଚତ୍ତ୍ୱର ଦିଶିଲା । ସେ ଦୁଧ-ମାଲଙ୍କର ଶିଷ୍ୟମାନେ "କିଏ ଅଧିକ ବଳବାନ୍" ଏହା ଜଣା କରି ହେବାକୁ ମାଲ ବନ୍ଧାଣ କରୁଅଛନ୍ତି କି ? ତହିଁ ପବନରେ କମ୍ପିବାରୁ କିଏ କାହାକୁ ପେଲି ଦେଲାପରି ଦିଶୁଛି ।

୨୦—ବୃକ୍ଷମାନେ ସାକ୍ଷି ଲୋକପରି ଫୁଲ ରୂପକହାସ ଧାରଣକରି କୌତୁକ ଦେଖିବାକୁ ସାବଧାନ ହୋଇ ଅଛନ୍ତି କି ? ଏଠାରେ ଶୃଙ୍ଗାର ରସରେ ବୀରବର୍ଣ୍ଣନା ବ୍ୟଭିଚାର ଲକ୍ଷଣା ଯାହା ହେଲା, ତାହା ରାତ୍ରିସମୟରେ ଯେନ ହୋଇଅଛି । କାରଣ ରତିକରଣ ବୋଲି ବର୍ଣ୍ଣନା କରା ହୋଇଅଛି । ଏ ତାହାର ପ୍ରକାଶକାଳ ଅଟେ । ୧ ଶାଖୀ, ବୃକ୍ଷ ।

ହେ [୧]ଶୁଚିରସେ ନୃପସୁତ ସାର ରସେ ଏଣୁ ଏ ବର୍ଣ୍ଣନା ସିର୍ବି ।
କୋଟିବ୍ରହ୍ମାଣ୍ଡସୁନ୍ଦରୀ [୨]ଶୋଭାର୍ଣ୍ଣବେ ବୁଡ଼ାଇ ଦେଇଛନ୍ତି ବୁର୍ବି ।
ଭ୍ରମବଶ ହୋଇ ବସି । ଚିନ୍ମୟ-ମାନସେ ଖସି । ୨୧ ।

ହେ [୧]ଭବ ରତ୍ନାକର ଧନକୁ ବୋଲିବା ମନକୁ ସହଜେ ମୋହ ।
ଭବ-ରତ୍ନ-ନିଧି ନୟନ ଉପରେ ଲୀଳା କରେ ସଦା ରହି ।
ମୂଳ ହେଲା ଲଭିବାର । ହୋଇଲା ସ୍ଥାନ ଗୋଚର । ୨୨ ।

ହେ ଦଣ୍ଡକବନବିହାରୀ ଦେଇଛନ୍ତି ଏ ବର ଜାଣିଲି ମୋତେ ।
ଦଣ୍ଡକ ବନବିହାରୀ ହୋଇଥିବ ବନ୍ଧୁ ସଖୀ ସଙ୍ଗତରେ ।
ଯିବ ମୋ ଲୋଚନ ପଡ଼ି । ଥିବ ଦେହେ ଶାଢ଼ୀ ଜଡ଼ି । ୨୩ ।

ହେ ବଶ [୧]ମନ୍ଦାକ୍ଷ କରିଥିବ [୨]ଉରଜ ଜଘନ ବ୍ୟକତ ଭୀତ ।
ବଶ ମନ୍ଦାକ୍ଷ-କୋଣେ ଚାହିଁ ଦେବାରେ କରୁଥିବ ମୋର ଚିତ୍ତ ।
ସେ କାଳଭୋଗକୁ ଚିନ୍ତେ । ସ୍ୱର୍ଗଭୋଗ ହୋଇ କେତେ । ୨୪ ।

ହେ କରୁ କରୁ ଭବ ଭାବନା [୧]କରୁଣାବରୁଣାଳୟ ପ୍ରିୟାର ।
କ୍ରମଶ କ୍ରମଶ [୨]ତ୍ରିଯାମାକୁ ଶେଷ କରେ ହୋଇ ଉଜାଗର ।
ଉଷା ପ୍ରମାଣ ପ୍ରକାଶେ । ସହସ୍ରକର ସକାଶେ । ୨୫ ।

---

୨୧—ନୃପପୁତ୍ର ସାର, ସେ ପୁଣି ଶୃଙ୍ଗାର ରସରେ ରସିଅଛି । ଏଣୁ ଏ ଶୃଙ୍ଗାର ରସରେ ତାଙ୍କର ବର୍ଣ୍ଣନା ସିର୍ବି ହେଲା । ସେହି ନୃପପୁତ୍ର କୋଟିବ୍ରହ୍ମାଣ୍ଡ ସୁନ୍ଦରୀର ଶୋଭା ସମୁଦ୍ରରେ ବୁର୍ବିକି ବୁଡ଼ାଇ ଦେଇଅଛି । ଅତଏବ ଭ୍ରମ ହେତୁରୁ ଚିନ୍ମୟମନରେ ବହୁଅଛି । ୧ ଶୁଚି, ଶୃଙ୍ଗାର । ୨ ଶୋଭାର୍ଣ୍ଣବେ, ଶୋଭା ସମୁଦ୍ରରେ ।

୨୨—ରତ୍ନାକର ଧନକୁ ଅଷ୍ଟରତ୍ନ ଓ ନବନିଧି ସ୍ୱରୂପା ବୋଲିବା, ଯେହେତୁ ସେ ସହଜେ ମନକୁ ମୋହିତ କରୁଅଛି । କିନ୍ତୁ ସେ ଭବ ରୂପକଳ୍ପର ସ୍ଥାନ ମୋ ଅକ୍ଷି ଉପରେ ରହି ସର୍ବଦା ଲୀଳା କରୁଅଛି । ଏତେବେ ତାର ସ୍ଥାନ ଗୋଚର ହେଲା । ତାକୁ ଲଭିବାର ମୂଳ ହେଲା । ୧ ଭବ, ରତ୍ନାକର ।

୨୩—ଦଣ୍ଡକ ବନବିହାରୀ ରାମଚନ୍ଦ୍ର ମୋତେ ଏ ବର ( ପ୍ରିୟାକୁ ଲଭିବା ) ଦେଇ ଅଛନ୍ତି, ଜାଣିଲି । ବନ୍ଧୁ ସଖୀ ସଙ୍ଗତରେ ଦଣ୍ଡକ କାଳ ଜଳ ବିହାରୀ ହୋଇଥିବ, ତା ଦେହରେ ଶାଢ଼ୀ ଜଡ଼ିଯାଇଥିବ, ସେତେବେଳେ ମୋ ଦୃଷ୍ଟି ପଡ଼ିଯିବ ।

୨୪—ସ୍ତନ ଜଘନ ପ୍ରକାଶ ହୋଇଯିବା ଭୟରେ ଲଜ୍ଜା ତାକୁ ଅସ୍ଥିର କରିଥିବ । ମନ୍ଦ ଅକ୍ଷି କୋଣରେ ଚାହିଁ ଦେବାରେ ମୋ ଚିତ୍ତ ବଶ କରୁଥିବ । ମୁଁ ସେ ସମୟର ଭୋଗକୁ ଚିନ୍ତା କରୁଅଛି । ତା ଆଗେ ସ୍ୱର୍ଗ ଭୋଗ ଅବା କେତେ ମାତ୍ର । ୧ ମନ୍ଦାକ୍ଷ, ଲଜ୍ଜା । ୨ ଉରଜ, ସ୍ତନ ।

୨୫—ଦୟା ସମୁଦ୍ରସ୍ୱରୂପା ପ୍ରିୟାର ଭାବ ଭାବନା କରୁ କରୁ ଉଜାଗର ହୋଇ କ୍ରମଶଃ ରାତ୍ରିକୁ ଶେଷ କଲା । ସହସ୍ରକର ବାଣାସୁର ଉଷାକୁ କନ୍ୟାରୂପେ ପ୍ରକାଶ କରିଥିଲା । ଏବେ ସହସ୍ରକର ସୂର୍ଯ୍ୟଙ୍କ ହେତୁରୁ ଉଷା (ପ୍ରାତଃକାଳ) ପ୍ରକାଶ ହେବାରେ ତାହା ପ୍ରମାଣ ହେଲା । ୧ କରୁଣା ବରୁଣାଳୟ, ଦୟା ସମୁଦ୍ର । ୨ ତ୍ରିଯାମା, ରାତ୍ରି ।

ହେ କରପଦ ରକ୍ତୋତ୍ପଳ ଯଶ ଅଦ୍ଭୁତ ସମ୍ଭୂତ ବସ୍ତର ।
ଖ୍ୟାତ ହର ଧନୁଭଙ୍ଗରେ । ଅହଲ୍ୟାତାରଣେ ନୀଳାବ୍ଜମୂର୍ତ୍ତି ।
ରଞ୍ଜନ ମୁନି ରଞ୍ଜାଇ । ଏହି ପଞ୍ଚରତ୍ନ ଯାଇ । ୩୧ ।



## ତ୍ରିଂଶଚ୍ଛାନ୍ଦ ।

ରାଗ ସିନ୍ଧୁ ଦେଶାକ୍ଷ ।

ସିବେ ରସିକ ଛୋଡ଼ଦ ଜନେ ଯେ ଏ ଛାନ୍ଦ ଗ୍ରନ୍ଥ ଶୁଣି ।
ତି ପ୍ରଭାତରେ ପ୍ରଭାତରେ ଗନ୍ଧମୃଗ ଅଗତ ଶବଦ ଶୁଣି ।
ଯେ ନୃପେ । ଯାନମାନଙ୍କୁ ଅନ୍ୱେଷି ।
ପନ୍ଥ ଖଣ୍ଡ ଯଣ୍ଡ ଗୃହେ ପରିରନ୍ତ ତମରୁ ଭ୍ରମନ୍ତି କାହିଁ । ୧ ।
ସେହି ନଗରୀ ନାଗରୀ ଶ୍ରେଣୀ ଶ୍ରେଣୀ ଦେଖିବା ଲୋଭେ ବାହାର ।
ଶ୍ୟାମଳା ଭଟନ୍ତୁ ୨ଗଉରୀ ସେ ଭଧାନେ ୩ସାବର୍ଣ୍ଣା ସେହି ପ୍ରକାର ।
ସେ ସମା । କାହିଁରେ ନ ମିଶେ କେହି ।
ପଡେ ଯାହାଠାରେ ନେଇ ତାହାଠାରେ ଜଡ଼େ ଆନ ଲୋଡ଼େ ନାହିଁ । ୨ ।

---

(ରକ୍ତପଦ୍ମ)ର ଯଶର ଅଦ୍ଭୁତ ରୂପେ ସଂଭୂତ କରୁଅଛନ୍ତି । ନୀଳାବ୍ଜମୂର୍ତ୍ତି (ନୀଳପଦ୍ମ ଆକାର) କୁ ରଞ୍ଜନ କରୁଛନ୍ତି । ଯେ ସୀତାବନ୍ଧୁ ବନ୍ଧୁ ସ୍ୱନାମର ପଛରେ ଚନ୍ଦ୍ର ଶବ୍ଦ ରଖିବାରୁ ( ରାମଚନ୍ଦ୍ରରୂପେ ଅବର୍ତ୍ତିତ ହେବାରୁ ) ଉଦ୍‌ଗମ ( ସଂସାରିକ ଉଦ୍ବେଗ ) ନାଶକରିବାରେ ଉଦ୍ୟତହୋଇଥିଲେ । ତାଙ୍କ ମୂର୍ତ୍ତିରେ ( ମୁଖ ପଦ୍ମରେ ) ସ୍ମିତ ସ୍ମିତ ( ମନ୍ଦହାସ ) କେଉଁ ବସ୍ତୁଗଣକୁ ( ସମ୍ପଦ ) ଦର ହୋଇଥିଲା । ହର ( ଶିବ ) ଧନୁଭଙ୍ଗ ହାସ ଓ ଅହଲ୍ୟାକୁ ତାରିବା ହାସ କରପଦ ( ହସ୍ତ ଓ ପାଦ ) ରୂପକ ରକ୍ତପଦ୍ମର ଯଶ ଅଦ୍ଭୁତରୂପେ ସଂଭୂତହୋଇ ବସ୍ତର ( ଅବସ୍ଥିତ ) କରିଥିଲା । ମନୋରଞ୍ଜକ ନୀଳ ପଦ୍ମ ସଦୃଶ ମୂର୍ତ୍ତି ମୁନିମାନଙ୍କ ମନ ରଞ୍ଜାଇ ଦେଉଥିଲା । ମୁନିମାନେ ସ୍ଥିର ହୋଇ ପଦ୍ମବାସ ସୁଖ କାମନା କରୁଥିଲେ । ଏହି ପଞ୍ଚରତ୍ନ ରୂପ ହାସସ୍ମିତ ଓ ମୋତି ଚନ୍ଦ୍ରପଦ ପଦ୍ମରାଗ ଓ ପୋହଳା, ମୂର୍ତ୍ତି ନୀଳମଣି,) ରାମଚନ୍ଦ୍ରଙ୍କୁ ଯାନିକରି ପ୍ରାତଃ ସ୍ମରଣ କରୁଥିଲେ ।

---

### ତ୍ରିଂଶ ଛାନ୍ଦ ।

୧—ରସିକ ଓ ପଣ୍ଡିତଜନମାନେ ଏ ଛାନ୍ଦର ଗଭୂର ଶୁଣି ଉଷିବେ । ପ୍ରଭାତ କାଳରେ ଗନ୍ଧମୃଗ ଧ୍ୱନିବା ଶବ୍ଦ ଶୁଣି ସେ ରାଜାମାନେ ଯାନମାନଙ୍କୁ ଅନ୍ୱେଷଣକରି ଯାଇ ହୋଇ ରାଜାଙ୍କ ଗୃହମାନଙ୍କୁ ପଳାଇଅଛନ୍ତି । ତନ୍ମଧ୍ୟ କେଉଁଠାରେ ଭ୍ରମଣ କରୁଅଛି ।
୨—ସେହି ନଗର ସ୍ତ୍ରୀମାନେ ପଙ୍କ୍ତି ହୋଇ ଦେଖିବା ଲୋଭରେ ବାହାରିଲେ । କାଳୀ ସ୍ତ୍ରୀମାନେ ଓ ଗୋରୀ ଏବଂ ସାବର୍ଣ୍ଣ ସ୍ତ୍ରୀମାନେ ଭିନ୍ନ ପ୍ରକାରରେ ଦେଖା ଯାଉଥିଲେ ଯେ କେହି ତାହାଙ୍କ ସଙ୍ଗରେ ମିଶୁ ନ ଥିଲେ । ଯାହାଠାରେ ଆଖି ପଡୁଥିଲା, ସେଠାରେ ଜଡ଼ିତ ହୋଇଥିଲା, ଅନ୍ୟକୁ ଲୋଡୁ ନ ଥିଲା
୧ ଶ୍ୟାମଳା, କାଳୀ । ୨ ଗୋରୀ, ଗୋରୀ । ୩ ସାବର୍ଣ୍ଣା, ସାବର୍ଣ୍ଣା ।

୧ସୁରମଣି-ମଣି ବର୍ଣ୍ଣନା ରମଣୀ ବର୍ଣ୍ଣନା କେ କରୁ ଶେଷ ।
ଆଜକ କହିବା ରୂପବନ୍ତ ଯହିଁ ହୋଇଛୁ ୨ପ୍ରଥମରସ ।
ସେ ବାମା । ଢାଳୁଛନ୍ତ ନେତ୍ର ଢୋଲା ।
ପବନେ ଚଳେ କି ଜବନେ ଜବନେ ଇନ୍ଦବର ୩ଭୃଙ୍ଗମେଳା । ୩ ।
ନାସା ଫୁଲୁଅଛି ୧ପ୍ରବାଳ ମାଣିକ୍ୟ-ବଣଣି ହେଉଛୁ ଟେକ ।
ସେ କୀର ଅଧର-ବିମ୍ବକୁ ଝାସେ କି ଉତ୍ପୁଲେ ଘୁଲେ ୨ଚୋଟିକ ।
ସେ ଶ୍ୟାମା । ଗତ ବର୍ଣ୍ଣେ ମରକତ ।
ଖୋଷା ମାଧୁରୀ ଗନ୍ଧ ଶୁଙ୍କ ଧଇର୍ଯ୍ୟ-ବଧୂକୁ ୩କବଳ କରୁ । ୪ ।
ଆସ ଆସ ଡକାଡ଼କରେ ସେ ଡ଼କା ପକାଉ ଅଛନ୍ତ ପିକେ ।
ପଶି ୧ଶ୍ରୁତିବଲେ ଅନ୍ଧାର କରଇ ଜ୍ଞାନକୁ ହୃଦୟୁ ଯାକେ ।
ସେ ଶ୍ୟାମା । ବଲା ମୃଦ ନାଦ ଭଲ ।
ସେହି ଶବଦ ତବଧ ଧ୍ୟାନ ୨ଛଳେ ଯୋଗିବୃନ୍ଦରେ କି ହେଲ । ୫ ।
ମଞ୍ଜୁ ବିଦ୍ୟୁତକାନ୍ତ କନକ୧ବ୍ରତତୀ ଗତ-ହଂସ ବହି ଚଳେ ।
ରୋହିଣୀ ସଙ୍ଗ ୨ହରିଦ୍ରାଙ୍କିତ ଅଙ୍ଗ ଉଦେ କି ଇନ୍ଦୁ ନିର୍ମଳେ ।

---

୩—ଇନ୍ଦ୍ରନୀଳମଣିବର୍ଣ୍ଣା କାଳୀ ସ୍ତ୍ରୀ ମାନଙ୍କର ବର୍ଣ୍ଣନାକୁ କିଏ ଶେଷକରି ପାରିବ ? ସେ କଥପୁରେ ଆଜି କଣ କହିବା, ଶୃଙ୍ଗାର ରସରେ ଯେଉଁଠାରେ ଦେହଧାରୀ ହୋଇଅଛି । ଶୃଙ୍ଗାର ରସବର୍ଣ୍ଣ କୃଷ୍ଣ, କବି ପ୍ରସିଦ୍ଧ । ସେ ସ୍ତ୍ରୀ ମାନେ ଆଖି ଢୋଳା ଚଳାଇ କରୁଛନ୍ତି, ଅତଏବ ନୀଳକମଳରୁ ଭ୍ରମର ଶ୍ରେଣୀ ପବନ ଦ୍ୱାରା ଶୀଘ୍ର, ଉଡିଯାଉ ଅଛନ୍ତି କି ? ଏପରି ଦିଶୁଥିଲା । ୧ ସୁରମଣି ମଣି, ଇନ୍ଦ୍ରନୀଳ ମଣି । ୨ ପ୍ରଥମ ରସ, ଶୃଙ୍ଗାର ରସ । ୩ ଇନ୍ଦବର, ନୀଳକମଳ, ଭୃଙ୍ଗମାଳା, ଭ୍ରମର ଶ୍ରେଣୀ ।

୪—ସେ କାଳୀ ସ୍ତ୍ରୀମାନଙ୍କର ଅଗ୍ରେଭାଗ ହେତୁରୁ ନାସିକାଫୁଲବାରୁ ପୋହଳା ଓ ମାଣିକ୍ୟଖଚିତ ବସଣୀ ଟେକ ହେଉଅଛି, ଅତଏବ ଶୁଆ ଓଷ୍ଠରୂପକ ବିମ୍ବଫଳକୁ ଖୁମ୍ପିବାକୁ ଉତ୍ସାହ ଓ ପ୍ରତିବନ୍ଧକ ସହିବାକୁ ଥଣ୍ଟ ଚଳାଇ କରୁଅଛି କି ? ୧ ପ୍ରବାଳ, ପୋହଳା । ୨ ଚୋଟି, ଥଣ୍ଟ । ସେ ଶ୍ୟାମା ସ୍ତ୍ରୀର ଦେହ ମରକତ ଗଢାପରି ନୀଳବର୍ଣ୍ଣ । ଖୋଷା ଗନ୍ଧରପରି ଶୋଭା ଧାରଣ କରିଅଛି । ତାକୁ ଦେଖି, ଧୈର୍ଯ୍ୟରୂପ ବଧୂଗ୍ରାସ କରାହେଉଅଛି । ୩ ବଧୂ, ବନ୍ଧୁ । ୪ କବଳ, ଗ୍ରାସ ।

୫—ହେମାନେ "ଆସ, ଗୋ" ଏହି ଡକା ଡକ ସ୍ୱରରେ କୋଇଲମାନଙ୍କ ମନରେ ଉଦ୍ବେଗ ଜନ୍ମାଉ ଅଛନ୍ତି, ଅର୍ଥାତ୍ ଏମାନଙ୍କସ୍ୱର କୋଇଲ ସ୍ୱରଠାରୁ ସୁମଧୁର । ସେହି ଡକା ଡକ ଶବ୍ଦକର୍ଣ୍ଣ ଛିଦ୍ରରେ ପ୍ରବେଶକରି ହୃଦୟ ପାଖରେ ଜ୍ଞାନ ଲୋକକୁ ଅନ୍ଧାର କରିଦେଉଛି । ସେ ଶ୍ୟାମାବାଳାମାନଙ୍କର ମୃଦଙ୍ଗର ରବ ମନୋହର ହୋଇଥିଲା । ଦେଖ ଯୋଗୀମାନେ ଯାହା ଧ୍ୟାନ ନିଷ୍ଠଳ ହୋଇଅଛନ୍ତି ସେ ତାହା ନୁହେଁ । ସେହି ମୃଦଙ୍ଗର ଯୋଗିମାନଙ୍କୁ ଏପରି ସ୍ତବ୍ଧଭାବ ଦେଇଅଛି କି ? ୧ ଶ୍ରୁତିବଳେ, କର୍ଣ୍ଣଛିଦ୍ରରେ । ୨ ଧ୍ୟାନଛଳେ, ଧ୍ୟାନକପଟରେ ।

୬—ମନୋହର ବିଜୁଳିବର୍ଣ୍ଣା ଗୋରା ସ୍ତ୍ରୀମାନେ ଗତିରୂପକ ହଂସଦ୍ୱାରା ବହନ କରାଯାଇ ଚଳୁଥିବା ସୁନାଲତାପରି ଦିଶୁଥିଲେ । ସେ ଗୋରା ସ୍ତ୍ରୀମାନଙ୍କର ମୁଖଶୋଭା ସେହି ଭଳିକାକୁ ପାଉଥିଲ ।

ସେ ଗୋସ୍ତ । ମୁଖଶୋଭା ସେ ଲକ୍ଷଣା ।
ନାସା ଫୁଲବାରେ ଚଳେ ସ୍ୱରବସା କୁନ୍ଦନନବାଢ଼ ଗୁଣା । ୬ ।
ଅହୁର ସନ୍ଧାଣୀ ନୟନତରଙ୍ଗ ଗ୍ରହାଣୀ ହୋଇଛୁ ସଙ୍ଗ ।
ଏଣିକ ତେଣିକ ଏଣୀ କ କରୁଛୁ ସ୍ୱଇଚ୍ଛାବଶରେ ରଙ୍ଗ ।
ସେ ଗୋସ୍ତ । ଉଚକୁଚ ମନ ମୋହ ।
ପ୍ରେମ-ରତ୍ନ ଭର କାମ ଭଣ୍ଡାରେ କ ହେମସଂପୁଟକ ଥୋଇ । ୭ ।
ଦରବିକାଶ ଫୁଲ ତୁଲ ସୁହାସ କଥାକୁହା ଭଙ୍ଗେ ସେହ ।
ସ୍ୱର ଶୁଣିଥିଲେ ତରୁଣକୁଳ ଯେ କୁଳରେ ରହନ୍ତେ ନାହିଁ ।
ସେ ଗୋସ୍ତ । ଜୁଡ଼ାଲ୍ଲବ କ୍ଷୀନଚଣ୍ଡା ।
ସେହ ବନ୍ଧନେ ବନ୍ଧନ ହୋଇ ମନ ଆନ ନ କରଇ ଲୋଡ଼ା । ୮ ।
ପାହୁଡ଼ ହୁଡ଼ନା ବୋଲି କ ପହଣ୍ଡ ମଣାଉଛୁ ବାର ବାର ।
ଝିଙ୍କାର ଝଙ୍କାରେ ବାଧ୍ୟ ହୋଇଅଛୁ ଝମକମୁଦ୍ଧ ଯାହାର ।
ସେ ଗୋସ୍ତ । ସହଜେ ମୋହନଛବ ।
ଯାବତ କବହେ ଯାହା ସ୍ତୁତିସ୍ତକ ବର୍ଣ୍ଣନା କରନ୍ତ କବ । ୯ ।
୨ଜମ୍ବୁ-ଜମ୍ବାଲ-ପିତୁଳା ପଟରେ ଢ଼ାଳି ବଧି ନୀଲମଣି କାଚ ।
୨ପ୍ରଭବ ଏ ଦଣି ପ୍ରଭକୁ ପ୍ରକାଶି ବବେକ ବଣାକୁ ୩ପାଞ୍ଚ ।

---

ଯେପର କ ଗେହ୍ନଣୀଙ୍କ ସ୍ୱସଗନ୍ଧ ହକଦ ଲଟିଥିବା ଦେହରେ ତଦ୍ର ନିର୍ମଳଭବେ ଉଦସ୍ତ ହୋଇଅଛନ୍ତ । ୧ କନକ ବୃଭଙ୍ଗ, ସ୍ୱନାଲତା । ୨ ହଦଦ୍ରାଙ୍କିତ, ହନଦଠଲ୍ଲଂତ । 'ସେହ ଗୋସ୍ତ ସ୍ତ୍ରୀମାନଙ୍କର ଅନେଗହେତୁ ନାକପୁଡ଼ା ଫୁଲବାରେ ସ୍ୱରବସା କୁନ୍ଦନ ନବାଢ଼ ଗୁଣ ହଲୁଅଛୁ ।

୭—ସେହ ବଡ଼ୁସ୍ତଗୋଷ୍ଠୀ ସ୍ତ୍ରୀମାନଙ୍କର ଚକ୍ଷୁଚଞ୍ଚଳ ଗହାଣୀରେ ଯୁକ୍ତ ହୋଇଅଛ । ଅତଏବ ଦେଖାଯାଉଅଛ, ହରିଣୀ ନଜଇଚ୍ଛାଧୀନରେ ଏଣେ ତେଣେ ଗମନ କରୁଅଛନ୍ତି ? ସେ ଗୋଷ୍ଠୀ ସ୍ତ୍ରୀମାନଙ୍କର ଉଚ୍ଚସ୍ତନ ମନମୋହନ କରୁଅଛ । ଯେପର କ ପ୍ରେମରୂପକ ରତ୍ନଭାର ପୂର୍ଣ୍ଣ । ସ୍ୱନାପତ୍ୱୁଅ ଯୋଡ଼ାଏ କନ୍ଦର୍ପଙ୍କ ଭଣ୍ଡାରରେ ଥୁଆ ହୋଇଅଛ ୧ ହେମ ସଂପୁଟକ, ସ୍ୱନା ପତ୍ୱୁଅ ।

୮—ସେ ଗୋସ୍ତ ସ୍ତ୍ରୀମାନଙ୍କର କଥାକୁହାଭଙ୍ଗୀ ଦରଫୁଟିଲା ଫୁଲ ସଦୃଶ ମନ୍ଦହାସଯୁକ୍ତ ହୋଇଥିଲା । ସେ କଥା କୁହାସ୍ୱର ଶୁଣିଲେ ଯୁବାମାନେ ଅଉ କୁଳରେ ରହୁଥାନ୍ତି କ ? ସେ ଗୋସ୍ତମାନଙ୍କର ଜୁଡ଼ା ଶୋଭା କ୍ଷୀନ ବଢ଼ାଉଥିଲା । ମନ ସେହ ଜୁଡ଼ା ବନ୍ଧାହୋଇ ଅଉ କଛ ଲୋଡୁ ନାହିଁ ।

୯—ପାହୁଡ଼ଶବ୍ଦ କରବା ହାସ୍ତ "ହୁଡ଼ନା" ବୋଲି ବାରମ୍ବାର ପହଣ୍ଡ ମଣାଉଅଛ । ସେହିମାନଙ୍କର ମୁଦ୍ଧ ଝମକ ଶବ୍ଦ ଝିଙ୍କାରମାନଙ୍କ ଝଙ୍କାରଧ୍ୱନ ସହତ ବାଧ୍ୟ ହୋଇଅଛ । ସେହ ଗୋସ୍ତମାନେ ସ୍ୱଭବରେ ମୋହନକାରୀ ଶୋଭାକୁ ଧାରଣ କରିଥିଲେ । କବମାନେ ସମସ୍ତ କବତାରେ ସେହି ଗୋଷ୍ଠୀମାନଙ୍କର ସ୍ତୁତିବର୍ଣ୍ଣନା କରୁଅଛନ୍ତ ।

୧୦—ବଧାତା ସ୍ୱନା ପିତୁଳାଉପରେ ନୀଳମଣି କାଚ ଢାଳିଲାପର ସାବେଙ୍ଗ ସ୍ତ୍ରୀମାନେ ଦଶୁଅଛନ୍ତ । ସେମାନେ ବବେକକୁ ବଣାକରିବାକୁ ଦପଣ ମଣିପର ଦାନ୍ତକ ପ୍ରକାଶ କରୁଅଛନ୍ତ । ସେହ ସ୍ତ୍ରୀମାନଙ୍କର

ହେ ବାମା ! ୪ଉଜ୍ଜଳ ସ୍ୱର୍ଣ୍ଣ ଭୃଙ୍ଗ ।
ବରହୃଦୁର ଅବୁଝ ନାସେ ଗାଢ ଆସଇ କି ୫ମାତୁଳଙ୍ଗ ।୧୦।
ଚନ୍ଦନ ୧ଜଳ ଧଇର୍ଯ୍ୟ ଚର୍ଚ୍ଚିତ କଟାକ୍ଷ ଏସନ ବକ୍ଷେ ।
ଚେନ୍ଦ ୧ଅଞ୍ଜନସୂତ୍ର-ବନ୍ଧା ଖଞ୍ଜନ ପୁଣି ଉଡ଼େ ଶୂନ୍ୟେ କେବେ ।
ହେ ବାମା ! ନାସାରେ ବିସ୍ତୃତ ନଥ ।
୨ତୂଣୀର ଉପରେ ସ୍ୱକର କଷଣି ଥୋଇଛନ୍ତି କି ୩ମନମଥ ।୧୧।
୧ସରଣୀ-ସନ୍ଧିରେ ୨ତରଣୀ ଘସିଲା ସରସ୍ୱେ ଗତି ପ୍ରମାଣ ।
ବେଣୀ-ସଙ୍କୀର୍ଣ୍ଣ କି ଦେଖାନ୍ତି ମାନକୁ ଏ ଯେନ ଜଗନ୍ତ ଜଣ ।
ହେ ବାମା ! ତୋତର ଖୁଣ୍ଟିଆ କନ୍ଥ ।
ଝମ ଝମ ନାଦ ଦମ ଦମ ହୃଦ ଶ୍ରବଣେ କରାଇ ଦେଇ ।୧୨।
ଶୁଣି ହେଲେ ଗୁଣି ହେଲେ ନୃପଗଣେ ପୁଣି ୧ସୁହୃଦଙ୍କୁ ଭଣି ।
ଧନ୍ୟ ପ୍ରଶଂସାରେ ସଭାରେ କିବନ୍ଧୁ ସୁକାନ୍ତ ତରୁଣୀଶ୍ରେଣୀ ।
ହେ ସାଧୁ ! ଏକେ ଏକେ ମନୋହର ।
ସମସ୍ତେହରେ ଲୋକନ ଭରିବାରେ ତ୍ରିଲୋଚନ ହେଲେ ୨ହର ।୧୩।

---

ସ୍ୱର୍ଣ୍ଣର ଭେଷ୍ଟନ ବରମ୍ପର୍କର ଜନର ଅଦ୍ଭୁତ ନାଶ ବଢ଼ିବାକୁ ପାଠ ଅଛୁଅଛି ଉପର ଦେଖା ଯାଉଅଛି । ୧ ଚମ୍ପୁ ଜମ୍ବାଳ, ସ୍ୱର୍ଣ୍ଣ । ୨ ପ୍ରଭେଦ, ଭୁଲିବା । ୩ ଦ୍ୱାରା, ବଣିକ ନମୁନା । ୪ ଉଜ୍ଜ୍ୱଳ ଚମ । ୫ ମାତୁଳଙ୍ଗ, ଟଭା ।

୧୧—ସେ ସାତେଶ ସ୍ତ୍ରୀ ମାନଙ୍କର ଗୃହାଂଶିରେ ଯାହା ପିନ୍ଧିଥା ପଡ଼ୁଥିବ ସେ ଦୈର୍ଘ୍ୟକୁ କାଟି ଦେଖାଉଥିବ । ସେ ଗୃହାଂଶି ଏପରି ଦଶୁଥିବ ଯେ, ଯେପରି ବନ୍ଧୁ କଣାଇ ରୂପର ସ୍ୱଭାବେ ବନ୍ଧାହୋଇଥିବା ଖେଳୁପର ଖେଳନକୀ ଉଡ଼ା ପୁଣି ପୁଣି ବସୁଛନ୍ତି ? ସେ ସ୍ତ୍ରୀର ନାକରେ ନୋଥ ଶୋଭୁଅଛି । ଅତଏବ କନ୍ଦର୍ପ ତାର ମୁଣାଗ୍ରପରେ ନିଜହାତର କଷଣୀ ( ଗୁଣ ଅକର୍ଷଣ ପାଇଁ ଅଙ୍ଗୁଠିରେ ଲଗାଇବା ମୁଦ୍ରିକା ବଶେଷ ) ଥୋଇଅଛି କି ? ଏପରି ଦଶୁଅଛି । ୧ ଅଞ୍ଜନ, କଜ୍ଜଳ । ତୂଣୀର, ଶରଧଣା, ୩ ମନ୍ମଥ, କନ୍ଦର୍ପ । ଏଠାରେ ନାସା ତୂଣୀର ଓ ନୋଥ କଷଣୀ ।

୧୨—ସେମାନେ ମାର୍ଗରୂପକ ନଦରେ ନୌକା ଘଷି ଗତର ଗତ ଦେଉଥିଲେ । ଭୂମ୍ୟେ ଏହାହାବ ଜଗତ ଜୟକର ବୋଲି ନିଜ ବେଣୀ ରୂପକ ଉପଦେଶ ଦେଖାଉଅଛନ୍ତି କି ? ସେମାନଙ୍କର ତୋଡ଼ର ନାମକ ପାଦଭୂଷଣ ଖଣ୍ଟିଆର ଝମ ଶବ୍ଦରେ ହୃଦୟକୁ ଶୁଣିବା ମାତ୍ରେ ଦମ ଦମ କରାଇ ଦେଉଛି । ୧ ସରଣୀ ପଥ, ମାର୍ଗରୂପକ ନଦୀ । ୨ ତରଣୀ, ନୌକା ।

୧୩— ରାଜାମାନେ ଏ ସ୍ତ୍ରୀମାନଙ୍କର ଅଳଙ୍କାର ଶବ୍ଦ ଅନ୍ୟ ସ୍ଥାନରେ ଶୁଣି ଗୁଣି ହେଲେ, ପୁଣି ମିତ୍ରମାନଙ୍କୁ କହିଲେ । ତୋତ, ତାଳି, ମାଦେଳି ଏହି ଧନ୍ୟ ଶବ୍ଦ ସ୍ତ୍ରୀମାନେ ଏ ସଭାରେ ପ୍ରଶଂସାରେ ଧନ୍ୟ ଅଟନ୍ତି । ହେ ସାଧୁ ? ଏ ସ୍ତ୍ରୀମାନେ ଜଣେ ଜଣେକେ ସୁନ୍ଦର ଅଟନ୍ତି । ବୋଧହୁଏ ଶିବ ଏ ତରୁଣୀ ସ୍ତ୍ରୀମାନଙ୍କୁ ସମାନ ସ୍ନେହରେ ଦେଖିବାକୁ ତ୍ରିଲୋଚନ ହୋଇଅଛନ୍ତି କି ? ୧ ସୁହୃଦ, ମିତ୍ର । ୨ ହର, ଶିବ ।

ମଦହୀଣ ମୋହେ ବନ୍ଧ କାଳୀ ଗଉରୀ ଦ୍ୱିବିଧରୂପକୁ ୧ଉମା ।
ପରସ୍ପର ପ୍ରତିବିମ୍ବରେ ଦେଖାଇ ପୁଣି ସାବର୍ଣ୍ଣା ସୁଷମା ।
ହେ ସାଧୁ ! କହୁଁ କଲେ ଏ କାର୍ଯ୍ୟକୁ ।
ଚମ୍ପାବତୀ ପୁରୀ ୨ଗ୍ରାମଟୀକା ପର ଅମରାବତୀ ଅଲକା । ୧୪ ।
ଶୋଭାରେ ଅପସରାଙ୍କ ଅପସରା ଏଥି ପ୍ରମଦାଏ ସତ ।
ମଧ୍ୟ ଅପସର ସେହି ଅପସରୀ ସର କୋଡ଼ ସ୍ୱର୍ଗସ୍ଥିତ ।
ହେ ସାଧୁ ! କନ୍ୟାମାନେ କି ନାରୀ ।
ବୋଲାଇ ମାନେ ୧ଭୂରଙ୍ଗାସ୍ୟେ ଭଜନ୍ତେ ୨କୁବେରକୁ ଅଶ୍ରେ କରି ।୧୫।
ପାନ ସାମନ୍ତ ୧ବେଷ୍ଟିଶ୍ୱ ଏ ୨ବଡ଼ଉ ଏ କାଳେ ଶୋଭିତ କରୁଁ ।
ବେଗେ ବ୍ୟବହାର 'ସାର ଗମ ପଦ ନ'ନେ ପ୍ରବୃତ୍ତୁଁ ପ୍ରବୃତ୍ତୁଁ ।
ହେ ସାଧୁ ! ନାରଦ ବୀଣା ବଜାଇ ।
ଊର୍ଦ୍ଧ୍ୱେ ଗମନ ଯେନ ମନେ ବୃହିଁଲେ ³ସାତବର୍ଣ୍ଣେ ମଗ୍ନ ହୋଇ ।୧୬।
ନାରୀ ବାଣୀ ଜାଣି ଭୂପ ଭଣି ୧ଘୋଷା ଇରଷା ଛାଡ଼ ନ ପାରି ।
ସ୍ୱର୍ଗ ପଡ଼ିବେ ସୁରସୁନ୍ଦରୀଙ୍କି ଉଚେ ଗମନ ଆଦରି ।

---

୧୪—ଏଠାଁ ଦେଖି ପାର୍ବତୀ ଶିବଙ୍କୁ ମୋହିତ କରିବାକୁ କାଳୀ ଓ ଗୌରୀ ଦୁଇ ପ୍ରକାର ରୂପକୁ ବହିଲେ କି ? ପୁଣି ପରସ୍ପରଙ୍କର ପ୍ରତିବିମ୍ବରେ (ଭାବରୂପରେ) ସାବର୍ଣ୍ଣଙ୍କ ଶୋଭା ଦେଖାଇଲେ କି ? ହେ ସାଧୁମାନେ ? ଏହି ତ୍ରିବର୍ଣ୍ଣା ସ୍ତ୍ରୀମାନେ ଚମ୍ପାବତୀର ପ୍ରଧାନ ନଗରୀ କଲେ । ଅଳକା (କୁବେରପୁରୀ) ଅମରାବତୀ ( ଇନ୍ଦ୍ରପୁରୀ ) ଏ ଚମ୍ପା ଅର୍ଗରେ ଗୋଟି ଗ୍ରାମପରି । ୧ ଉମା, ପାର୍ବତୀ ୨ ଗ୍ରାମଟିକା, ଗୋଟିଗ୍ରାମ ।

୧୫—ଏଥି ପ୍ରମଦାଏ ଏହି (ଚମ୍ପାନଗରୀର ସ୍ତ୍ରୀମାନେ) ନିଜ ଶୋଭାରେ ଅପ୍ସରାମାନଙ୍କୁ ଅପସରାଇ ଦେଲେ, ଏହା ସତ, ସେହି ଅପ୍ସରୀମାନେ ସରିକୋଡ଼ି ମଧ୍ୟରୁ ଅପସରି ଯାଇ ସ୍ୱର୍ଗସ୍ଥିତ ହେଲେ । ହେ ସାଧୁମାନେ ! ଏଠା ସ୍ତ୍ରୀମାନଙ୍କୁ ଦେଖି କନ୍ୟାମାନେ ତାହାଙ୍କ ତୁଳନାରେ କିନାରୀ ବୋଲାଇବା, ସେହି ଅଶ୍ୱମୁଖରେ ଘୋଡ଼ାମୁହାଁ କେନ୍ନରମାନଙ୍କୁ ଭଜିଲେ ଓ କୁତ୍ସିତ ଶରୀର କୁବେରଙ୍କୁ ଆଶ୍ରୟ କଲେ । ¹ତୁରଙ୍ଗାସ୍ୟ, ଘୋଡ଼ାମୁହାଁ । ²କୁବେର, କୁ (କୁତ୍ସିତ) + ବେର (ଶରୀର) ଯାହାର ।

୧୬—ପାନ ଓ ସାମନ୍ତଙ୍କ ସ୍ତ୍ରୀମାନେ ଏହି କାଳରେ "ବେଗେ ବ୍ୟବହାର ସାର ଗମ (ଗମନକର)" ଏ ପଦ (ବାକ୍ୟ) ଘେନି ଦଶର ବର୍ଣ୍ଣ (କହି) ଅଳଙ୍କାର ଉପରେ ତନ୍ତ୍ରୀଶାଳା ଶୋଭା ବଢ଼ାଇଲେ ରାଜାମାନେ ( ସାଧୁମାନେ ) ଏହି ପୂର୍ବୋକ୍ତ ସ୍ତ୍ରୀ କଣ୍ଠୋଚ୍ଚାରିତ ସାତ ସ୍ୱରକୁ ନଦ୍ଧି "ନାରଦବୀଣା ବଜାଇ ଊର୍ଦ୍ଧ୍ୱେ ଗମନ କରୁଅଛନ୍ତି କି ?" ଏହା ମନେ ଘେନି ଭାବନାକୁ ବୃହିଁଲେ । ¹ବେଷ୍ଟିଶ୍ୱ ସ୍ତ୍ରୀମାନେ । ²ବଡ଼ଉ, ଉଦ୍ଧାରକା ³ବର୍ଣ୍ଣ, ଅକ୍ଷର ।

୧୭ - ଠାକୁଁ ଭାରତୁ ରାଜାମାନେ ସ୍ତ୍ରୀ ବଚନ ଶୋଭା ଜାଣିପାରି କହିଲେ, ଏହି ସ୍ତ୍ରୀମାନେ ଈର୍ଷା ଛାଡ଼ି ନପାରି ଦେବସ୍ତ୍ରୀମାନଙ୍କୁ ସ୍ୱର୍ଗରୁ ପଡ଼ିବେ ବୋଲି ଉଚରୁ ଗମନ କରୁଅଛନ୍ତି କି ? ଏହା ଶୁଣି ପାର୍ଶ୍ୱସ୍ଥିତ ପଣ୍ଡିତକ କହିଲା, ହେ ରାଜନ୍ । ଏହା ସତ୍ୟ, ଏମାନେ ଉମାକୁ ସ୍ୱର୍ଗରେ ଛାଡ଼ିବାକୁ ଅର୍ଥରେ

ହେ ପ୍ରଭୁ ! ବୋଲି ²ଗୃହବନ୍ଧୁ ଭାବେ ।
ଏ ସତ୍ୟ ³ରମ୍ଭାକୁ ଜାନୁ-ଅର୍ଗଳରେ ବାନ୍ଧଲେଣି ଛନ୍ଦ ⁴ବାଟେ ।୧୭।
ପ୍ରତଉତ୍ତର ପରମ ମନୋରମ ରମଣୀଙ୍କ ସ୍ଥାନ ଏହି ।
କୋଟିବ୍ରହ୍ମାଣ୍ଡସୁନ୍ଦରୀ ଯେ କେମନ୍ତ ଶୋଭା ଥିବ ପୁଣି ବହି ।
ହେ ସାଧୁ ! ଲକ୍ଷ୍ୟ ନ ପାରିବେ କହି ।
ବ୍ୟାସ ବାଲ୍ମୀକି ¹କାବ୍ୟ ଧାତା ଗଣେଶ ଶେଷ ସାରଦା ବଗୁର ।୧୮।
ଚମ୍ପା-ନଗରର ଯେବେ ସ୍ୱୟମ୍ବର କରିଥାନ୍ତେ ଦେଖନ୍ତାଇ ।
ଚର୍ଣ୍ଣପିତୁଳା କରି ନେତ୍ର-ପିତୁଳା ପରେ ତାହା ଲେଖନ୍ତାଇ ।
ହେ ସାଧୁ ! ମନେ ସଦା ରଖନ୍ତାଇ ।
ଯେ ଲଭନ୍ତା ତାକୁ କୋଟି ପୁରନ୍ଦରପଦ ନେଲା ଯୋଖନ୍ତାଇ ।୧୯।
ଏ କାଳେ ମିଳି କେମା ପାଶେ କଲ୍ଯାଣୀ ପ୍ରକାଶି ମଧୁର ଭାଷ ।
ଜଗତମୋହିନ ବିଳମ୍ବ ନ କର ଜଗତ ଗନ୍ତବେ ଆସ ।
ରେ ବାଳା ! ସୀତା ଧନ-ସ୍ୱୟମ୍ବରେ ।
କେତେ ରାଜା ଥିଲେ ଶ୍ରୀରାମ ଭାଙ୍ଗିଲେ ଶୁଣି ଜତେ ଦୃଷ୍ଟାନ୍ତରେ ।୨୦।
ଦନ୍ତ ତୁଲ ପାଇ ସୂଚୀଭେଦ ହୋଇ କେତେ ମୋତି ହେଲେ ହାର ।
କେତେ ¹ଶୁକ୍ତି ଯୋଗେ ଭସ୍ମ ପାନ ସଙ୍ଗେ ସଙ୍ଗ ହୋଇଲା ତାଙ୍କର ।

---

ବାନ୍ଧଲେଣି ପଦ । ¹ଯୋଷା, ସ୍ତ୍ରୀ । ²ଗୃହବନ୍ଧୁ, ଗୃହପାର୍ଶ୍ୱସ୍ଥ ପରିହାସକ । ³ରମ୍ଭା, କଦଳୀଗଛ ଓ ଅପ୍ସରା ବିଶେଷ । (ସ୍ତ୍ରୀ ଉରୁକୁ କଦଳୀଗଛ ସହିତ ଉପମିତ କରେ) । ⁴ବାଟେ, ବସ୍ତ୍ରରେ ।

୧୮—ତୁମ୍ଭମାନେ ପୁଣି ପ୍ରତ୍ୟୁତ୍ତର କଲେ, ହେ ସାଧୋ ! ଏହି ନଗର ପରମସୁନ୍ଦରୀ ସ୍ତ୍ରୀମାନଙ୍କର ବାସସ୍ଥାନ ଅଟେ । ଏଥିରେ ପୁଣି କୋଟିବ୍ରହ୍ମାଣ୍ଡସୁନ୍ଦରୀ କେଉଁ ଶୋଭା ବହୁଥିବ । ବ୍ୟାସ, ବାଲ୍ମୀକି, ଶୁକ, ବିଧାତା ଗଣେଶ, ଅନନ୍ତ ଓ ସରସ୍ୱତୀ ଏମାନେ କେହି² ଲକ୍ଷ୍ୟକରି ପାରିବେ ନାହିଁ ପଦ । କାବ୍ୟ, ଶୁକ. ²ଶେଷ, ଅନନ୍ତ । ଶାରଦା, ସରସ୍ୱତୀ ।

୧୯—ହେ ସାଧୁମାନେ ! ଏ ଚମ୍ପାନଗରରେ ରାଜା ଯଦି ସ୍ୱୟମ୍ବର କରିଥାଆନ୍ତେ । ତାହାହେଲେ କୋଟି-ବ୍ରହ୍ମାଣ୍ଡସୁନ୍ଦରୀଙ୍କ ଦେଖିଥାଆନ୍ତେ । ତାକୁ ଚର୍ମପିତୁଳାପରେ ଲେଖି ରଖିଥାଆନ୍ତେ ଓ ସର୍ବଦା ମନେ ରଖିଥାଆନ୍ତେ । ଯେ ସେ ସୁନ୍ଦରୀକୁ ପାଆନ୍ତା, ତାକୁ କରନ୍ତେ, ଏ କୋଟି ଇନ୍ଦ୍ରପଦ ନେଇ । ¹ପୁରନ୍ଦର, ଇନ୍ଦ୍ର ।

୨୦—ଏହି ସମୟରେ ମାଙ୍ଗଲ୍ୟା କେମା ପାଖରେ ପହଞ୍ଚି ମଧୁର ବଚନ ପ୍ରକାଶ କଲା ହେ ଜଗତମୋହନ ! ବିଳମ୍ବ ନକରି ଅନ୍ତଃପୁରକୁ ଗମନ କରିବାକୁ ଚେଷ୍ଟାକର । ପୁଣି ଦୃଷ୍ଟାନ୍ତ ଦେଖାଇ କହିଲା, ହେ ବାଳେ ! ସୀତାଙ୍କ ଧନୁ ସ୍ୱୟମ୍ବରରେ କେତେ ରାଜା ଥିଲେ. କିନ୍ତୁ ଶ୍ରୀରାମଚନ୍ଦ୍ର ଧନୁ ଭାଙ୍ଗିଲେ, ସେହିପରି ତୋ ପ୍ରିୟ ମୃଗ ପୁଚ୍ଛ ଛେଦନ କରିବ, ଦେଖିବୁ ।

୨୧—ତୋ ଦନ୍ତ ସହିତ ସମାନ ହେବାପାଇଁ କେତେ ମୋତି ସୂଚିଦ୍ୱାରା ଫୋଡ଼ା ହୋଇ ତୋର ହାର ହେଲେ ଏବଂ କେତେକ ଶାମୁକା ସହିତ ଭସ୍ମ ହେଲେ, ଚୂନରୂପେ ପାନସଙ୍ଗେ ତାଙ୍କର ସଙ୍ଗସଙ୍ଗ

ରେ ବାଳା ! ଯେତେକ ଏତେକ କୋହ୍ନ ।
ବ୍ୟର୍ଥ ହୋଇଲେ [୨]କାୟକ୍ଳେଶ ବିନା ମନୋରଥ ସାର୍ଥ କାହିଁ । ୨୧ ।
କାମଶରେ ବନ୍ଧା ବିରହ-ଅନଳେ ଦଗ୍ଧ ହେଉଅଛୁ ନିତି ।
ତୋ ହେତୁ ପୁଷ୍ପକେତୁ ନାମ କୁମାର ବିଗୁର ନ କରୁ ମତି ।
ରେ ବାଳା ! ତୋତେ ସେ ଲଭିବ ସତି ।
ଶୁଣି ସେ ସଖୀ ସେବକୀ ସଙ୍ଗେ ରଙ୍ଗେ [୧]ବଡ଼ଭି ମୁଣ୍ଡେ ଚଢ଼ିଲ । ୨୨ ।
ପଞ୍ଚାଶ୍ୱସାଗ୍ନି ପରି ଦେଇ ନୟନ [୧]ବାତାୟନେ ଚାହିଁବାରେ ।
ଯନ୍ତ୍ରା ଗଳାଇ ବରିବ [୨]କଙ୍କପତ୍ରଗୋଚ ବନ୍ଧିଲା ପ୍ରକାରେ ।
ସେ ଯେଣୁ ! ଚଣ୍ଡୀ ନାମକୁ ଗ୍ରହିତ ।
ମହୀଶ ଲକ୍ଷେ ଷ-ଭେଦ କରିବାରେ ପ୍ରହାର କଥା ବିହିତ । ୨୩ ।
[୧]ଜଗତୀ ଗବାକ୍ଷେ ବସେ କଣ୍ଟକ କଚ୍ଛ ମୁଖ ହାସ ମନୋହର ।
ପୂର୍ବାଦ୍ରି ଲତାନ୍ତରେ ଉଦେ ଇନ୍ଦୁ କି ଗଳିପଡ଼େ ଝୁଲି କର ।
ସେ ବାସେ ! ପାଶେ ମିଳେ [୨]ଅଳିଆଳି ।
ଝଙ୍କାରେ ତହିଁ ଝୁମକ [୩]ମନସିଜ ଫିଙ୍ଗିଲା ପରି ସାବେଳି । ୨୪ ।

---

ହେଉ । ହେବାଲେ ଅଛ ଯେତେକ ଏତେକ, ଯୋଡ଼ା ଓ ତୋଡ଼ା ନହେଲେ, ସେ ମୋତ ସବୁ ବ୍ୟର୍ଥ ହେଲେ । ଅର୍ଥାତ୍ ତୋ ସଂସର୍ଗ ପାଇ ପାରିଲେ ନାହିଁ । ଦେହ କ୍ଳେଶ ବ୍ୟତୀତ ମନୋରଥ କେଉଁଠାରେ ସଫଳ ହୋଇପାରେ କି ? [୧]ଶୁକ୍ତି, ଶାମୁକା । କାୟ, ଦେହ ।

୨୨—ପୁଷ୍ପକେତୁନାମକ ରାଜକୁମାର ତୋ ହେତୁରୁ ନିତ କନ୍ଦର୍ପ ଶରରେ ବନ୍ଧା ହେଉଅଛି, ଏବଂ ବିରହ ଅଗ୍ନିରେ ଦଗ୍ଧ ହେଉଅଛି । ଅତଏବ ସେ ତୋତେ ନିଶ୍ଚେ ପାଇବ ବୋଲି ଏକଥା କିଛି ମନରେ ଭାବୁନାହିଁ । ସେ କେମା ଏହା ଶୁଣି ସଖୀ ଏବଂ ଦାସୀମାନଙ୍କ ସଙ୍ଗରେ ଶୀଘ୍ର ଚନ୍ଦ୍ରଶାଳା ଗୃହକୁ ଗମନ କଲା ଅର୍ଥାତ୍ ସେଠାକୁ ଗଲା । [୧]ବଡ଼ଭି, ଚନ୍ଦ୍ରଶାଳା ।

୨୩—ପଞ୍ଚାଶ୍ୱ ସାଧିପରି ଜଳାକବାଟରେ ଚାହିଁବାରେ ନୟନ ଶରସମୂହ ଯନ୍ତ୍ରାରେ ଗଳାଇ ବନ୍ଧିଲା ପ୍ରକାର ଦେଖାଗଲା । ସେ ଯେଉଁ ହେତୁରୁ ଚଣ୍ଡୀ (ମାନିନୀ) ନାମକୁ ଗ୍ରହଣ କରିଅଛି, ଅତଏବ ଦୁର୍ଗା ହେଲା । ଷକାରଭେଦ ମହୀଶ (ରାଜା)ମାନେ ମହିଷାସୁର ହେଲେ । ତାକୁ ଲକ୍ଷ୍ୟକରି ଶର ପ୍ରୟୋଗ କରିବା ବିହିତ ହେଲା । [୧]ବାତାୟନ, ଜଳାକବାଟ । [୨]କଙ୍କପତ୍ର, ଶର ।

୨୪—କେମାର ମନୋହର ମୁଖହାସ ଅଟ୍ଟାଳିକା ଜଳାକବାଟବାଟେ କିଛି ଦେଖାଯାଉଥିଲା । ଅତଏବ ଉଦୟ ପର୍ବତର ଲତା ଅନ୍ତରାଳରେ ଉଦିତ ହୋଇଥିବା ଚନ୍ଦ୍ରର କିରଣ ଅଛି ଗଳି ପଡ଼ୁଅଛି ? ଏମନ୍ତ ଦିଶୁଥିଲା । ସେ ମୁଖର ସୁବାସରେ ଭ୍ରମରମାନେ ପାଖରେ ମିଳିତ ହୋଇ ଝଙ୍କାର ଶବ୍ଦ କଲେ । କନ୍ଦର୍ପ ଝୁମକାରିକିରି ସାବେଳି ଅସ୍ତ୍ର ଫିଙ୍ଗିଲାପରି ଅନୁମାନ କରାଗଲା । [୧]ଜଗତୀ ଗବାକ୍ଷେ, ଅଟ୍ଟାଳିକାର ଜଳାକବାଟି, [୨]ଅଳିଆଳି, ଭ୍ରମରସମୂହ । [୩]ମନସିଜ, କନ୍ଦର୍ପ ।

ହେ ପ୍ରଭୁ ! ମୋତେ ୨ଶୃଙ୍ଖୁ ବନ୍ଧୁ ଭାବେ ।
ଏ ସତ୍ୟ ୩ରମ୍ଭାକୁ ଜାନୁ-ଅର୍ଗଳରେ ବାନ୍ଧଲେଣି ଛନ୍ଦ ୪ବାସେ ।୧୭।
ପ୍ରଭୁଉତ୍ତର ପରମ ମନୋରମ ରମଣୀଙ୍କ ସ୍ଥାନ ଏହି ।
କୋଟିବ୍ରହ୍ମାଣ୍ଡସୁନ୍ଦରୀ ଯେ କେମନ୍ତ ଶୋଭା ଥିବ ପୁଣି ବହି ।
ହେ ସାଧୁ ! ଲକ୍ଷ୍ୟ ନ ପାରିବେ କହି ।
ବ୍ୟାସ ବାଲ୍ମୀକି ୧କାବ୍ୟ ଧାତା ଗଣେଶ ଶେଷ ସାରଦା ବଗୃହ ।୧୮।
ଚମ୍ପା-ନରବର ଯେବେ ସ୍ୱୟମ୍ବର କରିଆନ୍ତେ ଦେଖନ୍ତାଇ ।
ଚିତ୍ରପିତୁଳା କରି ନେତ୍ର-ପିତୁଳା ପରେ ତାହା ଲେଖନ୍ତାଇ ।
ହେ ସାଧୁ ! ମନେ ସଦା ରଖନ୍ତାଇ ।
ଯେ ଲଭନ୍ତା ତାକୁ କୋଟି ପୁରନ୍ଦରପଦ ନେଲ୍ଲ ଯୋଖନ୍ତାଇ ।୧୯।
ଏ କାଳେ ମିଳି ଜେମା ପାଶେ କଳ୍ପାଣୀ ପ୍ରକାଶି ମଧୁର ଭାଷ ।
ଜଗତମୋହନ ବିଳମ୍ବ ନ କରି ଜଗତ୍ତେ ଗଡଢେ ଭସ ।
ରେ ବାଳା ! ସୀତା ଧନ-ସ୍ୱୟମ୍ବରେ ।
କେତେ ରାଜା ଥିଲେ ଶ୍ରୀରାମ ଭଙ୍ଗିଲେ ପୁଣି କହେ ଦୃଷ୍ଟାନ୍ତରେ ।୨୦।
ଦନ୍ତ ଭୁଲ ପାଇ ସୂଚୀଭେଦ ହୋଇ କେତେ ମୋତି ହେଲେ ହାର ।
କେତେ ୧ଶୁକ୍ତି ଯୋଗେ ଭସ୍ମ ପାନ ସଙ୍ଗେ ସଙ୍ଗ ହୋଇଲା ତାଙ୍କର ।

---

ବାନ୍ଧଲେଣି ପଦ । ୧ଯୋଷା, ସ୍ତ୍ରୀ । ୨ଶୃଙ୍ଖୁବନ୍ଧୁ, ରାଜପାର୍ଶ୍ୱସ୍ଥ ପରିହାସକ । ୩ରମ୍ଭା, କଦଳୀଗଛ ଓ ଅପ୍ସରା ବିଶେଷ । (ସ୍ତ୍ରୀ ଉରୁକଦଳୀଗଛ ସହିତ ଉପମିତ ହୁଏ) । ୪ବାସେ, ବସ୍ତ୍ରରେ ।

୧୮—ରଜାମାନେ ପୁଣି ପ୍ରତ୍ୟୁତର କଲେ, ହେ ସାଧୋ ! ଏହି ନଗର ପରମସୁନ୍ଦରୀ ସ୍ତ୍ରୀମାନଙ୍କର ବାସସ୍ଥାନ ଅଟେ । ଏଥିରେ ପୁଣି କୋଟିବ୍ରହ୍ମାଣ୍ଡ ସୁନ୍ଦରୀ କପରି ଶୋଭା ବହୁଥିବ । ବ୍ୟାସ, ବାଲ୍ମୀକି, ଶୁକ, ବିଧାତା ଗଣେଶ, ଅନନ୍ତ ଓ ସରସ୍ୱତୀ ଏମାନେ କଣ୍ଟିବ? ଲକ୍ଷ୍ୟକରି ପାରିବେ ନାହିଁ ପରା । କାବ୍ୟ, ଶୁକ. ୨ଶେଷ, ଅନନ୍ତ । ଶାରଦା, ସରସ୍ୱତୀ ।

୧୯—ହେ ସାଧୁମାନେ ! ଏ ଚମ୍ପାନଗରରେ ରଜା ଯଦି ସ୍ୱୟମ୍ବର କରିଥାଆନ୍ତେ । ତାହାହେଲେ କୋଟି-ବ୍ରହ୍ମାଣ୍ଡସୁନ୍ଦରୀଙ୍କ ଦେଖିଲେ ଦେଖିଥାଆନ୍ତେ । ତାକୁ ଚିତ୍ରପିତୁଳାପରେ ଲେଖି ରଖିଥାଆନ୍ତେ ଓ ସର୍ବଦା ମନେ ରଖିଥାଆନ୍ତେ । ଯେ ସେ ସୁନ୍ଦରୀକୁ ପାଆନ୍ତା, ତାକୁ ବରିଆନ୍ତେ, ଏ କୋଟି ଇନ୍ଦ୍ରପଦ ଦେଇ । ୧ପୁରନ୍ଦର, ଇନ୍ଦ୍ର ।

୨୦—ଏହି ସମୟରେ ମାଳତୀ ଜେମା ପାଖରେ ଅତ୍ୟନ୍ତ ମଧୁର ବଚନ ପ୍ରକାଶ କଲା ହେ ଜଗତମୋହନ ! ବିଳମ୍ବ ନକରି ଅନ୍ତଃପୁରକୁ ଗମନ କରିବାକୁ ଚେଷ୍ଟାକର । ପୁଣି ଦୃଷ୍ଟାନ୍ତ ଦେଖାଇ କହିଲା, ହେ ବାଳେ ! ସୀତାଙ୍କ ଧନୁ ସ୍ୱୟମ୍ବରରେ କେତେ ରଜା ଥିଲେ. କିନ୍ତୁ ଶ୍ରୀରାମଚନ୍ଦ୍ର ଧନୁ ଭାଙ୍ଗିଲେ, ସେହିପରି ତୋ ପ୍ରିୟ ମୃଗ ପୁଚ୍ଛ ଛେଦନ କରିବ, ଦେଖିବୁ ।

୨୧—ତୋ ଦନ୍ତ ସହିତ ସମାନ ହେବାପାଇଁ କେତେ ମୋତି ସୂଚୀଦ୍ୱାରା ଫୋଡ଼ାହୋଇ ତୋର ହାର ହେଲେ ଏବଂ କେତେକ ଶାମୁକା ସହିତ ଭସ୍ମ ହେଲେ, ଚୂନରୂପେ ପାନସଙ୍ଗେ ତାଙ୍କର ସଙ୍ଗ ହେଲା

ରେ ବାଳା ! ଯେତେକ ଏତେକ ନୋହୁ ।
ବ୍ୟର୍ଥ ହୋଇଲେ ²କାୟକ୍ଲେଶ ବିନା ମନୋରଥ ସାର୍ଥ କାହିଁ । ୨୧ ।
କାମଶରେ ବିନ୍ଧା ବିରହ-ଅନଳେ ଦଗ୍ଧ ହେଉଅଛୁ ନିତି ।
ତୋ ହେତୁ ପୁଷ୍ପକେତୁ ନାମ କୁମାର ବିଗୁର ନ କରୁ ମତି ।
ରେ ବାଳା ! ତୋତେ ସେ ଲଭିବ ସତ ।
ଶୁଣି ସେ ସଖୀ ସେବକୀ ସଙ୍ଗେ ରଙ୍ଗେ ¹ବଡ଼ଭି ମୁଣ୍ଡେ ତ୍ୱରିତ ।୨୨।
ପଞ୍ଚଶରସାୟୀ ପରି ଦେଇ ନୟନ ¹ବାତାୟନେ ଗୁହିଁବାରେ ।
ଯନ୍ତ୍ରା ଗଳାଇ ବିନ୍ଧ ²କଙ୍କପତ୍ରଗୋଟ ବାନ୍ଧିଲା ପ୍ରକାରେ ।
ସେ ଯେଣୁ । ଚଣ୍ଡୀ ନାମକୁ ଗୃହୀତ ।
ମହୀଶ ଲକ୍ଷେ ଷ-ଭେଦ କରିବାରେ ପ୍ରହାର କଥା ବିହିତ । ୨୩ ।
¹ଜଗତୀ ଗବାକ୍ଷେ ଦିଶେ କନ୍ଥ କନ୍ଥ ମୁଖ ହାସ ମନୋହର ।
ପୂର୍ବାଦ୍ରି ଲତାନ୍ତରେ ଉଦେ ଇନ୍ଦୁ କି ଗଳିପଡ଼େ ଝୁଲି କରି ।
ସେ ବାସେ । ପାଶେ ମିଳେ ²ଅଳିଅଳି ।
ଝଙ୍କାରେ ରହିଁ ଝମକ ³ମନସିଜ ଫିଙ୍ଗିଲା ପରି ସାବେଲି । ୨୪ ।

---

ହେଲ । ହେବାଲେ ଅଛ ଯେତେକ ଏତେକ, ଯୋଡ଼ା ଓ ଯୋଡ଼ା ନହେଲେ, ସେ ମୋଠ ସବୁ ବ୍ୟର୍ଥ ହେଲେ । ଅର୍ଥାତ୍ ତୋ ସମ୍ପର୍କ ପାଇ ପାରିଲେ ନାହିଁ । ଦେହ କ୍ଲେଶ ବ୍ୟତୀତ ମନୋରଥ କେଉଁଠାରେ ସଫଳ ହୋଇପାରେ କି ? ¹ଶୁକ୍ତି, ଶାମୁକା । ²କାୟ, ଦେହ ।

୨୨—ପୁଷ୍ପକେତୁନାମକ ରାଜକୁମାର ତୋ ହେତୁରୁ ନିତି କନ୍ଦର୍ପ ଶରରେ ବିନ୍ଧା ହେଉଛି, ଏବଂ ବିରହ ଅଗ୍ନିରେ ଦଗ୍ଧ ହେଉଅଛି । ଅତଏବ ସେ ତୋତେ ନିଶ୍ଚେ ପାଇବ ତୁ ଏକଥା କିଛି ମନରେ ଭାବନାହିଁ । ସେ କେମା ଏହା ଶୁଣି ସଖୀ ଏବଂ ଦାସୀମାନଙ୍କ ସଙ୍ଗରେ ଶୀଘ୍ର ଚନ୍ଦ୍ରଶାଳା ଗୃହକୁ ଚଢ଼ିଗଲା ଅର୍ଥାତ୍ ସେଠାକୁ ଗଲା । ¹ବଡ଼ଭି, ଚନ୍ଦ୍ରଶାଳା ।

୨୩—ପଞ୍ଚଶର ସାୟକର ଜାଲାକବାଟରେ ଗୁହଁବାରେ ଦେଇ ଶରସମୂହ ଯନ୍ତ୍ରାରେ ଗଳାଇ ବାନ୍ଧିଲା ପ୍ରକାର ଦେଖାଗଲା । ସେ ଯେଉଁ ହେତୁରୁ ଚଣ୍ଡୀ (ମାନିନୀ) ନାମକୁ ଗ୍ରହଣ କରିଅଛି, ଅତଏବ ଦୁର୍ଗା ଦେବୀ ଷଭାରରେ ପ୍ରଭେଦ ମହୀଶ (ରଜା)ମାନେ ନହୁଅନ୍ତି ହେବ । ତାକୁ ବଶକରି ଶର ପ୍ରୟୋଗ କରିବା ବିହିତ ହେଲ । ¹ବାତାୟନ, ଜାଲାକବାଟ । ²କଙ୍କପତ୍ର, ଶର ।

୨୪—କେମିତ ମନୋହର ମୁଖହାସ ଅଟ୍ଟାଳିକା ଜାଲାକବାଟବାଟେ ଦିଶୁ ଦେଖା ଯାଉଥିଲା । ଅତଏବ ଉଦୟ ପର୍ବତର ଲତା ଅନ୍ତରାଳରେ ଉଦିତ ହୋଇଥିବା ଚନ୍ଦ୍ର କରଣର ଅଗ୍ର ଗଳି ପଡ଼ୁଅଛନ୍ତି ? ଏମନ୍ତ ଦିଶୁଥିଲା । ସେ ମୁଖର ସୁବାସରେ ଭ୍ରମରମାନେ ପାଖରେ ମିଳିତ ହୋଇ ଝଙ୍କାର ଶବ୍ଦ କଲେ । କନ୍ଦର୍ପ ଝମକାଇକରି ସାବେଲୀ ଅସ୍ତ୍ର ଫିଙ୍ଗିଲାପରି ଅନୁମାନ କରାଗଲା । ¹ଜଗତୀ ଗବାକ୍ଷେ, ଅଟ୍ଟାଳିକାର ଜାଲାକବାଟି, ²ଅଳିଅଳି, ଭ୍ରମରସମୂହ । ³ମନସିଜ, କନ୍ଦର୍ପ ।

ସୃଷ୍ଟି ରାଜାଙ୍କ ଦୃଷ୍ଟିଗତ ସେଠାକୁ ଚାହିଁ ଚାହିଁ ହେଲା ପଙ୍କ ।
କାଗଜଚଟକୀକ କଉତୁକୀ ଟେକ ନ ରେଖିଲା ପର ତନ୍ତୁ ।
ସେ ନେତ୍ର । ପିଛୁଡ଼ା ଛଡ଼ାଇ ଦେଲା ।
ଏଥି ସୁନ୍ଦରୀଶିରୋମଣି ରମଣୀ ବଜେ ଏ ବିବେକ ହେଲା । ୨୫ ।
ଲାବଣ୍ୟ-ସାଗରୁ ପ୍ରତିଭା-ଲହରୀ ଜାଲଂ-ମାର୍ଗେ କ ବାହାର ।
ଚତୁରୀ ନୟନ-ତରଙ୍ଗ ଗୃହୁରୀ ୨ବାତାୟନେ ସେହିପର ।
ସେ *ଧାମେ । ଏ ଚକ୍ଷୁ *ଝଷସ୍ଥିତହିଁକି ।
କି ଭାଗ୍ୟ ଆମ୍ଭପରେ ବାଳା ଈକ୍ଷଣ ପତନ ହୋଇଲା ଟିକା । ୨୬ ।
୧ସିନ୍ଧୁରେ ରତ୍ନାକର ପଦ ଲୋଭରେ ମଜ୍ଜି ରହି ନ ପାଇବେ ।
ସ୍ନାନ ପବିତ୍ରଫଳ ନୋହେ ବିଫଳ ଏ କଥା ହେଲାତ ଭଲ ।
ସେ ଆଜ । ସାର୍ଥ ହେବ ୨ନାଚ କହି ।
ଶ୍ରବଣ କରିବ ଆମ୍ଭନାମ ବାଳା କେହି ଦେଉଥିଲେ କହି । ୨୭ ।
ଯେ ବଶ ହେବାକୁ ସଂସାରେ କେ ଅଛି ଯେ ଅଛି ସେ ନାହିଁ ଏଥ ।
ଜଗତ ମୋହନମୂରତ ୧ମାଧବ ଭସ୍ମୀଭୂତ ମନମଥ ।

---

୨୫—ଯେଉଁ ହେତୁରୁ କୌତୁକଲୋକ ଉଡ଼ୁଥିବା କାଗଜଚଟ ଆଡ଼େ ଉପର ସାବଧାନେ ରାଜାମାନଙ୍କର ଦୃଷ୍ଟି ଚାହିଁ ଚାହିଁ ସେ ଚନ୍ଦ୍ରଶାଳା ଅଡ଼କୁ ଗଲା, ସେହିହେତୁରୁ ସେ ରାଜଚକ୍ଷୁମାନଙ୍କ ପିଛୁଡ଼ା ପଡ଼ିଲାନାହିଁ ଏବଂ ସେଠାରେ ସୁନ୍ଦରୀଶ୍ରେଷ୍ଠ । ରମଣୀ ରାଜକୁମାରୀ ବିବେକକରିଅଛନ୍ତି, ଏକଥା ଜଣାପଡ଼ିଲା । ଅର୍ଥାତ୍ ସମସ୍ତେ ନିର୍ନିମେଷ ଚକ୍ଷୁରେ ଚନ୍ଦ୍ରଶାଳାଅଡ଼କୁ ଚାହିଁବାରୁ ରାଜକୁମାରୀ ବିଚାର କରିଅଛନ୍ତି ବୋଲି ଜଣାପଡ଼ିଲା ।

୨୬—ସମସ୍ତଙ୍କ ମନରେ ଏ ଭାବନାମାନ ଉଦୟ ହେଲାବୋଲି ଆଗରେ ବୁଝାଯିବ, ଯାହା ଏଠାରୁ ବୁଝା ଯାଉଅଛି । ଏହି ଚତୁରୀ ରାଜକୁମାରୀର ଲାବଣ୍ୟ ରାଶି ରୂପକ ସମୁଦ୍ରରୁ ପ୍ରତିଭା ଲହରୀ ଜାଲ ଛିଦ୍ରବାଟେ ବାହାରିଲାପରି ଲୋଚନବାଟେ ବାଟେ ବାହାରି ବିହାର କରୁଅଛି । ସେହି ହେତୁରୁ ଆମ୍ଭମାନଙ୍କ ଚକ୍ଷୁରୂପକ ମୀନମାନେ ତାହା ପ୍ରତି ଧାଇଁ ଅଛନ୍ତି । ଆମ୍ଭମାନଙ୍କର କେଡ଼େ ଭାଗ୍ୟ ! ବାଳା କେମନ୍ତ ଆମ୍ଭଉପରେ ଅକ୍ଷି ପକାଇଲାଣି କି ? ୧ ଜାଲମାର୍ଗେ ଜାଲଛିଦ୍ରବାଟେ । ୨ ବାତାୟନ, ଝରକାବାଟ । * ଧାମେ, ଧାଏଁ, ଝଷ ମୀନ ।

୨୭—ଏ ରତ୍ନାକର ଅର୍ଥାତ୍ ରତ୍ନସମୂହ ଖଣି ଏହି ପଦ ଲୋଭରେ ସମୁଦ୍ରରେ ବୁଡ଼ି ରହି ନ ପାଇଲେ ସୁଦ୍ଧା ସ୍ନାନରୂପ ପବିତ୍ର ଫଳ ବ୍ୟର୍ଥ ହୁଏନାହିଁ । ଏବେ ଆମ୍ଭମାନଙ୍କର ଏ କଥା ପରି ହେଲା । ଆଜ ଆମ୍ଭମାନଙ୍କର କୃତାର୍ଥ ହେବ, କେହି କହିଦେଉଥିଲେ ବାଳା ଯେମନ୍ତ ସେହିପରି ଆମ୍ଭ ନାମ ଶୁଣିବ । ୧ ସିନ୍ଧୁ, ସମୁଦ୍ର ୨ ନାଚ, କହୁ ।

୨୮— ଯେ କେମନ୍ତ ବଶ ହେବାକୁ ଅର୍ଥାତ୍ ପ୍ରେମାଧୀନ ପ୍ରିୟ ହେବାକୁ ଏ ସଂସାରରେ କିଏ ଅଛି ? ଯେ ଅଛି ବୋଲୁଛ ସେ ବର୍ତ୍ତମାନରେ ନ ଥିଲାପରି । ସେଇ ଜଗନ୍ମୋହନ ମୂର୍ତ୍ତି ବିଷ୍ଣୁ ଲକ୍ଷ୍ମୀଙ୍କ ପତି ହୋଇ ଅଛନ୍ତି, ଏବଂ କନ୍ଦର୍ପ ଭସ୍ମୀଭୂତ ହୋଇଅଛି । ଅତଏବ ସେ ବାଳା କେମନ୍ତ କୌତୁକ କରରେ

ସେ ବାଳା ହୋଇ ଯେ ରହସ୍ୟ ବଶ ।
ଏକେ ଏକେ ଏକେ ବୋଲି ପୁଚ୍ଛୁଥିବ କି ଶୁଣୁଥିବ ସେ ରାସ । ୨୮ ।
ମୋହନସ୍ୱର ପୂର୍ଣ୍ଣ କୃଷ୍ଣ-ବେଣୁରେ କୃଷ୍ଣକେଶୀ ବଚନରେ ।
ପଶୁ ପାଷାଣର ବଶ ତରଳକୁ କରୁଥିବ ରଚନରେ ।
ସେ ସ୍ୱରେ । ବୋଲନ୍ତାକ ବଡ଼ ନୋହି ।
୧ଅଖେଟ ଘଣ୍ଟିନାଦେ ଚନ୍ଦ୍ର ଦର୍ଶନେ ବଶ ତରଳତ ସେହି । ୨୯ ।
୧ବ୍ୟକତ ପଦର ବାଲା ବଚନରେ ଅବ୍ୟକତ ପଦ ପିକେ ।
ବସନ୍ତେ ରାସନ୍ତେ ଉଦ୍ଦୀପନକାରୀ ତାକୁ ପ୍ରଶଂସନ୍ତି ଲୋକେ ।
ସେ ରାମା ସ୍ୱରକୁ ଈଶ୍ୱର କେହି ।
ଶୁଣି ସ୍ତମ୍ଭୀଭୂତେ ଶମ୍ଭୁ ବୋଲାଇଲେ ପାଷାଣ ଶରୀର ବହି । ୩୦ ।
ରାମପଦବର୍ଣ୍ଣ ପୁରାଣରେ ଅଛୁ ସୁମୂର୍ତ୍ତି ହୋଇଲା ଶିଳା ।
ରାମାପଦବର୍ଣ୍ଣ ଏବେ ସୁମୂର୍ତ୍ତିକ ଶିଳା କରି ଜଣେ କଲା ।
ସେ ବାଳା । ହରପ୍ରାପ୍ତେ ସର୍ବହୃଦେ ।
ବ୍ୟାପି ଯିବା ଯେଣୁ ଏକ ଭାବନା ଏ ମନମାନଙ୍କରେ ଉଦେ । ୩୧ ।
ପୂର୍ବେ ବନ୍ଧିଥିଲେ ସ୍ୱଚ୍ଛ ମସ୍ତ୍ରରୂପ ପୁଣି ରଘୁବଂଶେ ଜାତ ।
ଯହୁଁ ବଡ଼ ନାହିଁ ବ୍ରହ୍ମାଣ୍ଡେ ଏ ଯେଣୁ ରାଘବ ନାମ ଖ୍ୟାତ ।

---

ଏ କେଏ ? ବୋଲି ଚୋଟେ ବରି ପଚାରୁଥିବ ଅଥବା ସେ କଥା କ ସ୍ୱରର ଶୁଣୁଥିବ । ୧ ମାଧବ, ବନ୍ଧୁ । ୨ ମନ୍ମଥ କନ୍ଦର୍ପ ।

୨୯—ଶ୍ରୀକୃଷ୍ଣଙ୍କ ବଂଶୀରେ ଓ ଏହି ସୁକେଶୀ ଜେମାର ବଚନରେ ଏକାପରି ମୋହନକାରୀ ସ୍ୱରପୂର୍ଣ୍ଣ ହୋଇଅଛି । ଅତଏବ ଜେମା ବଚନ ରଚନାରେ ପଶୁମାନଙ୍କୁ ବଶକରୁଥିବ ଓ ପଥରକୁ ତରଳାଉଥିବ ସେ ସ୍ୱରକୁ ଏଠାରେ ଅବା କହନାହୁଁ । କିନ୍ତୁ ଏ କିଛି ବଡ଼କଥା ଆ ପକ୍ଷରେ ନୋହେ । ଯେହେତୁ ମୃଗୟାପ୍ରିୟମାନେ ମୃଗୟାରେ ଘଣ୍ଟି ଶବ୍ଦରେ ପୁଣି ବଶ ହୁଅନ୍ତି ଏବଂ ଚନ୍ଦ୍ରକାନ୍ତ ପଥର ମଧ୍ୟ ଚନ୍ଦ୍ରକୁ ଦେଖି ତରଳି ଯାଏ । ୧ ଅଖେଟ, ମୃଗୟା ।

୩୦—ବାଳା ଜେମାର ବଚନରେ ପଦ ସବୁର ଅର୍ଥ ପ୍ରକାଶିତ ହେଉଅଛି, ଅର୍ଥ ପ୍ରକାଶିତ ହୁଏ ନାହିଁ, କିନ୍ତୁ ବସନ୍ତ କାଳରେ କୋକିଳ ଧ୍ୱନି କରିବାରୁ ଲୋକେ ତାକୁ ଶୃଙ୍ଗାର ରସ ଉଦ୍ଦୀପନକାରୀ ବୋଲି ପ୍ରଶଂସା କରନ୍ତି । ସେ ରାମାଜେମାର ସ୍ୱରକୁ ଶିବ କପରି ଶୁଣି ସ୍ତମ୍ଭୀଭୂତ ହେବାରୁ ପାଷାଣ (ପଥର) ଦେହ ଧାରଣକରି ଶମ୍ଭୁ ବୋଲାଇ ଅଛନ୍ତି କି ? ୧ ବ୍ୟକ୍ତ, ସ୍ପଷ୍ଟାର୍ଥ ।

୩୧—ପୁରାଣରେ ଲେଖାଅଛି, ଶ୍ରୀ ରାମଚନ୍ଦ୍ରଙ୍କ ପାଦ ପଡିବାହେତୁ ପଥର ସୁନ୍ଦରମୂର୍ତ୍ତି ଅହଲ୍ୟାରୂପ ହେଲା ଏବେ ରାମା କୋଟିବ୍ରହ୍ମାଣ୍ଡସୁନ୍ଦରୀର ବଚନପଦ ଶୁଣିବା ହେତୁରୁ ସୁନ୍ଦର ଶିବଙ୍କୁ ଶିଳା ( ପଥର ) କରିଦେଲା, ଏହା ମୁଁ ଜାଣେ । ସେ ବାଳଜେମା ବନ୍ଧୁଙ୍କପରି ସମସ୍ତଙ୍କ ହୃଦୟରେ ବ୍ୟାପିଯିବା ହେତୁରୁ ଏହି ଏକା ଭାବ ସବୁ ଲୋକମାନଙ୍କର ଉଦୟ ହେଲା ।

୩୨—ଯେ ଈଶ୍ୱର ପୂର୍ବକାଳରେ ନିର୍ମଳ ମତ୍ସ୍ୟରୂପ ବହିଥିଲେ, ପୁଣି ରଘୁ ବଂଶରେ ଜାତହେଲେ ଏହି ହେତୁରୁ ହିଁ ସେ ଈଶ୍ୱର ରାମଚନ୍ଦ୍ରଙ୍କର ରାଘବ ନାମ ଖ୍ୟାତ ହୋଇଅଛି । ଦେଖ ବ୍ରହ୍ମାଣ୍ଡରେ :

ସେ ଛନ୍ଦ । ଚରଣେ ଶରଣ ପଶି ।
ଭକତ ଉପଇନ୍ଦ୍ର ଭଞ୍ଜ ସାରବର ଏହ ଗୀତ ବିଧାନେ ରସି । ୩୨ ।



## ଏକତ୍ରିଂଶ ଛାନ୍ଦ ।

ବୈଶ୍ୱାନର ରାଜକେଶରୀ ୧କେଶରୀଦ୍ୱାର ଅଙ୍ଗଣରେ ମିଳି ସେ ।
ଦେଖିଲେ ଲେଖିଲେ ନେତ୍ରେ ନୃପତିଏ ବିଚିତ୍ର ୨କଦଳୀ-କେତନେ
ହୋଇଛି ସେ । ଅଙ୍ଗ-ତରଙ୍ଗରେ ଝୁଲି ସେ ।
ସ୍ୱର୍ଣ୍ଣଜରକସ ନୀଳପାଟବସ୍ତ୍ର କଦଳୀ ଯେମନ୍ତ ତଳ୍ପି ନେ । ୧ ।
ଘଟେଣ ଘଟେଣ ଘଟେଣ ଖେଳେ କି ୧ସୌଦାମିନୀଜଡ଼ିତ ତଡ଼ିତ ସ୍ଫୁରେ ସେ ।
ନୀଳ ନିର୍ମଳ ଜଳଧରଖଣ୍ଡେ କି ଗୋଡ଼ାଇଛି ପଛେ ପଛେ ସେ ।
ମାନସ । ଏସନ ଉପମା ଭଜେ ସେ ।
ଲୋଭିତକରୁଛି ଶୋଭିତ ହୋଇଛି ୨ଲୋମରାଜ କାନ୍ତି ସୁଚ୍ଛେ ସେ । ୨ ।
ନିକଟ ଦୂର ପ୍ରକଟ ଦରଶନ ସେ କ୍ଷଣ କ୍ଷଣକେ ଦେଲା ସେ ।
ଦ୍ୱିବିଧ ଦର୍ପଣକଳୀ ଆଦରକୁ ସମସ୍ତ ଇଚ୍ଛା ନେଲା ସେ ।

---

ଯେଉଁ ରାଘବମାନଙ୍କ ଠାରୁ ଓ ରାଘବ ( ରାମଚନ୍ଦ୍ର ) ଙ୍କ ଠାରୁ ବଡ଼ ହୋଇ କେହି ନାହିଁ । କବି ଉପେନ୍ଦ୍ରଭଞ୍ଜ ବରବର ସେ ପ୍ରଭୁଙ୍କ ଚରଣରେ ଶରଣ ପଶି ଏ ଗୀତ ରଚନା କରିବାରେ ରସିଅଛନ୍ତି ।



## ଏକତ୍ରିଂଶ ଛାନ୍ଦ ।

୧—ରାଜାମାନେ ବୈଶ୍ୱାନରଙ୍କ ରାଜସିଂହଙ୍କ ସିଂହଦ୍ୱାର ଅଗଣାରେ ମିଳିତ ହୋଇ ସେ ଶସ୍ତ୍ରୁଜନକ ମୃଗର କେତନ ଦେଖିଲେ ଏବଂ ଅକ୍ଷିରେ ଲେଖିରଖିଲେ । ସେ ମୃଗର କେତନ ଅଙ୍ଗ ତରଙ୍ଗରେ ହେତୁରୁ ଝୁଲୁଥିଲା । ଯେପରି ସୁନାଜରିଯୁକ୍ତ ନୀଳପାଟ ନୀଳପତାକା ଚଞ୍ଚଳ ହେଉଥାଏ ।
୧ କେଶରୀଦ୍ୱାର ଅର୍ଥରେ, ସିଂହଦ୍ୱାର ଅଗଣାରେ । ୨ କଦଳୀ, ମୃଗ ଓ ପତାକା । ମୃଗର ଅଙ୍ଗ ସ୍ୱର୍ଣ୍ଣକଟୀଭୂଷା ଓ ପୃଷ୍ଠ, ନୀଳପାଟ ପତାକାପରି ।

୨—ସେ ମୃଗ ଦ୍ରୁତ ବେଗରେ ଗତିବେଗ ହେତୁରୁ ଦେଖାଯାଏ । ନକ୍ଷତ୍ରପୁଞ୍ଜଯୁକ୍ତ ବିଜୁଳି ନିର୍ମଳଗଗନେ ଖେଳୁଅଛି କି ? ଏବଂ ନିର୍ମଳ ନୀଳମେଘ ଖଣ୍ଡେ ତା ପଛେ ପଛେ ଗୋଡ଼ାଇ ଅଛି କି ? ଏ ଉପମାକୁ କବି ମନ ଇଚ୍ଛା କରୁଅଛି । ସେ ମୃଗ ପୃଷ୍ଠରେ ରୋମରାଜୀର ଶୋଭାପାଉଅଛି ଓ ମନକୁ ଲୋଭଯୁକ୍ତ କରୁଅଛି । ଗତି ବଶିଷ୍ଟ ମୃଗଦେହ ନକ୍ଷତ୍ରଯୁକ୍ତ ବିଜୁଳିପରି ଏବଂ ତାର କୃଷ୍ଣରୋମରାଜି ପୃଷ୍ଠ ନୀଳମେଘ ଖଣ୍ଡପରି । ୧ ତାରକାଜଡ଼ିତ, ନକ୍ଷତ୍ରସମୂହଯୁକ୍ତ । ୨ ରୋମ, ସମୂହ ।

୩—ସେ ମୃଗ ଗତିବେଗ ହେତୁରୁ କ୍ଷଣ କ୍ଷଣକେ ନିକଟରେ ଓ ଦୂରରେ ପ୍ରକଟ ଭାବେ ଦେଖାଦେଲା ଅତଏବ ସମସ୍ତଙ୍କ ଚକ୍ଷୁ ସବୁ ନିକଟ ଦର୍ଶକ ଓ ଦୂର ଦର୍ଶକ ଦୂରବୀକ୍ଷଣ ଯନ୍ତ୍ର ଚଳାଇ ଆଦରକୁ

ଅନ୍ତର । ଅଶ୍ୱମେଧ ଉପୁଜଇ ଯେ ।
ଚମ୍ପାନଗରର ଯେ ପାଉ ମୃଗର ଛେଦ ଏକାଳେ ବୋଇଲେ ଯେ ।୩।
ବାଜୀ କେତ ଜାଣି ଚମରୀ ଭ୍ରମଣି ଦେଖି ଅଧଦର୍ପ ହର ଯେ ।
ବାଜୀ ଗତ ପଞ୍ଚ ତୁରଙ୍ଗ ଧପଟ ୧ଲମ୍ପଟ ବଶେ ଆଦର ଯେ ।
ରାଜନେ । ଜଣେ ଜଣେ ହୋଇ ଭର ଯେ ।
୨ବାଜୀ ନ ପାବ ପାଇବ ବାଜୀ ପଛ ୩ପଙ୍କୁଧର ଯେ । ୪ ।
ହୃଦମ୍ବୁଜ ଗ୍ରାସ ହସ୍ତୀ-ସରିତ ବୃଦ୍ଧି ହେଲା ୧ସ୍ୱେଦଜଳେ ଯେ ।
ଦୀନ ହେବାରୁ ମ୍ଳାନ ହେଲା ତହିଁର ମୁଖବିଧୁ ମହୋଜ୍ଜ୍ୱଳ ଯେ ।
ତାଙ୍କର ଅପଣ-ଗନ୍ଧ ୩କବଳ ଯେ ।
ହାସ-୪ପୀୟୂଷକୁ ପାନ କରିଦେଲା ସନ୍ଧକାଳ ହୋଇ ମେଳ ଯେ । ୫ ।
ଉଙ୍କି ଘଟେ ଜନ ୩ବାହ୍ମନେ ସୁବର୍ଣ୍ଣ ବଳ-ବାନେ ଊଣା ଘେନ ଯେ ।
ଏ ଜୀବ ବିଧାତା-ବର୍ଣ୍ଣିକ ଦଶଟି ନିକଷକୁ ତେଣୁ ଭାଜନ ଯେ ।
ନୋହିଲେ । ବୋଇଲେ ଭଲା ୨ସର୍ଜନ ହେ ।
ହେମ-ସାରଙ୍ଗର ଭାଲା ଅଷ୍ଟାକ୍ଷର ବୃଦ୍ଧଘଟେ ସୁରଞ୍ଜିନ ହେ । ୬ ।

---

ଗ୍ରହଣ କର । ପୁଣି କଷ୍ଟରେ ପଡ଼ିବ ନ ପଡ଼ିବା ହେବ । ଏହି ସମୟରେ ଚମ୍ପା ନଗରର ରାଜା ବୋଇଲେ, ଅହେ ରାଜାମାନେ, ଯେ ପାଉ ସେ ମୃଗର ତାମର ଛେଦନ କର ।

୪—ସେ ଚମରୀ ମୃଗର ଭ୍ରମଣୀ, ବାଜୀ ମର୍ଦ୍ଦନରେ ଗତପର ଜଣାଯାଏ. ଯେହେତୁ ତାକୁ ଦେଖି ରାଜାମାନଙ୍କର ଅର୍ଦ୍ଧ ଦର୍ପହରଣ ହୋଇଗଲା । ବାଜିର ଗତି ଦେଖି ଘୋଡ଼ାମାନଙ୍କ ଅର୍ଦ୍ଧ ଗର୍ବ ନଷ୍ଟ ହୁଏ, ଏହା ପ୍ରକୃତ ପ୍ରସିଦ୍ଧ ଅତଏବ ରାଜାମାନେ ଲୋଭଯୁକ୍ତ ହୋଇ ଜଣେ ଜଣେ ହୋଇ ସ୍ତ୍ରୀ ଉତ୍ପର ଘୋଡ଼ାମାନଙ୍କୁ ଦୌଡ଼ାଇଲେ । ସେ ମୃଗକୁ ଶର ଛୁଇଁ ପାରିବ ନାହିଁ । ତାକୁ ଘୋଡ଼ା କାହିଁ ପାଇବ ଅତଏବ ଏଣୁ କରି ରାଜାମାନେ ଘୋଡ଼ା ପଛରେ ଖୋଟା ଲୋଭ ଧରିଥିଲା ପରି ହେଲେ । ୧ ଲମ୍ପଟ ଲୋଭୀ । ୨ ବାଜୀ, ଶର ଓ ଘୋଡ଼ା । ୩ ପଙ୍କୁ, ଖୋଟା ।

୫—ରାଜାମାନଙ୍କର ହୃଦୟରୂପକ ପଦ୍ମକୁ ତ୍ରାସ ହସ୍ତୀରୂପ ଲଜ୍ଜାରୂପକ ନଦୀ ଝାଳରୂପକ ଜଳରେ ବଢ଼ିଲା । ସେମାନେ ଦୀନ ( ଦୁଃଖିତ ) ହେବାରେ ଓ ( ବିବଶ ) ହେବା ହେତୁ ମୁଖଚନ୍ଦ୍ରର ଉଜ୍ଜ୍ୱଳତା ମ୍ଳାନ ହେଲା । ପୁଣି ଏ ସମୟ ସନ୍ଧକାଳ ( ପୂର୍ଣ୍ଣିମା ପ୍ରତିପଦର ମଧ୍ୟକାଳ ) ପରି ପ୍ରବେଶ ହେବାରୁ ଅପଣରୂପକ ରାହୁ ଗ୍ରାସକରି ହାସରୂପକ ଅମୃତ ପାନକରି ଦେଲା ଅତଏବ ମୁଖଚନ୍ଦ୍ରର ଉଜ୍ଜ୍ୱଳତା ମ୍ଳାନ ହେଲା । ୧ ଗ୍ରାସହସ୍ତୀ, ଲଜ୍ଜାନଦୀ । ୨ ସ୍ୱେଦଜଳ, ଝାଳରୂପକ ଜଳ । ୩ କବଳ, ଗ୍ରାସ । ୪ ପୀୟୂଷ, ଅମୃତ ।

୬—ଜନମାନେ ଉଚ୍ଚରେ ହସିଲେ । ଏ ରାଜାମାନେ ସୁବର୍ଣ୍ଣ ଅର୍ଥାତ୍ ଜାତି ଓ ସୁନା ଅଟନ୍ତି, କିନ୍ତୁ ବଳରୂପକ ବାନରେ ( ତେଜରେ ) ଊଣା ହେଲେ, ତାଏ, ସେହି ହେତୁରୁ ବିଧାତା ରୂପକ ବଣିଆର ଏ ମୃଗ ଜୀବରୂପକ କଷଟି ପଥରରେ କଷି ହେବାରୁ ଯୋଗ୍ୟ ହେଲେ ନାହିଁ । ପୁଣି କହୁଛନ୍ତି, ଗୃଧ ଭାଗରେ ରଞ୍ଜିତ ଅଠ ଅକ୍ଷର ଦର୍ଶିଷ୍ଟ ଏ ହେମ ସାରଙ୍ଗର ଭାଲା, ( ସୁନା ମୃଗର କେନ ) ଭଲା ସୃଷ୍ଟି କରିଅଛି । ୧ ଭାଜନ, ଯୋଗ୍ୟ । ୨ ସର୍ଜନ, ରଚନା । ୩ ବାନ୍ଧନ, ଛନ୍ଦି ।

ହସ୍ତିର । ପ୍ରକାର ହସ୍ତିନାପତି ଯେ ।
୧ଦିଗ୍ଭୂକେ ସୁବାସିଂହ ବଳମରେ ୨ଦସ୍ୟୁରେ ଲୁଚିବା ମତ ଯେ । ୧୦ ।
ନ ଦେଇ ଉତ୍ତର କୋଶଳ ନରେଶ ସହର ଗତ ଯେ ।
ମଲ୍ଲର-ଧବ ମଲ୍ଲର ପିଣ୍ଡ ଯବ ନରେଶି ଅଦ୍ଭୁତ କୃତ ଯେ ।
ସିନ୍ଧୁପ । ସିନ୍ଧୁରେ ପଶିଲା ମତ ଯେ ।
ମାହେଶ୍ୱରୀ ରାଜା ମାହେଶ୍ୱରୀ ପୂଜା ବଅର୍ଥ ଘୋଷିଲା ଶତ୍ରୁ ଯେ । ୧୧ ।
ମନ୍ଥୁ ସେ ଦଣ୍ଡ ମଥୁରା-ଭୂପ ଦର୍ପ କ୍ଷୀର ଘୃତ ଗନ୍ଧ ବହ ଯେ ।
୧ଜପଥୁ ଆନେ ନ ଗଲା କାଶୀଶ୍ୱର ୨ବେପଥୁ ପୂରିତ ନଦେହୀ ଯେ ।
କୁଣ୍ଡୀଶ । ଚଣ୍ଡୀଶ କ କଲେ କହ ଯେ ।
୪କୁନ୍ତଳ-ନାଥର କୁନ୍ତଳ ଫିଟିଲା ବନ୍ଧା ଅବକାଶ ନାହିଁ ଯେ । ୧୨ ।
କାଞ୍ଚିପତି ପାଞ୍ଚ ମହିଷୀ ଘୋଷିବ ହସି କନ୍ୟାରତ୍ନ କାହିଁ ଯେ ।
ସେ ବାଣୀ-ବାଣକୁ ପରିହାଣ କର ଅତେଣି ଖୋଜିଲେ ନାହିଁ ଯେ ।
ମିଥିଳା । ରାଜାକୁ ମନ୍ତ୍ରିଲା ଚହିଁ ଯେ ।
ଏ ଚନ୍ତା ମୁଁ ଯାଗ ଧର୍ମ କର ଆଗ ଅସିଥିଲି କାହିଁପାଇଁ ଯେ । ୧୩ ।

---

ସମାନ ବର୍ତ୍ତିତା ଅଛି । ଅତଏବ ସେ ତୋରପଥ ଗତକୁ ବଳା ଅର୍ଥାତ୍ ପଳାଇଲା । ହସ୍ତିନା ରାଜାର ସୁବାସିଂହ ପୃଷ୍ଠକେତୁର ବଳମରେ ହସ୍ତିପତି ସ୍ତବ ହୋଇ ପଂଚକଦସ୍ୟୁରେ ଲୁଚିବାକୁ ମନକଲା । ୧ଦିଗ୍ଭୂକେ କ୍ଷଣହୋଇ । ୨ଦସ୍ୟୁ, ଚୋର ତସ୍କର ।

୧୧—ଉତ୍ତର କୋଶଳରାଜା କିଛି ଉତ୍ତର ନଦେଇ ଅର୍ଥାତ୍ ଭୂତ ହୋଇ ଶୀଘ୍ର ଗମନ କଲେ । ମଲ୍ଲର ପରଦେଶର ରାଜା ସେ ଅଦ୍ଭୁତ କାର୍ଯ୍ୟ ଦେଖି ମୂର୍ଦ୍ଧାରେ ଯବ ଧାରଣ କଲେ ଅର୍ଥାତ୍ କର୍ତ୍ତବ୍ୟ ମୂଢ଼ ହେଲେ । ସିନ୍ଧୁ ଦେଶର ରାଜା ସମୁଦ୍ରରେ ପଶିଲାପରି ଅଚେତନ ହେଲେ । ମାହେଶ୍ୱରୀ ପ୍ରଦେଶ ରାଜା ନିଜର ଦୁର୍ଗା ପୂଜା ବିଫଳ ହେଲାବୋଲି ମନରେ ଭାବିଲେ । ୧ମାହେଶ୍ୱରୀ, ଦୁର୍ଗା ।

୧୨—ସେ ଅପମାନ ରୂପକ ଦଣ୍ଡ ମନ୍ଥନ କରିବାରୁ ମଥୁରା ରାଜାଙ୍କ ଦର୍ପ ରୂପକ ଦୁଗ୍ଧ ଦଧିଘୃତ ହୋଇ ବହିଗଲା । କାଶୀରାଜା କମ୍ପଯୁକ୍ତ ଦେହ ହୋଇ ଅବାଟରେ ଚାଲିଗଲେ । କୁଣ୍ଡୀ ପ୍ରଦେଶର ରାଜା କହିଲେ, ଅହୋ ଶିବ କି କଲେ ? କୁନ୍ତଳ ଦେଶ ରାଜାଙ୍କର ଫିଟିଲା କେଶ ବାନ୍ଧିବାର ଅବସର ହେଲାନାହିଁ, ସେ ପଳାଇଲେ । ୧ଜପଥ, ଅବାଟ । ୨ବେପଥୁ, କମ୍ପ । ୩ଚଣ୍ଡୀଶ, ଶିବ । ୪କୁନ୍ତଳ, ଦେଶବିଶେଷ ଓ କେଶ ।

୧୩—କାଞ୍ଚୀ ପ୍ରଦେଶର ରାଜା ମନରେ ପାଞ୍ଚିଲେ, ଘରକୁ ଗଲେ ଅମ୍ଭ ପାଟରାଣୀ ହସିକରି କହିବେ । ଯାହାପାଇଁ ଯାଇଥିଲ, ସେ କନ୍ୟାରତ୍ନଟି କାହିଁ ? ରାଣୀଙ୍କର ସେ ବଚନରୂପକ ବାଣକୁ ବଞ୍ଚାଇବାକୁ ଅତେଣି ଖୋଜିଲେ ଅବକାଶ ନାହିଁ । ମିଥିଳା ରାଜାଙ୍କ ସେଠାରେ ଏହି ଚିନ୍ତା ମନେ ପଡ଼ିଗଲା । ମୁଁ ଯାଗ ଧର୍ମ କରି ଅଗ ଅସିଥିଲି କାହିଁକି ?

ଶଙ୍କାସନ-ଇନ ୧ଶଙ୍କା ଭ୍ରମନାତେ ମାଧ୍ୱେଚ ପଶ୍ଚରେ ସଞ୍ଜ ହେ ।
୨ଶ୍ରୀକଲେବରନ୍ଧ ୩ନଗରେ ନଗରେ ଶବର ଟେଣ୍ଡ ରଚି ହେ ।
୪ଉର୍ଦ୍ଧ୍ୱକୁ । ଉତ୍କଳପ୍ରିୟାପତି ମୁଞ୍ଜ ହେ ।
୫ଚନ୍ଦ୍ରାଇଣ ଶୂରକ ଗଣିକାଶୂରଙ୍କ ମଧ୍ୟେ ମରୁପତି ଲୁଚି ହେ । ୧୪ ।
ଋଷିନଗରେଣ ରୂଷିଲା ମହୀଲା ଦ୍ରାବ୍ଧ ନଷ୍ଟମୁଖେ ଯାଏ ହେ ।
ବଜ୍ରପୁରନାଥ ପାଦେଶ ବଜ୍ରପାତ ହେଲା ପରି ମୋହ ପାଏ ହେ ।
ନାଶ୍ରୟ । ଷଟ୍ପଦବସ୍ଥେ ହେ ।
କେତକୀ ଲକ୍ଷ୍ୟ ସଙ୍ଗ ଲୋଡ଼ି ବାହୁଡ଼ି ଉଡ଼ି ଚଳାଇଲା ପ୍ରାଣେ ହେ ।୧୫।
ନେପାଳପାଳ କପାଳେ ହସ୍ତ ମାରି ଗଲା ପୁର ପର୍ଯ୍ୟନ୍ତେ ହେ ।
କେରଳଇଶ କେରଳ ବେଶ ଧରି ଯାଇ ନ ପାରେ ତ୍ୱରିତେ ହେ ।
ଉତ୍କଳ । ଶୁଣାହିଁ ଉତ୍କଟ ହସନ୍ତେ ହେ ।
ଅଧିକ ନୃପେ ଏରୂପେ ଦର୍ପ ଧିକ ସାମାନ୍ୟ ଜନ୍ମବା କେବନ୍ତ ହେ । ୧୬ ।
୧ଲଗ୍ନକ ପ୍ରହାରେ ଗୋଟିଗୋଷ୍ଠ ସମାନେ ଅଭିମାନେ ପଳାଇଲେ ହେ ।
୪ଛଟିତ ୨କୁକୁଟି ପ୍ରଧାବିଲେ ପରି ୩ବେଣୁ ଅନ୍ଧକାରେ ହେଲେ ହେ ।
ଏଣୁକେ । କାହା ମୁଖ ନ ଲୁହିଁଲେ ହେ ।
୪ବ୍ରୀଡ଼ା-ପୀଡ଼ା ଜୀଡ଼ା ଅଧିକେ ନୋହିଲା ପ୍ରଳୟେ ଅନ୍ତ ପାଇଲେ ।୧୭।

---

୧୪—ଚମତ୍କାର ଶ୍ରାବଣରେ ମାଣବ ଉପ୍ର ଜଣେ ଶଙ୍କାସନ ଦେଶର ରାଜା ମନରେ ଶଙ୍କା ଖାଇଲେ । କାଞ୍ଚୀର ରାଜା ଦେହପର ଦେହେ ଟଡ଼ କଲେ । ଉତ୍କଳପ୍ରିୟ ରାଜା ଉଷ୍ମାହତ ହୋଇଲେ । ମରୁ ଦେଶର ରାଜା ଭୟାକ୍ରାନ୍ତ ହୋଇ ବେଶ୍ୟା ସ୍ତ୍ରୀମାନଙ୍କ ମଧ୍ୟରେ ଲୁଚିଲେ । ୧ଭୟ, ଗ୍ରାସ । ୨ଶ୍ରୀକଳେ-ବର କାନ୍ଦର ଘନା । ୩ନଗରେ ପଞ୍ଚମ । ୪ଉର୍ଦ୍ଧ୍ୱ, ଉପର । ୫ସ୍ୱାନ୍ତର ଭୟାକ୍ରାନ୍ତ ।

୧୫—ଦ୍ରୂଷଣଦେଶ ରାଜା ବୁଝିଥିବା ସ୍ତ୍ରୀପର ଲେକ ନୁହଁ ଯୋଉଗଣ । ବଜ୍ରପୁର ରାଜା ଧ୍ୱଜରେ ବଜ୍ରପାତ ହେବାପରି ମୋହକୁ ପାଇଲେ । ଭ୍ରମରକେଶମଣ୍ଟଳୀ ସଙ୍ଗଲୋଡ଼ି ତାହା ନ ପାଇ ଉଡ଼ିବାପରି ଷଟ୍ପଦ ରାଜା ଏ ସୁନ୍ଦରୀ ସଙ୍ଗଲୋଡ଼ି ଭ୍ରମର କାନ୍ତି ନ ପାଇ ବାହୁଡ଼ିଗଲେ । ୧ ଷଟ୍ପଦ, ଭ୍ରମର ।

୧୬—ନେପାଳ ରାଜା ନିଜ ନିଜଭାଗ୍ୟ କପାଳରେ ହାତମାରି ନଗର ଯୋଇଗଲେ । କେରଳ ଦେଶ ରାଜା କେଳାବେଶ ଧାରଣକରି ବେଗରେ ଯାଇ ପାରିଲେ ନାହିଁ । ଉତ୍କଳଦେଶ ରାଜା ଉତ୍କଟ ଗର୍ବନାଶ ହେବାରୁ ଶୀଘ୍ର ଯାଇ ପାରିଲେ ନାହିଁ । ବଡ଼ ରାଜାମାନେତ ଏପରି ଉଦ୍‌ବେଗ ହେଲେ, ଅଉ ସାଧାରଣ ରାଜାମାନଙ୍କ କଥା ଅବା କଣ କେତେ କହିବା ।

୧୭—ଲଗୁଡରେ ପ୍ରହାର କଲେ ଗାଈ ଗୋଠ ଯେପରି ଉଦ୍ଧୃତ ପଳାନ୍ତି, ସେପରି ରାଜାମାନେ ଅନେକ ଦେଖୁ ପଳାଇଲେ । ହଠାତ୍ କୁକୁଡ଼ମାନେ ଅଡ଼ିଲାପରି ଉଡ଼ିଥିବାରୁ ବଂଶରନ୍ଧ୍ରକାରରେ ପଡ଼ିଲେ (ଏଣୁ) ଅତଏବ କେହି କାହାର ମୁହଁ ଦେଖି ପାରିଲେ ନାହିଁ । ଯେପରି ପ୍ରଳୟରେ ସମସ୍ତେ ଅନ୍ତ ପାଇଯାନ୍ତି, ସେହିପରି ସେମାନେ ପାଇ ପାଇଲେ ଲଜ୍ଜାହେତୁକ ଦୁଃଖ ଲଜ୍ଜା ଅଧିକ ହେବା ନାହିଁ । ୧ଲଗୁଡ଼ ଲଉଡ଼ି । ୨କୁକ୍କୁଟୀ, କୁକୁଡ଼ି । ୩ବେଣୁ, ବାଉଁଶ । ୪ବ୍ରୀଡ଼ା, ଲଜ୍ଜା । ୫ଅନ୍ତ, ଶେଷ ।

୧ସୁମନ-ଧନୁ-ଶରେ ଶୋଭା ପ୍ରକାଶ ପ୍ରଭା ୨ଶିଖୀରେ ପୁଣି ଯେ ।
କୁମାରଙ୍କୁ ୩ମାର କୁମାର କରଣ ସମସ୍ତେ ଚିତ୍ତରେ ଗୁଣି ଯେ ।
ମାଳଶ୍ରୀ । ନୃପତି ଆଦରେ ଆଣି ଯେ ।
ନେଲେ ଘର କରି ଗମନ ସକଳ ପ୍ରସାରଣ ଦେଇ ପାଣି ଯେ । ୧୮ ।
ବାଜନ୍ତ ଅସଂଖ୍ୟ ଶଙ୍ଖ ମଧୁର ହେ ମାଧୁରୀ ମଙ୍ଗଳରାଗେ ଯେ ।
ଅନ୍ତଃପୁରକୁ ୧ପୁରନ୍ଧ୍ରୀ ସଇରନ୍ଧ୍ରୀ ହସ୍ତେ ଦେଇ ନେଲେ ବେଗେ ଯେ ।
ସେ ପଞ୍ଚ । ମଦ୍ଦଳୀ ୨ଯୋଗିନୀବର୍ଗେ ଯେ ।
ଦେଖାଇ ବୋଇଲେ ହେ ବରବର ବରବରନାକୁ ଯୋଗେ ଯେ । ୧୯ ।
ବାଳା ୧ଶତଦଳ-ଦଳନ-ନୟନ ଦଉ ଥାଉ ଆସିବାରେ ଯେ ।
ଗମନ ପ୍ରବେଶ ଏ ଶଢେ ୨ନବେଶ ନବେଶେ ୩ଶ୍ରୁତି ସଧୀରେ ଯେ ।
ମନରେ । କେରେ ଏ କାମେ କାଶୀରେ ଯେ ।
୪କରିବ ନୋହେ ଦେଇ କେତେ କାଳ କି ସ୍ତବ କରନ୍ତି ୫ହରେ ଯେ । ୨୦ ।
ଦିବସ ଶେଷ ୧ଯାମିନୀ ପରବେଶ ତମୋମାରୁଦ ତମ ହରି ଯେ ।
ଏକାଳେ କୁମାର ସଚ୍ଚିଦାନନ୍ଦ ନୃପ ସଙ୍ଗେ ସଭା ଶୋଭା କରି ଯେ ।

---

୧୮—ପାଇକାର ପୁଷ୍ପରେ ଓ ଧନୁ ଶରରେ ଶୋଭା ଓ ଘୋଡ଼ା ଉପରେ ପ୍ରଭାକୁ ପ୍ରକାଶ କରୁଥିବାରୁ କୁମାର ପୁଷ୍ପ କେତୁକ ସମସ୍ତେ କନ୍ଦର୍ପ ଓ କାର୍ତ୍ତିକେୟବୋଲି ମନରେ ବଣ୍ଣିଲେ । ଯେହେତୁ କନ୍ଦର୍ପ ଫୁଲ ଧନୁଶରରେ ଶୋଭା ପ୍ରକାଶ କରୁଥାଏ ଓ କାର୍ତ୍ତିକେୟ ମୟୂର ଉପରେ ପ୍ରଭା ପ୍ରକାଶ କରୁଥାନ୍ତି । ତତ୍ପରେ ରାଜାକୁମାରଙ୍କୁ ସମାଦରରେ ଆଣିଲେ, ମନ୍ତ୍ରୀ ପୁରୋହିତ ପ୍ରଭୃତି କୁମାରଙ୍କ ହାତଧରି ଗମନ କଲେ । ୧ସୁମନ, ପୁଷ୍ପ । ୨ଶିଖୀ, ଘୋଡ଼ା ଓ ମୟୂର । ୩ମାର, କନ୍ଦର୍ପ । କୁମାର କାର୍ତ୍ତିକେୟ ।

୧୯—ମଙ୍ଗଳ ରାଗରେ ମଧୁର ଅନେକ ଶଙ୍ଖ ଓ ମହୁରି ବାଜିଲା । ପୁରୋହିତ ଶିଳ୍ପକାରିଣୀ ସ୍ତ୍ରୀ ହାତରେ ସେ କୁମାରଙ୍କୁ ଅନ୍ତଃପୁରକୁ ପଠାନ୍ତେ, ସେ ବେଗରେ ନେଇ, ଏବଂ ପାଟରାଣୀ ଓ ଅନ୍ୟାନ୍ୟ ରାଣୀମାନଙ୍କୁ ତାହା ଦେଖାଇ କହିଲା । ବରବର୍ଣ୍ଣିନୀ କେମାନଙ୍କୁ ସୁଯୋଗରେ ଉଲ୍ଲସିତ ହେଲେ । ୧ପୁରନ୍ଧ୍ରୀ, ପୁରୋହିତ । ସଇରନ୍ଧ୍ରୀ, ଶିଳ୍ପକାରିଣୀ ସ୍ତ୍ରୀ । ୨ଯୋଗିନୀ, ପାଟରାଣୀ ରାଜରାଣୀ ।

୨୦—ବାଳାରାଜକୁମାରୀ ପଦ୍ମନୟନାଠାରୁ ଅଧିକ ସୁନ୍ଦର ନାନା ଅଙ୍ଗର ଥାଇ ରାଜପୁତ୍ର ଆସିବାରୁ ଡେଇଥିଲେ, ଅର୍ଥାତ୍ ଗର୍ବ କରିଥିଲେ । ଗମନ ପ୍ରବେଶ ହେଲା, ଏହି ଶବ୍ଦରେ ନବନବେଶ ହୋଇ ଚିନ୍ତାରେ ବାନ୍ଧ ହେଉଥିଲେ । ଏହା ମନରେ ବିଚାରି କଲେ, ଯେ ବୋଧ ହୁଏ ମୁଁ ଏହି ସୁନ୍ଦର କାମନାରେ କାଶୀ କ୍ଷେତ୍ରରେ ଶିବଙ୍କୁ ଧୂତୁରା ଫୁଲ ଦେଇ କେତେ ସ୍ତୁତି କରିଛି । ଏହା ମିଥ୍ୟା ନୁହେଁ । ୧ଶତଦଳ, ପଦ୍ମ । ୨ନବେଶେ, ନବେଶ କଲେ (ଡେଇଲେ) । ୩ଶ୍ରୁତି, କାନ । ୪ହେତେ, ମିଥ୍ୟା ଓ ଧୂତୁରା ଫୁଲ । ୫ହରେ, ଶିବଙ୍କୁ ।

୨୧—ଦିବସଶେଷ ହେଲା, ରାତି ଆସିଲା ଚନ୍ଦ୍ର ଓ ପ୍ରଦୀପାଦିଙ୍କର ଅନ୍ଧକାର ନାଶ ହେଲା । ଏହି ସମୟରେ କୁମାର ପୁଷ୍ପ କେତୁ ସଚ୍ଚିଦାନନ୍ଦ ରାଜାଙ୍କ ସଙ୍ଗରେ ସଭାକୁ ଶୋଭିତ କରିଲେ । ସ୍ତ୍ରୀ ଓ ପୁରୁଷମାନେ ସେଠାରେ ପୂର୍ଣ୍ଣ ହୋଇ ଦେଖୁଥିଲେ । ଅଙ୍ଗଣାରେ ବେଶ୍ୟା ଓ ନଟୁଆମାନେ ଗୀତ ନାଟ ପ୍ରଭାତ

ଦେଖନ୍ତି । ³ପ୍ରମଦା ପୁରୁଷ ପୂର ହେ ।
ଚହଟରେ ସହରେ ⁴ବାରବାମାବାର ନର୍ତ୍ତକୀ ⁵କନ୍ତ୍ୟ ପ୍ରବୃତ୍ତ ଯେ ।୧୨
କବା ସେ ମେନା ଉର୍ବଶୀ ତିଲୋତ୍ତମା ରମ୍ଭାଦ ମଣ୍ଡେ ¹ଥବନ ଯେ ।
ମର୍ଦ୍ଦଳସ୍ୱନକୁ ବହଲ ଜନକୁ ²ବନ୍ଧ କହ ନଷ୍ଟେ ମାନ ଯେ ।
ହେଲ ସେ । ମହା ଉଦ୍ଦୀପକସ୍ଥାନ ଯେ ।
ଗାୟକେ କ ମୂର୍ତ୍ତିମନ୍ତ ହାହା ହୁହୁ ହା କର ସଙ୍ଗେ ଯେନ ଯେ ।୧୩
ସେ କ କଇଲାସ ତାଳରେ ପ୍ରକାଶ ଅଦ୍ଭୁତ ମନ ମୋହ ଯେ ।
ଶୋଭନ୍ତି ସାଙ୍ଗ ସିଦ୍ଧ ମଠାଲିଙ୍ଗନ ଜ୍ଞାନଝମ୍ପା ରୂପକହିଁ ଯେ ।
ତ୍ରିପୁଟା । ଏକତାଲି ଯୁକ୍ତ ତାହିଁ ଯେ ।
ସରମାନ ଅଡ୍ଡ଼ଶିବ ବଚନରେ ଗଉସ୍ତ ପ୍ରକଟ ଯହିଁ ଯେ ।୧୩।
ବଦତ ହିକ୍ମନନ୍ଦନ ପୁଣି ନଳକୁବର ବିଳାସ ଇଚ୍ଛି ଯେ ।
ନାନ୍ଦୀ ପ୍ରମୁଖରେ ଶ୍ଳୋକ ବଖ୍ୟାତରେ ଲଘୁ ଗୁରୁ ଉପୁଜନ୍ତି ଯେ ।

---

ଜଳେ । ୧ ଯାନିଲ, ଗତ । ୨ ତମୋନ୍ମୁଦ, ଧଣ୍ଡାର ବନାଶକ । ୩ ପ୍ରମଦା, ସ୍ତ୍ରୀ । ୪ ବାରବାମା, ବେଶ୍ୟା । ୫ନର୍ତ୍ତକୀ, ନାଚୁଥ ।

୧୨—ସେ ବେଶ୍ୟାମାନଙ୍କୁ ଦେଖି ଏହା ମନେହେଉ, ମେନା, ଉର୍ବଶୀ, ତିଲୋତ୍ତମା, ଓ ରମ୍ଭା ପ୍ରଭୃତି ଅପ୍ସରମାନେ ଅସି ପୃଥିବୀକୁ ଶୋଭିତ କରୁଅଛନ୍ତି କି ? । ମର୍ଦ୍ଦଳ ବଜାଇବା ସେବକୁ ବଧାଇ ବୋଲି ଲୋକମାନେ ମାନଲେ । ସେଠା ଅତଏବ କାମ ଉଦ୍ଦୀପକ ସ୍ଥାନ ହେଲା । ସ୍ୱର ଲୟବଶରୁ "ହାହା" ଉଚ୍ଚାରଣ କରୁଥିବା ଗାୟକମାନଙ୍କୁ ହାହା ଓ ହୁହୁନାମକ ଗନ୍ଧର୍ବ ବୋଲି ଲୋକମାନେ ବିଚାରିଲେ । ୧ଥବନ, ପୃଥ୍ୱୀ । ୨ବନ୍ଧ, ବଧାଇ । ବ୍ରହ୍ମା ମର୍ଦ୍ଦଳ ବାଦକମାନଙ୍କ ମଧ୍ୟରେ ଶ୍ରେଷ୍ଠ ।

୧୩—ସେହି ସଙ୍ଗୀତସ୍ଥଳ କୈଳାସ ପର୍ବତ କି ? କୈଳାସ ତାଳ ବୃନ୍ଦରେ ପ୍ରକାଶିତ, ଅଦ୍ଭୁତ ଗଣେଶଙ୍କ ମନମୋହିତ କରୁଅଛି । ଯେଉଁଠି ସାରୀମାନେ ସହମଠ ଆଲିଙ୍ଗନକର [ଉଚ୍ଚମାନଙ୍କ ମଠରେ ରହି ଜ୍ଞାନ ଝମ୍ପା ରୂପ ଜାତିକୁ ଧାରଣ କରାଇଛି] କରୁଅଛନ୍ତି । ତାହିଁ ତ୍ରିପୁଟା (ଶ୍ରେଷ୍ଠ ଅଳାଇତ) ଏକତାଳୀ ଚର୍ଚ୍ଚିତ ଏବଂ ଯୁକ୍ତ ହୋଇଅଛି । ଯହିଁରେ ଗୌରିଙ୍କ ଉପରେ ଅଡ୍ଡ (ଅଡ୍ଡବା) ଶିବଙ୍କ ଚାଟୁବଚନରେ ସ୍ୱର [ ଦୂରହେବା ] ପ୍ରକଟ ହୋଇଅଛି । ସଙ୍ଗୀତ ସ୍ଥଳ ତାଳରେ ପ୍ରକାଶିତ । ଅତଏବ ଅଙ୍ଗ ଓ ଯତ ତାଳମାନଙ୍କୁ ମୋହିତ କରୁଅଛି । ନଶାଦ ତାଳ ଶୋଭିତ ହୋଇଅଛି । ମଠତାଳ ଆଲିଙ୍ଗନ କରଅଛି । ଅର୍ଥାତ୍ ଯୁକ୍ତ ହୋଇଅଛି । ଏହା ଡିଙ୍କ [ନସ୍ତିତ] । ଝମ୍ପା ଓ ରୂପକ ତାଳର ଜନ ହେଉଅଛି । ତାହିଁ ତ୍ରିପୁଟା ଏକତାଳୀ, ସରମାନ, ଅଡ୍ଡ (ଅଡ୍ଡତାଳ) ଯୁକ୍ତ ହୋଇଅଛି । ଯେଉଁଠାରେ ଗୌରୀଙ୍କରେ ଶିବ ମଙ୍ଗଳ ବଚନ ପ୍ରକାଶ କରିବାରେ ଏକତାଳ ପ୍ରକଟ ହୋଇଅଛି ।

୧୪—କୈଳାସରେ ଶିବପାର୍ବତୀଙ୍କ ବାହନ ଓ ନନ୍ଦନ କାର୍ତ୍ତିକେୟ ଚଢ଼ି ଅଛନ୍ତି । ପୁଣି କୁବେର ପୁତ୍ର ନଳକୁବର ବିଳାସ (କ୍ରୀଡ଼ା)କୁ ଇଚ୍ଛାକଲେ । ନାନ୍ଦ ପ୍ରମୁଖରେ ( ସ୍ତୁତି ଆରମ୍ଭରେ ) ଶ୍ଳୋକ ବଖ୍ୟାତ କରିବାରୁ ଗୁରୁ ଓ ଲଘୁବର୍ଣ୍ଣମାନ ଉପୁଜୁଅଛି ଅର୍ଥାତ୍ ଉଚ୍ଚାରିତ ହେଉଥାଏ । ତହିଁରେ ଦ୍ରୁତ (ଲଘୁ) ଦ୍ରୁତ ( ଶୀଘ୍ର ) ଓ ବିରାମ ( ବିଶ୍ରାମ ) ରହୁଥାଏ । ଏଠାରେ ମଧ୍ୟ ଶିବନନ୍ଦନ ତ.ଲ

ହିମାଂଶୁ । ଦ୍ୟୁତିରେ ବିଷମ ଅଛୁ ଯେ ।
ନଭପ୍ରାପ୍ତ ପଞ୍ଚ ଷଷ୍ଠ ଅଷ୍ଟକଳା ଚନ୍ଦ୍ରବିମ୍ବ ପ୍ରକାଶୁଛୁ ଯେ । ୨୪ ।
କି ଅଯୋଧ୍ୟା ରାମ ଲକ୍ଷ୍ମଣ ବହନ୍ତେ ସେ ବାଦକକୁଳେ ଅଗମ୍ୟ ଯେ ।
ଶୁଦ୍ଧ ସାଲଗ ରାଗ୍ୟା ଲଗ ବିଧିତର ମୂଢ଼ର ନିଦାନ ଧାମ ହେ ।
ଆହତ । ନାହତ ଚକ୍ରଭେଦନେ କ୍ଷମ ଯେ ।
ମେଦିନୀ-ନନ୍ଦିନୀ ପାବନୀ ସାଧ୍ୱିନୀ ତାରାବଳୀ ଯୁକ୍ତେ ରମ୍ୟ ଯେ । ୨୫ ।
ତାର ମନ୍ଦାର ଘୋର ଗ୍ରାମସାରରେ ପୁଣି ଇନ୍ଦ୍ରପ୍ରସ୍ଥ ସମ ହେ ।
ନିଷାଦ ଋଷଭ ପ୍ରଗୁର ସେବିତ ଅଟେ ଗାନ୍ଧାର ମଧ୍ୟମ ଯେ ।
ଷଡ୍ଜ । ସୁଧୈବତ ପଞ୍ଚମ ଯେ ।
ମଞ୍ଜୁ ଶବ୍ଦକଳା ଶବ୍ଦପଦା ଧ୍ରୁବପଦା ପାଞ୍ଚାଳୀ ସଙ୍ଗମ ଯେ । ୨୬ ।

---

ବଦତ ହୋଇଅଛି । କେହି ହିଲ ବୃହର (ପୂର୍ବାବାଦ୍ୟ) ବଜାଇ ବଳାସ ଇଚ୍ଛାକରୁଅଛି । ଗାୟକମାନଙ୍କର ଗାନ୍ଧୀଭାନ ଅବସ୍ଥରେ ଶ୍ଳୋକ ବକ୍ତୃତ କହିବାରେ ସୂକ୍ଷ୍ମ ଓ ଲଘୁସ୍ୱର ମଧ୍ୟ ଜାତହେଉଅଛି । ତହିଁରେ ମଧ୍ୟ ଅତଶର୍ବ ତାଳ ଓ ବଶ୍ରାମ ମଧ୍ୟ ହେଉଅଛି । ପୁଣି ସେ ସ୍ଥାନ (ନଭ) ଅବକାଶପ୍ରାପ୍ତ ହୋଇଅଛି । ଅବାଶ ପାଞ୍ଚ ଓ ଛ ଏବଂ ଅଠକଳା ବଶିଷ୍ଟଚନ୍ଦ୍ର ପ୍ରକାଶ କରୁଥାଏ ସେଠାରେ ଚନ୍ଦ୍ରବମ୍ବପର ଗିନ ବା ଷଷ୍ଠଶୀ ପାଞ୍ଚ, ଛ ଓ ଅଷ୍ଟକଳାକୁ ପ୍ରକାଶକରୁଅଛି ।

୨୪—ସେ ସଙ୍ଗୀତ ସ୍ଥଳ ଅଯୋଧ୍ୟା କି ? ରାମ ଓ ଲକ୍ଷ୍ମଣ ବହୁଥାଏ । ବାଦକ କୁଳେ (ଶତ୍ରୁମାନଙ୍କ ଦ୍ୱାରା ଅଗମ୍ୟ ଯେହେତୁ ଶୁଦ୍ଧ ସଙ୍ଗୀତର ଦ୍ୱାରା ସଂଲଗ୍ନ ବଳାକରେ [ସ୍ୱ] ବଡ ଢ଼ଙ୍ଗ ହେଉଥାଏ । ନିଦାନ (ଅବସାନାଙ୍କର) ଧାମ (ସ୍ଥାନ ଅଟେ । ଚକ୍ରଦ୍ୱାର ଶୃଙ୍ଖଳ ଓ ଅଶୃଙ୍ଖଳ ପଟାବାରେ ସମର୍ଥ ହୋଇଥାଏ । ସାଧ୍ୱୀ (ପ୍ରଭାବତୀ) ପାବନୀ (ପବିତ୍ରା) ମେଦିନୀନନ୍ଦିନୀ (ସୀତା) ତାରାବଳୀ (ମୁକ୍ତାବଳୀ) ରେ ଯୁକ୍ତ ହେବାରୁ ମନୋହର ହୋଇଥାଏ । ସେ ସଙ୍ଗୀତ ଯେଉଁ ରାମ ଲକ୍ଷ୍ମଣ (ମନୋହର ଲକ୍ଷଣ) ମାନ ବହୁଥିଲା, ତାହା ଅନ୍ୟ ବାଦକକୁଳେ (ବାଦ୍ୟବାଦମୋନଙ୍କର) ଅଗମ୍ୟ (ଅଗୋଚର) ଅଟେ । ଶୁଦ୍ଧ ସାଲଗ, ରାଗ୍ୟା, ଲଗ, ସ୍ୱର, ପ୍ରଭୃତିଙ୍କର ମୂଳକାରଣ ପ୍ରକାଶକ ସ୍ଥାନ ଅଟେ । ଆହତ ନାହତ (ଜାତ ଓ ଅଜାତ) ଚକ୍ରରେ କ୍ଷମହୋଇ ମେଦିନୀ, ନନ୍ଦିନୀ, ପାବନୀ ସାଧ୍ୱୀ ଓ ତାରାବଳୀ ପ୍ରଭୃତି ଲକ୍ଷଣରେ ଯୁକ୍ତହେବାରୁ ମନୋହର ହୋଇଅଛି । ଶୁଦ୍ଧସାଲ ରାଗ୍ୟା, ଶୁଦ୍ଧ ପ୍ରାଚୀନ-ଗତପ୍ରଭ ୨ କେତନେ, ପତାକାରେ ଓ ପଦ୍ମରେ ।

୨୬—ଭଦ୍ର, ଗମ୍ଭୀର ଓ ଘୋର ସ୍ୱର ସମୂହର ପ୍ରାଧାନ୍ୟରେ ପୁଣି ଇନ୍ଦ୍ରପ୍ରସ୍ଥ ହୋଇଅଛି । ସେଠାରେ ଋଷଭ ଅର୍ଥାତ୍ ବୃଷପତବାଚ୍ୟ ଧର୍ମ (ଯୁଧିଷ୍ଠିର) ଓ ନିଷାଦ (ଶୃଗାଳ) ପତି ପ୍ରଭୃତି, ଗାନ୍ଧାର ସେବିତ ମଧ୍ୟମ (ଶକୁନ ସେବିତ ଅର୍ଜୁନ) ଷଡ୍ଜ (କାର୍ତ୍ତିକେୟ) ଙ୍କର ଅପଭ୍ରଂଶ କୁମାର ପାଦବାଚ୍ୟ ନକୁଳ, ଓ ଉତ୍ତମ ସ୍ୱଧ (ସୁଧୀ) ଧୈର୍ଯ୍ୟ ସହଦେବ, ଏମାନଙ୍କର (ପ୍ରଚୁର) ପ୍ରକାଶ ହୋଇଥିଲା ଏବଂ ଶବ୍ଦପଦା ଶବ୍ଦକଳା ଧ୍ରୁବପଦା ସଙ୍ଗୀମାନଙ୍କ ସହିତ ମୃଦଙ୍ଗ ପାଞ୍ଚାଳୀ (ଦ୍ରୌପଦୀ) ଥାନ୍ତି । ଏଠାରେ ଋଷଭ, ନିଷାଦ, ଗାନ୍ଧାର, ମଧ୍ୟମ, ଷଡ୍ଜ, ଧୈବତ, ଏବଂ ପଞ୍ଚମ ସ୍ୱରମାନଙ୍କର ପ୍ରଚୁର ସେବିତ ହୋଇଅଛି ଏବଂ ମଞ୍ଜୁଳ ଶବ୍ଦକଳା, ଶବ୍ଦପଦା, ପାଞ୍ଚାଳୀ ଆଦିଙ୍କର ସଙ୍ଗମ ହୋଇଅଛି ।

ମଥୁରା ବୈଷ୍ଣବ ଭାବ ଲକ୍ଷ୍ୟ ଧରେ ସାବଶ ଭ୍ରୂରଙ୍ଗ ଖ୍ୟାତ ଯେ ।
ଗୋପୀକର କୃଷ୍ଣ ସ୍ଥିତ ସେ ନାୟକ ଉଚ୍ଛନ୍ନବୃତ ଯେ ।
ସମସ୍ତ । ଚତୁର ନାୟିକା ବନ୍ଧିତ ଯେ ।
ନର୍ତ୍ତକୀ ଅଙ୍ଗେ ତରଙ୍ଗ ଭଙ୍ଗୀକ ବାଦ୍ୟ ସଭିତ ସଙ୍ଗତ ଯେ । ୧୭ ।

ରାଗଜନରୁଁ ସନ୍ଧ୍ୟା ଜାତ ଋତୁମଣ୍ଡଳରେ ଅତି ପ୍ରଧାନେ ଯେ ।
ବସନ୍ତ ବଖ୍ୟାତ ସୋମ ପ୍ରମୋଦିତ ଉତ୍ଫୁଲ୍ଲ ଦେଖ ସୁମନେ ଯେ ।
କେଦାର । ପୂର୍ଣ୍ଣିତ ଉପରେ ଘନେ ।
ଭୈରବ ଧର୍ମ ପ୍ରକାଶ କଳହଂସ ମାଳସ ଭେଦ କ୍ଷଣେ ଯେ । ୧୮ ।
ଆଗେ ପ୍ରସରିବା ଅପସରିବା କ ପୁଷ୍ପନାକ୍ଷୀ ଉଚ୍ଚ ବାଞ୍ଛିତ ଯେ ।
ଅଳକା ୨ ଅଳିଅଳୀ କ ପାନ କେତେ କଟେ ସ୍ୱପ୍ନ-ମଧୁ ଜାଚିତ ଯେ ।

---

୧୭—ବୈଷ୍ଣବଭାବ ( ଉତ୍କୃଷ୍ଟ ସମ୍ପଦ ) ମଥୁରାର ଲକ୍ଷ୍ୟକୁ ଧାରଣକରିଅଛି । ମଥୁରାରେ ଗୋପୀଙ୍କର କୃଷ୍ଣ ନାୟକରୂପେ ସ୍ଥିତହୋଇ ବଖ୍ୟାତ (ସାବଶ) ପାପୀ କଂସ ଓ ଭ୍ରୂରଙ୍ଗ ଦେଶୀୟ ଦୈତ୍ୟମାନଙ୍କୁ ଉଚ୍ଛନ୍ନବୃତ ( ଧ୍ୱଂସ କରିଥିଲେ ) ଏବଂ ନାୟିକାମାନଙ୍କୁ ଛଳ କରିଥିଲେ । ସେ ମଧ୍ୟ ଚତୁର ନାୟକ ବ୍ୟବହାର କରିଥିଲେ । ଏଠାରେ ସାବେରି ଓ ଭ୍ରୂରଙ୍ଗ ରାଗିଣୀ ଖ୍ୟାତ ହୋଇଅଛି, ଗୋପଗଣାରେ କୃଷ୍ଣ ନାୟକରୂପେ ବର୍ଣ୍ଣିତ ହେଉଥିବାରୁ ସେ ନାଟ ସମସ୍ତ ନାୟିକାମାନଙ୍କୁ ବନ୍ଧନ କରୁଅଛି । ସେ ସବୁବିଧ ପ୍ରକାର ବାଦ୍ୟରେ ବେଷ୍ଟିତ ହୋଇଅଛି । ନର୍ତ୍ତକୀ ଅର୍ଥାତ୍ ନର୍ତ୍ତକୀମାନେ ଅଙ୍ଗରେ ତରଙ୍ଗ ( ଲାଳିତ୍ୟ ) ଓ ଭଙ୍ଗୀ ଦେଖାଉଥିବାରୁ ସଙ୍ଗତ ( ନୃତ୍ୟ ) ସିଦ୍ଧ ହୋଇଅଛି ।

୧୮—ଏ ସନ୍ଧ୍ୟାକାଳ ନାନାପ୍ରକାର ରାଗ ଜାତକରିବାରୁ ସନ୍ଧ୍ୟାକାଳପରି ହୋଇଅଛି । ସନ୍ଧ୍ୟା ରାଗ ଅର୍ଥାତ୍ ଲାଲିମାକୁ ଜାତକରେ । ପୁଣି ଋତୁମାନଙ୍କପରି ମଧ୍ୟରେ ଅତି ପ୍ରଧାନ ହୋଇଅଛି । ଅର୍ଥାତ୍ ପ୍ରଧାନରୂପେ ଗଣିବାକୁ ହେଉଅଛି । ଋତୁମାନଙ୍କରେ ବସନ୍ତ ବଖ୍ୟାତ ଅଟେ । ଗ୍ରୀଷ୍ମରେ ସୋମ (ଚନ୍ଦ୍ର) ପ୍ରମୋଦିତ ( ଆନନ୍ଦିତ ) କରାଏ । ବର୍ଷାଋତୁରେ ସୁମନେ ( ମାଳତୀ ) ମାଳତୀଫୁଲମାନଙ୍କୁ ଉତ୍ଫୁଲ୍ଲ ଦେଖ ( ଫୁଟାଏ ) ଶରତ୍‌ଋତୁରେ କେଦାର ( କ୍ଷେତ୍ରମାନଙ୍କ ) ଉପରେ ( ଜଳରେ ) ଘନେ ( ନିବିଡ଼ରୂପେ ) ପୂର୍ଣ୍ଣିତକରେ । ହେମନ୍ତଋତୁରେ ଧର୍ମମାନେ ଉତ୍କୃଷ୍ଟ ଭାବ ଭୈରବ ( ଉଦ୍ଦଂଶନ ) ରୂପେ ପ୍ରକାଶକରେ । ଶିଶିରଋତୁରେ କଳହଂସମାନଙ୍କୁ କ୍ଷଣକେ (ଶୀଘ୍ର) ମାନସରୋବର [ମାନସରୋବର ଗାମୀ] କରାଏ ରାଗୀରକ୍ଷଣରେ ବସନ୍ତରାଗରେ ଖ୍ୟାତ ହୋଇଅଛି । ସୋମରାଗ ପ୍ରମୋଦିତ କରୁଅଛି । କେଦାରରାଗ ( ଘନେ ) କାଂସ୍ୟ ତାଳାଦି ବାଦ୍ୟରେ ଉପଚିତ ହୋଇ ସୁମନେ 'ପଣ୍ଡିତ' ମାନଙ୍କୁ ଉତ୍ଫୁଲ୍ଲକରାଉଅଛି । ଭୈରବ ଦ୍ୱାରା 'ଧର୍ମ' ପ୍ରକାଶ ହେଉଅଛି । କଳହଂସ ରାଗ ଶୀଘ୍ର ମାନସକୁ ଭେଦକରୁଅଛି ।

୧୯—ସେ ନର୍ତ୍ତକୀମାନେ ଆଗକୁ ପ୍ରସରି ପୁଣି ପଛକୁ ଅପସରି ଆସିବାରୁ ପୁଷ୍ପନାକ୍ଷୀ ଲତାପରି ଉଚ୍ଚ ଜଣାପଡ଼ୁଥିଲେ । ସେମାନଙ୍କର ଫୁଲ ମଧୁରୁ ଜାତହେବାରୁ ଅଳକାରୂପକ ଭ୍ରମରଶ୍ରେଣୀ ପିଇବା ଲୋଭରେ ଚଳୁଥିଲେ କି ? ପୁଣି ସେ ନର୍ତ୍ତକୀ ହାଣୋନ୍ମୁଖ ହୋଇଅଛନ୍ତି । ଅନେକ କରିବାରେ ହାତକୁ ଟେକି ପୁଣି ସଂକୁଚିତକରିବାରୁ ଯେପରିରୂପ ପଦ୍ମକୁ ଜପାଇ ହେଉଅଛନ୍ତି । ହାସ ମଧ୍ୟ

ଗନ୍ଧର୍ବ କିନ୍ନର ନାଗ ନରଙ୍କର ସଙ୍ଗୀତ ପରମଧନ ଯେ ।
ମହା ଉତ୍ସବ ଯାହାକୁ ବୋଲି ସେହି ଲକ୍ଷଣ ହୋଇ ବର୍ଣ୍ଣନ ଯେ ।
ଲୋକନେ । ଯେ ସର୍ବ ଲୋକ ରଞ୍ଜନ ଯେ ।
ଶୁଣି ନ ଶୁଣି ଦେଖିଲି ନ ଦେଖିଲି ପରି ନୃପତନନ୍ଦନ ଯେ । ୩୩ ।
ଯେଣୁ ଚମ୍ପାବତୀ ଦୁହିତା ଯେ ନୃତ ନେତ୍ର ପଥେ ନୃତ୍ୟକାରୀ ଯେ ।
ସୁଚରିତା ଶୋଭାନିଧି ଗୁଣନିଧି ବିରୂପ ସ୍ୱରୂପଧାରୀ ଯେ ।
ସେ ପୁଣି । ଆଶା ଦେଖାଇ ଅନ୍ତର ଯେ ।
କଙ୍କିଣି ବାଦ୍ୟରେ ହାର ନାସାମଣି ବେଣୀନାଚେ ଅନୁସରି ଯେ । ୩୪ ।
ସଙ୍ଗୀତ ସଙ୍ଗୀତ ସାହିତ୍ୟ ସହିତ ଗୁରୁ ନଟମୂର୍ତ୍ତି ବୋଲି ଯେ ।
ଏଣୁ ଭୂତରୁ ବର୍ତ୍ତମାନ ଭବିଷ୍ୟ ପର୍ଯ୍ୟନ୍ତେ ମୋହନସ୍ଥଳୀ ଯେ ।
ନୃପଜ । ସଦାଶିବ କ୍ଷେତ୍ର ଭାଳ ଯେ ।
ଦୁଶୀଳ ସୁମୂର୍ତ୍ତି ଧାତା କରିଥିଲି ଛଳ କଲା କ ତା ବାଳୀ ଯେ । ୩୫ ।
ସେ ବାର ନୃତ୍ୟକାରୀରେ କଳ୍ପଦ୍ରୁମ ଗୁଣୀଗଣେ ରତ୍ନାକର ଯେ ।
ଭୃତ୍ୟେ ଲେଖବର ପଦବୀ ମାଗନ୍ତେ ନରସିଂହ ଯରକାର ଯେ ।

---

୩୩—ସଙ୍ଗୀତ ଗନ୍ଧର୍ବ, କିନ୍ନର, ନାଗ ଓ ମନୁଷ୍ୟମାନଙ୍କର ପରମ ଧନ ଅଟେ, ଯାହାକୁ ମହା ଉତ୍ସବ ବୋଲାଯାଏ, ଏଠାରେ ସଙ୍ଗୀତ ନାମ ତାହା ବର୍ଣ୍ଣିତ ହୋଇଅଛି । ଏହା ଦେଖି ସମସ୍ତ ଲୋକମାନେ ମଧ୍ୟ ରଞ୍ଜିତ ହେଉଅଛନ୍ତି । କିନ୍ତୁ ରାଜକୁମାର ତାହା ସବୁ ଶୁଣି ନ ଶୁଣିଲାପରି ଓ ଦେଖି ନ ଦେଖିଲାପରି ହୋଇଅଛି ।

୩୪—ଯେହେତୁ ଚମ୍ପାବତୀ ଦୁହିତା କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ତାହାର କର୍ଣ୍ଣ ଓ ନେତ୍ର ପଥରେ ସର୍ବଦା ନାଚୁଅଛି । ସୁଶୀଳା ଶୋଭାନିଧି ଓ ଗୁଣନିଧି ବିରୂପର ତିନ ପ୍ରକାର ସ୍ୱରୂପ ଧାରଣ କରି ନାଚୁଅଛି । ସେ ପୁଣି ଅନ୍ତର ନାହିଁ ଦେଖାଇବାକୁ ଆଶା ଦେଉଅଛି । କଙ୍କିଣି ନୂପୁର ବାଜା ବାଜଇ, ମୁକ୍ତାମାଳା ଓ ନାସାମଣି ଏବଂ ବେଣୀ ଏମାନେ ନାଚନ୍ତି, ଅର୍ଥାତ୍ କମ୍ପିତ ହେଉଅଛି । ତାର ସେ ନାଚ ଦେଖିବାରେ ଉନ୍ମତ୍ତ ଅଛି ।

୩୫—ଏ ସୁନ୍ଦରୀ ସଙ୍ଗୀତ ସଙ୍ଗୀ ଓ ସାହିତ୍ୟହେତୁ ଗୁରୁ ନଟମୂର୍ତ୍ତି ବୋଲାଯାଏ, ଏହି ହେତୁରୁ ଅତୀତରୁ ବର୍ତ୍ତମାନ ଓ ଭବିଷ୍ୟ କାଳ ପର୍ଯ୍ୟନ୍ତ ମୋହନସ୍ଥଳୀ ଅଟେ, ଅତଏବ ରାଜପୁତ୍ର ଭାଳିଲା, ମୋର ସର୍ବଦା ଶିବ ମଙ୍ଗଳ ହେବ । ବିଧାତା ତାକୁ ସୁଶୀଳ ସଚ୍ଚରିତ୍ର ଓ ସୁମୂର୍ତ୍ତି କରିଥିଲା । କିନ୍ତୁ ବାଳୀ ରାଜକୁମାର ଛଳକରି ତାକୁ ମହାଦେବଙ୍କର ସୁନ୍ଦର ପ୍ରସ୍ତର ମୂର୍ତ୍ତି କଲା, ଅର୍ଥାତ୍ ରାଜପୁତ୍ରକୁ ଏ ଚିନ୍ତାରେ ସ୍ତବ୍ଧ କରିବାରୁ ମହାଦେବଙ୍କପରି ପ୍ରସ୍ତରତୁଲ୍ୟ କଲା ।

୩୬—ସେ ବାର ରାଜପୁତ୍ର ନୃତ୍ୟକାରୀମାନଙ୍କ ପକ୍ଷରେ କଳ୍ପ ଦ୍ରୁମ ହେଲା । ଗୁଣି ଲୋକମାନଙ୍କ ପକ୍ଷରେ ରତ୍ନାକର ହେଲା ଅର୍ଥାତ୍ ରତ୍ନ ପ୍ରଦାନ କଲା । ଭୃତ୍ୟ ପ୍ରସ୍ତାବରୁ କୁନ୍ଦେଲେଖବର ଉତ୍ତ ପାଇବା ହେଲାପରି ନରଶ୍ରେଷ୍ଠ ଏ ରାଜପୁତ୍ର ଭୃତ୍ୟମାନେ ମାଗନ୍ତେ ଲେଖ (ପତ୍ର) ହାତ୍ତ କରି ଦେବା ଉତ୍କୃଷ୍ଟ ଉପାଧିମାନ ଦେଲେ । ସେ ରାଜପୁତ୍ର କରୁଣ ଅଟନ୍ତି କି ? ଯେହେତୁ କରୁଣ କନ (ଜଳ) ରେ

ଚଭୁଣ । କ ମଣ୍ଡେ ବନମନ୍ଦର ଯେ ।
ପୁଷ୍କରବାସୀ ଅଶାନ୍ତମଳିକାସ୍ତ୍ର କଳାନିଧି ସାକ୍ଷାତର ଯେ । ୩୬ ।
ରାମ-ଲକ୍ଷ୍ମଣ କୀର୍ତ୍ତିକ ଦ୍ୱାର ସିଦ୍ଧପଦ ନାମ ପଟ୍ଟେ ଦେଇ ଯେ ।
ଭଜେ ସେ ରାମ ଲକ୍ଷ୍ମଣ ଅନୁସର ଗର୍ଭଫଳୀ ପଦ୍ମ ଦେଖି ଯେ ।
ଘାବଇ । ଜପଇନ୍ଦ୍ର ସାରବର ଯେ ।
ଭବିଷ୍ୟବଂଶାନ୍ତ ଅନନ୍ତମୂରତି ଧାରଣ ବୁଝେ ବହ୍ନିର ଯେ । ୩୭ ।

## ଦ୍ୱାତ୍ରିଂଶଛାନ୍ଦ ।

### ରାଗ ନଳନାଗୌଡ଼ା ।

ପ୍ରୀବ ତୋଷ ଏ ବୁଝେ । ୧ପଣ୍ଡିତବର୍ଗଙ୍କ ୨ସନ୍ନିଧେ ।
ବିଦ୍ୟା ବିଷୟରେ ପଣ୍ଡିତ । ବିଦ୍ୟାନିଧି ଯଶୋବନ୍ତ ଯେ ।୧।
ଜ୍ୟୋତିବନ୍ତେ ଥିଲେ ବସି । ବିଜ୍ୟୋତିଷ ଏକାଳେ ଘସି ।
୩ଜାତରୁପାଙ୍ଗୀ ୪ନୃପଜ । ଜାତକ ବୁଝିବା ଆଜ ଯେ । ୨ ।
ପ୍ରଧାନ ବାଣୀ ୧ମନ୍ତ୍ରୀଙ୍କେ । ପ୍ରଧାନ ବୁଝିଅଛନ୍ତି ଯେ ।
ବାଞ୍ଛା ତଥି ବିସ୍ମରିବା । ୨ବିଶ୍ୱବସ୍ତୁ ଥିବା ଦିବା ଯେ । ୩ ।

ଏବଂ ମନରବୁ ମଣ୍ଡିତ କରିଅଛନ୍ତି ଏ ବ୍ରହ୍ମାର ଉପବନ୍ଧ ମନରବ ମଣ୍ଡିତ କଲେ, ଅର୍ଥାତ୍ ତାହାଙ୍କରେ ରହିଲେ । ବ୍ରହ୍ମାର ସାକ୍ଷାତ୍ ଚନ୍ଦ୍ର ହୋଇଥିଲେ, ଚନ୍ଦ୍ର, ପୁଷ୍କର ଅକାଶ ବାସୀ ଓ ଅଶାନ୍ତ ମଳିକାରୀ ଏବଂ ଷୋଡ଼ଶ କଳାର ନିଧାନ ଅଟନ୍ତି । ଏ ରାଜପୁତ୍ର ପୁଷ୍କର ପଦ୍ମ ପଦ୍ମ ବ ସନ ପୁଷ୍ପ ଓ ଅଶା ପୂର୍ଣ୍ଣକାରୀ ଏବଂ କଳା କାମକଳା ଓ ଚତୁଃଷଷ୍ଟି କଳା, ସୌନ୍ଦର୍ଯ୍ୟ, ଷଣ୍ମୁଖର ସ୍ଥାନ ଅଟନ୍ତି ।

୩୭—ରାମଲକ୍ଷ୍ମଣ (ମୃଗଚିହ୍ନଧାରୀ) ଚନ୍ଦ୍ର ଯେଉଁ ରାମଚନ୍ଦ୍ରଙ୍କ କୀର୍ତ୍ତିକୁ ଦ୍ୱାର କରିଷ ସିଦ୍ଧ ନାମ ପଦ (ଚନ୍ଦ୍ର)କୁ ସେ ରାମଙ୍କ ନାମ ପଟ୍ଟରେ ଦେଇଅଛି, ଅର୍ଥାତ୍ ରାମଚନ୍ଦ୍ର ନାମ ହୋଇଅଛି । ଯାହାଙ୍କର ନାମ, ସେ ରାମଙ୍କୁ ଓ ଗର୍ଭଫଳୀ (ତମ୍ବା) ପଦ୍ମ ଦେଖି ଲକ୍ଷ୍ମଣଙ୍କୁ ଅନୁସରଣକାରୀମାନେ ଭଜନ୍ତି । ସେ ବୃଷମାନେ ବହୁକଳର ସେ ସାଗରର (ଶିବ)ଙ୍କର ରାବଣପ ଅଟନ୍ତି ଓ ସେ ଲକ୍ଷ୍ମଣ ଅନନ୍ତ (ଶେଷ) ମୂର୍ତ୍ତିକୁ ଧାରଣ କରିଅଛନ୍ତି । ସାରବର ଉପେନ୍ଦ୍ରଙ୍କ ହର ସେ ଦୁହିଙ୍କୁ ରହି ଅଛନ୍ତି ।

— —※— —

### ଦ୍ୱାତ୍ରିଂଶ ଛାନ୍ଦ ।

୧-୨—ଏ ଛନ୍ଦ ପଣ୍ଡିତମାନଙ୍କର ମନୋଷ ସନ୍ତୋଷ କରିବ, ବିଦ୍ୟା ଓ ବୈଭବରେ ପଣ୍ଡିତ ବିଦ୍ୟାନିଧି ଓ ଯଶୋବନ୍ତ ନାମେ ଉମାନଗରର ମନ୍ତ୍ରୀ ଜ୍ୟୋତିଷଙ୍କ ନିକଟରେ ନାନା ଜ୍ୟୋତିଷ ପ୍ରକାଶ କରି ବସିଥିଲେ, ଏ ସମୟରେ ଜ୍ୟୋତିଷ କହୁଛ, ଅନ୍ତ ସ୍ୱର୍ଣ୍ଣବର୍ଣ୍ଣୀ କେମାନଙ୍କର ଓ ରାଜପୁତ୍ର ଗ୍ରହବେଳୁକର ଜନ୍ମପତ୍ରିକା ବୁଝିବା ଅର୍ଥାତ୍ ବିବାହ ମେଳକାର ବୁଝିବା । ୧ପଣ୍ଡିତ, ମନ୍ତ୍ରୀ । ୨ସନ୍ନିଧେ, ନିକଟରେ । ୩ଜାତ ରୂପାଙ୍ଗୀ, ସ୍ୱର୍ଣ୍ଣାଙ୍ଗୀ । ୪ ନୃପଜ, ରାଜପୁତ୍ର ।

୩—ତାହାଙ୍କ ମନ୍ତ୍ରୀପୁତ୍ର ଯଶୋବନ୍ତ ବଚନ ପ୍ରଧାନ କର, ଅର୍ଥାତ୍ କହୁଛ, ଏ ମେଳକାର ବଧାତା ବୁଝିଅଛି, ଆଉ ବର୍ତ୍ତମାନ ବୁଝିବା ପ୍ରୟୋଜନ ନାହିଁ । ବର୍ତ୍ତମାନ ବିବାହ ତଥି ବୁଝିବାକୁ ହେବ, ବିବାହ ବିଚାରେ ଦିନବେ ହେବ । ୧ମନ୍ତ୍ରୀ, ମନ୍ତ୍ରୀପୁତ୍ର । ୨ଦିବସ, ଦିନ ।

ଗଣକ ଉକ୍ତି ଏ ଅବଧି । ଗଣ ବୋଲେ ବିଦ୍ୟାନିଧି ।
[୧]ପୃଷ୍ଟକଣିଖ-ନନ୍ଦନ । ପୃଷ୍ଟକେତୁ ଜନ୍ମଦିନ ଯେ । ୪ ।
[୧]ତପାଳରେ ଯେଣୁ ପ୍ରାପ୍ତ । ତପା ମାସରେ ଅବାପ୍ତ ।
କୃଷ୍ଣ ଯାହା ହୃଦେ ପଥୀ । କୃଷ୍ଣପଞ୍ଚମୀ ଯେ ତିଥି ଯେ । ୫ ।
[୧]ଚିତ୍ରାକାର କର୍ମକର୍ତ୍ତା । ଚିତ୍ରା ନକ୍ଷତ୍ର ବିଦିତା ।
କନ୍ୟକାଦି ରମା ମୋହି । କନ୍ୟାଚନ୍ଦ୍ର ଖ୍ୟାତ ହୋଇ ଯେ । ୬ ।
ମିଥୁନରେ ସଦା ରତ । ମିଥୁନ ଲଗ୍ନ ବିଦିତ ।
ସିଂହ ଷଡ଼ିସ୍ୟରେ ଯନ୍ତୁ । ସିଂହରେ ତୃତୀୟେ ରାହୁ ଯେ । ୭ ।
[୧]ପଞ୍ଚତ୍ୱ କରେ ଯେ [୨]ଅରି । ପଞ୍ଚମେ କୁଳେ [୩]ଶଉରି ।
[୪]ଗୁରୁ ଗୁଣ ଖ୍ୟାତ କରେ । ଗୁରୁ ସପ୍ତମେ ଧନୁରେ ଯେ । ୮ ।
[୧]ବୁଧସାର ଅଷ୍ଟମରେ । ବୁଧ [୨]ସବିତା ମକରେ ।
ମଙ୍ଗଳପ୍ରଦ ଯେ କୃତ୍ୟେ । ମଙ୍ଗଳ ଶୁକ୍ର ଏକତ୍ରେ । ୯ ।

---

୪—ଚନ୍ଦ୍ର ଗଣକ ( ଜ୍ୟୋତିଷ ) କହିଲ, ହେଁ ଏହା ଏତେ ଅବଧି ଅଛି । ବିଦ୍ୟାନିଧି କହିଲ, ବୃଷରେ କନ୍ଦର୍ପ ନନ୍ଦାକାରୀ ପୃଷ୍ଟ କେତୁଙ୍କର ଜନ୍ମ ଦିବସର ଶୁଭାଶୁଭ ଗଣନାକର । [୧]ପୃଷ୍ଟ କଣିଷ ନନ୍ଦନ, କନ୍ଦର୍ପନନ୍ଦାକାରୀ ।

୫—ଜ୍ୟୋତିଷ ଗଣନାକର କହିଲେ, ଯେହେତୁ ଏ କୁମାର ତପସ୍ୟାମାନଙ୍କୁ ପାଇଅଛନ୍ତି, ସେହିହେତୁରୁ ତପା (ମାଘ) ମାସରେ ପ୍ରକାଶିତ କୃଷ୍ଣ ପଞ୍ଚମୀ ତିଥି ଏହାଙ୍କର ଜନ୍ମ ଦିବସ, ଯେହେତୁ ଶ୍ରୀକୃଷ୍ଣ ସେହି କୁମାରଙ୍କ ହୃଦୟରେ ପଥିକ ହୋଇଅଛନ୍ତି । [୧]ତପାଳି, ତପସ୍ୟା ସମୂହ ।

୬—ଯେହେତୁ ଏ କୁମାର ଅଦ୍ଭୁତକର୍ମକାରୀ, ଅତଏବ ଏହାଙ୍କର ଜନ୍ମ ନକ୍ଷତ୍ର ଚିତ୍ରା ହୋଇଅଛି । କନ୍ୟା ପ୍ରଭୃତି ତ୍ରୈଲୋକ୍ୟର ସ୍ତ୍ରୀମାନଙ୍କୁ ମୋହିତ କରୁଥିବାରୁ ଏହାଙ୍କର କନ୍ୟାଚନ୍ଦ୍ର ହୋଇଅଛି । [୧]ଚିତ୍ରାକାର, ଅଦ୍ଭୁତକର ।

୭—ଏହାଙ୍କର ଲଗ୍ନମିଥୁନ ହୋଇଥିବାରୁ ସର୍ବଦା ମିଥୁନ (ସ୍ତ୍ରୀ ପୁରୁଷ ମିଳନ)ରେ ସର୍ବଦା ମନ ଥାଏ । ଯେହେତୁ ତୃତୀୟ ସ୍ଥାନ ସିଂହରେ ରାହୁ ଅଛନ୍ତି ସେହେତୁ ଏ ଷଡ଼ରିପୁମାନଙ୍କ ମଧ୍ୟରେ ସିଂହପରି ଅଟନ୍ତି । କୁମାରଙ୍କ ସ୍ଥାନ ମିଥୁନ ଲଗ୍ନ ହେବାରୁ ପାପ ଗ୍ରହମାନେ ଅଶୁଭ କରୁ ନୋହିବେ କାହିଁ ଏବଂ ରାହୁ ସିଂହରେ ତୁଙ୍ଗ ହୋଇଥିବାରୁ ତୃତୀୟ ସ୍ଥାନର ଫଳ ପରାକ୍ରମ ଧୈର୍ଯ୍ୟ ପ୍ରଭୃତିରେ ଏହାଙ୍କର ଖ୍ୟାତ ହେବ ।

୮—ଯେ ରାଜପୁତ୍ର ଶତ୍ରୁମାନଙ୍କ ମରଣ ବିଧାନ କରୁଅଛନ୍ତି, ତାଙ୍କର ଶନି ପଞ୍ଚମ ସ୍ଥାନରେ ତୁଙ୍ଗ ହୋଇ ଚନ୍ଦ୍ର ପ୍ରଭୃତି ସ୍ୱବଳ ରୂପ ପ୍ରଭୃତି ଯୋଗକାରକ ହୋଇ ଅଛନ୍ତି. ଯେହେତୁ ଶନି ଏହାଙ୍କର ଭାଗ୍ୟାଧିପ ଅଟନ୍ତି । [୧]ପଞ୍ଚତ୍ୱ, ମରଣ । [୨]ଅରି, ଶତ୍ରୁ । [୩]ଶୌରି, ଶନି । [୪]ଗୁରୁ, ଇନ୍ଦ୍ରଶ୍ଚ ଓ ବୃହସ୍ପତି । ଏହାଙ୍କର କର୍ମାଧିପ ବୃହସ୍ପତି ସପ୍ତମ (ଜାୟାସ୍ଥାନ)ରେ ସ୍ଥିତ ହୋଇଥିବାରୁ ଇନ୍ଦ୍ରଙ୍କ ତୁଲ୍ୟ କର୍ମ ପ୍ରତାପ ପୌରୁଷ ପ୍ରଭୃତି ଖ୍ୟାତ କରୁଅଛନ୍ତି ।

୯-୧୦—ଏହି ଶ୍ରେଷ୍ଠ ରାଜକୁମାରଙ୍କର ଲଗ୍ନ ଓ ଚତୁର୍ଥ କେନ୍ଦ୍ରାଧିପ ବୁଧ ତୃତୀୟ ସ୍ଥାନାଧିପ ରବିଙ୍କ ସଙ୍ଗରେ ମିଳିଛନ୍ତି ଅଷ୍ଟମସ୍ଥାନ ମକରରେ ଥିବାରୁ ବିଦ୍ୟାକ୍ଷେତ୍ର ବାହନ ବାନ୍ଧବ ସୁଖ ପ୍ରଭୃତି ଯୋଗଯୋଗେ

ରହିଛି ଦଶମେ ମୀନେ । ରହିଲା କହି ମଉନେ ।
ଗୁଣିବର ସୁଶେହିତ । ଗୁଣି କହିଲା ହୁରତ । ୧୦ ।
ବ୍ରହ୍ମା ହରଷକୁ ବହି । ବ୍ରହ୍ମାଣ୍ଡ ଯେ ୧ଘଣ୍ଡ ତହିଁ ।
ଉପମା ସମାଜେ ଝୀର । ଉପଯୋଗ କଲା ଧୀର ଯେ । ୧୧ ।
ବୈଶାଖ ମନ୍ଥନେ ବାଳା । ବୈଶାଖରେ ଜନ୍ମ ହେଲା ।
ପଞ୍ଚମୀ ତିଥି ଏ ଯେଣ । ପଞ୍ଚଶର ଜୀବଦାନ ଯେ । ୧୨ ।
ଅରଦ୍ରାଇ ସବଂଶତ । ଅରଦ୍ରା ନକ୍ଷତ୍ର ଯୁତ ।
ମୀନ ଅନୁକୂଳ ଗ୍ରହିଁ । ମୀନ ଲଗ୍ନେ ଉଦେ ହୋଇ ଯେ । ୧୩ ।
ଜାବ୍ୟକାରେ ଅଗୋଚର । କାବ୍ୟ ଲଗ୍ନରେ ସଂଗ୍ଯର ।
୧ସୁର ମୋହନୀ ଦ୍ୱିତୀୟେ । ୨ସୂର ବୁଧ ମେଷୋଦୟେ ଯେ ।୧୪।
ଚତୁର୍ଥ କୀରତ ୧ସାଧୁ । ଚତୁର୍ଥେ ମିଥୁନେ ୨ବଧୂ ।
୩କର୍କଶ ହୃଦଜ ଗୁରୁ । କର୍କଟେ ପଞ୍ଚମେ ୪ଗୁରୁ ଯେ । ୧୫ ।

---

ହୋଇଅଛନ୍ତି । ବନ୍ଧ୍ୟା ଓ ସୁତସ୍ଥାନ ପଞ୍ଚମର ଅଧିପତି ଶୁକ୍ର ଦଶମକେନ୍ଦ୍ର ମୀନରେ ଉଚ୍ଚ ହୋଇ ଶତ୍ରୁସ୍ଥାନ (ଷଷ୍ଠସ୍ଥାନ) ବଳରାଶି ଅଧିପତି ମଙ୍ଗଳ ସଙ୍ଗେ ମିତ୍ର ସ୍ୱରରେ ରହିଥିବାରୁ ବନ୍ଧ୍ୟା, ସୁକୃତ, ପ୍ରତାପ, ଶତ୍ରୁ ନାଶ ପ୍ରଭୃତି ଯୋଗକାରକ ହୋଇଅଛନ୍ତି । ଏବଂ ଏ ଗ୍ରହମାନଙ୍କର ମଙ୍ଗଳପ୍ରଦ ହୋଇଅଛନ୍ତି । ଏହା କହି ଜ୍ୟୋତିଷ ତୂନ ହୋଇ ରହିଲା, ଶୁଣି ଶ୍ରେଷ୍ଠ ସୁଶୋଭିତ ପୁଣି ଶୀଘ୍ର କହିଲ । ୧ଗୁଣିସାର, ପଣ୍ଡିତ ଶ୍ରେଷ୍ଠ । ୨ସ୍ୱରିତ, ଶୀଘ୍ର ।

୧୧-୧୨—ବିଧାତା ଆନନ୍ଦିତ ହୋଇ ବ୍ରହ୍ମାଣ୍ଡକୁ ମନ୍ଥନ କଲେ, ତହିଁରେ ଉପମାନ ପଦାର୍ଥମାନଙ୍କ ଦୁଗ୍ଧ ହେଲା ଉଠିଲା । ଏ ବାଳା ଯେମା ସେ ଉପମା ରୂପକ ଦୁଗ୍ଧମାନଙ୍କୁ ମନ୍ଥିବାରୁ ବୈଶାଖ ସୃଷ୍ଟି ହୋଇଥିବାରୁ ବୈଶାଖ ମାସରେ ଏହାଙ୍କର ଜନ୍ମ ହୋଇଅଛି । ଏ ଯେମା ଯେହେତୁ ପଞ୍ଚଶର କନ୍ଦର୍ପଙ୍କ ଜୀବଦାନ କଲେ, ସେହି ହେତୁରୁ ଏହାର ଜନ୍ମତିଥି ପଞ୍ଚମୀ ହୋଇଅଛି । ୧ଘଣ୍ଟ, ମାଣ୍ଡି ।

୧୩—ଯେହେତୁ ଏ ଜେମା ସମସ୍ତଙ୍କ ମନକୁ ତରଳ କରୁଅଛି ଅତଏବ ଏହାଙ୍କ ଜନ୍ମତିଥିରେ ଅର୍ଦ୍ରା ନକ୍ଷତ୍ର ଯୋଗ ହୋଇଅଛି । ଅନୁକୂଳ ସମୟରେ ମୀନପତି ଗୁରୁ ଦୃଷ୍ଟିରେ ଗ୍ରହଣ ଥିବାରୁ ଏ ଜେମା ମୀନ ଲଗ୍ନରେ ଜନ୍ମ ହୋଇ ଅଛନ୍ତି ।

୧୪—କାବ୍ୟ କର୍ତ୍ତା କବିମାନଙ୍କର ବର୍ଣ୍ଣନାର ଅଗୋଚର ହୋଇଥିବାରୁ କାବ୍ୟ ଶୁକ୍ର ଲଗ୍ନରେ ସଞ୍ଚାର କରିଅଛନ୍ତି । ମୀନରେ ଶୁକ୍ର ତୁଙ୍ଗ ହୋଇଥିବାରୁ ସମ୍ପତ୍ତି ଓ ଦେହ ବିଷୟରେ ଯୋଗକାରକ ହୋଇଅଛନ୍ତି । ଦେବମୋହିନୀର ଦ୍ୱିତୀୟ ମେଷରେ ରବି ବୁଧ ଯୋଗ ହୋଇଅଛି । ୧ସୁର, ଦେବତା । ୨ସୂର, ରବି ।

୧୫—ଏ ଚତୁର୍ଥ ଜେମାର କୀର୍ତ୍ତି ଉତ୍ତମ ହୋଇଅଛି, ଯେହେତୁ ଲଗ୍ନର ଦଶମାଧିପତି ଚନ୍ଦ୍ର ଚତୁର୍ଥ କେନ୍ଦ୍ରରେ ବନ୍ଧ୍ୟା ମୂଳ ସୁଖ ପୁଣ୍ୟ ପ୍ରଭୃତିରେ ଯୋଗକାରକ ରହିଅଛନ୍ତି । ଏ ଜେମାଙ୍କର ସ୍ତନ କଠିନ ଓ ସୁନ୍ଦର ହୋଇଅଛି, ଯେଣୁ ଲଗ୍ନାଧିପ ଓ ଦଶମାଧିପ ବୃହସ୍ପତି ପଞ୍ଚମ ସ୍ଥାନ କର୍କଟରେ ତୁଙ୍ଗ ଓ ତ୍ରିକୋଣସ୍ଥ ହୋଇ ରୂପ ଓ ସମ୍ପତ୍ତି ପ୍ରଭୃତିରେ ଯୋଗକାରକ ହୋଇଅଛନ୍ତି । ୧ସାଧୁ, ଉତ୍ତମ । ୨ବଧୂ, ଚନ୍ଦ୍ର । ୩କର୍କଶ-ହୃଦଜ, କଠିନ ସ୍ତନ । ୪ ଗୁରୁ, ବୃହସ୍ପତି ।

୧ତମ-ଛନ୍ନ-ବାସ-ସ୍ନେହୀ । ତମ ସିଂହ ଷଷ୍ଠେ ରହି ।
୨ଭୁଜଙ୍ଗ କ ଜଗ୍ର ୩ମନ୍ଦ । ତୁଳରେ ଅଷ୍ଟମେ ମନ୍ଦ । ୧୬ ।
ଏକା ମଙ୍ଗଳ ପ୍ରବୃତ୍ତିରେ । ଏକାଦଶେ ସେ ମକରେ ।
୧ଉତ୍ପନ୍ନ କ୍ରୋଷ ବୁଝି । ଉତ୍ତମ ଜାତକ ପୁଛି ସେ । ୧୭ ।
ସମଦରେ ଉଛବ ଥିଲା । ସମସ୍ତେ ଛିଗୃର ଚଥି ।
ସୁମରି ଦୁର୍ଗା ୧ରଭସେ । ସୁମନେ ୨ଦୈବଜ୍ଞ ଭାଷେ ସେ । ୧୮ ।
ମାଧବୀ ପ୍ରୀତିବର୍ଣ୍ଣରେ । ମାଧବ ବହନ୍ତି ଶିରେ ।
ମାଧବୀ କରି ଉତ୍ଫୁଲ୍ଲ । ମାଧବମାସ ମଞ୍ଜୁଳ ସେ । ୧୯ ।
ନବବୟସୀ ତରୁଣ । ନବମୀରେ ଗନ୍ଧଷଣ୍ଡ ।
ଦଶଦଶା ନାହିଁ ଭୋଗ । ଦଶମୀ ତିଥିରେ ଯୋଗ ସେ । ୨୦ ।
୧ଧବପତ୍ନୀ ବୋଲାଇବେ । ଧବଳପକ୍ଷ ଏ ଭାବେ ।
ହସ୍ତାନନ୍ଦେ ହେବେ ବାନ୍ଧ । ହସ୍ତାନକ୍ଷତ୍ର ପ୍ରସିଦ୍ଧି ସେ । ୨୧ ।
ତୁଳ ଲଗ୍ନରେ ବିହିତ । ତୁଳ ହେବ ୧ଅଖଣ୍ଡିତ ।
୨ଶର୍ବରୀ ପ୍ରବେଶେ ହେବ । ସର୍ବଶୁଭେ ସୁଉତ୍ସବ ସେ । ୨୨ ।

---

୧୬—ଏ ସୁନ୍ଦରୀ କୃଷ୍ଣ ବସ୍ତ୍ରରେ ସ୍ନେହିଁ ଅଛନ୍ତି, ଏହାଙ୍କର ରାହୁ ଷଷ୍ଠସ୍ଥାନ ସିଂହରେ ଅଛନ୍ତି । ଏ ସୁନ୍ଦରୀ ଭୁଜମାନଙ୍କ ନକ୍ଷ୍ନକୃଷ୍ଣକରିଅଛନ୍ତି । ଏହାଙ୍କର ଅଷ୍ଟମସ୍ଥାନ ତୁଳରେ ଶନି ରହିଅଛନ୍ତି । ପାପଗ୍ରହରାହୁ ଓ ଶନି ଷଷ୍ଠ ଓ ଅଷ୍ଟମ ସ୍ଥାନରେ ଯୋଗକାରକ ହୋଇଅଛନ୍ତି । ୧ତମ, ଅନ୍ଧକାର ଓ ରାହୁ । ୨ତୁଳ, ଭୁଜମାନ ଓ ଦୁଇ ଗ୍ରସି ୩ମନ୍ଦ, ନକୃଷ୍ଣ ଓ ଶନି ।

୧୭—ମଙ୍ଗଳ ଏକା ହୋଇ ମକରରେ ଏକାଦଶ (ଲାଭସ୍ଥାନରେ) ତୁଙ୍ଗ ହୋଇ ରହିବାରୁ ମଙ୍ଗଳବିଧାନ କରୁଅଛନ୍ତି । ଏହାଙ୍କ ଜନ୍ମ ଏହିପରି ଶୁଭ ସମୟରେ ଜାତକ ଉତ୍ତମ ପୁଛିବାର ବୁଝି ସନ୍ତୁଷ୍ଟ ହେଲେ । ୧ଉତ୍ପନ୍ନ, ଜନ୍ମ ।

୧୮—ସେଠାରେ ସମସ୍ତେ ଆନନ୍ଦରେ ବିବାହ ଉତ୍ସବ କରୁଥିଲେ, ଜ୍ୟୋତିଷ ଦୁର୍ଗାଙ୍କୁ ସ୍ମରଣକରି ଉତ୍ତମମନରେ ଶୀଘ୍ର କହିଲେ । ୧ ରଭସେ, ବେଗରେ । ୨ ଦୈବଜ୍ଞ, ଜ୍ୟୋତିଷ ।

୧୯—ଯେଉଁ ମାସରେ ମାଧବ ବିଷ୍ଣୁ ପ୍ରୀତି ହେତୁରୁ ମାଧବୀ ( ତୁଳସୀ ) କୁ ମସ୍ତକରେ ଧାରଣକରନ୍ତି, ଏବଂ ମାଧବୀଲତା ଫୁଟେ । ସେହି ମାଧବ ( ବୈଶାଖ ) ମାସରେ ଏହାଙ୍କର ମନୋହର ବିବାହ ହେବ ।

୨୦—ଏହିମାସ ନବମୀରେ ଏ ନବ ବୟସୀ ଓ ତରୁଣ ( ଯୁବକ ) ଉଭୟଙ୍କର ଗନ୍ଧଷଣ ( ମଙ୍ଗଳକାର୍ଯ୍ୟ ଗନ୍ଧାଧିବାସ ) ହେବ । ଏ ଯେହେତୁ ଏ ଦୁହିଁଙ୍କର ବିବାହରେ ଦଶ ଦଶା ଭୋଗ ହେବାର ନାହିଁ । ଅତଏବ ଦଶମୀ ତିଥିରେ ବିବାହ ଯୋଗ ହେବ ।

୨୧—ଶୁକ୍ଳ ପକ୍ଷରେ ବିବାହ ଏପରି ହେବା ହେତୁରୁ ଏ ଦୁହେଁ ପତି ପତ୍ନୀ ହେବେ । ହସ୍ତା ନକ୍ଷତ୍ରରେ ଉଭୟଙ୍କର ଆନନ୍ଦରେ ହସ୍ତ ବନ୍ଧା ବନ୍ଧ ହେବ । ୧ ଧବ, ପତି ।

୨୨—ତୁଳ ଲଗ୍ନରେ ବିବାହ ବିହିତ ହେବାରୁ ଉଭୟଙ୍କର ପୂର୍ଣ୍ଣତୁଲ୍ୟ ହେବ । ଏ ଉତ୍କୃଷ୍ଟ ବିହାର ରାତ୍ରି ପ୍ରବେଶରେ ସବୁ ଶୁଭରେ ସମ୍ପନ୍ନ ହେବ । ୧ ଅଖଣ୍ଡିତ, ପୂର୍ଣ୍ଣ । ୨ଶର୍ବରୀ, ରାତି ।

¹ମଣ୍ଡଳେଶ୍ୱର କହନ୍ତେ । ମଣ୍ଡପ ବଡ଼ ଟେସ କାଳେ ।
ପାଟଳିପୁର ନରେଶେ । ²ପାଟନେ ଦେଲେ ³ସନ୍ଦେଶେ । ୧୩ ।
କନ୍ୟା-ବର ଅନ୍ୱେଷିତ । କର ପୁରୋହିତ ଭ୍ରାତ ।
ସୁମନେ ମିଳେ ସତ୍ୱରେ । ସୁମନନାମା ନଗରେ ସେ । ୧୪ ।
¹ସନ୍ଦେଶ ନୃପରେ କହୁ । ସନେହ ହେଦଙ୍କୁ ରହୁଁ ।
ପରମର୍ଷି ବନ୍ଧୁ ହେଜ । ପରମସନ୍ତୋଷେ ମଜ୍ଜି ସେ । ୧୫ ।
¹ମାଗଧ ସୈନ୍ୟ ସଜାଇ । ମାଙ୍ଗଲ୍ୟକୁ ଉଣ୍ଡାଇ ।
ଦୁର୍ଗମ୍ ପଥେ ଗମିଲ । ଦୁର୍ଗରେ ମାର୍ଗେ ହୋଇ ସ୍ଥିତ । ୧୬ ।
²ବରଜାତ ଶୁଣାକୁଳେ । ବରଜାତ ହୋଇ ମିଳେ ।
³ସିନ୍ଧୁରେ ମଗ୍ନ ବିଧାନେ । ସିନ୍ଧୁ ଅବ ଜାଣିମାନେ ଯେ । ୧୭ ।
ସନ୍ଦେଶୁଁ ଚମ୍ପାଈଶ୍ୱର । ସ୍ୱଦେଶୁଁ ହେଲେ ବାହାର ।
¹ସରଣୀରେ ବେନି ରାଟ । ଶରଧାରେ ହେଲେ ଭେଟ । ୧୮ ।
ଭାରତବର୍ଷରେ ପୁଣି । ଭାରତ ହେବ କି ଗୁଣି ।
¹ରମ୍ୟକର ସ୍ଥଳୀ ଧାବ । ରମ୍ୟକରେ କାହିଁ ଠାବ । ୧୯ ।

---

୧୩—ସେ ସମୟରେ ସମ୍ରାଟ୍ ଶୋଭନଦେବ ମହାରାଜ କହିଲେ ବିବାହମଣ୍ଡପ ବଧାନ କରଣ । ପାଟଳୀ ପୁର ରାଜା ସତ୍ପ୍ରିୟଙ୍କ ରାଜାଙ୍କ ନିକଟକୁ ବର୍ତ୍ତମାନ ବାର୍ତ୍ତା ପଠାଇଦେଲେ । ¹ ମଣ୍ଡଳେଶ୍ୱର, ସମ୍ରାଟ୍ । ² ପାଟଳେ, ଭବନରୂପେ । ³ ସନ୍ଦେଶ, ବାର୍ତ୍ତା ।

୧୪—ପୁରୋହିତ ଭାଇ ବିଭାରେଖ ଉପରେ ଅନ୍ୱେଷଣକର ପାଟଳୀପୁର ନଗରରେ ଶୀଘ୍ରତରରେ ଶୀଘ୍ର ପହୁଞ୍ଚିଲେ ।

୧୫—ସେ ପୁରୋହିତଙ୍କ ଭାଇ ସେଠାରେ ଶୁଭବାର୍ତ୍ତା କହି ସେ ମଗଧରାଜାଙ୍କର ସନ୍ଦେହ ଛେଦନକଲା । ରାଜା ମଗଧେଶ୍ୱର ଚମ୍ପା ରାଜାଙ୍କୁ ପରମର୍ଷି ଜନେ ବନ୍ଧୁବୋଲି ହେଜକରି ପରମ ସନ୍ତୋଷରେ ମଜ୍ଜିଲେ । ¹ସଂଦେଶ, ବାର୍ତ୍ତା ।

୧୬-୧୭—ମଗଧରାଜ ମଙ୍ଗଳ କର୍ମକର ସୈନ୍ୟ ସଜ୍ଜିତକରି ଦୁର୍ଗମ ମାର୍ଗରେ ଗମନକଲେ । ସିନ୍ଧୁପ୍ରଭୃତି ନଦୀମାନେ ସମୁଦ୍ରରେ ମିଳିଲାପରି ବାଟରେ ଗଡ଼ମାନଙ୍କରେ ଓବାଟାର ଶ୍ରେଷ୍ଠ ରାଜାମାନେ ବରଜାତ ହୋଇ ତାଙ୍କପାଖେ ମିଳିଲେ । ¹ ମାଗଧ, ମଗଧଦେଶ ରାଜା । ² ବରଜାତ, ଶ୍ରେଷ୍ଠ ଜାତିର । ³ ସିନ୍ଧୁ, ସମୁଦ୍ର ଓ ନଦୀବିଶେଷ ।

୧୮—ଚମ୍ପା ନଗରରାଜା ଏହି ସଂଦେଶ ( ବାର୍ତ୍ତା ) ପାଇ ନିଜଦେଶରୁ ବାହାରିଲେ, ବାଟରେ ଚମ୍ପା ଓ ପାଟଳୀ ପୁର ରାଜା ଦୁହେଁ ଶରଧାରେ ଭେଟହେଲେ । ¹ସରଣୀ, ବାଟ ।

୧୯—ଭାରତ ବର୍ଷରେ ଉଭୟ ସେନା ଭରିହେବ, ଏହା ବିଚାରି କରିଥାଇଅଛି, ରମ୍ୟକ-ଦ୍ୱୀପରେ ଏତେ ସୈନ୍ୟଠାବ ହେବାକୁ ମନୋହରସ୍ଥାନ କାହିଁ ? ¹ ରମ୍ୟକର ସ୍ଥଳୀ, ମନୋହର ଧାବ ।

ହିରଣ୍ମୟ ଛନ୍ଦେ ଶୋଭି । ହିରଣ୍ମୟ ହେବ ଗ୍ରୀଭ ।
କେତୁମାଲମାନ ଯେତେ । କେତୁମାଳ ପୂର୍ଣ୍ଣ ହେତେ । ୩୦ ।
ଇଳାବୃତ ଭଲ ସୈନ୍ୟ । ଇଳାବୃତ କେତେ ଘେନ ।
ଉତ୍ତର କୁରୁତେ ନର । ଉତ୍ତର କୁରୁ କାତର । ୩୧ ।
୧ଭଦ୍ରାଶ୍ୱ ଖୁରକ ସ୍ଥାନ । ଭଦ୍ରାଶ୍ୱେ ନୋହିବ ପୁଣ ।
୨ହରିବର୍ଷ ଦାନୋଦକ । ହରିବର୍ଷ ପ୍ରଳୟକ । ୩୨ ।
କିଂପୁରୁଷ ଧନୀ ଛନ୍ତି । କିଂପୁରୁଷ କଣି ମତି ।
୧ଦ୍ୱୀପ ସପ୍ତ ବାଦ୍ୟ ପୂରି । ୨ଦ୍ୱିପ ଅଷ୍ଟ କର୍ଣ୍ଣକାଣ୍ଡ ଯେ । ୩୩ ।
ପରବଳ ହୋଇ କରି । ପରବେଶ ଚମ୍ପାପୁରୀ ।
୧ବାସରେ ନୃପତି ରହି । ବାସ ଉପହାର ପାଇ ଯେ । ୩୪ ।
ସମ୍ଭାର ରାଜା ପୁଚ୍ଛିଲା । ସମ୍ଭାବ୍ୟ ନୋହେ ବୋଇଲା ।
୧ଧୀସଚିବ-ସୁତ ତହିଁ । ୨ଧୀଷଣ ବର୍ଣ୍ଣିବା ପାଇଁ । ୩୫ ।
୧ଇଳାର ସାର ଏ ଦେଶେ । ୨ରସାଳ ଅଦ ଗୋରସ ।
୩ପାଞ୍ଚରେ ଏତେ ପ୍ରବେଶ । ୪ପାଞ୍ଚସିନ୍ଧୁ ହେବ ଶେଷ । ୩୬ ।

---

୩୦—ସେ ସୈନ୍ୟ ଏତେ ହିରଣ୍ମୟ ଛନ୍ଦ ( ସ୍ୱର୍ଣ୍ଣାଭରଣ ) ରେ ଶୋଭିତ ହୋଇଥିଲେ ଯେ ତଦ୍ଦ୍ୱାରା ହିରଣ୍ମୟ ଦ୍ୱୀପ ଗତ ହୋଇଯିବ । ଯେତେ ପତାକା ସମୂହ ଥିଲେ ତହିଁରେ କେତୁମାଳ ବର୍ଷ ପୂର୍ଣ୍ଣ ହୋଇଯିବା କେତେମାତ୍ର । ୧ କେତୁମାଳ, ପତାକା ସମୂହ ଓ ଦେଶ ବିଶେଷ ।

୩୧—ଇଳା ( ପୃଥ୍ୱୀ ) ଆବୃତ ହେବାଭଳି ସୈନ୍ୟମାନଙ୍କୁ ଇଳାବୃତ ବର୍ଷ କେତେମାତ୍ର, ସୈନ୍ୟମାନଙ୍କର ଉତ୍ତର କରିବା ଶବ୍ଦରେ ଉତ୍ତରକୁରୁର ଲୋକମାନେ କାତର ହେଲେ ।

୩୨—ଉତ୍ତମ ଘୋଡ଼ାମାନଙ୍କର ଖୁରା ମାନଙ୍କ ସ୍ଥାନ ଭଦ୍ରାଶ୍ୱବର୍ଷ ଦେଶରେ ହେବନାହିଁ । ହସ୍ତିମାନଙ୍କ ମଦଜଳ ହରିବର୍ଷ ଦେଶର ପ୍ରଳୟକାରକ ଅଟେ । ୧ ଭଦ୍ରାଶ୍ୱ, ଉତ୍ତମ ଅଶ୍ୱ ଓ ଦେଶ ବିଶେଷ । ୨ ହରିବର୍ଷ, ହରିବର୍ଷ—ହାତୀ ।

୩୩—କିଂପୁରୁଷ ( ଯକ୍ଷ ) ଙ୍କ ପରି ଧନମାନେ ଅଛନ୍ତି, ସେମାନେ କିଂପୁରୁଷବର୍ଷକୁ କଣିକାକୁ ଇଚ୍ଛାକରୁ ଅଛନ୍ତି । ବାଦ୍ୟ ଶବ୍ଦରେ ସାତଦ୍ୱୀପଟକ ପୂର୍ଣ୍ଣହେଉଥିଲା । ସେ ବାଜାଶବ୍ଦ ଶୀଘ୍ର ଦ୍ୱିପ ଅଠଗ ହସ୍ତିମାନଙ୍କୁ କର୍ଣ୍ଣିତକରୁଥିଲା । ୧ ଦ୍ୱୀପ, ସମୁଦ୍ରମଧ୍ୟସ୍ଥ ଭୂଖଣ୍ଡ । ୨ ଦ୍ୱିପ, ହସ୍ତି ।

୩୪—ସେ ମକରଧ୍ୱଜ ପ୍ରବଳହୋଇ ଚମ୍ପାପୁରରେ ପ୍ରବେଶ ହେଲେ ଏବଂ ବାସରେ ରହି ବାସ୍ତ୍ର ଉପହାର ପାଇଲେ । ଚମ୍ପାପତିଙ୍କଠାରୁ । ୧ ବାସ, ଗୃହ ଓ ବସ୍ତ୍ର ।

୩୫—ରାଜାମକରଧ୍ୱଜ ଚମ୍ପାପତିଙ୍କ ସମ୍ଭାରବିଷୟ ପଚାରିଲେ, ତହିଁ ମନ୍ତ୍ରିପୁତ୍ର କହିଲା, ତାହା ବୁଦ୍ଧିରେ ବର୍ଣ୍ଣନାକରିବା ସମ୍ଭବ ନୁହେଁ । ୧ ଧୀସଚିବ-ସୁତ, ମନ୍ତ୍ରୀପୁତ୍ର । ୨ ଧୀଷଣ ବୁଦ୍ଧି ।

୩୬—ଏ ଦେଶ ପୃଥିବୀରେ ଉତ୍କୃଷ୍ଟ ଅଟେ, ଘୃତଦୁଗ୍ଧ ଗୋରସ ଏତେ ପ୍ରବେଶ ହେଉଅଛି ଯେ, ତହିଁରେ ମୋ ବିଶ୍ୱାସରେ ପଞ୍ଚ ସମୁଦ୍ର ଶେଷ ହୋଇଯିବ । ୧ ଇଳା, ପୃଥିବୀ । ୨ ରସାଳ, ଘୃତ । ୩ ପାଞ୍ଚରେ, ବିଶ୍ୱାସରେ । ୪ ସିନ୍ଧୁ, ସମୁଦ୍ର ।

୧ଘନସାର ୨ମୃଗନାଭ । ଘନସାର ସଉରଭ ।
ଯାକ ସକଟେ ଅଣନ୍ତି । ୩ଜାହ୍ନବୀ ହୋଇବ ପୋତ । ୩୭ ।
ଗନ୍ଧ ଅଗର ପକର । ଗନ୍ଧମାଦନ ଜର୍ଜର ।
ସତ ହେବ ଢ଼ାଳିବାରେ । ସନ୍ତତ ବହନ୍ତି ଘରେ ଯେ । ୩୮ ।
୧ଘପକ ୨ଚନ୍ଦନଦାରୁ । ୩ଘାପତରୁ ହୋଇ ଗୁରୁ ।
ପରତେ ମଳୟଗିରି । ପରସ୍ରବଣ ଗୃଭୁଗ୍ରି ଯେ । ୩୯ ।
ଘଟ ଆଦ ପାତ୍ରମାନ । ଘଟଣା ୧ଅନବଚ୍ଛିନ୍ନ ।
୨କରେ ୩ଜମ୍ବୁଜମ୍ବାଲରେ । କରେ ତୋଷେ କୁମ୍ଭକାରେ । ୪୦ ।
୧ସିନ୍ଧୁ ରତ୍ନାକର ବ୍ୟର୍ଥ । ସିନ୍ଧୁକେ ଏହାର ସାର୍ଥ ।
୨ରତ ନରମାଣେ କଂସାର । ରତନରେ କଂସା ଝୁର ଯେ । ୪୧ ।
୧ସୁନାସ୍ତ୍ରୀ ଭୂଷା କରମାଣି । ସୁନାର କମାର ଜାଣି ।
୨ପ୍ରବାଳବଣେ କରମାଣ । ପ୍ରବାଳ ତୋରଣାଗଣ ଯେ । ୪୨ ।
କରନ୍ତି ୧ଗୁମ୍ଫାମଣ୍ଡପ । କଲ୍ପିବର ୨ଶ୍ୱେତଦ୍ୱିପ ।
୩ଭାଗୀରଥୀ ଅଣୁ ଦନ୍ତେ । ଭାଗିଲ୍ଲ ମେରୁ ପର୍ବତେ ଯେ । ୪୩ ।

---

୩୭—ସାନ୍ଦ୍ର ଉତ୍କୃଷ୍ଟ ସୁବାସଯୁକ୍ତ କର୍ପୂର ଓ କସ୍ତୁରୀ ଏତେ ଶଗଡ଼ ପ୍ରସ୍ତୁତ ଯାନରେ ବୋହି ଅଣ୍ଟା ଅଛନ୍ତି ଯେ ଯାହାଦ୍ୱାରା ଗଙ୍ଗା ପୋତ ହୋଇଯିବ । ୧ ଘନସାର, କର୍ପୂର ଓ ସାନ୍ଦ୍ର ଉତ୍କୃଷ୍ଟ । ୨ ମୃଗନାଭି କସ୍ତୁରୀ । ୩ ଜାହ୍ନବୀ, ଗଙ୍ଗା ।

୩୮—ଚନ୍ଦନ ଅଗର, ସୁବାସଜଳ ଏତେ ସର୍ବଦା ଘରରେ ରୁହା ହେଉଅଛି ଯେ, ଯାହାକୁ ଢାଳିଲେ ଗନ୍ଧମାଦନ ପର୍ବତ ଜର ଜର ହୋଇଯିବ ସତେ । ୧ ଗନ୍ଧ, ଚନ୍ଦନ ।

୩୯—ଉତ୍କୃଷ୍ଟ ମନୋହର ଚନ୍ଦନକାଠର ଗଛ ମଳୟ ପର୍ବତପରି ପର୍ବତେ ହୋଇଅଛି, ସେଠିକୁ ଯାଇଥିବା ବହୁ ପତ୍ରବତୀକୁ ପ୍ରସ୍ରବଣର ଗୌରବ ହୋଇଅଛି । ୧ ଘପକ, ଉତ୍କୃଷ୍ଟ । ୨ ଦାରୁ, କାଠ । ୩ ଘାପତରୁ ଗଛଯାକ ।

୪୦—କୁମ୍ଭାରମାନେ ସୁନା ପଞ୍ଚରେ ମାଠିଆ ପ୍ରଭୃତି ପାତ୍ରମାନ ନକଦାରେ ମନ୍ତୋଷରେ ସର୍ବଦା ଗଢ଼ୁଅଛନ୍ତି । ୧ ଅନବଚ୍ଛିନ୍ନ, ସର୍ବଦା ୨ କରେ ହାତରେ ଓ କରଦ୍ । ୩ ଜମ୍ବୁଜମ୍ବାଳ, ସୁନାପଙ୍କ ।

୪୧—ସମୁଦ୍ରର ରତ୍ନାକରନାମ ବ୍ୟର୍ଥ ଅଟେ କାରଣ ଏଦେଶର ସିନ୍ଧୁକମାନଙ୍କରେ ଏହି ରତ୍ନାକର ନାମ ସାର୍ଥ ହୋଇଅଛି । କଂସାରମାନେ ରତ୍ନରେ କଂସା ଓ ଝୁରପ୍ରଭୃତି ନର୍ମାଣ କରିବାରେ ଅସକ୍ତ ଅଟନ୍ତି । ୧ ସିନ୍ଧୁ, ସମୁଦ୍ର । ୨ ରତ, ଅସକ୍ତ ।

୪୨—ଉତ୍ତମ ସ୍ତ୍ରୀମାନଙ୍କର ଅଳଂକାରଗଢ଼ାର କରୁଥିବା ସୁନାରିବଣିଆମାନେ ବଡ଼ ବଡ଼ ଶସ୍ତ୍ରଧାରୀ ବ୍ୟବହାର କରୁଥିବାରୁ କମାର ପରି ଜଣା ପଡ଼ୁଅଛନ୍ତି । ନବପଲ୍ଲବ ଯଥାଯିବା ଯୋଗ୍ୟ ତୋରଣମାନ ପୋହଳାରେ ନର୍ମିତ ହୋଇଅଛନ୍ତି । ୧ ସୁନାସ୍ତ୍ରୀ ଭୂଷା, ଉତ୍ତମା ସ୍ତ୍ରୀ ଅଳଙ୍କାର । ୨ ପ୍ରବାଳ ପଲ୍ଲବ ଓ ପୋହଳା ।

୪୩-୪୪—ହାତ ଶ୍ରେଷ୍ଠ ଧଳାହାତୀ ଐରାବତ ଗଙ୍ଗାକୁ ଅଣିବା ସମୟରେ ମେରୁ ପର୍ବତରେ ତାହାର ଦୋଟାଏ ଦାନ୍ତ ଲଗି ରହିଥିଲା, ତାହା ଅଲଗୋଟିଏ ସୁନ୍ଦର ଦାନ୍ତ କୁମ୍ଭବର୍ଣ୍ଣ ଉପାଡ଼ ଦୂରକରୁଥିଲା ।

୪ସାଂଣ ଦନ୍ତେ ଅଙ୍କୁର । ୫ଘ୍ରଂବର୍ଣ୍ଣ ଦୂର କର ।
୬ଅଣି ଦେଖାଇବା ପାଇଁ । ଅଣି ତାହା ସଜଡ଼ାଇ ଯେ । ୪୪ ।
ଶ୍ରେଣୀ ବାଉ ସ୍ତମ୍ଭ ସେହ୍ନ । ଶ୍ରେଣୀଭୂତେ କବା ଶୋହ୍ନ ।
ଅନ ଜମ୍ବୁ ଶାଖା ନୋହ୍ନ । ଅନନ୍ଦେ ଛନ୍ତି ଯୋଡ଼ାଇ ଯେ । ୪୫ ।
ଜର ମଣ୍ଡଣିତ ରଙ୍ଗେ । ଜର ନୀଳ ପୀତ ରଙ୍ଗେ ।
୧ବାସ କରି ନାହିଁ ଆନ । ବାସନ୍ତି ଏହ୍ନ ବଧାନ ଯେ । ୪୬ ।
ମୁକୁତାର ୧ଜଇରବ । ୨ମୁକୁଳ ଛୁଟ ସୁବାଚ ।
ନୀଳମଣିରେ ନିର୍ମିତ । ନୀଳ ଉତ୍ପଳ ଲମ୍ବିତ ଯେ । ୪୭ ।
ପଦ୍ମରାଗରେ ବିରାଜ । ପଦ୍ମ ଚନ୍ଦ୍ର ରଞ୍ଜ ରାଜ ।
କୁରୁଚ ୧ହେମ ରଖାଣି । କୁରୁଣ୍ଡକ କରି ପୁଣି ଯେ । ୪୮ ।
୧ତାର ତରଲ ବତାନ । ତାରଗ୍ରହର ଚଳନ ।
ବଧିରେ କରନ୍ତୁ ଜାଣି । ୨ବଧି କ ସେହ୍ନ ବଖାଣି ଯେ । ୪୯ ।
୧କଳଧଉତ ପିତୁଳା । କଳବଶେ ସ୍ତମ୍ଭେ ମେଳା ।
ବଞ୍ଚନ୍ତି ଢ଼ାଳନ୍ତି ୨କର । ବଞ୍ଚଣି ପୁଚ୍ଛ ଗ୍ଭମର ଯେ । ୫୦ ।

---

ବର୍ତ୍ତମାନ ନେତ ଦେଖାଇବାପାଇଁ, ସେହି ସୌରବତ ଦାନ୍ତ ଅଣି ତାହାହାର ସମୁଦ୍ରିଅ ସଜଡ଼ାଇ ଦେଇ ଅଛନ୍ତି । ୧ ସଦ୍ୟୋଜାତ, ସମୁଦ୍ରିଅ । ୨ ଶ୍ୱେତଦ୍ୱିପ, ଧଳାହାତୀ । ୩ ଭାଗୀରଥୀ, ଗଙ୍ଗା । ୪ ଦନ୍ତ, ସ୍ପନ୍ଦନ । ୫ ସତ୍ବର୍ଣ୍ଣ, ଭୂମ୍ବର୍ଣ୍ଣ । ୬ ଅଣି, ନେତ ।

୪୫—ସମୁଦ୍ରିଅର ଶେଣୀ, ବାଉ ଓ ସମ୍ଭ ସେହି ହାତୀଦାନ୍ତରେ ହୋଇଅଛି । ସେସବୁ ଧାଡ଼ିଧାଡ଼ି ହୋଇ ବ ଶୋଭା ପାଉଅଛି । ଅନ୍ୟ ଜାମୁଡାଳରେ ନୁହେଁ ଅର୍ଥାତ୍ ଯେଉଁ ଜାମୁକୋଳି ଫଳ ପଡ଼ି ଜମ୍ବୁ ନଦୀରେ ସୁନା ହୋଇଅଛି, ତାହାର ଶାଖାରେ ସେ ସମୁଦ୍ରିଅ ଯୋଡ଼ାଇ ଅଛନ୍ତି ।

୪୬—ସେ ସମୁଦ୍ରିଅ ମଣ୍ଡଳୀ କଳା ହଳଦିଆ ଓ ରଙ୍ଗ ଜଡରେ ଉଠେ ଅନେକ ଭାବେ ଜଡ଼ି ହୋଇଅଛି । ଅନ୍ୟ ବସ୍ତ୍ରରେ ବାନ୍ଧିନାହିଁ । ଏହି ବଧାନରେ ସେ ସୁନ୍ଦର ହୋଇଅଛି । ୧ବାସ, ବସ୍ତ୍ର ଓ ଗୃହ ।

୪୭—ସ୍ଫଟିକ ଖଚିତ ମୁକ୍ତାର ଝରିଫୁଲ ଏବଂ ନୀଳମଣି ନିର୍ମିତ ନୀଳପଦ୍ମ ସବୁ ଝରିରେ ଲମ୍ବିଅଛି । ୧ବୈଡୂର୍ଯ୍ୟ, ଝରି । ୨ମୁକୁଳ ଛୁଟ, କଢ଼ି ଫୁଟିବା ।

୪୮—ସେଠାରେ ପଦ୍ମରାଗମଣି ନିର୍ମିତ ପଦ୍ମମାନ ଝାଡ଼ି ହୋଇ ଶୋଭା ପାଉଅଛି । ରଖାଯାଇଅଛି ସୁନାର ଦାସକେରେଣ୍ଡା ଫୁଲ ମଧ୍ୟ ଲଗାଯାଇଅଛି । ୧ହେମ, ସୁନା । ୨କୁରୁଣ୍ଟକ, ଦାସକେରେଣ୍ଡା ।

୪୯—ଅର୍ଥାତ୍ ନକ୍ଷତ୍ର ଓ ଗ୍ରହମାନଙ୍କର ଚଳନ ହେବା ବଧିରେ ମୁକ୍ତା ଓ ମଣିମାନଙ୍କ ହାର ଝୁଲି ଚଳେ ଚନ୍ଦ୍ରୁଆ କରିଅଛି । ସେ ବଖାଣ ବଧାତା କି ? ୧ତାର, ନକ୍ଷତ୍ର ଓ ଉଜ୍ଜ୍ୱଳ । ୨ବଧି, ବଧାତା ।

୫୦—ସ୍ତମ୍ଭମାନଙ୍କରେ ମେଳହୋଇ ଲଗା ହୋଇଥିବା ସୁନାପିତୁଳା ସବୁ ଚଳହେଉଛି ହାତହଲାନ୍ତି ଅଛନ୍ତି ଏବଂ ମୟୂରପିଚ୍ଛ ବିଞ୍ଚଣା ଓ ଚାମରରେ ମଧ୍ୟ ବିଞ୍ଚୁଅଛନ୍ତି । ୧ କଳଧୌତ, ସୁନା । ୨ କର ହାତ ।

୧ବରଣ ତହିଁକ ଝଳ । ୨ବର ଶବମାନ ଜଳ ।
ରାମ ବଧୂ ଅଭିଷେକ । ୩ରାମ ମୋହନ୍ତେ ସର୍ବ ଦୃକ ଯେ । ୫୧ ॥
୧ବର୍ତ୍ତିକ ରେଗଣ ରମ୍ୟ । ବର୍ଣ୍ଣନକରେ ଅଗମ୍ୟ ।
ସାରିକା ଶୁକ ଗାୟୁଣି । ସାର ଧୈର୍ଯ୍ୟ ଗୀତ ଶୁଣି ଯେ । ୫୨ ॥
୧ବଜ୍ରଧର ପୁରେ କାହିଁ । ୨ବଜ୍ରମଣ୍ଡପ ଯେ ବହି ।
୩ଚନ୍ଦ୍ରଲେପପୁର ଦଶି । ଚନ୍ଦ୍ର କ ପଡ଼ନ୍ତି ଖସି ଯେ । ୫୩ ॥
୧ତାର ବଜ୍ର ଏକଲବେ । ୨ତାର ସପ୍ତବିଂଶ ଭବେ ।
ମଣିକ ୩ତକ୍ଷକ ଖଞ୍ଜି । ୪ମଣି ନାନାବର୍ଣ୍ଣେ ରଞ୍ଜି । ୫୪ ॥
ସମସ୍ନେହ ତରୁବୃନ୍ଦ । ସମସ୍ତ ଫୁଲଫଳଦ ।
ମୁ ନକ କହିବ କହ । ୧ମୂକପଦବୀ ସେ ବହୁ ଯେ । ୫୫ ॥
ସୀତାପତ କୀର୍ତ୍ତି ସାର । ସୀତାଠାରୁ ସୁମଧୁର ।
ବରସ ଅରୁଚ ନାଶେ । ଖଗବର ମନ ତୋଷେ । ୫୬ ॥

---

୫୧—ଉତ୍କୃଷ୍ଟ ପଦ୍ମମାନଙ୍କରେ ଜାଜ୍ୱଲ୍ୟମାନ ପ୍ରାଚୀରମାନ ସେଠାରେ କ ଝଳ ଧରଛି । ତହିଁରେ ରାମଙ୍କ ବବାହ ଓ ଅଭିଷେକ ସ୍ଥାନେ ସ୍ଥାନେ ଲେଖାଥିବାରୁ ରମଣୀପ୍ରିୟା ସମସ୍ତଙ୍କ ଚକ୍ଷୁକୁ ମୋହିତ କରୁଅଛି । ୧ ବରଣ, ପ୍ରାଚୀର । ୨ ବର, ଉତ୍କୃଷ୍ଟ । ୩ ରାମ, ରମଣୀପ୍ରିୟା ଓ ଦଶରଥ ପୁତ୍ର ।

୫୨—ବର୍ତ୍ତକଶ୍ରେଣୀରେ ସେ ଉଦ୍ୟାନ ସବୁ ଯେପରି ରମ୍ୟ ହୋଇଅଛି, ତାହା ବର୍ଣ୍ଣନା କରିବାକୁ ଅଗମ୍ୟ ଅର୍ଥାତ୍ ବର୍ଣ୍ଣନାକର ହେବ ନାହିଁ । ସାରୀ ଓ ଶୁକମାନେ ଗାନକାରିଣୀ, ସେମାନଙ୍କର ଗୀତ ଶୁଣି ଧୈର୍ଯ୍ୟସାର ହେଉଅଛି । ୧ ବର୍ତ୍ତିକ, ବଟକ ।

୫୩—ଯେଉଁ ସ୍ଥାନ ବଜ୍ରମଣ୍ଡପ ବିଧାନ କରିଅଛନ୍ତି, ତାହା ଇନ୍ଦ୍ରଙ୍କପୁରରେ ନାହିଁ ଅଛି । କର୍ପୂରଲେପିତପୁରୀ ଆକାଶରୁ ଚନ୍ଦ୍ର ଖସି ପଡ଼ିଥିବା ପରି ଦିଶୁଛି । ୧ ବଜ୍ରଧର, ଇନ୍ଦ୍ର । ୨ ବଜ୍ର, ହୀରା । ୩ ଚନ୍ଦ୍ର, କର୍ପୂର ।

୫୪—ଶିଳ୍ପକାର ସପ୍ତବିଂଶ ନକ୍ଷତ୍ରମାନଙ୍କ ପ୍ରକାରରେ ବଜ୍ରରତ୍ନ ମଣିମାନଙ୍କୁ ଖଞ୍ଜିଅଛି । ଇନ୍ଦ୍ରନୀଳପ୍ରଭୃତି ଏକତ୍ରରେ ନାନାବର୍ଣ୍ଣରେ ଶୋଭିତ ହୋଇଅଛି । ୧ ତାର ବଜ୍ର, ଇନ୍ଦ୍ରନୀଳପ୍ରଭୃତି । ୨ ତାର, ନକ୍ଷତ୍ର । ୩ ତକ୍ଷକ, ଶିଳ୍ପକାର । ୪ ମଣି, ବଜ୍ରରତ୍ନ ।

୫୫—ସେଠାରେ ବୃକ୍ଷମାନେ ସମାନ ସ୍ନେହକର ସବୁପ୍ରକାର ଫୁଲ ଓ ଫଳ ଦେଉଅଛନ୍ତି । ମୁଁ ଆଉ କହିପାରିବି କି ? ଏହା କହି ସେ ମନ୍ତ୍ରୀପୁତ୍ର ମୂକପଦବୀ ବହିଲା, ଅର୍ଥାତ୍ ତୁନି ହେଲା । ୧ ମୂକପଦବୀ, ମୌନ ।

୫୬—ସୀତାପତି ରାମଚନ୍ଦ୍ରଙ୍କର କୀର୍ତ୍ତି ଉତ୍କୃଷ୍ଟ ଶର୍କରାଠାରୁ ବଡ଼ମଧୁର ଅଟେ, ନବରସଭାବରୂପକ ଅରୁଚି ନାଶ କରୁଅଛି, ଏବଂ ଖଗ ଉପେନ୍ଦ୍ରଭଞ୍ଜଙ୍କ ମନ ସନ୍ତୁଷ୍ଟ କରୁଅଛି ।

## ତ୍ରୟସ୍ତ୍ରିଂଶ ଛାନ୍ଦ ।

ରାଗ ମଙ୍ଗଳଗୁଞ୍ଜରୀ ।

ପ୍ରଥମ ସୁବୁଦ୍ଧିଗଣ ଶୁଣ ଦେଇ ମନ ।
ଦେବନରାଜା ପାଶେ ରହେ ଜ୍ୟୋତିଷେ ଏସନ ଯେ ।୧।
୧ଅର୍ଜୁନ ପକ୍ଷରେ ଯେ ୨ମାଧବ ୩ସୁରଞ୍ଜନ ।
ସୁଭଦ୍ରା ଉତ୍ସବ ଆରମ୍ଭଣ ନବଦିନ ଯେ ।୨।
ସନ୍ଧ୍ୟା ଘୋଟିଗଲା ରବିଜ୍ୟୋତି ନାଶ ଯାଏ ।
କାଳିକା ଗ୍ରାସ ବଶରୁ ରକ୍ତବର୍ଣ୍ଣ ପ୍ରାୟେ ।୩।
ପ୍ରାଚୀ କି ମୋହିନୀ ୧ଇନ୍ଦୁ ୨ସୁଧାପୂର୍ଣ୍ଣ ଥାଳି ।
୩ତମ କପଟେ ଗ୍ରାସୁଁ କି ଚଷ କଲା ଘାଲି ଯେ ।୪।
ଯେନ ଯେବେ ସେ ଛେଦିତ ସେ ଯୋଗେ ନୋହିଲା ।
ଖଣ୍ଡରୂପେ ୧ଗିରିପଛେ କାହିଁକି ପଡ଼ିଲା ଯେ ।୫।
ଏ କାଳେ ମନ୍ତ୍ରି ଏ ନୃପ ସନମତ ପାଇ ।
ନଗରଦ୍ୱାରକୁ ବେଗ ସାଗର କରାଇ ଯେ ।୬।

---

### ତ୍ରୟସ୍ତ୍ରିଂଶ ଛାନ୍ଦ ।

୧—ହେ ପ୍ରଧାନ ବୁଦ୍ଧିମାନ ଲୋକମାନେ ମନଦେଇ ଶୁଣ । ଜ୍ୟୋତିଷ ଦୂତ ରାଜାଙ୍କ ନିକଟରେ ଏପରି କହୁଅଛନ୍ତି ।

୨—ଯେପରି ଶ୍ରୀକୃଷ୍ଣ ଅର୍ଜୁନଙ୍କ ପକ୍ଷରେ ଅନୁରକ୍ତ ହୋଇ ସୁଭଦ୍ରାଙ୍କ ବିବାହ ଉତ୍ସବକୁ ନଅଦିନ ପର୍ଯ୍ୟନ୍ତ ଆରମ୍ଭ କରିଥିଲେ । ସେହିପରି ମନୋହର ବୈଶାଖମାସ ଶୁକ୍ଳପକ୍ଷ ନବମୀଦିନ ଏହି ସୁଭଦ୍ରା-ଙ୍କେମାନଙ୍କର ବିବାହୋତ୍ସବ ଆରମ୍ଭ ହେବ ଅର୍ଥାତ୍ ଯୋଗ୍ୟବାସ ମଙ୍ଗଳକୃତ୍ୟ ହେବ । ୧ ଅର୍ଜୁନ, ମଧ୍ୟମ ପାଣ୍ଡବ ଓ ଶୁକ୍ଳ । ୨ ମାଧବ, ଶ୍ରୀକୃଷ୍ଣ ଓ ବୈଶାଖମାସ । ୩ ସୁରଞ୍ଜନ ଅନୁରକ୍ତ ଓ ମନୋହର ।

୩—କାଳୀଦେବୀ ଗ୍ରାସ କରିବାରୁ ରକ୍ତବର୍ଣ୍ଣ ଅମ୍ବର ( ଜଗଦ୍ୱ୍ୟାପକ ) ନାଶ ଗଲାପରି ସନ୍ଧ୍ୟା ଘୋଟିଗଲା ଓ ରବି କିରଣ ନାଶ ଗଲା ।

୪—ପୂର୍ବଦିଗ ମୋହିନୀ ଅବତାର ହେଲାକି ? ଚନ୍ଦ୍ର ଅମୃତପୂର୍ଣ୍ଣ ଥାଳି ହେଲା । ରାହୁକପଟରେ ଅମୃତ ପାନକରିବାରୁ ବିଷ୍ଣୁ ଯେପରି ଚକ୍ରଦ୍ୱାରା ତାକୁ ଛେଦନ କରିଥିଲେ । ସେହିପରି ପ୍ରାଚୀରୂପକ ବିଷ୍ଣୁ ମୋହିନୀ ମୂର୍ତ୍ତି ଚନ୍ଦ୍ରକୁ କପଟରେ ଗ୍ରାସ କରୁଥିବା ଅନ୍ଧକାର ରୂପକ ରାହୁକୁ ଛେଦନ କଲେକି ? ଏହା କହୁଅଛନ୍ତି । ୧ ଇନ୍ଦୁ, ଚନ୍ଦ୍ର । ୨ ସୁଧା, ଅମୃତ । ୩ ତମ, ଅନ୍ଧକାର ଓ ରାହୁ ।

୫—ସେ ଅନ୍ଧକାରରୂପକ ରାହୁ ସେ ଚନ୍ଦ୍ରରୂପକ ଚକ୍ରଯୋଗେ ଛେଦିତ ନ ହେଲା ବୋଲି ଯେବେ ଯେନ ( ବର୍ଣ୍ଣକର ) ତେବେ ସେ ଅନ୍ଧାର ରାହୁପରି ଖଣ୍ଡ ଖଣ୍ଡ ହୋଇ କାହିଁକି ପର୍ବତମାନଙ୍କ ପଛରେ ପଡ଼ିଲା । ୧ ଗିରି, ପର୍ବତ ।

୬—ଏ ସମୟରେ ମନ୍ତ୍ରୀମାନେ ରାଜାଙ୍କ ଆଜ୍ଞାପାଇଁ ନଗରଦ୍ୱାରକୁ ବେଗେ ସଜ୍ଜିତ କରିବାଦ୍ୱାରା ସମୁଦ୍ରପରି କରାଇଲେ ।

ଶଙ୍ଖ [୧]ମଧୁସ୍ୱ [୨]ଧ୍ୱନିରେ ହୋଇଛନ୍ତି ପ୍ରଧାନ ।
ବିବିଧ ବାଦ୍ୟ ଶବଦ ସ୍ୱକୀୟ ଗର୍ଜନ ଯେ । ୭ ।
ଭର୍ତ୍ସି ଲଗୁଡ଼ ପ୍ରହାର [୧]ଝଷକ୍ରୀଡ଼ା ଝଳ ।
ଉମୋନୁଦ ରୁଣ୍ଡ କ ବଡ଼ବାନଳ ଜଳ ଯେ । ୮ ।
[୧]କାପିଞ୍ଜ ବନ୍ଧୁବା [୨]ସୂର୍ପ ଦ୍ୱାରିକା ପୁରରେ ।
ସ୍ୱଜନ [୩]ଲାଙ୍ଗଳୀ ପୀତାମ୍ବର ପବିତରେ ଯେ । ୯ ।
[୧]ଶତପତ୍ରା କୋଳେ ପ୍ରଦୀପକ [୨]କନ୍ଥ କ ସେ ।
[୩]ନଳକୁବର କ ଉଦ୍‌ବୁମ୍ଭ [୪]ରମ୍ଭା ପାଶେ ଯେ । ୧୦ ।
ବସନ୍ତ ବରଷା ବେନି ଲକ୍ଷଣକୁ ଧରି ।
ଉତ୍ପୁଲ୍ଲ [୧]ଦାସୀନିକର [୨]ଗଣିକା ଆତୁରି ଯେ । ୧୧ ।
ପ୍ରଲମ୍ବକେଶୀ ସେବକୀ ଶୋଭିରୁ ମଥୁରା ।
[୧]ମଙ୍ଗଳକୁ ଜାତ କରିବାରେ ନଷ୍ଟେ ଧରା ଯେ । ୧୨ ।

---

୭—ଶଙ୍ଖ ଓ ମନୋହାରିଣୀ ବଂଶୀମାନଙ୍କ ଦ୍ୱାରା ସମୁଦ୍ର ପ୍ରଧାନ ହେଉଅଛି ଙ୍ଗ ଓ ମନ୍ଦ୍ରମାନଙ୍କ ଶବ୍ଦରେ ସେ ସ୍ୱନଦ୍ୱାରା ପ୍ରଧାନ ହୋଇଥିଲା । ନାନାପ୍ରକାର ବାଦ୍ୟ ଧ୍ୱନି ସମୁଦ୍ରର ନିଜ ଶବ୍ଦରୂ ହୋଇଥିଲା
୧ ମଧୁସ୍ୱ, ମନୋହାରିଣୀ ଓ ମନ୍ଦ୍ର । ୨ ଧ୍ୱନି, ନାଦ ଓ ଶବ୍ଦ ।

୮—ସେହି ବାଦ୍ୟମାନଙ୍କରେ ଲଉଡ଼ି ଅସାରବାଦ୍ୟ ( କାଠିରେ ପିଟିବା ) ସମୁଦ୍ରରେ ମାଛମାନେ ଖେଳୁଅଛନ୍ତି ହୋଇଥିଲେ । ଅନ୍ଧକାର ନାଶକ ପ୍ରଜ୍ଜ୍ୱଳିତ ପ୍ରଦୀପମାନ ସମୁଦ୍ରରେ ବାଡ଼ବାଗ୍ନି ଜଳୁଅଛି ରୂପହୋଇଥିଲେ । ୧ ଝଷ କ୍ରୀଡ଼ା, ମାଛଖେଳିବା ।

୯—ଉଣ୍ଡାଳୁଣୀ ଧରିଥିବା ରୂପ ଦ୍ୱାରକା ନଗରପରି ହୋଇଥିଲା । ଦ୍ୱାରକା ବଳଦେବ, କୃଷ୍ଣ ଓ ଗରୁଡ଼ ଏମାନଙ୍କ ଦ୍ୱାରା ଶୋଭିତ ହୋଇଥାଏ, ଏ ରୂପ ନଉଥ, ହଳଧରଙ୍କ ଓ ଲଣ୍ଡ୍ରୀ କାଣ୍ଡ ଦ୍ୱାରା ଶୋଭା ପାଉଥିଲା । ୧ କାପିଟ, ଉଣ୍ଡାଳୁଣୀ । ୨ ସୂର୍ପ, କୁଲା । ୩ ଲାଙ୍ଗଳୀ, ବଳଦେବ ଓ ନଉଥ । ପୀତାମ୍ବର, ଶ୍ରୀକୃଷ୍ଣ ଓ ହଳଧରଙ୍କ । ପବିତ୍ର, ଗରୁଡ଼ ଓ କାଣ୍ଡ ।

୧୦—ସେ ରୂପା ଶ୍ରୀକନ୍ତ ? ଶ୍ରୀକନ୍ତଙ୍କ କୋଳରେ ତାଙ୍କ ପତ୍ନୀ ତେପଙ୍ଗା ପ୍ରକାଶିତ ହୋଇଥାନ୍ତି । ଏ ରୂପା ମଧ୍ୟରେ ଦୂବ ଓ ଦୀପ ଥିଲା ; ପୁଣି ସେ ସ୍ଥାନ କୁବେର ପୁତ୍ର କି ? କୁବେର ପୁତ୍ରଙ୍କ ପାଖେ ଉଦ୍‌ବୁମ୍ଭ କେତେ ଓ ରମ୍ଭା ଅପ୍ସରା ଥାନ୍ତି । ଏଠାରେ କଦଳୀଗଛ ପାଖରେ ମଙ୍ଗଳ ପୂର୍ଣ୍ଣ କୁମ୍ଭ ଥିଲା । ୧ ତେପଙ୍ଗା ଦୂବ । ୨ କନ୍ଦ, ଶ୍ରୀକନ୍ତ । ୩ ନଳକୁବର, କୁବେରପୁତ୍ର । ୪ ରମ୍ଭା କଦଳୀଗଛ ।

୧୧—ସେ ସ୍ଥାନ ବସନ୍ତ ଓ ବରଷା ରୂପଲକ୍ଷଣକୁ ଧରିଥିଲା । ବସନ୍ତରେ ଦାସକେଳେଣ୍ଡାଏରୁ ନାଚେ, ଏଠାରେ ପୋଇଲୀମାନେ ଆନନ୍ଦିତ ଥିଲେ, ବର୍ଷାରେ ଚାତକମାନେ ଫୁଲ୍ଲନ୍ତି । ଏଠାରେ ବେଶ୍ୟାମାନେ ଆନନ୍ଦିତ ଥିଲେ । ୧ ଦାସୀ ନିକର, ଦାସକେଳେଣ୍ଡାଏରୁ ଓ ପୋଇଲୀମାନେ । ୨ ଗଣିକା, ଓ ବେଶ୍ୟା ।

୧୨—ସେ ସ୍ଥାନ ମଥୁରାନଗରପରି ହୋଇଥିଲା । ମଥୁରାରେ ପ୍ରଲମ୍ବ ଓ କେଶି ନାମକ ଅସୁର ଏବଂ ସେବକୀ (ପୂତନା) ଶୋଭା ପାଉଥିଲେ । ଏଠାରେ ଦୀର୍ଘ କେଶୀ ପରିଚାରିକାମାନେ ଶୋଭା ପାଉଥିଲେ । ପୁଣି କଷ୍ଟେ ପୃଥ୍ୱୀପତି ହୋଇଥିଲେ । ପୃଥ୍ୱୀ ମଙ୍ଗଳ ଗ୍ରହକୁ ଜାତ କରିଥିଲା । ଏମାନେ ଶୁଭ କାର୍ଯ୍ୟକୁ ଜନ୍ମାଇଥିଲେ । ୧ ମଙ୍ଗଳ, ଗ୍ରହବିଶେଷ ଓ ଶୁଭକାର୍ଯ୍ୟ ।

୧ଗାଙ୍ଗେୟଙ୍କୁ ଘଟରେ ଶର ପୂର୍ଣ୍ଣ କରିବାରେ ।
୨ବିଜୟୀ ହୋଇଲେ ସେହି ସର୍ବସମ୍ମତରେ ଯେ । ୧୩ ।
ବର କନ୍ୟା ଗନ୍ଧକ୍ଷଣ କଲେ ପରସ୍ପର ।
ଗନ୍ଧବତୀ ନାମ ସାର୍ଥ କରି ଅବନୀର ଯେ । ୧୪ ।
ଯେ ଯାହା ସ୍ଥାନକୁ ଯାଇ ଗୀତେ ସାରଦାସୀ ।
ଗାଇଲେ ହେମାର ଶୋଭା ପ୍ରସନ୍ନେ ପ୍ରଶଂସି ଯେ । ୧୫ ।
୧ଅଲକା ଲେଖା ମୋହନମନ୍ତ୍ର ୨ଶ୍ରୁତିରମ୍ୟ ।
ଓଁକାର ତ ବଦନପାଶେ ସେ ଲୋମ ବିଲୋମ ଯେ । ୧୬ ।
ନମ ସୁରସାଲସୀ ଶୀଳସାର ସୁମନ ।
ଜପନ୍ତ କବି ଏମନ୍ତେ ନ ପାଇ ସମାନ ଯେ । ୧୭ ।
ଅନେକ ଦ୍ରବ୍ୟବୃଷ୍ଟିକି ଲଭି ଇନ୍ଦ୍ର ହୋଇ ।
୧ଘନରସ ବୃଷ୍ଟି କରି ଏରୂପେ ରଞ୍ଜାଇ ଯେ । ୧୮ ।
ବାଲାମୁଖ ଛୁଇ ଚନ୍ଦ୍ର ସୁଧାନିଧି ସେହି ।
କମେ ସାନ ବଡ଼ ଅଛି ତାର ଛୁଇ ନାହିଁ ଯେ । ୧୯ ।

---

୧୩—ସେମାନେ ସର୍ବସମ୍ମତରେ ଅର୍ଜୁନ ସ୍ୱରୂପ ଦେହକୁ କାଣ୍ଡ ପୂର୍ଣ୍ଣ କରିଥିଲେ । ଏମାନେ ସୁନା ମାଠିଆରେ ଜଳ ପୂର୍ଣ୍ଣ କରିଥିଲେ । ୧ଗାଙ୍ଗେୟ-ଘଟ, ସ୍ୱର୍ଣ୍ଣ-ଦେହ ଓ ସୁନାମାଠିଆ । ଶର, କାଣ୍ଡ ଓ ଜଳ । ୨ବିଜୟୀ, ଅର୍ଜୁନ ଓ ଜୟଯୁକ୍ତ ।

୧୪—ସେହିପରି ସେହି ଦାସୀମାନେ ପୃଥିବୀର ଗନ୍ଧବତୀ ନାମକୁ ସାର୍ଥକ କରି ଅର୍ଥାତ୍ ଅବନୀକୁ ସୁବାସିତ କରି ବର ଓ କନ୍ୟାଙ୍କୁ ଗନ୍ଧକ୍ଷଣ ଅର୍ଥାତ୍ ସ୍ନାନ ଲେପନାଦି କରାଇଲେ ।

୧୫—ତହୁଁ ଭିତରୁ ଦାସୀମାନେ ନିଜନିଜ ସ୍ଥାନକୁ ଗଲେ, ବୀରକୁମାରଙ୍କ ଦାସୀମାନେ ଗୀତଦ୍ୱାରା ହେମାର ଶୋଭାକୁ ପ୍ରଶଂସାକରି ପ୍ରସନ୍ନ ଭାବେ ଗାନ କଲେ ।

୧୬—ହେମାର ଚୂର୍ଣ୍ଣକୁନ୍ତଳ ଲେଖା ହୋଇଥିବା ମୋହନ ମନ୍ତ୍ର ଅଟେ, ତା'ର ଦୁଇପାଖ ପ୍ରାନ୍ତରେ କାନ ଦୁଇଟି ଓଁକାର ପରି ମନୋହର ହୋଇଅଛି । ଏତଏବ ଏମନ୍ତ ଲୋମ ବିଲୋମ ଅର୍ଥାତ୍ ଦୁଇଅଡ଼ୁ ପଢ଼ିଲେ ଏକପ୍ରକାର ଅଟେ । ୧ଅଳକା ଚୂର୍ଣ୍ଣକୁନ୍ତଳ । ୨ଶ୍ରୁତି, କାନ ।

୧୭—କବିମାନେ ସମାନ ଉପମା ନପାଇ ନମଃ ସୁରସାଳସୀ (ଇନ୍ଦ୍ରବଲ୍ଲଭା) ଶୀଳସାର (ସଚ୍ଚରିତ୍ରା) ସୁମନ ପଣ୍ଡିତା" ଏହା ଜପ କରନ୍ତି । ଏହା ମଧ୍ୟ ଦୁଇଅଡ଼ୁ ପଢ଼ିଲେ ସମାନ ।

୧୮—ଇନ୍ଦ୍ର ଅନେକ ଦ୍ରବ୍ୟ ତତ୍ତ୍ୱକୁ ପାଇ ଜଳବୃଷ୍ଟିକୁ କଲାପରି ଦାସୀମାନେ ଉପମାଦେବାକୁ ଅନେକ ଦ୍ରବ୍ୟଞ୍ଜନ ଲାଭ କରି ଥିବାରୁ ଏପରି ନବଢ଼ ରସ ପୂର୍ଣ୍ଣ ବଚନ ବ୍ୟକ୍ତକରି ମନ ରଞ୍ଜାଇଲେ । ୧ଘନରସ ବୃଷ୍ଟି, ଜଳବୃଷ୍ଟି ଓ ନବଢ଼ରସ ବ୍ୟକ୍ତ କରିବା ।

୧୯—ଅମୃତାଧାର ଚନ୍ଦ୍ର ବାଳା ହେମାମୁଖର ଛବି ଅଟେ, ଛବି ବେଳେବେଳେ ସାନ ବା ବଡ଼ ହୁଏ । ଛବିର ମଧ୍ୟ ଅନ୍ୟ ଛବି ନଥାଏ । ତେଣ ଚନ୍ଦ୍ର କ୍ରମେ ସାନ ଓ ବଡ଼ ହୁଏ, ତାହାର ମଧ୍ୟ ଛବି ନାହିଁ ।

ସେ ପୁଣି ଶିଳା ଦ୍ରବାଇ ଲପନ ଦର୍ଶନେ ।
ନ ଦ୍ରବନ୍ତି ହୋଇ କାହିଁ ଚନ୍ଦ୍ରଉପଲବନେ ଯେ । ୧୦ ।
ଧୈର୍ଯ୍ୟ ମନ୍ଦ କରୁ ସେ ବୋଲାଇ ମନ୍ଦହାସ ।
୧ହରଦ୍ଵିଷ ଚନ୍ଦ୍ରହାସ ଝଲକ ତା ଦାସ ଯେ । ୧୧ ।
ଶେଷ ଯେ ସେ ନେତ୍ର ଶୋଧି ଶେଷ ଖୋଜନ୍ତେ ।
ଅନନ୍ତ ହେବାରୁ ଯେ ଅନନ୍ତ ବୋଲାଇଲା ସେ । ୧୨ ।
୧ଝଷ ହରଣ ଲକ୍ଷ୍ୟକୁ ଗ୍ରାସୁଁ ପୂଜେ ବନ୍ଦ ।
ଅଲୋପୁଲେ ଦୃଷ୍ଟି ପାତେ ତୃଷ୍ଣି କରେ ତାହ ଯେ । ୧୩ ।
କ କର୍ ହେଜ ଜପିଲେ ସେ ୧ଅଲକ' ମନ୍ତ୍ର ।
ସଙ୍ଗଭଲ ହେଉଛନ୍ତି ଅମ୍ଭ ସ୍ଵଜନପୁଞ୍ଜ । ୧୪ ।
ସୁନ୍ଦରୀ ପରବୃଷୀ ଏହି ଗୀତ ଗାନ ।
ଆଜ ଦେଖା ଗଲା ତ୍ୟାଜ୍ୟ ସେ ସନ୍ଦେହମାନ ଯେ । ୧୫ ।
ସଦା ଆରଦ୍ରଚନ୍ଦନ ନାଗରୀ ହୃଦର ।
ଅମଳନ ପୁଷ୍ପଗନ୍ଧି ରସିକାବୃନ୍ଦର ଯେ । ୧୬ ।
୧ଶତକୋଟି ୨କନ୍ଦର୍ପ ଭୂଭୃତ ଦର୍ପହର ।
ସୁନ୍ଦରସାରଚକ୍ରବର୍ତ୍ତୀ ବୋଲିବାର ଯେ । ୧୭ ।

---

୧୦—ସେ ଚନ୍ଦ୍ରପୁଣି ଚନ୍ଦ୍ରକାନ୍ତ ପଥରକୁ ଦ୍ରବାଉଛନ୍ତି । ଏ ମୁଖ ଦର୍ଶନରେ ନ ଦ୍ରବିଲାଭଳି ଲୋକ ଜଗତ ଭିତରରେ କାହିଁ ?

୧୧—ସୁନ୍ଦରୀର ଯେଉଁ ମୃଦୁହାସ ଧୈର୍ଯ୍ୟକୁ ମନ୍ଦ (ହୀନ) କରିବାରୁ ମନ୍ଦହାସ ବୋଲାଏ, କନ୍ଦର୍ପ ଖଡ୍ଗର ଝଲକ ତାର ଦାସ ଅଟେ, ଅର୍ଥାତ୍ ଏହାର ମନ୍ଦହାସର ଝଲକ କନ୍ଦର୍ପଖଡ୍ଗ ଝଲକଠାରୁ ଅଧିକ ଧୈର୍ଯ୍ୟ ନାଶକ ଅଟେ । ୧ହରଦ୍ଵେଷ ଚନ୍ଦ୍ରହାସ, କନ୍ଦର୍ପ ଖଡ୍ଗ ।

୧୨—ଶେଷଦେବ ଜେମାର ନେତ୍ର ଶୋଭା ତୁଳନା ଶେଷ କରିବାକୁ ଖୋଜନ୍ତେ, ସେ ସୋତ୍ର ଅନନ୍ତ ବୋଲାଇଲେ କି ?

୧୩—ସେ ନେତ୍ର ମତ୍ସ୍ୟ ହରଣ ଲକ୍ଷ୍ୟକୁ ଗ୍ରାସ କରିବାରୁ ଅର୍ଥାତ୍ ଜିଣିବାରୁ ବଧାଗ୍ରା ତାକୁ ମାଳାପ୍ରଭୃତିରେ ପୂଜା କରିଅଛି । ଅତଏବ ସୁନ୍ଦରୀ ଦୃଷ୍ଟିପାତରେ ସେହି ମାଳାପ୍ରଭୃ ଦୃଷ୍ଟି କରୁଅଛି । ୧ମତ୍ସ୍ୟ, ମତ୍ସ୍ୟ ।

୧୪—ଆମ୍ଭ ରାଜପୁତ୍ର ସେ ଚୂର୍ଣ୍ଣକୁନ୍ତଳ ରୂପକ ମୋହନମନ୍ତ୍ରକୁ ଜପକର ହୋଇ ଜପିଲେ, ସେ ଏବେ ସୁନ୍ଦରୀର ଅନୁଗତ ଭଳ ହେଉଅଛନ୍ତି । ୧ଅଳକା, ଚୂର୍ଣ୍ଣକୁନ୍ତଳ ।

୧୫—ସୁନ୍ଦରୀର ଦାସୀମାନେ ମଧ୍ୟ ଏହି ଗୀତ ଗାନ କଲେ, ଆଜି ସବୁ ଦେଖାଗଲା, ପୂର୍ବ ସନ୍ଦେହମାନ ତ୍ୟାଗ କରିବାକୁ ହେବ ।

୧୬—ସେ ସୁନ୍ଦରୀ ରସିକା ହୃଦୟର ସଦା ଆର୍ଦ୍ରଚନ୍ଦନପରି ଶୀତଳତାପ୍ରଦ । ରସିକାମାନଙ୍କର ଅମଳାନ ଫୁଲ ପରି ।

୧୭—ସୁନ୍ଦର ରାଜପୁତ୍ର କନ୍ଦର୍ପରୂପକ ପର୍ବତର ଗର୍ବନାଶକର ବଜ୍ର ସ୍ଵରୂପ, ସଂସାରରେ ଚକ୍ରବର୍ତ୍ତୀ ବୋଲାଯିବା ଯୋଗ୍ୟ । ୧ ଶତକୋଟି, ବଜ୍ର । ୨ ଭୂଭୃତ୍, ପର୍ବତ ।

ଅବା ଏହି କୀର୍ତ୍ତି-ଗଙ୍ଗା ଉତ୍ପତ୍ତି ହେବାରେ ।
ଯୁବା ସଙ୍ଗ ଲଭେ ଶ୍ୟାମା ତହିଁ ଝାସିବାରେ ଯେ । ୨୮ ।
ବେଣୀକୁଳ ଦାସୀ ଉକ୍ତି କୁମାର କୁମାରୀ ।
ଶୁଣି ଦମ ଦମ ବୁକୁ ରୋମାଞ୍ଚକୁ ଧରି ଯେ । ୨୯ ।
ପ୍ରେମଜଳେ ମଜ୍ଜନ ମଦନ ତାପ ହତ ।
ମଧୁରରସ ଭୋଗକୁ ଅନୁକୂଳ କୃତ ଯେ । ୩୦ ।
କୋକିଳ ପ୍ରକୃତ ନାମ ସ୍ନାନ ଶରଣତ ।
ଦଧି ଗୁଡ଼ ଅନ୍ନ ଅଶନରେ ତୋଷ ଶତ ଯେ । ୩୧ ।
ଲବଣଗ୍ରାମସ୍ଥ ପୂଜକ ଲବଣୀକୋମଳା ।
ହେଜେ ବନ୍ଧ ବହିଲ ଯେ କୃପା ଏତେ ଥିଲା ଯେ । ୩୨ ।
ଯୁବା ଭାବେ ସର ଶର ପ୍ରହାରିବା ବେଳେ ।
ଶିବଶିବ ଅର୍ତ୍ତିଧ୍ୱନି ବଶୁଁ କୃପା କଲେ ଯେ । ୩୩ ।
ଦୁହେଁ ଭାଳନ୍ତି ସେ କର୍ମବଲ୍ଲି ମଧ୍ୟେ ସାର ।
କାମନା କଲା ସଫଳ ହୁଅଇ ଯାହାର ଯେ । ୩୪ ।
ସେ ଦିବସ ଦିବ୍ୟବଶ ଅନୁରାଗରେ ଭ୍ରାନ୍ତ ।
ତରୁଣୀଦିଗ ଏ ଯେନ ଅରୁଣ ଅତ୍ୟନ୍ତ ଯେ । ୩୫ ।

---

୨୮—ଅଥବା ଏହି କୀର୍ତ୍ତିରୂପକ ଗଙ୍ଗା ଉତ୍ପତ୍ତି ହେବାରୁ ଶ୍ୟାମା ତହିଁରେ ଝାସଦେଇ ଯୁବାସଙ୍ଗ ଲାଭ କରୁଅଛି ।

୨୯—କୁମର ଓ କୁମାରୀ ଦୁହେଁ ଦୁଇପକ୍ଷ ଦାସୀମାନଙ୍କର ଉକ୍ତି ଶୁଣିବାରୁ ବୁକୁ ଦମ ଦମ ହେଲା ଓ ରୁମ ଟାଙ୍କୁରିଲା ।

୩୦—କନ୍ଦର୍ପତାପରେ ହତ ହୋଇଥିଲେ ଏବେ ପ୍ରେମଜଳରେ ସ୍ନାନକରି ସ୍ନାନାନ୍ତେ ଭୋଜନପର ମଧୁରରସ ଭୋଗ କରିବାକୁ ଅନୁକୂଳ କଲେ ।

୩୧—କୋକିଳ ସ୍ନାନକରି ସେ ଦୁହେଁ ଦଧିଗୁଡ଼ ଭାତଖାଇ ସନ୍ତୋଷ ହେଲେ, । ଏ ବିବାହର ପ୍ରଥମ ବଧି

୩୨—ସେ ଲବଣୀ କୋମଳା ଜେମା ଲବଣଗ୍ରାମସ୍ଥ ପୂଜା କଲା, ଲବଣ ବେଷ୍ଟନ ମଧ୍ୟରେ ବସିଲା । ମନେ-କରୁଥିଲା, ଏତେ ଦୟା ଥିଲା ସେ ବିଧାତା ପୁଣି ଏହା ବହିଲା ।

୩୩—ଯୁବାଙ୍କ ପ୍ରେମ ଭାବନା କଲେ, କନ୍ଦର୍ପଶର ପ୍ରହାର କଲାବେଳେ ଶିବ ! ବୋଲି ଆର୍ତ୍ତିଧ୍ୱନି କରିଥିବାରୁ ବୋଧହୁଏ ସେ ଶିବ ମୋତେ ଦୟାକଲେ ।

୩୪—କୁମାର ଓ କୁମାରୀ ଦୁହେଁ ଭାବନ୍ତି, ଅହୋ କର୍ମବଲ୍ଲିମାନଙ୍କମଧ୍ୟରେ ସାର ( ଶ୍ରେଷ୍ଠ ) କାରଣ କାମନାକଲା କଥା ଯାହାର ସଫଳ ହୁଏ ସେ ଏକା କର୍ମବଲ୍ଲି ଅଟେ ।

୩୫—ସେଦିନ ଦୁହେଁ ଦୁହିଙ୍କଠାରେ ବଶହେବା ଅନୁରାଗ ଶେଷହେଲା । ଏହି ହେତୁରୁ ଦିନଶେଷରେ ପଶ୍ଚିମଦିଗ ଲାଲହେଲା, ଅନୁରାଗ ଲାଲ ବର୍ଣ୍ଣ ହୁଏ ।

୧ଅରୁଣ ଥିବାରେ ଯହୁଁ ରତ ବବର୍ଜିତ ।
କ୍ରୋଧ କରି ତାକୁ କି ବୁଡ଼ାଇ ଦେବା ସତ ଯେ । ୩୬ ।
ଦର୍ପିତ ହୃଦେ ସେ ରାଗ ରଙ୍ଗକୁ ଥୋଇଲା ।
କଳାକର ବୋଲି ସନ୍ଧ୍ୟା କଳା ପ୍ରକାଶିଲା ଯେ । ୩୭ ।
୧ଦ୍ୱିଜେ କହୁଗଲେ ହେଲା ୨ରାଜା ଉଦୟ କାଳ ।
ଦ୍ୱିଜେ କହୁ ହେଲେ ରାଜା ପାଶେ ଶୁଭବେଳ ଯେ । ୩୮ ।
ବରବେଶ ଧରଣତ ତୋଷ ୱାର ଶତ୍ରୁ ।
ବାହାରିଲେ ଯେ ସମ୍ଭାରେ ନୁହଇ କଥିତ ଯେ । ୩୯ ।
ନବା ନାଗରୀ ଦୁନ୍ଦୁଭି ପଟହାଦି ନାଦେ ।
କର୍ଣ୍ଣହୀନ ଫଣୀ ନେଦେ ଶବଦ ସମ୍ପାଦେ । ୪୦ ।
ଅତି ଅଭିଶଭି ହେଲେ ଦୈତ୍ୟଗୁରୁ ଶୁଣି ।
କଣା ହୋଇଛୁ ବଧିର ହୁଅଇ ନ ପୁଣି । ୪୧ ।
ଶୁଭ୍ରମୁଖ ୧ତୁରଙ୍ଗବଦନ ପାନ କଲେ ।
ନ ଧରବେ ୨କମ୍ବୁକମ୍ବୁକଙ୍କୁ ଗୃହେ ଦେଲେ ଯେ । ୪୨ ।
ମଧୁରୀ କର୍ଣ୍ଣାଲି ଭେରୀ ୧ବାଦକକମାନ ।
ଦେଖି ଉର୍ଦ୍ଧ୍ୱେ ୨କର ନ ଟେକବେ ଗଜାନନ ଯେ । ୪୩ ।

---

୩୬—ସୂର୍ଯ୍ୟ ଥିଲେ ସେହେତୁ ରତ ବର୍ଜିତ ହୁଏ । ସେ ହେତୁରୁ କ୍ରୋଧକରି ସେ ସୂର୍ଯ୍ୟକୁ ବୁଡ଼ାଇ ଦାସ ହେଲକ ? ୧ ଅରୁଣ, ସୂର୍ଯ୍ୟ ।

୩୭—ସେ ଚନ୍ଦ୍ର ସୂର୍ଯ୍ୟାପତଙ୍କ ହୃଦୟରେ ଅନୁରାଗରୂପେ ରଙ୍ଗବର୍ଣ୍ଣକୁ ରଖିଲ, କଳାକର ବୋଲି ସନ୍ଧ୍ୟା-କାଳୀନ କଳା ପ୍ରକାଶ କଲ ।

୩୮—ପକ୍ଷିମାନେ "ଚନ୍ଦ୍ରଉଦୟ ହେବା କାଳ ହେଲ" ବୋଲିକହି ବସାକୁ ଗଲେ, ବ୍ରାହ୍ମଣମାନେ ଶୁଭବେଳ ହେଲ ବୋଲି ରାଜାଙ୍କ ପାଖରେ କହିଦେଲେ । ୧ଦ୍ୱିଜ, ପକ୍ଷୀ ଓ ବ୍ରାହ୍ମଣ । ୨ ରଜା, ଚନ୍ଦ୍ର ଓ ରାଜା ।

୩୯—ବରବେଶ ଧାରଣକରିବାରୁ ୱାର କୁମାରଙ୍କ ଦେହ ବଳୁଥିହେଲ । ଯେଉଁ ସମ୍ଭାରରେ ବାହାରିଲେ, ତାହା କହି ହେବନାହିଁ ।

୪୦—ନାଗରା, ଦୁନ୍ଦୁଭି ପଟହ ପ୍ରଭୃତ ବାଦ୍ୟଶବ୍ଦରେ ସେମାନେ କର୍ଣ୍ଣହୀନ ହେଲେ କି ? ଫଣୀ ସର୍ପପରି ଥିଲେ ହାରି ଶବ୍ଦ ବୁଝିଲେ କି ଅର୍ଥାତ୍ କିଛି ଶୁଣି ନ ପାରିଲେ ।

୪୧—ଶୁକ୍ର ସେ ବାଦ୍ୟଶବ୍ଦଶୁଣି ବ୍ୟାକୁଳଚିତ୍ତ ହେଲେ । ସେ ବରୁରଲେ ମୁଁ କଣା ହୋଇଅଛି, ଏବେ କିମ୍ପା ବଧିର ନ ହୁଏ । ୧ ଦୈତ୍ୟଗୁରୁ ଶୁକ୍ର ।

୪୨—ଶଙ୍ଖୁଆମାନଙ୍କୁ ଦେଖିଲେ, ଧଳାଘୋଡ଼ା ମୁହାଁ କିନ୍ନରମାନେ ଜଳରେ ପାନଧରିବେ ନାହିଁ । ଶଙ୍ଖ ଫୁଙ୍କିଲାବେଳେ ପବନଦ୍ୱାରା ଜଳଫୁଲିଯାଏ, ୧ ତୁରଙ୍ଗବଦନ, କିନ୍ନର । ୨ କମ୍ବୁକମ୍ବୁକ, ଶଙ୍ଖୁଆ ।

୪୩—ମହୁରି, କର୍ଣ୍ଣାଳ ଓ ଭେରୀ ବାଦ୍ୟକାରମାନଙ୍କୁ ଦେଖିଲେ ଗଣେଶ ଲଜ୍ଜାରେ ଥୋଇଉର୍ଦ୍ଧ୍ୱକୁ ଟେକିବେ ନାହିଁ । ୧ ବାଦକକ, ବାଦ୍ୟକାର । ୨ କର ଥୋଇ ।

ବହୁତ୍ଭ କ ସୁରସିକ ଶରସ୍ନେହ ଧରେ ।
ଶୋଣିତନଗରୀ ଜାଣ ଦୀପକ ପ୍ରଭୁରେ ଯେ । ୪୪ ।
ଛନ୍ଦ ହେଲେ ଲକ୍ଷ୍ୟମାନେ ବସନ୍ତ ଆକୃତ ।
ଚମ୍ପା ଫୁଟାଇ ରସୁଇ ହର ଚଳଗତ । ୪୫ ।
ଗ୍ରୀଷମ କ ବୃକ୍ଷଦୀପ ନଗରେ ଯେ ଯେନେ ।
ଅଗ୍ନି ଶିଖା ୧ବଂଶେ ବଗ୍ଭଳତ ସ୍ଥାନେ ସ୍ଥାନେ । ୪୬ ।
ବରଷା କ ଜାଇ ଯୁଇ ବିକଶାଇ ଦେଇ ।
ଘନଘନ ୧ଘନାଘନ କ୍ରୀଡ଼ା ପ୍ରକାଶଇ । ୪୭ ।
ଶରଦ କ ଚନ୍ଦ୍ର ଉଦୟରେ ମନୋହର ।
ହିମ ଶିଶିର କ ଧୂମ କୁହୁଡ଼ ଆକାର ଯେ । ୪୮ ।
ସରସିଜ ଭଉ ପୂର୍ଣ ନିଷ୍ଟଯୁ ସରସୀ ।
ଅଶେଷ ନୀଳୋତ୍ପଳକୁ ଯହିଁ ପରକାଶି । ୪୯ ।
ତରୁଣୀ ହୃଦ ପଦ୍ମ ପଞ୍ଚଶ୍ରୀ ପ୍ରଦୀପ ।
ମଦନ-ଅନଳ ଯୋଗେ ଜ୍ୱଳିତ ସ୍ୱରୂପ ଯେ । ୫୦ ।

---

୪୪—ଦହ୍ରୁଳ ସୁରସିକ କ ? ରସିକ ଦରକାଳ ସ୍ନେହ ରଖିଥାଏ । ଏମାନେ ତୀର ( ବନ୍ଧା ) ଓ ସ୍ନେହ ( ତେଲ ) ଧାରଣ କରଥଲ । ଦୀପମାନଙ୍କ ପ୍ରଭାରେ ଶୋଣିତପୁର ପର ହୋଇଥିଲା ଜାଣ । ଶୋଣିତପୁରରେ ଅଗ୍ନି ପ୍ରାଚୀରରୂପେ ଜଳୁଥାଏ ।

୪୫—ଲକ୍ଷ୍ୟମାନେ ଛନ୍ଦହେବାରୁ ବସନ୍ତଋତୁ ଅବାଇକୁ ଧରଥଲ । ବସନ୍ତ ଚମ୍ପାଫୁଲକୁ ଫୁଟାଏ ଓ ହର ( ପବନ )ର ଚଳଗତ ଉତ୍‌ଏ । ସେ କାଳ ଚମ୍ପାବାଣ ଫୁଟାଇଥଲ ଓ ହର ( ଅବାଣ ) ରେ ଚଳବାଣର ଗତ ଉତ୍ସ ।

୪୬—ସେ କାଳ ଗ୍ରୀଷ୍ମକାଳକ ? ଗ୍ରୀଷ୍ମକାଳ ନଗରେ ( ପବତରେ ) କୁଳବୃକ୍ଷମାନଙ୍କୁ ଦୀପଦ ଯେନ୍ନ ଥାଏ ଏବ ଯାଳେ ଅଗିଶିଖା ବାଉଁଶମାନଙ୍କରେ ବସକଳ ହୋଇଥାଏ । ଏ କାଳ ନଗରମଧ୍ୟରେ ଛେତ୍ରପ ଯେନଥଲ ଓ ଅଗ୍ନିଶିଖା ବାଉଁଶର ମଶାଲପିଡରେ ବସ୍କଳତ ଥାଏ । ୧ ବଂଶେ ବାଉଁଶରେ ।

୪୭—ସେକାଳ ବର୍ଷାକାଳପର ହୋଇଅଛି । ବର୍ଷା କାଳରେ ଜାଇ ଓ ଜୁଇଫୁଲକୁ ଫୁଟାଇଦଏ, ଏବ ବରଷିଲା ମେଘ ପୁନଃ ୨ କ୍ରୀଡ଼ା ପ୍ରକାଶକରେ । ଏ କାଳ ଜାଇ ଓ ଜୁଇବାଣମାନଙ୍କୁ ପ୍ରକାଶ କରଇଥିଲା. ଏବ ମତ୍ତହସ୍ତି ସମୂହ ପୁନଃ ପୁନଃ କ୍ରୀଡ଼ା ପ୍ରକାଶ କରୁଅଛନ୍ତି । ୧ ଘନା ଘନ, ବର୍ଷିଲା ମେଘ ଓ ହାତୀଦଳ ।

୪୮—ସେ ଶରତ୍କାଳ କ ? ଶରତ୍କାଳ ଚନ୍ଦ୍ରଉଦୟରେ ମନୋହର ହୁଏ । ଏ ଚନ୍ଦ୍ର ଉଦୟ ଅଳ୍ପଅରେ ମନୋହର ହୋଇଥଲ । କୁହୁଡ଼ପର ଧୂଅଁ ପ୍ରକାଶ ହେବାରୁ ହିମ ଓ ଶିଶିରଋତୁକ ?

୪୯—ତରୁ ସରସ ହେଉଅଛି, ସେ କାଳ ନିଷ୍ଟେ ପୁଷ୍କରିଣୀପର ହୋଇଅଛି । ପୁଷ୍କରିଣୀରେ ନୀଳକଇଁଥାଏ ଏଠାରେ ଅଶେଷ ନୀଳୋତ୍ପଳ ବାଣ ପ୍ରକାଶ ହେଉଥିଲା ।

୫୦—ପଞ୍ଚଶ୍ରୀ ପ୍ରଦୀପ ଅର୍ଥାତ୍ ଫାନସ ତରୁଣୀ ହୃଦୟପର ହୋଇଥିଲା ସେ କାମ, ଅଗ୍ନି ଯୋଗେ ଜଳେ ଏ ମନ୍ମଥଯୋଗେ ଜଳୁଥିଲା ।

ହୀଟବଳ ଧ୍ରୁବମଣ୍ଡଳ ବଳି ଯିବା ହସ୍ତ ।
ନାଗରେ ସ୍ୱଇଚ୍ଛା ଅଲଙ୍ଘିତ ପ୍ରୌଢା ପସ୍ତ ଯେ । ୫୧ ।
କେହୁ ତହିଁ ରତଶ୍ରାନ୍ତ ନାସାପର ହୋଇ ।
ନକ୍ଷତ୍ରମାଳା ଖସାଇ ମଳିନ ଉଜାଇ ଯେ । ୫୨ ।
କେହୁ ତହିଁ ବିପ୍ରଲବ୍ଧା ନାସାପର ଦଣେ ।
ସନ୍ତାପଟଙ୍କୁ ରତି ବାହୁଡ଼ି ରଭସେ ଯେ । ୫୩ ।
୧ଉଦ୍ଗଳପନ୍ତ ନସାନସଙ୍ଗମା ପ୍ରକାରେ ।
ଅଙ୍ଗ ଚଞ୍ଚଳ ଛଳେ କି ନାହିଁ ନାହିଁ କରେ । ୫୪ ।
ପଦବ ଦେଖାଇ ପଦବୀରେ ଶଳା ମାଳା ।
ଦେବାରେ ମହୁଉତ୍ସବେ ଗହ୍ୱଳ ପଡ଼ିଲା ଯେ । ୫୫ ।
ଯୁବତୀକୁଙ୍କୁମେ ଯତି ହୋଇଲେ ଖଞ୍ଜିତ ।
ଶୁଭ୍ର କଷଟିରେ ସ୍ୱର୍ଣ୍ଣ କଷି ଦେଲା ମତି । ୫୬ ।
ଯତିବିଭୂତି ଭୂଷିତ ଯୁବତୀଜନକର ।
ପାରଦେ ହେମକୁ ରୁପା କଲା ପରକାର ଯେ । ୫୭ ।
୧କୁଳଟା ଉରଜ ବଟେ ପୀଡ଼ିବାର ଗୃହୀ ।
ଅନନ୍ତ ବ୍ରହ୍ମାଣ୍ଡ ଏ ଶମ୍ଭୁ ପୂନେ ଧାଇଁ ଯେ । ୫୮ ।

---

୫୧—ହାବେବତୀମାନେ ଧ୍ରୁବମଣ୍ଡଳକୁ ବଢ଼ିଯିବାକୁ ହସ୍ତ ଦେଉଅଛନ୍ତି । ପ୍ରୌଢ଼ାନାୟିକାପରି ହୋଇଅଛି, ସେ ନାଗରକୁ ନିଜ ଇଚ୍ଛାରେ ଅଲଙ୍ଘନକରେ, ଏ ହାବେତ ହାସରେ ଅଲଙ୍ଘିତ (ଉଚ୍ଚ) ହୋଇଅଛି ।

୫୨—ସେ ହାବେତୀମାନଙ୍କ ମଧ୍ୟରେ କୌଣସି ହାବେତ ରତରେ ଶ୍ରାନ୍ତ ସ୍ତ୍ରୀପରି ହୋଇଥିଲା । ସେ ସ୍ତ୍ରୀ ମୁକ୍ତା ମାଳକୁ ଖସାଇଦେଇ ମ୍ଲାନ ହୁଏ । ଏ ହାବେତବାର ନକ୍ଷତ୍ର ଖସି ତେଜ ଉଡ଼ିଯାଇଥିଲା ।

୫୩—ଏହି ମଧ୍ୟ କୌଣସି ହାବେଲୀ ବିପ୍ରଲବ୍ଧା ଅର୍ଥାତ୍ ସଙ୍କେତ ସ୍ଥଳରେ ନାୟକକୁ ନପାଇ ଫେରିଆସିବା ସ୍ତ୍ରୀପରି ହୋଇଥିଲା । ସେ ସ୍ତ୍ରୀ ସନ୍ତାପମାନଙ୍କ ବଡ଼ ବମ୍ଭତହୋଇ ଫେରେ । ଏ ହାବେଲୀ ପତାପ ଓ ତପାବାର ଗତକୁ ବଡ଼ ଶୀଘ୍ର ଫେରି ଆସୁଥିଲା ।

୫୪—ପତାକାମାନେ ନବୋଢା ସ୍ତ୍ରୀପରି ଚଞ୍ଚଳ ହୋଇ ଉଡ଼ିବା ଛଳରେ ନାହିଁ ନାହିଁ କହୁଅଛନ୍ତି । ୧ଉଦ୍ଗଳପନ୍ତି, ପତାକ ମାନ ।

୫୫—ଶଳା ପଦବୀ (ମାର୍ଗରେ) ପଦବ (ଅଗ୍ରମୁଖ) ଦେଖାଇ ବର ଗଳାରେ ବରଣମାଳା ଦେବାରେ ସେ ମହୋତ୍ସବରେ ବଡ଼ ଗହଳ ଲାଗିଲା ।

୫୬—ସେ ଗହଳରେ ସନ୍ନ୍ୟାସିମାନେ ଯୁବତୀମାନଙ୍କ କୁଚ କୁଙ୍କୁମରେ ରଞ୍ଜିତ ହେଲେ । ତାଙ୍କ ଦେହ ଶୁଭ୍ର କଷଟି ପଥରରେ ସୁନା କଷା ହେଲାପରି ଦିଶିଲା ।

୫୭—ଯୁବତୀମାନେ ସନ୍ନ୍ୟାସିମାନଙ୍କର ଭସ୍ମରେ ଭୂଷିତ ହେଲେ । ତାଙ୍କ ଦେହ ପାରଦଯୋଗେ ସୁନାରୁ ରୁପାପରି ଦିଶିଲା ।

୫୮—ବାଟହୁଡ଼ମାନେ ବାରପୀ ସ୍ତ୍ରୀମାନଙ୍କର ସ୍ତନକୁ ମର୍ଦ୍ଦନ କରିବାର ଗୃହୀ ଭାବିକରେ ... ଅନନ୍ତ ବ୍ରହ୍ମାଣ୍ଡ ଅଛନ୍ତି, ଅତଏବ ସେମାନଙ୍କୁ ଧ୍ୟାନ ... ତଦ୍ଧଅଛନ୍ତି । ୧କୁଳଟା, ବାରପୀ ସ୍ତ୍ରୀ । ଉରଜ, ସ୍ତନ ।

ସେ ପୁଷ୍ପକୁ ନ ମିଳେ କ ଚମ୍ପକ ନଳିନ ।
ମାନସିକ ପୂଜା ବୋଲି କଲେ ସମାଧାନ । ୬୯ ।
ମହା ଉତ୍ସବରେ ବାଳାଧବ ପଦ ଶାନ୍ତି ।
ପିତାମହଠାରୁ ପାଇବାକୁ ଲଗ୍ନ ଲୋଡ଼ି ସେ । ୭୦ ।

ଯୁବାକେଶରୀ କେଶରୀଦ୍ୱାରରେ ମିଳିଲେ ।
ତତପରେ ବରମଣ୍ଡପରେ ବିଜେ କଲେ । ୭୧ ।

ଶଢ଼ି ପ୍ରମୋଦ ଉଚିତ ଯଥୋଚିତ ବିଧି ।
ଆରମ୍ଭଣ ଦେବମନ୍ତ୍ର ବାକ୍ୟେ କଲେ ସିଦ୍ଧି । ୭୨ ।
ଲବଣଗୃମଣୀ ମାରି ବାଳା ଅଭିସାରୀ ।
ହେଲା ସାର୍ଥ ଦୃଷ୍ଟି ୧ପାର୍ଥପାଶେ ଭଦ୍ରା ପରି । ୭୩ ।

ବହୁ ରତମନ୍ତ୍ରଧୂଳି ଲବଣ କପଟେ ।
ସଖୀ ସତ୍ୟାଭିଯୋଗରେ ପକାଇ ଉଗ୍ରଟେ । ୭୪ ।
ଅନ୍ତର ପାଟଅନ୍ତର ସ୍ଖଳଣା ହୋଇଲା ।
ପ୍ରେମପୁସ୍ତକ ବର୍ଣ୍ଣକୁ ଦେଖି ନ ଦେଖିଲା । ୭୫ ।

---

୬୯—ଏହା ଶୁଣି ସେମାନେ ପଚାରିଲେ, ସେ ପୂଜା କରିବାକୁ ଚମ୍ପକ ବା ପଦ୍ମ ମିଳୁ ନାହିଁ କି ? କମାବତିପର ଅପୂର୍ବ ଓ ପଦ୍ମପର କଟଳ ବୃକ୍ଷରେ ଚଢ଼ାଇବାକୁ ମିଳୁ ନାହିଁ କି ? ଏହା ଶୁଣି ସେ ରସିକ ଲୋକମାନେ ସମାଧାନ କଲେ, ଅନ୍ତର ମାନସିକ ପୂଜା ଅଟେ ।

୭୦-୭୧—ସେ ଯୁବା ସିଂହକୁମାର ମହା ଉତ୍ସବରେ ବାଳା କୋଟି ବ୍ରହ୍ମାଣ୍ଡ ସୁନ୍ଦରୀର ପତି ପଦପାଦି ବ୍ରହ୍ମାଙ୍କଠାରୁ ପାଇବାକୁ ଶୁଭ ଲଗ୍ନ ଲୋଡ଼ିକରି ପ୍ରଥମେ ସିଂହଦ୍ୱାରେ ମିଳିଲେ । ତାପରେ ବର ମଣ୍ଡପରେ ବିବାହ ହେବାକୁ ବିଜେକଲେ ।

୭୨—ବେଦରେ ବେଦମନ୍ତ୍ର ବାକ୍ୟମାନଙ୍କ ଦ୍ୱାରା ଯଥୋଚିତ ନିୟମାନ ଆରମ୍ଭ କରିବାର ସିଦ୍ଧି କରିବାରୁ ସେମାନଙ୍କର ମନ ଅନନ୍ଦ ଉଦତ ହେଲା ।

୭୩—ବାଳାଲବଣ ଗ୍ରମକୁ ମାରିବାକୁ ଅଭିସାରୀ ହେଲା, ଅର୍ଥାତ୍ କାନ୍ତ ପାଖକୁ ଗମନକଲା । ସେତେବେଳେ ଅର୍ଜୁନଙ୍କ ପାଖକୁ ସୁଭଦ୍ରା କେବଳାପରି ଲୋକମାନଙ୍କ ଲକ୍ଷ୍ୟକୁ ସାର୍ଥକଲା । ୧ପାର୍ଥ, ଅର୍ଜୁନ ।

୭୪—ସୁଭଦ୍ରା ସଖୀ ସତ୍ୟଭାମାଙ୍କ ଉଦ୍ୟୋଗରେ ଲବଣ କପଟରେ ରତ ମନ୍ତ୍ର ଧୂଳି ବହୁ ପକାଇ କରିବାକୁ ଚକାଇଲା କି ?

୭୫—ବର ଓ କନ୍ୟାଙ୍କ ଅନ୍ତର (ମଧ୍ୟ)ରେ ଯେ ପାଟବସ୍ତ୍ରର ଅନ୍ତରପଟ ଧରି ହୋଇଥିଲା, ସେ ଖସିପଡ଼ିଲା । ଏଣୁ ସେ ପ୍ରେମପୁସ୍ତକ ସ୍ୱରୂପ ସୁନ୍ଦରୀ ବର୍ଣ୍ଣ ରୂପକ ଅକ୍ଷରକୁ କୁମାର ଭଲରୂପେ ଦେଖିପାରିଲା ନାହିଁ ।

ବାହୁଡ଼ ବାନ୍ଧ ମନକୁ ¹ବୋପାଙ୍ଗଲେ ଛନ୍ଦ ।
²କଶାମୁଖେ ଯେମନ୍ତ ନଳିନେ ³ଅଳି ବନ୍ଦୀ । ୬୬ ।
ଦରିଦ୍ର-ଯାଚକ ପ୍ରାୟ ନେତ୍ର ଗୋଡ଼ାଇଲା ।
ପୂର୍ଣ୍ଣ ଶୋଭାଧନକୁ ନ ପାଇ ବାହୁଡ଼ିଲା । ୬୭ ।
ଦୂତ-ସୂକ୍ତେ ସଫଳ ଏ ଉତ୍ସବ ବତ୍ସର ।
ଦ୍ୱିଜ ଯଜ୍ଞୋପବୀତ ପେଷିଲେ ଦୂତ କର । ୬୮ ।
ତାହା ସଙ୍ଗେ ରଙ୍ଗେ ସେ ତରଙ୍ଗେକ୍ଷଣୀ ବଜେ ।
ତରୁରଦଗେ ବେଷ୍ଟିତ ତରୁଣୀସମାଜେ । ୬୯ ।
ବସନ୍ତ ପାଶେ ଅସେ କ ଚଳସ୍ୱର୍ଣ୍ଣବଲ୍ଲୀ ।
ସଙ୍ଗେ ¹ଅଳିଧ୍ୱନି ନଶ୍ୱେ ²ଅଳୀ ଝୁଳଝୁଳି । ୭୦ ।
ପିକ କୂଜତ ଗାୟନ୍ତି ସୁମଙ୍ଗଳ ଗୀତ ।
ପଲ୍ଲବ ଖଣ୍ଡ ଚଳତ ଧୀର ବାତ ଜାତ । ୭୧ ।
ବାମ କରିବ କ କର ଯେ ମୋ ପ୍ରାଣେଶ୍ୱର ।
ଅଗ ଦର୍ପଣ-ଭିତ୍ତି ସେ ଖତ କଲ ଦୂର । ୭୨ ।
କେମନ୍ତେ ¹ମଞ୍ଜୁକାଶିନୀ ଦୃଷ୍ଟିପାତ ହୋଇ ।
²ଦକ୍ଷିଣ ଖବକୁ ବାମ କର ଉପୁଜାଇ । ୭୩ ।

୬୬—ଯେପରି ସନ୍ଧ୍ୟାସମୟରେ ପଦ୍ମରେ ଭ୍ରମର ବନ୍ଦୀ ହୁଏ, ସେହିପରି ସୁନ୍ଦରୀ ବାହୁଡ଼ିବାବେଳେ ପ୍ରକୃଷ୍ଟ ମନକୁ ଲୁଗା କାନରେ ଛନ୍ଦ ବାନ୍ଧିନେଲା ? ¹ବୋପାଙ୍ଗଲେ, ଲୁଗାକାନରେ । ²ଦଶାମୁଖ, ସନ୍ଧ୍ୟା ³ଅଳି, ଭ୍ରମର ।

୬୭—କୁମାରର ଆଖି ଦରିଦ୍ର ମାଗୁଥିବା ଲୋକପରି ତା ପଛେ ପଛେ ଗୋଡ଼ାଇଲା । କିନ୍ତୁ ପୂର୍ଣ୍ଣ ଶୋଭା ରୂପ ଧନକୁ ନପାଇ ବାହୁଡ଼ି ଆସିଲା ।

୬୮—ଦୂତ ରୂପ ସୂକ୍ତରେ ଏ ଉତ୍ସବ ସଫଳ ହେବ, ଏହା ବଖାଣି ବର୍ଣ୍ଣ ବ୍ରାହ୍ମଣମାନେ ( ଯଜ୍ଞୋପବୀତ ) ବଟର ପଇତାକୁ ଦୂତ କରି ପେଶିଲେ ।

୬୯—ସେହି ପଇତା ସଙ୍ଗେ ସେହି ତରଙ୍ଗନେତ୍ରୀ କନ୍ୟା ଚଳି, ଦେଖିବାକୁ ଆସିଲେ । ତରୁଣୀ ସଖୀମାନେ ଚାରିପାଖେ ବେଢ଼ିଥିଲେ ।

୭୦—ସେତେବେଳେ ଜଣାଯାଏ ପ୍ରାୟ ଚଳନ୍ତା ସ୍ୱର୍ଣ୍ଣ ଲତା ବସନ୍ତ ନିକଟକୁ ଆସୁଅଛି କି ! ଏପରି କାନ୍ତିଶାଳୀ ସଖୀମାନଙ୍କର ଝୁଲଝୁଲ ଭ୍ରମର ଧ୍ୱନିପରି ହୋଇଥିଲା । ¹ଅଳି, ଭ୍ରମର । ²ଅଳୀ, ସଖୀ ।

୭୧—ଗାୟକ କାମିନୀମାନଙ୍କ ମଙ୍ଗଳ ଗୀତ କୋକିଳ କୂଜନପରି ହୋଉଥିଲା । ସେ ବୃନ୍ଦର ଦେହରେ ଧୀର ପବନ ଜାତ ହେଉଥିଲା । ତାହା ମନ୍ଦପବନରେ ପଲ୍ଲବ ଦୋହଲିବାପରି ଦିଶୁଥିଲା ।

୭୨—କନ୍ୟା ମନେମନେ କହିଲା, ଯେ ମୋର ପ୍ରାଣେଶ୍ୱର ଅଟନ୍ତି, ଆଜି ମୋପରି ବାମ (ବିପରୀତ) ( ବାମ ଭାଗସ୍ଥିତ ) ହେବେ । କିନ୍ତୁ ଅନେକଙ୍କ ଦର୍ପଣରେ ସେ ରୂପକୁ ଦୂରକଲା । ଦର୍ପଣରେ ବାମ ଦାହାଣ ଦିଶେ ।

୭୩—ଦକ୍ଷିଣ ସ୍ୱରକୁ ବାମକରି ଜାଣିବେ ଅର୍ଥାତ୍ ଦର୍ପଣରେ ଦକ୍ଷିଣକୁ ବାମକରି ( ସ୍ୱାମୀକୁ ବର୍ଣ୍ଣନାକରି ) ସୁନ୍ଦରୀ ସେମାନେ କପରି ଦୃଷ୍ଟିପାତ ହେଲା । ¹ ମଞ୍ଜୁକାଶିନୀ, ସୁନ୍ଦରୀ । ² ଦକ୍ଷିଣ, ସରଳ ।

ରସିଲ ଶତ୍ରୁ ସୁଶୀଳା ବସିଲା ସନ୍ତକେ ।
ମୁକୁଟ ବନ୍ଧାଇ ବର କନ୍ୟା ଏ ହେତୁରେ । ୭୪ ।
ଖରପ୍ରଦେ ଅସାଧ୍ୟ ହୋଇଣ ଅଛୁ ମାର ।
ତାହାଁ ଜସ୍ନ ଈର୍ଷା କି କନ୍ୟାଇ କୁମାର । ୭୫ ।
ରତ ରତିରଞ୍ଜୀରବିଙ୍କୁ ଜୁର ନାହିଁ ବାଳା ।
ତହିଁ ଅମରଷ ଆଜ କବା ଉପୁଜଲା । ୭୬ ।
ବକ୍ରୈକଶେଖର ବେଦକୁଳ ପୁରୋହିତ ।
ସୁକର୍ମ ଉଦ୍ଧବେ କଲେ ସୁକର୍ମ ଉଦ୍ଧୃତ । ୭୭ ।
ବଶିଷ୍ଠେ ଅରୁନ୍ଧତୀ ଶ୍ରୀରାମେ ସୀତା ଯଥା ।
ଲକ୍ଷ୍ୟ ଦେଇ ପ୍ରକାଶିଲେ କି ଅଦ୍ଭୁତ କଥା । ୭୮ ।
ବେଦବଚନକୁ ବଳ ନାହିଁ ବଳାତ୍କାରେ ।
ଅବଳାସର୍ପ ଧରାଇ ବଳବନ୍ତ କରେ । ୭୯ ।
ମନ୍ତ୍ର ଧ୍ୟାନ ନ ଘେନ କି କରନ୍ତେ ଖଳେ ।
ସୁବାଞ୍ଛାନା ଚରଣ ଶରଣ ନ ଥିଲେ । ୮୦ ।
୧ଲକ୍ଷ୍ମୀଙ୍କରୁଁ ଶ୍ରେଷ୍ଠ ଜଗ ବଞ୍ଚିତ ପ୍ରକାରେ ।
ବାନ୍ଧିଲା ତା ୨ଦ୍ୱିଜସୁତା କୁଶନାଡ କରେ । ୮୧ ।

---

୭୪—ପତ୍ର ରଚିଲ, ସୁଶୀଳା ନାମା ଶୀଘ୍ର ବେଦରେ ବସାଇ, ବର ଓ କନ୍ୟା ଦୁହେଁ ମୁକୁଟ ବନ୍ଧାଇଲେ ଏହି ହେତୁରୁ ମୁକୁଟଲାଗି ହେଲେ ବୋଲି କବି ଅନ୍ୟପକ୍ଷରେ ହେତୁ ନିର୍ଦ୍ଦେଶ କରୁ ଅଛନ୍ତି ।

୭୫—ଚନ୍ଦ୍ରବୀର ପକ୍ଷରେ ଅସାଧ୍ୟ ହୋଇଅଛି ବୋଲି ତାହା ଜସ ବଶ୍ୟରେ ଈର୍ଷା କନ୍ୟାଇଁ କୁମାର ମୁକୁଟ ବନ୍ଧାଇଲେ କି ? ଏଥର ତାକୁ ନିନ୍ଦକରିବେ । ସେନାପତି ମୁକୁଟ ବନ୍ଧାଇଲେଣି ।

୭୬—ବାଳା ରତିରଞ୍ଜୀରବିଙ୍କୁ ଜୁର କରିଦେଇ ନାହିଁ ବୋଲି ସେ ବଶ୍ୟରେ ଅଜ ଈର୍ଷା କନ୍ୟାଇଲା କି । ଅର୍ଥାତ୍ ମୁକୁଟ ବାନ୍ଧି ରାଜାହେବେ ତାହା ନିରାକରିବ ବୋଲି ମୁକୁଟବାନ୍ଧିଲା କି ।

୭୭—ସୂର୍ଯ୍ୟକୁଳର ପୁରୋହିତ ବଶିଷ୍ଠ ଶ୍ରେଷ୍ଠ ଅଟନ୍ତି, ଅତଏବ ସୁଶୀଳା ଜାତହେବାକୁ ବୈଦିକକର୍ମ ପ୍ରଚାର କଲେ । ସୁକର୍ମ୍ମ, ସୁଜାତ୍ୟ ଓ ବୈଦିକ କର୍ମ୍ମ ।

୭୮—ଯଥା ବଶିଷ୍ଠଙ୍କ ଅରୁନ୍ଧତୀ, ଯଥା ରାମଙ୍କ ସୀତା, ଏପରି ତୁଳନା ଦେଇ କେତେ ଅଦ୍ଭୁତକଥା ପ୍ରକାଶ କଲେ । ତାହା ଅଗରେ କହି ଯିବ ।

୭୯—ବେଦବଚନକୁ କଳ ଅର ଜଣ ନାହିଁ ଦେଖ କି ଅପୂର୍ବକଥା, ବଳବାନ୍ ରାଜକୁମାର ହାତରେ ଅବଳା ହେମବର୍ଣ୍ଣ କଳାନାଗରେ ଧରାଇଲା । ଅର୍ଥାତ୍ ବେଦବିଧି ଅନୁସାରେ ବରକନ୍ୟାର ପାଣି ଗ୍ରହଣ ହେଲା । ୧ କରେ, ହାତରେ ।

୮୦—ଯୁବରାଜ କୁମାର କେମନ୍ତ ପାପ ବୁଝିବା ମନରୁ ଦାନ ନ କରନ୍ତେ ଗାଳବାଦ ଲାଗିଲା, ନଗାନା ସ୍ତ୍ରୀ ସ୍ୱାମୀଚରଣର ପାଦଶରଣ ନ ଥିଲେ ପୁରୀମାନଙ୍କ ଖଣ୍ଡ କରନ୍ତେ ।

୮୧—ଲକ୍ଷ୍ମୀମାନଙ୍କ ହାତ ହାଗତ୍ରୁଣ୍ଡାରୁ ଶ୍ରେଷ୍ଠ ଅଟେ, କିନ୍ତୁ ବ୍ରାହ୍ମଣକନ୍ୟା ସେ ହାତକୁ ସାମାନ୍ୟ ପ୍ରକାରରେ କୁଶ ଜୋଡ଼ରେ ବାନ୍ଧିଦେଲା, କି ଦନ ? ଅର୍ଥାତ୍ ବରକନ୍ୟାଙ୍କର ହାତଗଣ୍ଠି ହେଲା । ୧ ଲକ୍ଷ୍ମୀର, ହାତଗୁଣ । ୨ ଦ୍ୱିଜସୁତା, ବ୍ରାହ୍ମଣକନ୍ୟା ।

ଠାରିଲା କି ଏହି କରରେ ହେବ ବନ୍ଧାବନ୍ଧ ।
ଏଣୁ ତାକୁ ଧନ ଅନୁଗ୍ରହେ ଦେଇ ବୋଧି । ୮୨ ।

ଶାବକନନ୍ଦାଗ୍ନି ଉରଜେ ଦ୍ରୋହୀ ହେବା ଫଳ ।
ସ୍ତନରେ ବନ୍ଧାଇ ଗତାଗତ ନାରିକେଳ । ୮୩ ।

ପୂର୍ଣ୍ଣକୁମ୍ଭ ସ୍ତବକ ପଲ୍ଲବ ଶିରେ ଦେଇ ।
ପଦ ନଖ ଉଲଗ ବ୍ୟାଜରେ ଅଟେ ରହି । ୮୪ ।

କନ୍ୟା ତାର ଅମ୍ବୁଦାନେ କମ୍ବୁବୃନ୍ଦ କଲା ।
ଗଲେ କି ମୁଖ ପୋତିବା ବ୍ୟାଜେ ଶ୍ରମଜଳ । ୮୫ ।

ଲଜା ଉହନଙ୍କୁ ମୁହିଁ ଲଜ୍ଜା ଲଭି ହାସ ।
ବସ୍ତୁରିଲ ପଲାଇବ କପାଁ ଯିବ ନାଶ ସେ । ୮୬ ।

ରମା ସ୍ୱାଧୀନଭର୍ତ୍ତୃକା ଅନୁକୂଳ ପୁଂସ ।
ହୋଇ ମଞ୍ଜିଷ୍ଠାନୁରାଗ କରିବେ ପ୍ରକାଶ । ୮୭ ।

ଦୃଢ଼େ ଗଣ୍ଠି ଦିଅଇ ବସନେ ଏ ନିମନ୍ତେ ।
କଟନ୍ଧେ ପକାଇ ଗମନ କଲେ ସେ ଶୁଦ୍ଧାନ୍ତେ । ୮୮ ।

---

୮୨—"ଏହି ହାତରେ ତୁମ୍ଭେ ତୁହିଁ ବନ୍ଧାବନ୍ଧ ହେବ" ଏହା ସେହି ବ୍ରାହ୍ମଣ କନ୍ୟା ଠାରିଦେଲା କି ? ବୋଧହୁଏ ଏହି ହେତୁରୁ ସେ ବ୍ରାହ୍ମଣ କନ୍ୟାକୁ ଧନ ଅନୁଗ୍ରହକରି ଦେଇ ବୋଧ କଲେ ।

୮୩—ପଦ୍ମାବତୀଙ୍କ ରାଜକୁମାରର ସ୍ତନଠାରେ ଦ୍ରୋହ ହେବା ଫଳରୁ ନାରିକେଳ ସ୍ତନରେ ବନ୍ଧାହୋଇ ଗତାଗତ ହେଲା । ତବାହୁରେ ନଡ଼ିଆ ସ୍ତନ ଗୁଚ୍ଛଅହୋଇ ଏକହାତରୁ ଅନ୍ୟହସ୍ତକୁ ଯାଉଥାଏ । ୧ ଉରଜ, ସ୍ତନ ।

୮୪—ସେହି ସ୍ତନଠାରୁ ତାର ଅମ୍ବପଲ୍ଲବ ସ୍ତବକ ହାତକୁ ଶିରରେ ଦେଇ ପୂର୍ଣ୍ଣକୁମ୍ଭ ବାଲା ତେମାନ ପାଦ ନଖକୁ ଉଲଗିବା ବ୍ୟାଜରେ ଅଟ ଯତିତ ରହିଅଛି ।

୮୫—କନ୍ୟାପିତା ଶଙ୍ଖରେ ଜଳଦାନ କରନ୍ତେ ଜଳ କହୁଅଛନ୍ତି, ମୁଦଙ୍ଗର କଣ୍ଠାରୁ ହାତ ଶଙ୍ଖମୁହଁକୁ ତଳକୁ ପୋତଅଛି ଓ ତାର ମଧ୍ୟଗତ ଜଳ କପଟରେ ଶ୍ରମଜଳ ଗଳୁଅଛି କି ? ୧ ଦାନ, ପିତା । ୨ କମ୍ବୁ, ଶଙ୍ଖ ।

୮୬—ଲାଜା (ଲଥ) ହୋମ ହେବାର ଦେଖି ଲଜ୍ଜା (ଲାଜ) ସମାନ ନାମ ଥିବାରୁ ଉପହାସ କରୁଥିଲା । ମୁଁ ପାଉଡ ପଳେଇବ, ତାହାଙ୍କ ପୋଡ଼ିହୋଇ ନାଶଯିବ ।

୮୭-୮୮—ରମା କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ସ୍ୱାଧୀନଭର୍ତ୍ତୃକା ଅର୍ଥାତ୍ ସ୍ୱାମୀଙ୍କ ଅଧୀନରେ ରହିବା ନାୟିକାହୋଇ ପୁରୁଷ ପୃଷ୍ଠଦେଶରୁ ଅନୁକୂଳ ନାୟକ ଅର୍ଥାତ୍ ଏକାସକ୍ତ ହୋଇ ପରସ୍ପର ମଞ୍ଜିଷ୍ଠାନୁରାଗ ଅର୍ଥାତ୍ ଚିର ସ୍ଥାୟୀପ୍ରେମ ଅପରିବର୍ତ୍ତନୀୟ ଦାମ୍ପତ୍ୟ ସ୍ନେହ ପ୍ରକାଶକରିବେ । ଏଥିପାଇଁ ବସ୍ତ୍ରରେ ଦୃଢ଼ଭାବେ ଗଣ୍ଠି ଦେଇ କାନ୍ଧରେ ପକାଇ ଅନ୍ତଃପୁରକୁ ଗଲେ । ୧ ଶୁଦ୍ଧାନ୍ତ, ଅନ୍ତଃପୁର ।

କୁଚଜାଲାରେ ବସିଲେ ସେ ଯୁବତୀ ଯୁବା ।
ଯୁଚଜାଳା ଜଉତୁକ ଆଦ୍ୟାରମ୍ଭ କବା । ୮୯ ।
ସେ ଯୋଗୀନ୍ଦ୍ରମୋହନୀ ସମ୍ବାଦ ବର୍ତ୍ତାଇକ ।
କରମୂଠା ଭିତରେ ରଖିଲ କପର୍ଦ୍ଦକ । ୯୦ ।
ଶିରୀଷ ସରୁ କୋମଳଅଙ୍ଗୀ ପଦ ତାର ।
ଜଗଇ ନ ଦେଇ ସେ ରସିକେ ବଳାତ୍କାର । ୯୧ ।
ପଞ୍ଚଗ୍ରାସୀ ୧ଦ୍ଦନାଶନ ବ୍ରତ ପୂର୍ଣ୍ଣ କାଳ ।
ଜନାଶ ନ କରୁ ଓଷ୍ଠାମୃତ ଦୋଷ ଗୋଳ । ୯୨ ।
କୃପନନ୍ଦନ ବଦନ ଶୋଭନକୁ ସ୍ପୃହି ।
୧କନ୍ଦନପିବୁଲା ପଣ୍ଡ ଅନ୍ତଃପୁରସ୍ଥାୟୀ । ୯୩ ।
ଯେତେ ଅଙ୍ଗଜଲେ ବାଜେ ଲକ୍ଷଣ ଅଳସ ।
ଦଣିଲେ ସେ ଲେଖା ଚନ୍ଦ୍ରଲେଖାର ସଦୃଶ । ୯୪ ।
ତାହାରେ ବଜ୍ରନସ୍ତ କଲ ହୃଦମଧ୍ୟେ ରହୁ ।
କାମିଣୀକ ମୁନିଙ୍କର ବ୍ରହ୍ମଜ୍ଞାନ ଯାଉ । ୯୫ ।
ସୀତାଯୁକ୍ତ ଦଶାସ୍ୟଧ ଅମ୍ବୁଜର ଦ୍ବନ୍ଦ୍ୱ ।
ସ୍ମିମ ତୋଷଦାନେ ରାମମୂର୍ତ୍ତି ବନ୍ଦେ ଲୋକ । ୯୬ ।

---

୮୯—ସେ ଯୁବା ଓ ଯୁବତୀ କୁଅସେଜରେ ବସିଲେ, ଅନନ୍ତର କୁଳଚେର କୌତୁକ ଆରମ୍ଭହେଲା ତ ।
ବୋହପରେ ବସ୍ତରେ ଗଣ୍ଠି ପଡ଼ି ବରକନ୍ୟା କୁଅ ସେଜକୁ । ଏହା ପ୍ରସିଦ୍ଧ ଅଛି ।
୯୦—ସେ ଯୋଗୀନ୍ଦ୍ର ମୋହନକନ୍ୟା ଜନର ବତାଇବାଇ ହାତମୁଠା ଭିତରେ କଉଡ଼ି ରଖିଲା ।
୯୧—ସେ କନ୍ୟାର ଶିରୀଷଫୁଲପରି କୋମଳାଙ୍ଗୀ, ତାର ସେହି କୋମଳତା ଗୁଣ ରସିକ ବଳାତ୍କାରକୁ
ସହିଦେଲା ନାହିଁ । ଅର୍ଥାତ୍ କୋମଳାଙ୍ଗୀ ହେତୁରୁ ପୁରୁଷ ବଳେ କଉଡ଼ି ଫିଟାଇନେଲେ ନାହିଁ ।
୯୨—ଅନାହାରବ୍ରତ ପୂର୍ଣ୍ଣକାଳରେ ଓଷ୍ଠାମୃତ ଅଶନକଲା ଅର୍ଥାତ୍ ଅଧର ପାନକଲ ପଞ୍ଚଗ୍ରାସି କରିବା
ଦୋଷ ଗୋଳକରିବାରୁ ଅର୍ଥାତ୍ ମନେହେବାରୁ ଛୁଇଁବା ହାସ ପଞ୍ଚଗ୍ରାସୀକଲେ । ୧ଦନାଶନ,-
ଅନାହାର ।
୯୩—ଅନ୍ତଃପୁର ସ୍ତ୍ରୀମାନେ ରାଜକୁମାରଙ୍କର ଅନୁପମ ଶୋଭାକୁ ଦେଖି କାଠ ପିତୁଳା ପରି ରହିଲେ ।
୧ ଚନ୍ଦନ, କାଠ ।
୯୪—ଯେଉଁମାନେ କାମାଳସୀ ହୋଇ ବାଡ଼ ମାନଙ୍କରେ ଅଉଜିଲେ ସେମାନେ ଲେଖାହୋଇଥିବା ଚିତ୍ରପରି
ଦିଶିଲେ ।
୯୫—କୁମାର ସେମାନଙ୍କ ହୃଦୟ ମଧ୍ୟରେ ଥାଆନ୍ତୁ ତାହାରେ ବନ୍ଧନକଲେ । ଅତଏବ ବୋଧହୁଏ ସେ
ସ୍ତ୍ରୀମାନେ ମୁନିମାନଙ୍କର ବ୍ରହ୍ମଜ୍ଞାନକୁ ପାଉନ୍ତୁ କି ! ମୁନିମାନେ ଅନ୍ତରରେ ଓ ବାହାରେ ସର୍ବଦା
ବ୍ରହ୍ମ ଦର୍ଶନକରନ୍ତି ।
୯୬—ସେ ସୀତା ଓ ଦଶାସ୍ୟଧ ( ବ୍ରହ୍ମାଙ୍କରେ ) ଯୁକ୍ତ [illegible] ଏବ ସାହାଙ୍କର ଦ୍ୱନ୍ଦ୍ୱ ( ଚନ୍ଦ୍ର )
[illegible] ମଧ୍ୟ ସ୍ମିମ ( ଶିବ ) ଙ୍କୁ ତୋଷଦାନ କରିଥିଲେ, ପୁଣି ରମଣୀୟ
ଅମ୍ବୁଜର ( ପଦ୍ମ ) ପଧ,

ରାମଭଦ୍ର ରୁଦ୍ର ବଳଭଦ୍ର ଚନ୍ଦ୍ର ରଞ୍ଜୁ ।
ଉପେନ୍ଦ୍ର ଭଞ୍ଜ ଧୀରବର ବରଚରୁ । ୧୨ ।

## ଚତୁସ୍ତ୍ରିଂଶ ଛାନ୍ଦ ।

ରାଗ ପଞ୍ଚମ ବରାଡ଼ି । କଳସା ବାଣୀ ।



ଏ ଛାନ୍ଦ ୧ଇକ୍ଷୁଲତିକା ରସ ଆସ୍ୱାଦନେ ।
ଅର୍ଥୀ ହେବ ଏଥି ଜ୍ଞାନ-୨ରଦ ଥିଲା ଜନେ ହେ ।
ମଧୁଶଯ୍ୟା ସଦନ ସଜାଡ଼ି ସହଚରୀ ।
ବେଶ କଲ ସଜଣୀରେ ଯେ ବଧୂ ପ୍ରବେଶ ଯେ । ୧ ।
ମଣ୍ଡିଲେ ଏମନ୍ତ ପୁର ଖଣ୍ଡିଲେ ହିଂଶଯେ ।
କବାଙ୍ଗନା ହେଲେ ଯୁବା ପ୍ରମୋଦ ଉଦୟେ ଯେ ।
ଗୋପୀ କୃଷ୍ଣଲୀଳା ଏଥି କାହିଁ ଯାହିଁ ଦେଖା ।
ସୀତା ରାମ ପ୍ରଥାଯ ନିୟମ ଅଛି ଲେଖା ଯେ । ୨ ।
ନୃତନରେ ଏତେ ଏଥି କଲି ମତ ହୁରୀ ।
ଅର୍ଦ୍ଧଜାତ ୧ହରି ଜଣୀ ବିଦାରଣ କରି ଯେ ।

---

ମୂର୍ତ୍ତି ଅଛନ୍ତି ଓ ଲୋକମାନେ ଯାହାଙ୍କୁ ବନ୍ଦନ କରନ୍ତି । ଏପରି ରାମଚନ୍ଦ୍ରଙ୍କ ଭକ୍ତାବରି । ପୁଣି ସୀତା (ରମା) ଓ ଦଶାସ୍ୟ ଦୁହିତ୍ରିକରେ ଯେ ପୂଜ୍ୟ ଅଟନ୍ତି । ଅମ୍ବୁଜର ବୃତ୍ତ (ଅଗ୍ନିରଷ୍ଟି), ରାମ ନାମଅଙ୍କ ଯେ ରବି କ ଲୋକମାନଙ୍କ ତୋଷ ଦେବାକୁ ରମଣୀୟ ମୂର୍ତ୍ତି ଅଛନ୍ତି ଅର୍ଥାତ୍ ବଳଦ ଅଛନ୍ତି । ଲୋକେ ଯାହାଙ୍କୁ ବନ୍ଦନା କରନ୍ତି । ଏପରି ରୁଦ୍ରଙ୍କୁ ଭକ୍ତାବରି ଯାହାଙ୍କର ଦଶାସ୍ୟ ରଜତ ସୀତା ଯୁକ୍ତ ଅଟେ (ରଜତ ଚନ୍ଦ୍ରର ସୀତା ବୋଲାଯାଏ) ଅମ୍ବୁଜର ବୃତ୍ତ ଅର୍ଥାତ୍ ସୂର୍ଯ୍ୟ ପତ୍ନୀ ସହୃଦ ନାମ ରାମସେନଙ୍କୁ ତୋଷଦାନ କରିବାକୁ ରମଣୀୟ ମୂର୍ତ୍ତି ଅଟନ୍ତି ଏବଂ ଲୋକେ ଯାହାଙ୍କୁ ବନ୍ଦନ କରନ୍ତି । ଏପରି ବଳଭଦ୍ରଙ୍କ ଚରଣେ ଚିତ୍ତ ଧୀରବର ଉପେନ୍ଦ୍ରଭଞ୍ଜ ଗୀତ ରଚନା କରୁଅଛନ୍ତି ।

—–o–—

## ଚତୁର୍ତ୍ତ୍ରିଂଶ ଛାନ୍ଦ ।

୧—ଏ ଛାନ୍ଦ ଅତ୍ୟନ୍ତ ଅଟେ, ଜ୍ଞାନରୂପକ ଦାନ୍ତଥିବା ଲୋକମାନେ ଏଥିରୁ ରସ ଆସ୍ୱାଦନ କରିବାକୁ ଅର୍ଥୀ ହେବେ । ସଜନୀମାନେ ମଧୁଶଯ୍ୟା ଘର ସଜାଡ଼ି କରି ବେଶ କରି ସଖୀମାନଙ୍କ ଅଙ୍ଗରେ ସେ ବଧୂ ଶଯ୍ୟା ଘର ମନ୍ଦିର ବଧୂକୁ ପ୍ରବେଶ କଲେ । ୧ ଇକ୍ଷୁଲତିକା, ଅଙ୍ଖୁଡ଼ି । ୨ ଦନ୍ତ, ଦାନ୍ତ ।

୨—ଏହି ନଗରୀ ସ୍ତ୍ରୀର ହୃଦପାଇଁ ଓ ଯୁବାର ଆନନ୍ଦ ଜାତ ହେବାପାଇଁ ମଧୁଶେଯା ପୁରକୁ ଏପରି ମଣ୍ଡିତକଲୁ ଏବ ସହାଦର ଖଣ୍ଡିକଲୁଁ । ଯେଉଁଠାରେ ଗୋପୀମାନଙ୍କ ସହିତ କୃଷ୍ଣଙ୍କର ଲୀଳା ଚିତ୍ର ଦେଖା ନାହିଁ । ସେହେତୁ ଏକୁଷ୍ଣ ବ୍ରହ୍ମଚାରୀବ୍ରତ । ସେଥିରେ ସୀତା ରାମଙ୍କର ପ୍ରଥମ ସମ୍ବର୍ଦ୍ଧ ନିଷେଧ ବିଷୟରେ ଯେ ନିୟମ ବସ ହୋଇଥିଲା, ତାହା ଲେଖା ହୋଇଅଛି ।

୩—ଅର୍ଦ୍ଧ ଜାତ ହୋଇଥିବା ସିଂହ ହାତୀକ ବେଦାରଣ କରୁଥିବା ଏହି ମନୋହର ଚିତ୍ର ନୂତନର ଦେଖିଲୁଁ । ତଳକରେ ଯୁବ ଓ ଯୁବତୀ ମଣିରେ ଏହି ଅର୍ଦ୍ଧଜାତ ସିଂହ ହାତୀର ମଦବର୍ଷିଥିବା

ତାଙ୍କ ସ୍ଥାନ ମାସଗେ ଏହି ଖ୍ୟାତି ଥିଲେ ।
ବାଳିଭ ଦେଖିବା ନ ଦେଖିବା ଶଙ୍କା ବଳେ ଯେ । ୩ ।
୧ପ୍ରଚ୍ଛଦପଟ ସୁପାଣ୍ଡ ସୁହାଂଶୁ ୨ତୁଳୀ ।
ଶେଯାଇ ପୁଷ୍ପ ନ ବଞ୍ଚି ପଲ୍ଲବ ଭାଳି ।
ଅଲୋକ-ତମ-ରକ୍ଷଣା ୩ମୃଗାପଞ୍ଜରୀ ।
ତାଙ୍କ ଭୂଷାଦ ରତ୍ନ କ୍ୟୋତକ ଏକ ଯେ । ୪ ।
୧ଭୃଙ୍ଗି ପୂର୍ଣ୍ଣ ୨ଘନସାରଚୂର୍ଣ୍ଣ ଶେଯେ ସିଞ୍ଚି ।
୩ରସାମଣ୍ଡନା ରସାନ୍ତ ଉପକାର ପାଞ୍ଚି ।
ସ୍ଫୁଟ ଖଞ୍ଜିଲେ ଶୋଭାକୁ ୪ଦର୍ପଣଚନ୍ଦ୍ରାନ ।
ହେଜୁଛୁଁ ହୋଇବ ଦୁଇ ଦଗକୁ ସମାନ । ୫ ।
ସଖୀଏ ବୋଇଲୁ ଏତେ ନ ଜାଣତ ନକ ।
ବାଳକାଙ୍କୁ ଅନସର ଚକ୍ରଗ୍ରାମଣିକ ।
ନାମେ ବ୍ରହ୍ମା ଗୁପ୍ତେ ରଖିଥିଲା କୃଶକଟୀ ।
ଦେଖ ସଜ ହୁଏ ସର୍ଜିବାକୁ ପ୍ରେମସୃଷ୍ଟି । ୬ ।
ଶ୍ରୀଧର ହୋଇବ ଦ୍ୱିଜପଦ ବହିବାରେ ।
ଦଗମ୍ବର ହୋଇ ଶିବ ହେବ ଏ କଣାରେ ।

ଅକୃତର ଦୂରଥିଲେସୁଦ୍ଧା ତ୍ରିସୁ ଦେଖିପାରବେ ଏହି ଅଶଙ୍କାବଳରେ କାନ୍ତରେ ଏ ଚନ୍ଦ୍ରକଲୁଁ । ଏ ଚନ୍ଦ୍ର ଏହା ବ୍ୟକ୍ତହେଲା ଯେ ଯାହାର ସ୍ୱଭାବ ଭାବ କେହି କିଏଁ ନ ଦେଲେ ସୁଦ୍ଧା ସେ ତାହାକରେ । ନୂଆ ସମ୍ଭୋଗରେ ବର ଓ କନ୍ୟା ଦୁହେଁ ଶିଖାପାଇ ନ ଥିଲେ ସୁଦ୍ଧା ନଚର କର୍ମ ଅବଶ୍ୟ କରିବେ । ୧ ହଳ, ଚିଂଢ ।

୪—ଦୂଳାଚର ସୁପାଇ ଶେଯାଇ ତହିଁରେ ବହୁଣାତଦର ପକାଇଲୁଁ, ଫୁଲବସ୍ତ୍ରକୁ ନାହିଁ, କ୍ଷେତ୍ରଙ୍କୁ ଫଳର ସମ୍ଭୋଗରେ ଚମି ପଡ଼ବ । ଚାନ୍ଦ୍ର ( ଚନ୍ଦ୍ରକା ) ଚଳିତ ଅନ୍ଧକାରର ତେଜ କାଟିବ ବନ୍ଧନର ଥନ୍ଥ ଅଲୁଅ ଓ ଅନ୍ଧ ଅନ୍ଧାର ରୋକିବା ଲଣ୍ଠନ ମଧ୍ୟ ରଖିଲୁଁ । ୧ ଚିତ୍ରଚଟ, ନହଣା ଗବର । ୨ ଦୂର୍ବାହସୁଲ, ଭୂବାଦ । ୩ ପ୍ରଦୀପ ଚକ୍ରବ ଲଣ୍ଠନ ।

୫—ହେ ଦୂତକନ୍ୟା ଜେମାର ବସନ୍ତ ସମୟରେ ଉପକାର ହେବା ପାଇଁ ଶେଯରେ କର୍ପୂରଗଣ୍ଡି ଚୂର୍ଣ୍ଣକର ଶୀଘ୍ର ଦିଅଲୁଁ । ଶୋଭାହେବାକୁ ଦର୍ପଣରଖି ଦୀପ୍ତି ଝଟ୍ଟିଙ୍କ ତାହା ହେଲୁଁ, ଏବେ ହେଜୁଛୁ ସେ ରତ୍ନରେ ଦେବାସ୍ତ ପଟ୍ଟ ଉପର ଓ ତଳ ଦୁଇଗୋଟକୁ ସମାନ ହେବ । ୧ କୃଷ୍ଣ, ଗନ୍ଧ । ୨ ଘନସାରଚୂର୍ଣ୍ଣ, କର୍ପୂରଗୁଣ୍ଡି । ୩ ସୋମଣ୍ଡନା, ଭୂମଣ୍ଡନା । ୪ ବଚାନ, ଚାନ୍ଦୁଆ ।

୬—ଜଣେ ସଖୀ କହିଲା ଚିଲାବନ୍ତ ଚତୁରମଣିକୁ ଅନ୍ତଃସର କର ଏତେକ ଜାଣ ନାହିଁକ ? କୃଶୋଦରୀ କୋଟିବ୍ରହ୍ମାଣ୍ଡସୁନ୍ଦରୀ ନକ-ନାମରେ ବ୍ରହ୍ମାପଟ ଲୁଚାଇ ରଖିଥିଲା, ଦେଖ ଏବେ ପ୍ରେମସୃଷ୍ଟି ସର୍ଜନା କରିବାକୁ ସଜ ହେଉଅଛି ।

୭—ଏ ସୁନ୍ଦରୀ ଘଟରେ ଦ୍ୱିଜପଦ (ଦନ୍ତଚିହ୍ନ) ବହିବା ହେତୁରୁ ଶ୍ରୀଧର (ବିଷ୍ଣୁ) ହେବ । ବିଷ୍ଣୁ ଦ୍ୱିଜ ପଦ (ବ୍ରାହ୍ମଣ ପାଦ) ଧାରଣ କରିଅଛନ୍ତି । ପୁଣି ଦଗମ୍ବ ଦିଗମ୍ବର (ଉଲଙ୍ଗ) ହୋଇ ଶିବ ହୋଇଯିବ ।

ନ ଜାଣିଲୁ ହୋଇ'ଛନ୍ତି ଏକ ସଖୀ ପୁଚ୍ଛା ।
୧ଅର୍ଦ୍ଧେନ୍ଦୁ ବନ୍ଧିବା ଯୋଗ କେତେବେଳ ଅଛି । ୭ ।
ଜଣେ ଭଣେ ଶୈଳ-ଦୁର୍ଗ ଉରଜ-ସେନାଙ୍କ ।
ରହି ନ ପାରିବ ଷଣ୍ଢ ରତିରଣ ଯେଣୁ ।
କେ ବୋଇଲା ଦେଲାବେଳେ କରିଥାନ୍ତି ନାହିଁ ।
ପାଇବାକି ନନ୍ଦା ହାସ୍ୟ ନ ରହିବ ଯହିଁ । ୮ ।
ସଖୀଏ କହିଲା ଜୂଡ଼ା କଲ ଏହି ଭାବ ।
ମନସିଜ ଅଯଶ-ପତାକା ଉଡ଼ାଇବ ।
ଆଜ ହେବ ଅଙ୍ଗଦେଶେ କାନ୍ତ ମହୀପତି ।
ପ୍ରବେଶେ ୧କର'ଗ୍ରହଣ କରିବ ଝଟିତି । ୯ ।
କେହି କହି ମୂଳ ହେଲା କଟକ ମଣ୍ଡିବା ।
ତାଙ୍କ ପ୍ରଦୀପ ଫୁଲ ଛତି ଦେଇଥିବା ।
ଖଞ୍ଜିଥିବା ରଞ୍ଜିବାକୁ ଶୁଭ ଲକ୍ଷଣାକୁ ।
ଝିଲମିଲମାଳୀ ପାନପତ୍ରୀ ତୋରଣାକୁ । ୧୦ ।
ଖଞ୍ଜା ଗୋ ନୂପୁର ବଳା ଝୁଣ୍ଟିଆ ବାଜେଣି ।
ଚତୁର୍ବିଧ ବାଦ୍ୟ ହେଉ ୧ବସୁସୀଏ ଭଣି ।

---

ସେଠାରେ ପୁଣି ଆଉ ଜଣେ ସଖୀ ନଜାଣିଲାପରି ପଚାରିଲା । ଏହାର ଶ୍ଳେଷପକ୍ଷରେ ଅର୍ଦ୍ଧଚନ୍ଦ୍ର ବୋଲିବା ଯୋଗ କେତେବେଳେ ଅଛି । ୧ଅର୍ଦ୍ଧେନ୍ଦୁ, ଅର୍ଦ୍ଧଚନ୍ଦ୍ର ଓ ନଖକ୍ଷତ ।

୮—ଆଉଜଣେ କହିଲା ଏହାର ସ୍ତନ ରୂପକ ସେନାପତି ପଡ଼ି ପୁଣି ପର୍ବତ ରୂପକ ଗଡ଼ ମଧ୍ୟରେ ରହି ପାରିବ ନାହିଁ ପରା । କେହି ସଖି କହିବ ରତିରଣ ବେଳେ ହେଲେ ମନାକରିଥାନ୍ତି । ତାହା କେବେ ରହିପାରିବ ନାହିଁ, ନିଶ୍ଚେ ଛାଡ଼ିଯିବ । ଅମ୍ଭେମାନେ ନିନ୍ଦା ପାଇବାକୁ ।

୯—ଆଉ ଜଣେ ସଖୀ କହିଲା, ଜୂଡ଼ା କଲେଇଁ କିନା, ତା କଥା ଏହିପରି । ସେ ନିଶ୍ଚେ ଫିଟିଯିବ । ଫିଟିଯିବାହାର କନ୍ଦର୍ପର ଅପଯଶ ପତାକା ଉଡ଼ାଇବ ଅର୍ଥାତ୍ କନ୍ଦର୍ପ ହାରିବ । ଆଜ ଏହାର ଅଙ୍ଗ ପ୍ରଦେଶରେ ପତି ରାଜା ହେବ । ପ୍ରବେଶ କଲା ମାତ୍ରେ ତତକ୍ଷଣାତ୍ କର ଗ୍ରହଣ କରିବ, ରାଜା ଖଜଣା ଗ୍ରହଣ କରେ, ଏ ପତି ହାତ ଧରିବେ । ୧କର, ଖଜଣା ଓ ହାତ ।

୧୦—କୌଣସି ସଖୀ କହିଲା ଯଦି ପତି ରାଜା ହେବେ ତାହାହେଲେ କଟକ ମଣ୍ଡିବା ପ୍ରଧାନ ହେଲା । ରାଜାହେଲେ କଟକ (ରାଜଧାନୀ) ମଣ୍ଡନ କରିବାକୁ ହୁଏ । ବର୍ତ୍ତମାନ (କଟକ) ହସ୍ତଭୂଷଣ ଲଗାଇବାର ହେଲା । ଆଉ ମଧ୍ୟ ତାଙ୍କ ରୂପକ ଦୀପ ଓ କାନଫୁଲ ରୂପକ ଛତି ମଧ୍ୟ ଦେଇଥିବା । ପୁଣି ଶୁଭ ଲକ୍ଷଣାକୁ ରଞ୍ଜିବାକୁ ଝିଲମିଲ ମାଳୀ ପାନପତ୍ରୀ ରୂପକ ତୋରଣାକୁ ମଧ୍ୟ ଖଞ୍ଜିଥିବା । ରାଜା ହେଲେ ଦୀପ ବସେ, ଛତି ଟେକାହୁଏ ଓ ତୋରଣା ମଧ୍ୟ ହୁଏ ।

୧୧—ଆଉ ଏକ ସଖୀ କହିଲା । ବାଜେଣି ନୂପୁର, ବଳା ଓ ଝୁଣ୍ଟିଆ ଖଞ୍ଜିବା ଏସବୁ ରାଜାହେବା କାଳର ଚତୁର୍ବିଧ ବାଦ୍ୟ ହେଉ (ଆନଦ୍ଧ, ଶୁଷିର, ତତ ଓ ଘନ ଏପରି ବାଦ୍ୟ ଚତୁର୍ବିଧ) ଆଉ ଏକ ସଖୀ

ହସି ²ଅଳୀଏ କହିଲା ଏ କଥା ବିସ୍ତର ।
ଅନାୟତ୍ତେ କଲେ କରୁ ସୁରତ ଗୋଚର । ୧୧ ।
ସ୍ୱରୂପବାଣୀ ଏରୂପେ କହୁଁ ଶେଷ ବେଶ ।
¹ବନ୍ଧୁଜୀବଅଧରୀ ସଜାଡ଼ି ପିନ୍ଧୁ ବାସ ।
ସ୍ମିତରୁ ହସି ଭାଷିଲା ବଢ଼ାଇ ଦେବା ସଖୀ ।
ଏତେକେ ଯତନକୁ ଏହାକୁ ପାରନ୍ତୁ କି ରଖି । ୧୨ ।
ଅଳିଏ ଛଳିଲା ଯୋଗେ ଏ ପାରିଲେ ରହି ।
¹ନୀବିବନ୍ଧ ବୋଲାଇ ଯେ ନ ରହିବ ସେହି ।
ରସନଦୀ ବୃଦ୍ଧି ବୁଡ଼ାଇବ ବେନିକୂଳ ।
ଏ ଯେବେ ²କର-ଲହରୀ ହୋଇବ ଚଞ୍ଚଳ । ୧୩ ।
ସଙ୍ଗିନୀଏ ପକ୍ଷ ହେଲା ରସରଙ୍ଗିଣୀକି ।
ତୁମ୍ଭ ବୋଲ ଯେବେ ଦୃଢ଼େ ନ ବାନ୍ଧିବ ନୀକି ॥
¹ପ୍ରେମବୀଜ ଅଙ୍କୁରିଅଛି ହୃଦକ୍ଷେତ୍ରେ ।
ରହିବ ବିନୟଫଳ ଜାତ ପର୍ଯ୍ୟନ୍ତେ । ୧୪ ।
ପ୍ରିୟମ୍ବଦାଏ ଭାଷିଲା ହାସ କର ମୋତେ ।
ଶିକ୍ଷା ଦେଇଥାଅ ଯେଉଁ ଲୀଳା ଯେଉଁ ମତେ ।
କି କଥା କହ ଗୋ ବୋଲି ଏକ ସଖୀ ଭାଷେ ।
ଏ ସୁରତଶାସ୍ତ୍ରପଣ୍ଡିତା ଅଗୁରୁବିଦ୍ୟା ସେ । ୧୫ ।

---

କହିଲା ହସିକରି ଏକଥା ବିଚାର କର, ଏ ଅନାୟତ୍ତରେ ସେ ରାଜାଙ୍କ ସମ୍ମୁଖେ ସୁରତ ଗୋଚର କଲେ କରୁ । ¹ବନ୍ଧୁଜୀବ, ସଖୀ । ²ଅଳୀ, ସଖୀ ।

୧୨—ଏହାପରେ ସରସ କଥା କହୁଁ କହୁଁ ବେଶ ଶେଷ ହେଲା । ସେ ବନ୍ଧୁଜୀବାଧରୀ ସଜାଡ଼ିକରି ଲୁଗା ପିନ୍ଧନ୍ତେ, ଲୁଗା ବଢ଼ାଇ ଦେଇଥିବା ସଖୀ ଅଳ୍ପ ହସିକରି କହିଲା । ଏବେ ଯତ୍ନକରି ପିନ୍ଧୁଅଛ ଯେ ଏହାକୁ ରଖି ପାରନ୍ତ କି ? ¹ବନ୍ଧୁଜୀବ, ରାଙ୍ଗ ସନ୍ଧ୍ୟା ଫୁଲ ।

୧୩—ଅନ୍ୟ ଏକ ସଖୀ ଛଳକରି କହିଲା । ଏ ବସ୍ତ୍ର ଯୋଗେ ରହିଲେ ସୁଦ୍ଧା ଯେ ବସ୍ତ୍ରଗ୍ରନ୍ଥି ବନ୍ଧ ବୋଲାଉଅଛି ସେ ଶେଷରେ ରହି ପାରିବ ନାହିଁ । କାରଣ ରସରୂପକ ନଦୀ ବଢ଼ିଲେ ଦୁଇକୂଳ ବୁଡ଼ାଇ ପକାଇବ । ହସ୍ତ ରୂପକ ଲହରୀ ଚଞ୍ଚଳ ହେବ, ଏ ଯେବେ ନୀବି ବନ୍ଧ ରହି ପାରିବନାହିଁ । ¹ନୀବି, ବସ୍ତ୍ର ଗ୍ରନ୍ଥି । ²କର, ହାତ ।

୧୪—ଅନ୍ୟ ଏକ ସଙ୍ଗିନୀ ସେ ରସରଙ୍ଗିଣୀ ନାୟିକାର ପକ୍ଷହୋଇ କହିଲା । ତୁମ୍ଭ ବୋଲ ଯେବେ ଏ ଦୃଢ଼ରୂପେ ବସ୍ତ୍ର ବାନ୍ଧି ନାହିଁ କି ? ଏ ନାୟିକା ହୃଦୟ ରୂପକ କ୍ଷେତ୍ରରେ ପ୍ରେମରୂପକ ବୀଜ ଅଙ୍କୁରିତ ହୋଇଅଛି, ବିନୟରୂପ ଫଳ ଜାତ ହେବାଯାଏ, ଅର୍ଥାତ୍ ପ୍ରିୟତମ ଦେଖା ଯିବା ପର୍ଯ୍ୟନ୍ତ, ଏ ବସ୍ତ୍ର ରହିଥିବ । ¹ବୀଜ, ମଞ୍ଜି ।

୧୫—ଅନ୍ୟ ଜଣେ ପ୍ରିୟମ୍ବଦା ସଖୀ କହିଲା । କେତେ ପରିହାସ କରୁଛ, ଯେଉଁ ଲୀଳା ଯେପରି ହେବ

ଏ କଥା ପ୍ରମାଣ କଲା ଏକ ସଖୀ ଥାଇ ।
ମୟୂରପକ୍ଷକୁ ଯଥା ଶଙ୍କର ନାହିଁ ।
ଏ ସମୟେ ଜଣାଇଲା ଆସି ଏକ ସ୍ତ୍ରୀରୁ ।
କେଳପୁରେ ବିଜୟ କଲେଣି ରତ୍ନଗୁରୁ । ୧୬ ॥

ଆଜ ତୋ କୁଚ-କଠିଣୀ ଛୁଇଁବା ହୋଇବ ।
ଏ ଅନନ୍ତରେ ରସିକା ସିଦ୍ଧି ଉପୁଜିବ ।
ସ୍ୱାଧୀନଭର୍ତ୍ତୃକା ହୋଇବାକୁ ଇଚ୍ଛା ଥିଲେ ।
ଶୁଭବେଳ ହୋଇଅଛି ଚାଲ ବୋଲି ନେଲେ । ୧୭ ।

ଗଉଣିକ ଇଣ ପାଶେ ନେଲା ରଙ୍ଗ ତହିଁ ।
ଲକ୍ଷ୍ୟରୂପେ ଦଶିଗଲା ସ୍ୱଭାବତ ଏହି ।
ଲଜ୍ଜା ଅନୁରାଗର ଉପୁଜିଗଲା ବାଦ ।
ନ ବଲ ବଲା ନ ଚଲ ଚଲି ମନ ପାଦ । ୧୮ ।

ମନ୍ଦଗତି ଗୃହ୍ନେ କହେ କେଉଁ ସହଚରୀ ।
କାନ୍ତ ବଳନ୍ତ ମୁଁ ଅନ୍ତବଳା ସୁକୁମାରୀ ।
ରହ ରହ ହେଉଛି କାହିଁ କି କରିବ ଶ୍ରାନ୍ତ ।
ପ୍ରଚଣ୍ଡ କିରଣେ ପଦ୍ମିନୀ ତୋଷେ ଦିବା । ୧୯ ।

---

ତାହା ଶିଖାଇ ଥାଅ । ଅନ୍ୟ ଏକ ସଖୀ କହିଲା, କଥା କହୁଛ ଗୋ ? ଏ ଜେମାତ କାମ ଶାସ୍ତ୍ର ପଣ୍ଡିତା, ଏବ ସେତ ଅଗ୍ରରୁ ବଦ୍ୟା ଅଟେ, ଏଥିରେ ଶିଖାଇବା କଥା କଣ ଅଛି ।

୧୬—ଅନ୍ୟ ଏକସଖୀ ଥାଇ ଏକଥାକୁ ପ୍ରମାଣ କରି, କହିଲା, ଯେପରି ମୟୂରପିଚ୍ଛକୁ କେହି ଚିତ୍ରକାର ନାହିଁ, ଅର୍ଥାତ ତାହା ଯେପରି ସ୍ୱାଭାବିକ । ସେହିପରି ସ୍ତ୍ରୀ ପୁରୁଷବ୍ୟବହାର ସ୍ୱାଭାବିକ ଅଟେ । ଏହି ସମୟରେ ଏକ ସ୍ତ୍ରୀ ଆସି ଜଣାଇଲା । ରତ୍ନପୁର ରାଜକୁମାର କେଳପୁରେ ବିଜେ କଲେଣି ।

୧୭—ଅଜ ତୋ ସ୍ତନରୂପକ ଖଣ୍ଡକୁଅଁ ହେବ । ଏହା ଉତ୍ତାରୁ ରସିକାସିଦ୍ଧି ( ପ୍ରସିଦ୍ଧ ) ଏବ ( ସିଦ୍ଧିଲକ୍ଷ୍ମୀ ) ଜାତହେବ । ଖଣ୍ଡକୁଅଁ ବେଳେ ପ୍ରଥମେ "ସିଦ୍ଧି ଚନ୍ଦ୍ର" ଲେଖନ୍ତି । ସ୍ୱାଧୀନଭର୍ତ୍ତୃକା ହେବାକୁ ଅର୍ଥାତ ପତିକି ବଶୀଭୂତ କରିବାକୁ ଇଚ୍ଛା ଥିଲେ, ଶୁଭବେଳ ହୋଇଅଛି, ଚାଲ, ଏହା କହି ଜେମାକୁ କେଳପୁରକୁ ନେଲେ ।

୧୮—ସେଠାରେ ଗୌରଙ୍କ ଶିତଙ୍କନକଟକୁ ନେବାଭଙ୍ଗୀ ଲକ୍ଷ୍ୟରୂପେ ଦଶିଗଲା, ଯେହେତୁ ଏ ବାଳା ସ୍ୱଭାବରେ ଗୌରୀ ଅଟେ ଏବ ପ୍ରିୟଗଣ ଅଟେ । ଲଜ୍ଜା ଓ ସ୍ନେହ ଦୁହିଙ୍କର ବିବାଦ ଜାତହେଲା । ଅନୁରାଗ ହେତୁରୁ ମନ ଯିବାକୁ ବଳିଲା, କିନ୍ତୁ ଲଜ୍ଜାହେତୁରୁ ପୁଣି ନ ବଳିଲା ସେହିପରି ଅନୁରାଗ ହେତୁରୁ ପାଦ ଯିବାକୁ ବଳିଲା, କିନ୍ତୁ ଲଜ୍ଜା ହେତୁରୁ ପୁଣି ବଳିଲା ନାହିଁ ।

୧୯—ଜେମାର ମନ୍ଦଗତି ଚାହିଁ କୌଣସି ସଖୀ କହିଲା । କାନ୍ତ ବଳୁଅଛି, ମୁଁ ସିନା ସୁକୁମାରୀ, କିନ୍ତୁ ଅନ୍ତଃସ୍ଥବତୀ ଅଟେ, ତେବେ କ'ଣ କରିବ ? ଏ ଜେମା ଏହା ଭାବି ରହ ରହ ହେଉଅଛ କି ? କିନ୍ତୁ ସୂର୍ଯ୍ୟ ପ୍ରଖରକିରଣ ଦ୍ୱାରା ମଧ୍ୟ ପଦ୍ମିନୀ କି ସନ୍ତୁଷ୍ଟ କରେ, ସେହିପରି ପତି ବଳୁଥିଲେ ସୁଦ୍ଧା ତୋର ସନ୍ତୋଷ ଜନ୍ମାଇବେ ।

ଚନ୍ଦ୍ରମା ବିପକ୍ଷ ରାହୁ କରଇ କି ନାଶ ।
ପ୍ରାଣନାଥ ଏତେ ଆସ୍ୱାଦିବ ସିନା ରସ ॥
ଗିରି ଉପାଡ଼ି ଗୋବିନ୍ଦ ଇନ୍ଦ୍ର ଗର୍ବ ଚୂରି ।
ଯେବେ ଗୋପୀ ସ୍ତନଟାଣ ନ ପାରିଲେ ହରି । ୨୦ ।

କେ କହି ଏ ନୋହେ ଘମା ରହ ରହ ବ୍ୟାଜେ ।
ରହ ରହ ଅମ୍ଭଙ୍କୁ ବୋଲୁଛି ଏହା ହେଜେ ।
କେ କହେ ବାଳା ଅସୁସ୍ଥ ନାହିଁ ଲଜ୍ଜା ଦୋଷ ।
ନ ପଡ଼ିଯିବ କି ତାହାଠାରେ ଅମ୍ଭ ଶ୍ୱାସ । ୨୧ ।

ଅମ୍ଭଠାରେ ନାହିଁ ବାଳା କପଟ କେ ବୋଲି ।
ଅଙ୍ଗେ ପ୍ରିୟ ସଙ୍ଗ ରଙ୍ଗ ଦେଖାଇବ କାଲି ।
କି ରସ ରଚିବ ୧ଧବ ସଙ୍ଗେ ଏହା ଭାବ ।
ବିଳମ୍ବେ ଗମେ ରସିକା ଅନଅନୁଭବୀ । ୨୨ ।

କେ କର୍ଣ୍ଣେ କହେ ତୁ ପରି ଚତୁରୀ ରମ୍ଭୋରୁ ।
ବିଳମ୍ବେ ଏତେକ ଲାଭ ଅଛି ନ ବିସ୍ମରୁ ।
ମନମଥ ରସେ ମନୋରଥ ନୋହୁଁ ପୂର୍ଣ୍ଣ ।
୧ଶର୍ବରୀ ସରିଯିବଟି ହୁଅ ସାବଧାନ । ୨୩ ।

---

୨୦—ରାହୁ ଚନ୍ଦ୍ରର ବିପକ୍ଷ ହେଲେ ସୁଦ୍ଧା ତାକୁ କଣ ନାଶ କରେ କି ? କେବଳ ଅମୃତ ପାନ କରେ । ସେହିପରି ଏତେ ତୋର ପ୍ରାଣନାଥ କେବଳ ରସ ଆସ୍ୱାଦନ କରିବେ ସିନା, ତୋତେ ବାଧା କରିବେ ନାହିଁ । ତଥାପି, ଶ୍ରୀକୃଷ୍ଣ ଗୋବର୍ଦ୍ଧନ ପର୍ବତ ଉପାଡ଼ି ଇନ୍ଦ୍ରର ଗର୍ବ ଚୂର୍ଣ୍ଣ କଲେ ଯେବେ । କିନ୍ତୁ ଗୋପୀମାନଙ୍କର ସ୍ତନଯୁଗଳ ଭାଙ୍ଗି ପାରିଲେ ନାହିଁ ।

୨୧—କୌଣସି ସଖୀ କହେ, ଏହା ନୁହେଁ, ଏ ସମା ରହ ରହ ହେବା କପଟରେ ଅମ୍ଭଙ୍କୁ ବୋଲୁଛି ତୁମ୍ଭେମାନେ ଏଠାରୁ ରହ, ମୁଁ ଏକା ଯିବି । ମୁଁ ଏହା ହେଜୁଛି । ପୁଣି କେହି ସଖୀ କହୁଛ, ଏ ବାଳାର ଅସୁଖ ନାହିଁ ସେ ଦୋଷ କରର । ସେ ସ୍ଥଳଠାରେ ଅମର ନିଃଶ୍ୱାସ ପଡ଼ିବ ନାହିଁ କି ।

୨୨—କେହି ସଖୀ କହୁଛ । ଅମ୍ଭଠାରେ ବାଳାର କପଟ ନାହିଁ । ତା ଅଙ୍ଗରେ ପ୍ରିୟସଙ୍ଗ ହେଉଥିବା ଯେ ରଙ୍ଗହେବ, ତାହା କାଲି ଦେଖାଇବ । ଏ ରସିକା ତ ଅନୁଭବୀ ନୁହେଁ, ଅତଏବ ଭାବୁଛି ପ୍ରିୟ ସଙ୍ଗେ କପଟ କରିବ ? ଏହି ଭାବନାରୁ ବିଳମ୍ବରେ ଗମନ କରୁଛି । ୧ ଧବ, ପତି ।

୨୩—କେହି ସଖୀ କାନରେ କହୁଛ, ହେ ରମ୍ଭୋରୁ ! ତୁ ପରି ଚତୁର ଅଛୁ, ବିଳମ୍ବ କଲେ ଏତେକ ଲାଭ ଅଛି ବିଚାର କରୁନାହୁଁ ( ସୂଚନାରେ ଅତେକ ଲାଭ ବୋଲି କହୁଛ ) କାମ ରସରେ ମନବାଞ୍ଛା ପୂର୍ଣ୍ଣ ନ ହେଉଁ ରାତି ସରିଯିବ, ସାବଧାନ ହୁଅ । ୧ ଶର୍ବରୀ, ରାତି ।

ରସିକ ବସି ପଲଙ୍କେ କ କାତର ହୋଇ ;
ପ୍ରଲମ୍ବକେଶୀ ବଳମ୍ବ ଗ୍ରହିଁ ବଗ୍ରରଛ ।
ଦୃଷ୍ଟି ପଡ଼ ଉଦରଶରଣ ବଳୀଠାରେ ।
୧ତନୁଦାନ ଅଶଙ୍କା କ ତନୁଦାନ କରେ । ୨୪ ।
ଯେଉଁ ଦାନ ୧ଦାନବାରବର-ସୁଖଦାୟୀ ।
ଲଜ୍ଜା ବାରିଜାକ୍ଷୀରେ ବାଧ କ ଦେବା ପାଇଁ ।
ନ କରେ କ ଦାନୀ ଦାନ ବାରଲେ କୃପଣ ।
ହୃଦୟରେ ଉଦୟ କ ୨ସ୍ତନସଙ୍ଗ ଗୁଣ । ୨୫ ।
ବାହ୍ୟସ୍ୟ ଲୋକ ସାହାଯ୍ୟ କେତେବେଳ ରହ ।
ଏକ୍ଷଣି ଅସିବେ ସୁଲକ୍ଷଣୀ ଘେନ ସଖୀ ।
କର ପୀଡ଼ାରେ ସାରବ ୧ଉରଜ ମହତ୍ତ୍ୱ ।
ଅଙ୍ଗସୀମା ୨ବ୍ରୀଡ଼ାକୁ ଛଡ଼ାଇ ଦେବ ସତ ଯେ । ୨୬ ।
ଏ କାଳେ ସୁର ପାରୁଶ ନୂପୁର ଡ଼ାକଲା ।
ତ୍ରିପୁରସୁନ୍ଦରୀବୃନ୍ଦସ୍ତନା ବଜେ କଲା ।
ବଳାଇ ମୁଁ ପଥ ବଳା କରବାରୁ ସେଇ ।
ମୁଁ ଖୁଣ୍ଟିଆ ବୋଲି କ ଝୁଣ୍ଟିଆ କରେ ଗୋଳ । ୨୭ ।
ବୁଝିବା ବୁଝିବା ବୋଲେ କଙ୍କିଣୀ ପାଶ କ ।
ଶ୍ରବଣେ ମାନସ ଅଣା ଯୁବାବର ଟେକ ।

---

୨୪—ରସିକ ସ୍ୱଜନଙ୍କ କାତର ହୋଇ ପଲଙ୍କେ ବସି ଦୀର୍ଘକେଶୀ କେମିତି ଲମ୍ବ ତାହିଁ ବଢ଼ାଇ କରେ ତ୍ରିବଳୀରୂପେ ଉଦରରେ ଶରଣ ପଶିଥିବା ସେଠାରେ ଦୃଷ୍ଟିପଡ଼ିବାରୁ ତନୁଦାନ (ଦେହଦାନ)କୁ ଅଳ୍ପଦାନ ବୁଝି ଅଶଙ୍କା କରେ ନ । ୧ ତନୁ, ଦେହ ଓ ଅଳ୍ପ ।

୨୫—କେଉଁ ଯେଉଁଦାନ ଯାଚକର ସୁଖ ଦାନକରିଥାଏ, ସେ ଦାନକରିବାକୁ ଲଜ୍ଜା ବାରିଜାକ୍ଷୀ (ପଦ୍ମନେତ୍ର) ସୁନ୍ଦରୀଙ୍କ କାରଣକରୁଅଛି କି ? କୃପଣହେବ ବୋଲି ସେ ଦାନୀ କ'ଣ ଦାନକଲେ ନାହିଁ କି ? ଅଥବା ସ୍ତନର କାଠିନ୍ୟଗୁଣ ସଂସର୍ଗହେତୁ ହୃଦରେ ଉଦୟ ହେଉନ । ୧ ଦାନବାରବର, ଯାଚ୍ ୨ ସଙ୍ଗ, ସଂସର୍ଗ ।

୨୬—ବାହାର ଲୋକମାନଙ୍କ ସାହାଯ୍ୟ କେତେବେଳେ ରହିବ ? ବୋଧହୁଏ ସଖୀମାନେ ଏକ୍ଷଣି ସୁଲକ୍ଷଣୀ କି ଘେନି ଅସିବେ । ହାତରେ ମର୍ଦ୍ଦନକରି ସ୍ତନର ମହତ୍ତ୍ୱ ସାରିବ । ତା ଦେହସୀମାରୁ ଲଜ୍ଜାକୁ ଛଡ଼ାଇ ଦେବସତେ । ୧ଉରଜ, ସ୍ତନ । ୨ ବ୍ରୀଡ଼ା, ଲଜ୍ଜା ।

୨୭—ଏ ସମୟରେ କେଉଁପୁର ପାଖରେ ନୂପୁର ଡାକିଲା, ତ୍ରିଭୁବନସୁନ୍ଦରସମ୍ପଦନା ବଜେଇଲେ । ମୁଁ ବାଟ ବଳାଇ ଅଛୁ ବୋଲି ବଳ ସେଇଲା କରିବାରୁ ଝୁଣ୍ଟିଆ "ମୁଁ ଖୁଣ୍ଟିଆ" ବୋଲି ଗୋଳ କଲା ।

୨୮—କଙ୍କିଣୀରୂପକ ପାତ୍ର ଅଛି ବୁଝିବା ବୋଲି କହୁଛି କି ? ଅର୍ଥାତ୍ କଙ୍କିଣୀ ଶବ୍ଦକରି ଏହା ସବୁ ଶୁଣି

ଭେଟିବ ନେଇ ଦୁହିଙ୍କି କଉଶଳ କରି ।
ମୁଁ ତୋ ଭୃତ୍ୟ ହୋଇଲି କହିବ ଅନୁସରି । ୨୮ ।
ଜାତବେଶ୍ୱରୀ ହୃଦୟରେ ପୂରିତ କରୁଣା ।
ଉତରତନ ୧ବର୍ତ୍ତିନ କରିବ ସାରଣା ।
ଶାଢ଼ୀ ମୋର କରି ହେବ ମହା ଅନନ୍ଦତ ।
ଷଣକେ ୨ତରୁଣଗଣେ ହୋଇବ ସାମନ୍ତ । ୨୯ ।
ଏ ସମୟେ ବାଳାକୁ ବଳାଇ ୧ଦେହଳକ ।
ଜଣେ ପୁଚ୍ଛେ ୨ବଲ୍ଲଭେ ସମର୍ପି ଯିବା ଠିକ ।
ପ୍ରତିଉତ୍ତର କଲା କେ କହ ଗୋ କ କଥା ।
ଅଜସରକ ଅମ୍ଭଙ୍କୁ ଲଗିଥିଲା ବ୍ୟଥା । ୩୦ ।
ପର କୁହାରୁ କ ହେବ ଯହିଁ ମନ ମିଳି ।
ଯେ ଯାହାର ଦ୍ରବ୍ୟ ସେ ତାହାକୁ ପ୍ରତିପାଳି ।
ଥାଅ ମେଲାଣି ହେଲୁଁ ଟି ବୋଲି ଗଲେ ସଖୀ ।
ଶୋଭବତୀ ଅଗେ ଉଭା ଲୋଭା କାନ୍ତ ଦେଖି । ୩୧ ।
ସେ କାଳେ ୧ସରସୀ ଶୋଭି ସେ କେଳିମନ୍ଦର ।
ଅତ ମଦନ-ମଦାନ୍ଧ ୨ତରୁଣ-କୁଞ୍ଜର ।

---

ଯୁବାଶ୍ରେଷ୍ଠ ଯଜ୍ଞସ୍ୱନ ମନରେ ଅଣା ଦେଇଛ । ଦୁଇ ଅକ୍ଷିଦ୍ୱାରା ବନ୍ଦନାକରି ଭେଟିବ । ମୁଁ ତୋର ଭୃତ୍ୟ ହେଲି ବୋଲି ଅନୁସରି କହିବ ।

୨୯—ମୋ ଜାତବେଶ୍ୱରୀ ହୃଦୟରେ ତ ଦୟା ପୂରିଅଛି ଅତଏବ ରତ୍ନରୂପକରତ୍ନ ମୋ ପକ୍ଷରେ ବେତନରୂପେ ବନ୍ଦୋବସ୍ତ କରିଛନ୍ତି । ମୋର ଶାଢ଼ୀ ( ଉପାୟ ) କରିଲି ମହା ଅନନ୍ଦିତ ହେବି, କ୍ଷଣକ ମଧ୍ୟରେ ଯୁବାମାନଙ୍କ ଉପରେ ସାମନ୍ତ ହେବ । ୧ବର୍ତ୍ତନ, ବେତନ । ୨ତରୁଣ, ଯୁବା ।

୩୦—ଏ ସମୟରେ ବାଳାଙ୍କ କେଉଁପୁର ଉତ୍ତରୀ ଉର୍ଦ୍ଧ୍ୱ ଉଠେଇ ଜଣେ ସଖୀ ପଚାରିଲା, ଏବେ ଏହାକୁ ପ୍ରିୟ ନିକଟରେ ସମର୍ପିଦେଇ ଯିବା ଠିକ ? ତାହା ଶୁଣି କେହି ସଖୀ ପ୍ରତ୍ୟୁତ୍ତର କଲା । କ ଗୋ, କ କଥା କହୁଛ ଗୋ, ଏହା ବ୍ୟଥା ଅଜ ପର୍ଯ୍ୟନ୍ତ ଅମ୍ଭଙ୍କୁ ଲଗିଥିଲା । ଏଟିକ ଏ ଏହାଙ୍କର । ୧ଦେହଳ, ଉତ୍ତରିବନ୍ଧ । ୨ବଲ୍ଲଭ, ପ୍ରିୟ ।

୩୧—ପରକୁହାରୁ କଣ ହେବ । ଯାହାର ମନ ଯାହାଠାରେ ମିଳେ, ସେ ତାହାର । ଯେ ଯାହାର ଦ୍ରବ୍ୟ ସେ ତାକୁ ପାଳନ କରେ । ତୁମେ ଥାଅ, ଅମ୍ଭେମାନେ ମେଲାଣି ହେଲୁ, ଏହା କହି ସଖୀମାନେ ଚାଲିଗଲେ । ସେ ଶୋଭାବତୀ ରାଜକୁମାରୀ ଅଗରେ ଉଭାହେବାର ଦେଖି କାନ୍ତ ଲୋଭୀ ହେଲେ ।

୩୨—ସେ ସମୟରେ ସେ କେଉଁପୁର ପୁଷ୍କରିଣୀ ଶୋଭାକୁ ପ୍ରକାଶ କଲା । ସେ ଯୁବାଶ୍ରେଷ୍ଠରୂପକ ହାତୀ ଅତିଶୟ କାମ ମଦମତ୍ତ ହୋଇଥିଲା । ନିଜ ହାତରୂପକ ଶୁଣ୍ଢରେ ସୁନ୍ଦରୀର ହସ୍ତରୂପକ ନାଡ଼ପୁଷ୍ପ ପଦ୍ମକୁ ଧରିଲା, ସ୍ୱଭାବରେ ସେ ତ ପଦ୍ମିନୀ ସ୍ତ୍ରୀ ଅତଏବ ତାକୁ ପଦ୍ମଲତା ପରି ଉପାଡ଼ି ନେଇ ଦେଲା



କୋଟିବ୍ରହ୍ମାଣ୍ଡସୁନ୍ଦରୀ ଓ ସୂର୍ଯ୍ୟକେତୁ ।                [ ୨୭୦ ପୃଷ୍ଠା

୩ନ୍ଦର ୪ସନାଳ-ନୀରଜ କରରେ ଧଇଲି ।
ସ୍ୱଭାବେ ନଳନୀଲତା ଉପାଡ଼ି କି ନେଲି । ୩୨ ।
କୁମାର ବସାଉ କୋଳେ ରମା ଶେଯେ ବସି ।
ମାର ସାରଣୀ ଖେଳିଲି ଶୋଭିଲ ସଦୃଶୀ ।
ସେ କାଳ ହରସଇଡ଼ା ସଡ଼ରତୁ ମତ ।
ଉଦ୍ଦୀପନ ଶରଦ ହୋଇଲି ସ୍ମର ଚିତ୍ତ । ୩୩ ।
କାନ୍ତ ଚନ୍ଦ୍ର ଶୀତଳ ତା ୧ନୟ ପରକାଶ ।
କରଣରେ ୨ଜୀବଞ୍ଜୀବ ବନ୍ଧୁ ଖବ ବଶ ।
ସୁମନା ୩ସୁମନକୁ ଉତ୍ଫୁଲ୍ଲ କରାଇଲି ।
ମନୋହର ୪ତାରକା ଝଲକା ଉପୁଜିଲି । ୩୪ ।
୧ପୁଷ୍କର ହୃଦ ନିର୍ମଳ ଉଜ୍ଜ ଅତିଶୟ ।
୨କାଶ-ଦରଷକାଶ-ହାସରେ କମନୀୟ ।
ପ୍ରକାଶ ୩ଉଜ୍ଜ୍ୱଳରସ ହୋଇବାର ପାଇଁ ।
୪ଲଜ୍ଜାଘନ କ୍ରମେ କ୍ରମେ ଗଲି ଛାଡ଼ି ଛାଡ଼ି ସେ । ୩୫ ।

---

୩୨ ୧ ସରସୀ, ପୁଷ୍କରିଣୀ । ୨ ତରୁଣ ବୃକ୍ଷର, ଯୁବକ ଶ୍ରେଷ୍ଠରୂପକ ହାତୀ । ୩ କର, ହାତୀ ଓ ଶୁଣ୍ଢ । ୪ ସନାଳ ନୀରଜ, ନାଡ଼ଯୁକ୍ତ ପଦ୍ମ ।

୩୩—କୁମାର ପ୍ରିୟାଙ୍କ କୋଡରେ ବସିବାରୁ ସେ ବାଳା ଝଷି ଶେଯରେ ବସେ, ଏପରି ପୁନଃପୁନ ହେବାରୁ କନ୍ଦର୍ପ ସାରେଣୀ ଖେଳର ପରି ଶୋଭା ହେଲ । ସେ ସମୟରେ ପ୍ରିୟାର ବାଲ୍ୟ ଭାବ ଛଡ଼ାଇବା ଛଅରତୁ ପର ହେଲ । ତହିଁରେ କନ୍ଦର୍ପ ଉଦ୍ଦୀପକ ଶରତ୍କାଳ ହେଲା ।

୩୪—ଶରତ୍କାଳର ଧର୍ମ ସହିତ ତୁଳନା କରାଯାଇଅଛି । ଦେଖ, କାନ୍ତ ଚନ୍ଦ୍ର ହେଲା, ତାର ଶୀତଳ ନୀତି ଉପଦେଶ ପ୍ରକାଶ କରଣ ହେଲା, ତାହାହିଁ ଚକୋର ପରି ବନ୍ଧୁକୁ ହୃଦରେ ବଶ କଲା । ଯେପରି ମାଳତୀଫୁଲକୁ ଉତ୍ଫୁଲ୍ଲ କରାଏ (ଫୁଟାଏ) । ଏହାର ସ୍ତ୍ରୀର ଉତ୍ତମ ମନକୁ ଉତ୍ଫୁଲ୍ଲ କରାଇଲା (ଆନନ୍ଦିତ କରାଇଲା) । ସେ କାଳରେ ନକ୍ଷତ୍ରମାନଙ୍କର ମନୋହର ଝଲକ ଯାତହୁଏ, ଏ କାଳରେ ଚକ୍ଷୁଃ କଟାକ୍ଷର ଝଲକ ଜାତ ହେଲା । ୧ ନୟ, ନୀତି ଉପଦେଶ । ୨ ଜୀବଞ୍ଜୀବ, ଚକୋର । ୩ ସୁମନା-ସୁମନ, ମାଳତୀ-ଫୁଲ ଓ ସ୍ତ୍ରୀର-ଉତ୍ତମମନ । ୪ ତାରକା, ନକ୍ଷତ୍ର ଓ କନୀନିକା ।

୩୫—ଆକାଶପରି ହୃଦୟ ଅତିଶୟ ନିର୍ମଳ ହେଲା, କାଶଫୁଲ ପରି ମନୋହର ମନ୍ଦହାସ ପ୍ରକାଶିଲା । ଯେପରି ଶରତରେ ନିର୍ମଳଜଳ ପ୍ରକାଶ ହେବା ଲାଗି ମେଘ କ୍ରମେ କ୍ରମେ ଛାଡ଼ିଯାଏ, ସେହିପରି ଶୃଙ୍ଗାର ରସ ପ୍ରକାଶ ହେବାପାଇଁ ଲଜ୍ଜାରୂପକ ମେଘ କ୍ରମେ କ୍ରମେ ଛାଡ଼ିଗଲା । ୧ ପୁଷ୍କର, ଆକାଶ । ୨ କାଶ, କାଶଫୁଲ । ୩ ଉଜ୍ଜ୍ୱଳରସ, ଶୃଙ୍ଗାର ରସ ଓ ନିର୍ମଳ ଜଳ । ୪ ଘନ, ମେଘ ।

[୧]ନୀହାର ନହୋଇବା କାଳ ପ୍ରକଟିଲା ଆସି ।
[୨]ପୁଲକ [୩]ବେପଥୁ ଗଲା ତରୁରେ ଗରସି ।
ଯେ ବଂଶଲକ୍ଷଣା ଭାବରେ ପୁଲକିତ ।
ଯାନ ହୋଇଥିଲ ତୁଷି କ୍ଷୀଣକୁ ଭଜତ । ୩୬ ।
ଶୁକ ସୁବଚନାମୃତ ପାନେ ଲୋଭ ଥତ ।
ଅଧର-ଅରୁଣ ସ୍ପରଶରେ ହେଲ ମତ ।
ଅଙ୍ଗେ ଅଙ୍ଗେ ଜଡ଼ ପୁଣି ଗଲା ଯେ ପ୍ରବର୍ତ୍ତି ।
[୧]ଶଶାର ଥିବାର ବାଞ୍ଛା ହୋଇଲା ଉପୁତ୍ତି । ୩୭ ।
[୧] କମଳମା ବାସ ତହିଁ ହେଲା ଅନ୍ତରିତ ।
ଭୃଙ୍ଗେ କୋଲ ରଚରଣ ହୋଇଲା ତ୍ୱରିତ ।
ଜନ୍ମଉ ବିଶେଷ ପ୍ରସନ୍ନତା ଭଜେ ଯହୁଁ ।
କପୋତ-କଣ୍ଠରୁ ଜାତ ହେଲା ହୁଁ ହୁଁ ହୁଁ ହୁଁ । ୩୮ ।
ମଧୁର ଉତ୍ସବ ତହିଁ ମୋହ ନେଲା ଚିତ୍ତ ।
ରଗରଙ୍ଗ ଖେଳା ଦେବବଲ୍ଲଭ ଭାବତ ।

---

*୩୬—ଏବେ କାକର ପଡ଼ିବା କାଳ ହିମ ଓ ଶୀତ ଆସି ପ୍ରକାଶ ହେଲା, ସାତ୍ତ୍ୱିକ ବିକାର ରୋମାଞ୍ଚ ଓ କମ୍ପ ଦେହରେ ବୃକ୍ଷଙ୍କର ମାଡିଗଲା । ବୃକ୍ଷରେ ବସନ୍ତପୁଲ ସୁଲକ୍ଷଣା ଭାବେ (ଫୁଲରୂପେ) ପୁଲକିତ ହୁଏ (ଫୁଟେ) ଏବ ଯନ ଶେଷ ହୁଏ । ଏଠାରେ ସେ ବସନ୍ତଲକ୍ଷଣା ପ୍ରେମ ଭାବରେ ପୁଲକିତ ହେଲା ଏବ ତାର ବୃଦ୍ଧି ହୋଇଥିବା ସାନକ୍ଷୀଣ ହେଲା (ଗଲା) । ୧ ନୀହାର, କାକର । ୨ ପୁଲକ, ରୋମାଞ୍ଚ । ୩ ବେପଥୁ, କମ୍ପ ।

*୩୭—ସେକାଳରେ ଲୋକେ ଶୁଆର ବଚନାମୃତ ପାନରେ ଅତି ଲୋଭି ହୁଅନ୍ତି ଏବ ଅଳ୍ପ ସୂର୍ଯ୍ୟ କିରଣ ସ୍ପର୍ଶ କରିବାକୁ ମନ ହୁଏ । ଏଠାରେ ଶୁଆଙ୍କର ସ୍ତୁତି ବଚନାମୃତ ପାନରେ ଅତି ଲୋଭି ହୋଇ ସ୍ୱଳ୍ପ ଅଧରରୂପକ ବାଳସୂର୍ଯ୍ୟ ସ୍ପର୍ଶ କରିବାକୁ ମତ ହେଲା । ପୁଣି ଅଙ୍ଗରେ ଜଡ଼ତା ପ୍ରବର୍ତ୍ତିଲା ଅର୍ଥାତ୍ ଅଙ୍ଗ ସବୁ ଜଡ ହୋଇଗଲା । ଶୀତ ଥିବାକୁ ଇଚ୍ଛା ହେଲା, ଶୀତଦିନେ ଦେହ ଜାଡ଼ ହୁଏ । ୧ ନଶାର, ଶୀତର ଓ ରେଚେର ।

*୩୮—ଶୀତକାଳରେ ପଦ୍ମ ନଷ୍ଟ ହେବାରୁ ପଦ୍ମିନୀର ବାସନା ଅନ୍ତର୍ହିତ ହୁଏ । କୋଇ (କଇଁ)ର ଭ୍ରମରଙ୍କ ଶୋଭା ଅଚରଣ ହୁଏ । ଦୂର୍ବାଙ୍କ ବିଶେଷ ପ୍ରସନ୍ନତାରୁ ଭଜେ (ଫୁଟେ) କପୋତ ମାନଙ୍କର କଣ୍ଠରୁ ହୁଁ ହୁଁ ଧ୍ୱନି ବାହାରେ । ଏଠାରେ ପଦ୍ମିନୀ ସେ ନେମାଇ ବସ୍ତ୍ର ଅନ୍ତରିତ ହେଲା । ଶୀଘ୍ର ବାହୁରେ କୋଳାଗ୍ରତ ଅଚରଣ ହେଲା, ଯହୁଁ ହନ୍ତର ଭାବ ବିଶେଷ ପ୍ରସନ୍ନତାକୁ ଭଜିଲା ଅର୍ଥାତ୍ ଜନ୍ମତା ବଢ଼ିଲା । ତହୁଁ କପୋତ ପରି କଣ୍ଠରୁ ହୁଁ ହୁଁ ଧ୍ୱନି ଜାତ ହେଲା । ୧କମଳନ, ପଦ୍ମିନୀ । ୨ଜନ୍ତୁ, ହୃଦୟ ଓ ମାତୃଆଳ ।

*୩୯—ସେଠାରେ ମନୋହର ଉତ୍ସବ ବସନ୍ତ ଉତ୍ସବପର ଚିତ୍ତମୋହନେଲା । ବସନ୍ତରେ ଦେବବଲ୍ଲଭ ଚିନ୍ତ ଅନୁରାଗ ଓ କୌତୁକରେ ଖେଳା କରିବାକୁ ସ୍ୱତନ୍ତ୍ର । ସୌରଭଗ୍ରାହ ମାଧବୀ ଓ ନଅଁଳୀ ହେବାରୁ ଅଳିପୁଲ ଲକ୍ଷ୍ୟନୁହନ୍ତି । ଅତଏବ ସ୍ୱଭାବରେ ଭ୍ରମର ଲୋଭ ହୁଏ । ଏଠାରେ ଦେବଭୂଷଂ

¹ବାସନ୍ତୀ ଆନନ ଲକ୍ଷ୍ୟ ସଉରଭପୂର ।
ନଅଲୀ ହେବା ସ୍ୱଭାବେ ଖେଳ ଯେ ଭ୍ରମର । ୩୯ ।
ସଂପୃକ୍ତରେ ¹ପୁଂନାଗ ରସାଳଲତା ଯୁତ ।
ନାନା ଭାବେ କେତେ ପିକବାଣୀ ହେଲା ବ୍ୟକ୍ତ ।
²କେଶରଜାଲକ ଛୁଟ ହେବା ମନ କଲେ ।
³ଅପୂର୍ବ କୁରବକହିଁ ଜନମ ହୋଇଲେ । ୪୦ ।
¹ତପ ଉଦୟ ସମୟ ପଡ଼ିଗଲା କ୍ରମେ ।
²ଅପଘନ ପୂରିତ ହୋଇଲା ଶ୍ରମଘର୍ମେ ।
ବାଞ୍ଛା ହୋଇ ସବୁରୂପ ³ବ୍ୟଜନ ମରୁତ ।
ସୁମନୋରମ କନ୍ୟାର ମଲ୍ଲୀ ପ୍ରକାଶିତ । ୪୧ ।
¹ଘନରସ ବୃଷ୍ଟିକାଳ ଅନ୍ତରେକ ଶୋଭେ ।
ପ୍ରକଟ ²କଙ୍କଣାଦ ³ମୃଦଙ୍ଗର ନାଦ ଶୁଭେ ।

---

ବସନ୍ତର ( ପ୍ରିୟ ) ସ୍ନେହ ଓ କୌତୁକମୟ ଚେତ କ ଭାବନ୍ତ । ଲକ୍ଷ ( ଅସଂଖ୍ୟ ) ସୌରଭରାଶିର ଆନନ ( ମୁଖ ) ବାସର, ନଅଳୀ ( ସଖୀଶୂନ୍ୟ ) ହେବା ହେତୁରୁ ସ୍ୱଭାବରେ ଭ୍ରମର ( ପ୍ରକୃତ ) ଖେଳ ହେଲ । ¹ ବାସନ୍ତୀ, ମାଧବୀ ।

୪୦—ସେ କାଳରେ ପୁନ୍ନାଗ ଓ ରସାଳ (ଆମ୍ର) ଲତା ସଂପୃକ୍ତରେ ଯୁକ୍ତ ( ବକସିତ ) ହୁଅନ୍ତି । କୋକିଳ ଧ୍ୱନି ନାନାପ୍ରକାର ବେଢେବ୍ୟକ୍ତ ହୁଏ । ନାଗକେଶର କଢିଫୁଟିବାକୁ ମନ କରନ୍ତି । ଅପରୁ କୁରୁଅଟା ଫୂଲ ଜାତ ହୋଇଥାଏ । ଏଠାରେ ପୁରୁଷଶ୍ରେଷ୍ଠ କୁମାର ଓ ରସାଳ ଲତାଭୂଲ୍ୟ ରସିକାକୁମାର ଦୁହେଁ ପ୍ରଲବରେ ଯୁକ୍ତହେଲେ । କେତେ ପିକତୁଲ୍ୟ ବଚନ ପ୍ରକାଶ ହେଲା । କେଶ ପାଶ ପିଟିବାକୁ ମନକଲେ, ପୁଣି ଅଦ୍ଭୁତ ହାସ ଜାତହେଲା । ¹ ପୁନ୍ନାଗ, ବୃକ୍ଷବିଶେଷ ଓ ପୁରୁଷ ଶ୍ରେଷ୍ଠ । ² କେଶର ଜାଲକ, ନାଗକେଶରକଢି ଓ କେଶପାଶ । ³ ଅପୂର୍ବକୁରୁବକ— ଅଦ୍ଭୁତରବ, ଉଚ୍ଚହାସ ଓ ଅପୂର୍ବ କୁରୁଅଟା ଫୂଲ ।

୪୧—ପୂର୍ବ ତପସ୍ୟାର ଫଳ ସ୍ୱରୂପ ସେ ସମୟ ଗ୍ରୀଷ୍ମକାଳପରି ଜଣା ପଡିଲା । ଶରୀର ଶ୍ରମଜଳରେ ପୂର୍ଣ୍ଣ ହେଲା, ବିଞ୍ଚଣା ପବନକୁ ସବୁ ପ୍ରକାର ଇଚ୍ଛା ହେଲା । ସୁମନୋହର କନ୍ୟା ସେ ଜେମାଙ୍କ ମନ୍ଦ ମନ୍ଦ ବଚନ ପ୍ରକାଶିତ ହେଲା, ଗ୍ରୀଷ୍ମ କାଳରେ ମନୋହର କନିଆର ଫୂଲ ଓ ମଲ୍ଲୀ ଫୂଲ ପ୍ରକାଶିତ ହୁଏ । ¹ତପ, ତପସ୍ୟା ଓ ଗ୍ରୀଷ୍ମ । ²ଅପଘନ, ଦେହ । ³ବ୍ୟଜନ ମରୁତ, ବିଞ୍ଚଣା ପବନ ।

୪୨—ନବଘନ ଶୃଙ୍ଗାର ରସବୃଷ୍ଟି ସମୟ ବର୍ଷାକାଳପରି ଅନ୍ତରପୁ ଶୋଭା ପାଇଲା । କଳ କଙ୍କଣାଦ ବଳଣ ପ୍ରଭୃତ ଅଳଙ୍କାର ଓ ମୃଦଙ୍ଗ ଧ୍ୱନି ମେଘଧ୍ୱନିପରି ପ୍ରକଟହେବେ ଶୁଣାଗଲା । ବର୍ଷାକାଳରେ ହଂସମାନଙ୍କର ଧ୍ୱନି ମାନସ ସରୋବରକୁ ଗତ କଲେ, ଯେହେତୁ ହଂସମାନେ ମାନସରେ ରହନ୍ତି । ବାରମ୍ବାର କଳୁଷ ଝଟକେ । ଏଠାରେ ପାଦ କଟକର ଶବ୍ଦ ମୋହିତ କଲା । ସୁନ୍ଦରୀର ଅଙ୍ଗନ୍ୟାଦିକ କନ୍ଦୁକ ପଦ ବାର ବାର ବସ୍ତହଲା । ¹ଘନରସ, ନବଘନ ଶୃଙ୍ଗାର ଓ ଜଳ । ²କଙ୍କଣ, ଅଳଙ୍କାର

୪ହଂସଜଗ ଜନକ ୫ମାନସ ଭେଦବାଟେ ।
ଚଞ୍ଚଳାଗତ ବିରଜମାନ ଗାତ୍ରେ ବାଟର । ୪୨ ॥
୧ବନ୍ଧୁରବର ଘାତହିଁ ହୁଏ ପୁନଃପୁନଃ ।
୨ପୟୋଧର କମ୍ପନ ଖରରେ ବିରଚନ ।
୩ସ୍ତୋକ ଶତ୍ରୁସନ୍ତାପ ତହିଁରେ ନ ଲଖିଲା ।
ସମସ୍ତ ୪ବରହୀ ୫ସୁମନାଙ୍କୁ ଫୁଟାଇଲା । ୪୩ ।
ବିଶୋଇ ଲବକ ପୁଣି ରତ୍ନ ଆରମ୍ଭରୁ ।
ମନୋଜ୍ଜ୍ୱଳ ହୋଇଲା ଧଇଲା କାବ୍ୟ ରୁରୁ ।
୧ଆଶ୍ଳେଷ ଶ୍ଳେଷ ସୁରୂପ ରୂପକ ବ୍ୟାପିତ ।
ଚୁମ୍ବନ ଯମକ ଆଶା ଆଶୟ ଉଦିତ । ୪୪ ।
ଦିବ୍ୟ ୧ବର୍ଣ୍ଣ ଦର୍ଶନ ପ୍ରସ୍ତାର ହୋଇଗଲା ।
ଲକ୍ଷଣ ସହିତ ହୋଇ ଅଲଙ୍କାର ମେଳା ।
ନାନା ବନ୍ଧ ବିଖ୍ୟାତ ଶୃଙ୍ଖଳା ଧ୍ୱନି ଯେଣୁ ।
ବକ୍ରୋକ୍ତି ଜନ୍ମିବ ମେଳ ହୋଇଲେ ସଜଣୀ । ୪୫ ।

---

ଉତ୍କୃଷ୍ଟ ଓ ଜଳକଣା । ୩ମୂଢ଼ର, ମୂଢ଼ାକାର ଓ ମେଘ । ୪ହଂସଜ, ହଂସ ଓ ପାବକଜାତ । ୫ମାନସ, ସରୋବର ବିଶେଷ ଓ ମନ ।

୪୩—ବର୍ଷା କାଳରେ ବନ୍ଧୁପାତର ( ବନ୍ଧୁପାତଗୁ ) ପୁନଃ ପୁନ ହୁଏ । ପୁଷ୍କର ସ୍ତବେ ମେଘମାନଙ୍କର ଚଳନ ହୁଏ । ତହିଁରେ ଚାତକର ଶତ୍ରୁ ସନ୍ତାପ ଲାଗେ ନାହିଁ । ମୟୂର ନୃତ୍ୟ ହୁଏ ଓ ମାଳତୀକୁ ଫୁଟାଏ । ଏଠାରେ ସ୍ତ୍ରୀଗନ୍ଧୁଳ୍ୟ ପଦ୍ମଘାତ ପୁନଃ ପୁନ ହେଲା । ସ୍ତନର ସ୍ତବେ ସ୍ତନକମ୍ପନ ହେଲା । ଅଳ୍ପମାତ୍ରା ମନସ୍ତାପ ରହି ହେଲା ନାହିଁ । ବରହୀମାନଙ୍କୁ ହସ୍ତ ହୋଇ ସୁମନାଙ୍କୁମାନଙ୍କୁ ଫୁଟାଇଲେ (ଅର୍ଥାତ ଦେଲେ) ୧ବନ୍ଧୁରବର, ବନ୍ଧୁର ଅସ୍ତ୍ର ଓ ସ୍ତ୍ରୀଜାତ୍ୟ ପଦ୍ମର । ୨ପୟୋଧର, ମେଘ ଓ ସ୍ତନ । ୩ସ୍ତୋକ, ଅଳ୍ପ ଓ ଚାତକ । ୪ବରହୀ ମୟୂର ଓ ବର ନାୟକ । ୫ସୁମନା, ମାଳତୀ ଓ ସୁବୁଦ୍ଧି ସ୍ତ୍ରୀ ।

୪୪—ରତି ଆରମ୍ଭ ଲବମାନ ବିଶୋଇ ହୋଇ ପୁଣି ବଡ଼ ଉଜ୍ଜ୍ୱଳ ହେଲା ଏବଂ କାବ୍ୟପରି ସୌନ୍ଦର୍ଯ୍ୟ ଧାରଣ କଲା । କାବ୍ୟରେ ଶ୍ଳେଷ ଅଳଙ୍କାର ଆଶ୍ଳେଷ କରଥାଏ ରୂପକ ସୁନ୍ଦର ସ୍ୱଭାବ ବ୍ୟାପିଥାଏ । ଏ ସମ୍ଭୋଗରେ ଆଲିଙ୍ଗନ ସୁନ୍ଦର ରୂପରେ ବ୍ୟାପିଅଛି । ଚୁମ୍ବନ ଓ ଯମକ ହେବା ଆଶା ଉଦିତ ହେଲା । ୧ଆଶ୍ଳେଷ, ଆଲିଙ୍ଗନ ।

୪୫—କାବ୍ୟରେ ଦିବ୍ୟ ଅକ୍ଷରମାନଙ୍କର ଦର୍ଶନ ବିସ୍ତାର ହୋଇଥାଏ । ଲକ୍ଷଣ ସହିତରେ ଅଳଙ୍କାରମାନ ମେଳ ହୋଇଥାନ୍ତି । ବାନ୍ଧେବା ପ୍ରଭୃତି ନାନାପ୍ରକାର ବନ୍ଧ ଥାଏ । ଶୃଙ୍ଖଳା ଯମକ ଓ ଧ୍ୱନି ପ୍ରଭୃତି ଥାଏ । ଏଠାରେ ଲଜ୍ଜା କମିବାରୁ ସୁନ୍ଦରୀର ଦିବ୍ୟ ଦେହ ବର୍ଣ୍ଣ ଦର୍ଶନ ବିସ୍ତାର ହେଲା । ସେ ରୂପ ଲକ୍ଷଣ ଓ ଅଳଙ୍କାରରେ ମେଳ (ଯୁକ୍ତ) ହୋଇଥିଲା । ଯୁବତୀ ନାନାପ୍ରକାର ବନ୍ଧ ରତିର ବିଖ୍ୟାତ କଲେ । ଶୃଙ୍ଖଳା ପ୍ରଭୃତିର ଶବ୍ଦ ହେଲା । ସଖୀମାନେ ମିଳିଲେ କାବ୍ୟରେ ପରି ବକ୍ରୋକ୍ତି ଜନ୍ମିବ । ୧ବର୍ଣ୍ଣ, ଅକ୍ଷର ଓ ଦେହ ବର୍ଣ୍ଣ ।

ଛଳ ବଂଚକ ପଣ୍ଡିତରେ ମଦନ ଜୟରେ ।
ବଗ୍ରେଧା ପ୍ରକାଶି ବାଳା ଚୁମ୍ବନ ଦେବାରେ ।
ପୁନରୁକ୍ତିପଦାଭସ ଆଶ୍ୱାସ ବଚନ ।
ରସପଣ୍ଡିତରେ ଯାହା ନୁହଇ ଉଚିତ । ୪୬ ।
ଜୂତକ୍ରୀଡ଼ା ବୋଲିବାର ନଷ୍ଟେ ସମ୍ଭାବିତ ।
ଯୁଗରେ ହୋଇଲା ବାଲୀ ଶତ୍ରୁ ଯେ ମୋହିତ ।
ଚଉଷଠି ପଣ ଶେଷ ରତ ପ୍ରାନ୍ତ ହେଲା ।
ସାକ୍ଷୀ ହୋଇଥିଲା କାମ ଶାନ୍ତ ଭଜଗଲା ଯେ । ୪୭ ।
ସୁଖ ଉତକରଷ ହେବାରୁ ଦୁଃଖଗଞ୍ଜ ।
ମାନ ଅନ୍ତେ ଦେ ଜାଣିବା ବୋଲି ଗଣ୍ଡ ଚନ୍ଦ୍ର ।
କୁଳବତୀ ନବୀନା ନୃପତିନନ୍ଦିନୀ ସେ ।
ମହା ମଉଗର୍ବ ଗୁଡ଼ ନୋଚ ହୋଇ ବସେ ଯେ । ୪୮ ।
ପ୍ରିୟ ଲୋଚନ ବଞ୍ଚନା ବିବେକ ରଖଇ ।
ତାପୁଥିଲା କର୍ପୂର ତୋଷିଲା ଶେଯେ ଥାଇ ।
ଲଜ୍ଜା-ଅଳୀ ଅନୁସରିଥିଲା କଣ୍ଠୁ ଦୂରେ ।
ପିନ୍ଧାଇଲା ବସନ ବାଳାକୁ ତରତରେ ଯେ । ୪୯ ।

---

୪୬—ଯେଉଁ ବେଳେ କନ୍ଦର୍ପକୁ ଜୟକରିବାର କାର୍ଯ୍ୟରେ ପଣ୍ଡିତ ପ୍ରକାଶ ହେଉଥିବ । ବାଳା ଚୁମ୍ବନ ଦେବାରେ କାନ୍ତର ବଗ୍ରେଧାଗ୍ରସ୍ତ ପ୍ରକାଶକଲା । କାର୍ଯ୍ୟପରେ ଆଶ୍ୱାସ ବାକ୍ୟରେ ପୁନରୁକ୍ତ ଦୋଷ ହେଲା । ରସପଣ୍ଡିତଠାରେ ଯାହା ଉଚିତ ନୁହେଁ । ସେହି ପୁନରୁକ୍ତିଦୋଷ ହେଲା । ଅର୍ଥାତ୍ ଆଶ୍ୱାସ ବାକ୍ୟ ପୁନଃ ପୁନ କହୁଥିଲେ ।

୪୭—ଉଚିତ ନୁହେଁ ଖେଳ ବୋଲିବାର ନଷ୍ଟେ ସମ୍ଭବଲା । ଯେହେତୁ ଜୁଅରେ ପୁରୁଷ ବାଲୀବୋଲି ପାଞ୍ଚୁଅଛି ଏବଂ ଯାହା ଛକ ପଣ ରଖି ଖେଳନ୍ତି । ଏଠାରେ ଯୁଗ ( ଯୁଗଳ ) ହେବାରେ ବାଲୀର ଶତ୍ରୁ ମୋହିତ ହେଲା । ପଣକରିଥିବା ଚଉଷଠିବନ୍ଧ ଶେଷହେବାରୁ ରତଶେଷ ଖେଳଶେଷପର ହେଲା । ଖେଳରେ ସାକ୍ଷୀ ଥିଲାପରି କନ୍ଦର୍ପ ସାକ୍ଷୀ ହୋଇଥିଲା ଶାନ୍ତ କ ପାଇଲା ।

୪୮—ସୁଖ ଅଧିକ ହେବାରୁ ଦୁଃଖସମୂହ "ମାନବେଳେ ଓ ବଉଦବେଳେ ଦୁଃଖକଥା ଜାଣିବ" ଏହା ଭାବକରି ଗଲେ । ସେ ନବୀନା ରାଜକୁମାରୀ କୁଳବତୀ ହୋଇଥିବାରୁ ମହାଗର୍ବମତୀ ଗୁଡ଼ ନୋଚହୋଇ ବସିଲା ।

୪୯—ବିବେକ ଜନ୍ମିବାରୁ ପ୍ରିୟର ଲୋଚନ ବଞ୍ଚନାକୁ ଅର୍ଥାତ୍ ପ୍ରିୟଅଙ୍ଗକୁ ନ ଚାହିଁବାକୁ ଭରସି ତା ଦେଉଥିଲା, ତାକୁ କର୍ପୂର ଶେଯରେ ଥାଇ ତୋଷିଦେଲା, ଅର୍ଥାତ୍ କର୍ପୂରଗନ୍ଧି ପଢ଼ିବାରୁ ପ୍ରିୟ 'ସତଃ ଚାହିଁପାରିଲେ' ନାହିଁ । ଲଜ୍ଜାରୂପକ ସଖୀ କଣ୍ଠରେ ଅନୁସରିଥିଲା, ସେ ବାଳାକୁ ତର ତରକରି ଲୁଗା ପିନ୍ଧାଇଲା, ଅର୍ଥାତ୍ ଲଜ୍ଜା ହେତୁରୁ ବାଳା ଲୁଗା ପିନ୍ଧିଲା ।

ପାଳିତ ୧କଲରବ ଲଳିତ କଲରବ ।
ଶୁଣି ତାଳି ଦେଲା ଷାଟପେ ୨ଦେବଷାଟପ ଜବ ।
ନ୍ୟୋଥେନ ସୁହି ବାହାରିବା ମନ କରୁଁ ।
ସୁରସକୁ କଣ୍ଠ ବାଣୀ କୁକ୍କୁଟ ପ୍ରସ୍ତୁରୁଁ ଯେ । ୫୦ ।
ବାଲୀ କେଳିସଦନ ୩ଦେହଳି ବଳି ଆସେ ।
ଯାଇ ନାହିଁ ୪ଯାମିନୀ କାମିନୀ କାନ୍ତ ଭାଷେ ।
୫କଳାନିଧି ଥିବ ବାରେ ଟେକ ଦିଅ ଗୃହି ।
କଳାନିଧି ଦୂର ହେବା ଏ ଉଚିତ ନୋହି ଯେ । ୫୧ ।
ଶୁଭି ନାହିଁ ୧ମନ୍ଦ ୨ଦର ମନ୍ଦ ଦର ରବ ।
୩ଭୃଙ୍ଗ ଛାଡ଼ି ନ ଥିବ କମଳ କୋଳ ଭାବ ।
ରଜନୀ ଶେଷ ସଜନୀ ଚହଳ ସେ କାଳେ ।
ସେ ୪ଦମ୍ପତି ୫ରଥାଙ୍ଗ ଅନ୍ତର କଲା ବଳେ ଯେ । ୫୨ ।
ଉଠେ କାନ୍ତାକୁ ପାଶୋରି ଅଶ୍ରୁ କାନ୍ତ ଯାଇ ।
ସଖା ସଙ୍ଗେ ମେଳିଥିଲା ବିଦୂଷକ କହି ।
ମହାବୀର ହୋଇଲେଟି ଆମ୍ଭ ନୃପାତ୍ମଜ ।
ତ୍ରିପୁରପୀଡ଼କଙ୍କୁ ଜିଣିଲେ ଯେଣୁ ଅଜ ଯେ । ୫୩ ।

---

୫୦-୫୧—ପୋଷାପାରାମାନଙ୍କର ମଧୁର ଧ୍ୱନି ଶୁଣି ବାଳା ଷାଠ ପ୍ରତି ତତ୍କ୍ଷଣ ଶୀଘ୍ର ତାଳିଦେଲା । ଷାଠଙ୍କୁ ନିଦ୍ରେକ ଦେଖି ରାତିପାହିଯିବା ଜାଣି କେଳିପୁରରୁ ବାହାରିବାକୁ ମନକରନ୍ତେ କୁକ୍କୁଟ ସଂଯୋଗରେ କଣ୍ଠ (ବଜ୍ର) ସ୍ୱରୂପ ଧ୍ୱନି ପ୍ରକାଶକରନ୍ତେ ଅର୍ଥାତ୍ କୁକୁଡ଼ା ବୋବାଇବାରୁ ସେ ବାଳିକେଳି ସଦନ ଏକୁଣ୍ଡିବର ତେଜିଅସିଲା । କାନ୍ତ କହିଲା, ହେ କାମିନି ! ରାତିପାହି ନାହିଁ ମ । ଚନ୍ଦ୍ର ଥିବ ଥିବେ ଟେକ ଗୃହଁଦଅ । ଅତଏବ ତୁ କାମକଳାନିଧି ଦୂର ହୋଇଯିବା ଉଚିତ ନୁହେଁ । ୧ କଳରବ, ପାରା ଓ ମଧୁରଧ୍ୱନି । ୨ ଦେବଷାଠ, ଚତ୍ତୁର । ୩ ଦେହଳୀ, ଏକୁଣ୍ଡିବନ୍ଧ । ୪ ଯାମିନୀ, ରାତି । ୫କଳାନିଧି ଚନ୍ଦ୍ର ଓ କାମକଳା ଯାନ ।

୫୨—କାକ ଓ ଗର୍ଦ୍ଦଭ ଯଥାକ୍ରମେ କୁତ୍ସିତ ଓ ଉପ୍ରକଟ ଶବ୍ଦ ଶୁଣାଯାଉ ନାହିଁ । ଭ୍ରମର ପଦ୍ମ କୋଳରେ ରହିବା ସ୍ନେହ ଛାଡ଼ୁନାହିଁ ଅର୍ଥାତ୍ ପଦ୍ମ ଫୁଟୁନାହିଁ । ଏହି ସମୟରେ ରାତି ଶେଷହେଲା ବୋଲି ସଖୀମାନଙ୍କର ଚହଳ ପଡ଼ିଲା । ସେ ଚହଳ ଚକ୍ରବାକ ଚକ୍ରବାକୀ ଯେ ସ୍ତ୍ରୀ ପୁରୁଷଙ୍କୁ କଳାହାରରେ ଅନ୍ତରକଲା । ୧ ମନ୍ଦ, କାକ ଓ କୁତ୍ସିତ । ୨ ଦର, ଶଙ୍ଖ, ଓ ଭୟ । ୩ଭୃଙ୍ଗ, ଭ୍ରମର । ୪ଦମ୍ପତି, ସ୍ତ୍ରୀ ପୁରୁଷ । ୫ ରଥାଙ୍ଗ, ଚକ୍ରବାକ ।

୫୩—କାନ୍ତଉଠି କାନ୍ତାକୁ ପାଶୋରି ଅଶ୍ରୁ ଅଶ୍ରୁ କାନ୍ଦି ଚାଲିଗଲା । ବିଦୂଷକ ଏକାଳେ ମିତ୍ରଙ୍କ ସଙ୍ଗରେ ଥିବାଥିଲା କହିଲା । ଆମ୍ଭ ରାଜକୁମାର ମହାବୀର ହେଲେ । ଯେହେତୁ ତ୍ରିଲୋକପୀଡ଼କ କନ୍ଦର୍ପକୁ ଅଜ ଜିଣିଲେ ।

ଅନ୍ତର୍ଯ୍ୟାମୀ ନରୁ ମିଛେ କରନ୍ତେ ଇଙ୍ଗିତ ।
ସେ କ ଦର୍ପକ ବୋଲି ସେ ଆରମ୍ଭିଲା ନୃତ୍ୟ ।
ସେହୁ ନୋହନ୍ତି କି ଭସ୍ମଶୁଟପ ପରାଭୂତ ।
ଭ୍ରମିଥିଲ ବୋଲି ପୁଣି ହାସ କଲା ଜାତ । ୫୪ ।
ଏତେ କଥାରେ ଏ ଲଭି ନ ଥିବବ କି ଶ୍ରମ ।
ହାସ୍ୟେ କେ ଛନ୍ଦିଲା ପାଶ ଦେବା କାର୍ଯ୍ୟକର୍ମ ।
ଶୁଣି ଭୃତ୍ୟଗଣେ କଲେ ମାତକ ବଚନ ।
ଆନ ଛନ୍ଦେ କହିବା ସୁନ୍ଦରୀ ଗୀତମାନ ଯେ । ୫୫ ।
ଯେ ବଭ୍ରୁ ସୁଭଶ୍ରହର ଧୃତ ଶ୍ରମପଦ ।
ଉଦିତ ଯେ ଜଗତେ ଜନକମୋଦପ୍ରଦ ।
ହରିତାମ୍ବର ସର୍ବଦା ଅଙ୍କସ୍ଥାନ ସେହି ।
ରାଘବ ଶିବ ହୃଦୟରେ ଉପଇନ୍ଦ୍ର ଧ୍ୟାୟି ଯେ । ୫୬ ।



---

୫୪—ମିଛ ଇଙ୍ଗିତ କଲା, ଅଥ କୁମାରଙ୍କୁ ତ୍ରିପୁରଘାତକ ( ଶିବ ) ଜୟୀ ବୋଲି କହିବାଦ୍ୱାରା ଅପମାନ କରୁଅଛ, ସେ କଅଣ କନ୍ଦର୍ପ ? ଏହା ଶୁଣି ସେ ନୃତ୍ୟକ ନାଚିଲା, କହିଲା ସେ ଶିବ କଣ ଧ୍ୟାନ (ସ୍ୱନ) ରୂପେ ପରାସ୍ତହୋଇ ନାହାନ୍ତି କି ? ମୁଁ ତ ଭୁଲି ଏହା ବୋଲି ପୁଣି ହସିଲା ।

୫୫—ଏତେ କଥାରେ ଏ କୁମାର ଶ୍ରମପାଇ ନ ଥିବେ କି ? ଶୀଘ୍ର ବେଗେ ନାଚ୍ୟକର୍ମ ଶେଷ କରାଇବା । ଏହା କେହି ମିଶ ପରିହାସରେ କହିବା ଶୁଣି ଭୃତ୍ୟମାନେ ନାଚମାନ କରାଇଲେ । ଅନ୍ୟ ଛନ୍ଦରେ ସୁନ୍ଦରୀର ଗୀତ ସବୁ ବର୍ଣ୍ଣିତ ହେବ ।

୫୬—ଯେ ବଭ୍ରୁ ପୁଷ୍ପର ( ତୁଳସୀ ) କୁ ଧାରଣ କରିଥିଲେ । ରାମ ଏହି ନାମ ପାଦଧାରଣ କରୁଅଛନ୍ତି । ଜଗତରେ ବିଖ୍ୟାତ ଅଟନ୍ତି । ସୀତା ଓ ଜନକ ମହର୍ଷିଙ୍କର ଆନନ୍ଦଦାତା । ଯେ ପୀତାମ୍ବର ଓ କଲଙ୍କ ସ୍ଥାନ ଅଟନ୍ତି ସେହି ରାଘବରାମଚନ୍ଦ୍ରଙ୍କୁ, ଏବଂ ଯେ ବଭ୍ରୁବାହନମାନଙ୍କର ଘାତକ ଅର୍ଥାତ୍ ତ୍ରିପୁରାଦିନାଶ ଦ୍ୱାରା ଦେବତାମାନଙ୍କର ଉପଦ୍ରବ ଦୂରକରନ୍ତି । ସର୍ବଦା ରାମ ମନ୍ତ୍ରଧର ( ଜପ ) ଅଛନ୍ତି । ଜଗତରେ ଜନମାନଙ୍କର ଆନନ୍ଦଦାତା ରୂପରେ ଜଗତରେ ବର୍ଣ୍ଣିତ, ଏବଂ ସର୍ବଦା ଦିଗମ୍ବର ଓ ଭୂଷଣ ରହିତ ସେହି ଶିବଙ୍କୁ ଏବଂ ଯେ ବଭ୍ରୁ ବସ୍ତ୍ର ( ବସା ) ହରଣ କରିଥିଲେ, ରମଣୀୟ ବ୍ରହ୍ମଚର୍ଯ୍ୟ ଧାରଣକରି ଅଛନ୍ତି । ଯେ ଜଗତରେ ଆନନ୍ଦଦାୟକ ଜନକ ( ପିତା ) ରୂପରେ ବିଖ୍ୟାତ ହୋଇ-ଅଛନ୍ତି । ହରିବର୍ଣ୍ଣବସ୍ତ୍ରଧାରୀ ଓ ଭୂଷଣ ରହିତ ଅଟନ୍ତି ସେହି ବ୍ରହ୍ମାଙ୍କୁ ମଧ୍ୟ ଉପେନ୍ଦ୍ରଭଞ୍ଜ ଧ୍ୟାନ କରୁଅଛନ୍ତି ।



# ପଞ୍ଚତ୍ରିଂଶ ଛାନ୍ଦ ।

## ରାଗ ଭାଟିଆରୀ ।

ରସି ରସିକେ ଶୁଣିମା ରସ । ରସବନ୍ତୀ ରତ୍ନକେଶ ବେଶ ।
ଗତ ପରସନ୍ନ ଗତ ଦରଶନ ଜଗତ କରି ପାରଇ ବଶ । ୧ ।
ଜାତି ପଦ୍ମିନୀ ସେ ନବବାଳୀ । ୧ସୁରଭି ସୁରଭି ରସସ୍ଥଳୀ ।
ଉଚିତ ଏ କଥା ୨ତରୁଣକୁଞ୍ଜର ଯୋଗରେ ତାର ହେବାର ଦଳ । ୨ ।
୧ଜୃମ୍ଭାବଶେ ମୁଖ ଦଶେ ୨ସ୍ଫୁରୁ । ଆନ ନ ଦିଶେ ଏ ଉପମାରୁ ।
ଫୁଟି ଆସୁଛି କି ମୁଦ୍ରିତ ନଳିନୀ ଜାଣି ରଙ୍ଗ ନାଶ ହୋଇବାରୁ । ୩ ।
ପାଦେ ପାହୁଡ଼ ହୁଡ଼ନା ବୋଲି । ମଦନ ମନ୍ଦାନେ ଢଳି ଢଳି ।
ଗର୍ବାଳସୀ ହଂସୀ ଗତି ମଞ୍ଜନକୁ ଆରମ୍ଭ ଅତି ୧ମନ୍ଥର ଚାଲି । ୪ ।
ରହି ଯାଇ କେ ବାଜି ଯାଇ । ନେଉଛି ସାଙ୍ଗକୁ କିବା ଧାଇଁ ।
ଜରାସନ୍ଧ ପରି ପରାଭବୀ କାମ ନାଗର ଠୁକୁଇ ରହି ରହି । ୫ ।

---

## ପଞ୍ଚତ୍ରିଂଶ ଛାନ୍ଦ ।

୧—ଅହେ ରସିକମାନେ ରସିକରେ ଏ ରସ ଶୁଣିମା ହେଉନ୍ତୁ । ରସବତୀ କୋଟିବ୍ରହ୍ମାଣ୍ଡସୁନ୍ଦରୀର ରତ୍ନ-କେଶବେଶ ଶୋଭିତ ହେଉଅଛି । ଦେବାଙ୍କର ଯେ ପ୍ରସନ୍ନତା ଥିଲା, ସେ ଗତ ହୋଇଅଛି । ତାହାର ଦର୍ଶନ ଜଗତ ବଶ କରିପାରେ ।

୨—ସେ ନବବାଳୀ ପଦ୍ମିନୀ ଜାତୀୟା ଅଟେ, ସୁନ୍ଦର ସୁଗନ୍ଧ ଓ ରସର (ମଧୁ ଓ ଶୃଙ୍ଗାର) ସ୍ଥାନ ଅଟେ, ଅତଏବ ଯୁବାଶ୍ରେଷ୍ଠରୂପ ହାତୀ ଯୋଗେ ତାର ଦଳ ହେବା କଥା ଉଚିତ ଅଟେ । ୧ସୁରଭି ସୁନ୍ଦର ଓ ସୁଗନ୍ଧ । ୨ତରୁଣ କୁଞ୍ଜର ଯୁବାଶ୍ରେଷ୍ଠ ଓ ଯୁବକହାତୀ ।

୩—ଅଳସ୍ୟବଶ ହାଇମାରିବା ହେତୁରୁ ମୁଖ ସୁନ୍ଦର ଦେଖାଯାଉଅଛି । ରତ୍ରିର ରଙ୍ଗ ନାଶ ହେବାରୁ ମୁଦ୍ରିତ ହୋଇଥିବା ପଦ୍ମିନୀ ଫୁଟୁ ଅଛିକି ? ଏହିରୁ ଆନ ଉପମା ଦେବାକୁ ଦେଖାଯାଉନାହିଁ । ୧ଜୃମ୍ଭା, ହାଇ । ୨ସ୍ଫୁରୁ, ସୁନ୍ଦର ।

୪—କାମଦେବଙ୍କର ଅଧୀନ ହୋଇ ଢଳି ଢଳି ଯେଉଁ ଅତି ମନ୍ଥର ଚାଲିରେ ଗର୍ବହେତୁ ଅଳସ ହୋଇଥିବା ହଂସୀର ଗତି ମଞ୍ଜିବାକୁ ଆରମ୍ଭ କରିଅଛି, ତାହା ହୁଡ଼ନା, ବୋଲି ପାହୁଡ଼ କହୁଅଛି କି ? ୧ମନ୍ଥର, ମନ୍ଦ ।

୫—ସୁନ୍ଦରୀ ରହି ରହି ଯାଉଥିବାରୁ ଅତଏବ କେଉଁ ବାଜିଯାଉଥିବାରୁ (ଶବ୍ଦ କରୁଥିବାରୁ) କାମ ହାରିଯାଇଥିବା କନ୍ଦର୍ପ ପୁଣି ନେଉଛି ସାଙ୍ଗକୁ କି ? ଅତଏବ ହେ ରହି ନାଗର ଠୁକୁଅଛି କି ? ଯେପରି ଜରାସନ୍ଧ ହୋଇ ଜାତ ହୋଇଥିବା ଜରାସନ୍ଧ ରାକ୍ଷସୀଦ୍ୱାରା ଯୋଡ଼ା ହୋଇଥିଲା ଏବଂ ଅନେକବାର ହାରିଲେ ସୁଦ୍ଧା ନଥିବାରୁ ପୁଣି ପୁଣି ଆକ୍ରମଣ କରିବାକୁ ସାଜୁଥିଲା । ସେହିପରି କନ୍ଦର୍ପ ଯୋଡ଼ିପାଇ ଅନଙ୍ଗ ସେ ପୁଣି ଡାଳ ହାରି ଅଡ଼ ସାଜ ଅଛନ୍ତି । ଏହା ଧ୍ୱନି (ବକ୍ରବଚନ) ।

ପ୍ରାତଃ ସମୟତ ସ୍ୱପ୍ନବରେ । ଖସୁଁ କେଶ ଖୋଷା ଖୋଷିବାରେ ।
ଏ ଦୃଷ୍ଟି ପ୍ରକଟି ତମ ଥିଲା ଘୋଟି ଦେଲେ ନେଉଛନ୍ତି [1]ଅରୁଣ କରେ । ୬ ।
ରଙ୍ଗ ଅମ୍ଳାନ ମାଳହିଁ ଛୁଟି । ଖସେ ଏ ଲକ୍ଷ୍ୟମାନ ସେ ଲୋଟି ।
ପୂର୍ବାଦ୍ରି ତମାଳବନରୁ କି ଗଳି ସାନୁକରଣ ଆସଇ ପଡ଼ି । ୭ ।
ମଲ୍ଲିକା ମାଳିକା ଖସୁଛନ୍ତି । ଏହୁ ଲକ୍ଷଣା ଦେଖନ୍ତି ମତି ।
ଘନରସ ବୃଷ୍ଟି ଅନ୍ତରେ ମଞ୍ଜୁଟର ସହଜେ ପ୍ରବେଶ ହଂସପନ୍ତି । ୮ ।
ଜାତବନ୍ଧ ବୋଲି ସର୍ବେ କହି । ବାନ୍ଧୁ ପୁନଃପୁନଃ ଫିଟି ଯାଇ ।
ରସନଦୀ ବୃଦ୍ଧି ବଶେ ଯେ ଭାଙ୍ଗନ୍ତି ବାଲୁକା ସେତନେ ସେକ ରହି । ୯ ।
ସ୍ୱେଦ ଛୁଟି ନାହିଁ ଅଙ୍ଗ ସୀମା । ଲବଣୀପିଣ୍ଡୁଳା ନବରାମା ।
ସୁରସ ଭେଦରେ ତରଳ ଥିଲା ଯେ ପବମାନ ଜଳ ସୁଖଧାମା । ୧୦ ।
ଇଚ୍ଛା ଗୋପ୍ୟପୁରେ ପଶିବାକୁ । ଭୟ ସଖୀ ହାସ୍ୟ ଭାଷିବାକୁ ।
ପ୍ରିୟ ବଚନସୁବଚନ ଡାକୁଁ ଆଣ ହେଉଥିଲୁ ଚିତ୍ତ ତୋଷିବାକୁ । ୧୧ ।
ସଙ୍ଗିନୀଏ ସଙ୍ଗ ଏହି କାଳେ । ଭଙ୍ଗି ବଚନ ପ୍ରକାଶ କଲେ ।
ଅତି ମୃଦୁଅଙ୍ଗୀ ନ ବାଧିବ କେହି ନୋହିବା କଥା କହୁଛ ବଳେ । ୧୨ ।

---

୬—ଫିଟିଥିବା ମୁଣ୍ଡର ଖୋଷାକୁ ନିଜ ହାତରେ ଖୋଷି ଦେଉଥିଲା, ଅତଏବ ଏହି ଉପମା ଦିଶୁଥିଲା । ସ୍ୱପ୍ନରେ ତ ଏ ପ୍ରଭାତ ସମୟ, ଏବେ ମୂର୍ଧ୍ନିଭରଣରେ ଘୋଟିଥିବା ଅନ୍ଧକାରକୁ ଫେଡ଼ି ନେଉଅଛି କି ? [1]ଅରୁଣଙ୍କରେ, ଲାଲ ହାତରେ ଓ ସୂର୍ଯ୍ୟ କିରଣରେ ।

୭—ଯେଉଁ ଫୁଲ ଅନେକକାଳ ସମାନ ଶୋଭାରେ ଫୁଟିଥାଏ, ମଉଳେ ନାହିଁ, ତାହାକୁ ଅମ୍ଳାନ ପୁଷ୍ପ କହନ୍ତି । ସେହିପରି ରକ୍ତବର୍ଣ୍ଣ ପୁଷ୍ପମାଳମାନ ଖୋଷାରୁ ଛାଡ଼ି ଖସିପଡ଼ୁଥିଲା, ସେ ଏହି ଉପମାକୁ ଲୋଡ଼ୁଥିଲା । ପୂର୍ବପର୍ବତର ତମାଳ ବନରୁ ମୂର୍ଧ୍ନିଭରଣ ଗଳିକରି ପଡ଼ିଆସୁଅଛି କି ।

୮—ସେ ଖୋଷ ଖୋଷିବାବେଳେ ମଲ୍ଲୀମାଳା ମଧ୍ୟ ଖସୁଥିଲା, କବିଙ୍କ ବୁଦ୍ଧିରେ ସେତେବେଳେ ଏହି ଉପମା ଆସିଲା । ଏ ଯେଉଁ ନବଜଳଦ ବୃଷ୍ଟିର ଶେଷକାଳ, ଏ ବର୍ଷା ଶେଷ ସମୟ ହେଲା, ଏଥିରେ ହଂସ ଶ୍ରେଣୀ ପୁଣି ପୃଥିବୀରେ ପ୍ରବେଶ କରୁଅଛନ୍ତି କି ?

୯—ତାକୁ ଲୋକେ ଜାତବନ୍ଧ ବୋଲି କହନ୍ତି । କିନ୍ତୁ ସେ ବସ୍ତ୍ରଗଣ୍ଠି ବାନ୍ଧୁ ପୁଣି ପୁଣି ଫିଟି ଫିଟି ଯାଉଥିଲା । ରସରୂପକ ନଦୀ ବୃଦ୍ଧି ହେଲାରୁ ବଢ଼ିବାବେଳେ ଯେ ବନ୍ଧ ହୋଇଥିଲା, ସେ ପୁଣି ବାଲିଫିଟିବା ଭାବ ଦେଖା ହୋଇପାରେ କି ?

୧୦—ତାହାର ଅଙ୍ଗମାନଙ୍କରୁ ସ୍ୱେଦ ଛୁଟି ନଥିଲା, ସେ ତ ଲବଣୀ ପିଣ୍ଡୁଳା ପରି, ରସ ବାହାର ହେବାପାଇଁ ତରଳଥିଲା, ତା ପକ୍ଷରେ କେବଳ ପବନ ବର୍ତ୍ତମାନ ସୁଖପ୍ରଦ ଅଟେ ।

୧୧—ଗୁପ୍ତଗୃହରେ ପଶିବାକୁ ଇଚ୍ଛା କରୁଥିଲା । ସଖୀମାନଙ୍କ ପରିହାସକୁ ଭୟ କରୁଥିଲା । କିନ୍ତୁ ପ୍ରିୟର ପ୍ରିୟବଚନ ଶୁଣି ତାର ଚିତ୍ତ ସନ୍ତୁଷ୍ଟ କରୁଥିଲା ।

୧୨—ଏହି ସମୟରେ ସଙ୍ଗିନୀମାନେ ଆସି ସଙ୍ଗ ହୋଇ ଭଙ୍ଗି କଥାମାନ ପ୍ରକାଶ କଲେ (ପରିହାସରେ) ନ ହେବା କଥା ତ ହୋଇଅଛି । ଏତ ଅତି କୋମଳାଙ୍ଗୀ କିପରି ଏବା ତ ବାଧିବ ।

କେହି କହି କମ୍ପା କରଭର । ମଧ୍ୟମା ଦେଇଛି ୧ମଧ୍ୟ ପର ।
ଅଛି ଭଜ ନାହିଁ କୁଚଭାର ସହି ହେଉ ନାହିଁ ଏତେ ସୁକୁମାର । ୧୩ ।
କେ ବୋଇଲା ଦେଖ ୧ରଦଚ୍ଛଦ । ଶୋଭା ବହିବାରୁ ୨ରଦପଦ ।
ଗୁଣିକ ବୋଲନ୍ତି ଅମୂଲ୍ୟ ମାଣିକ୍ୟ ସେହି ପୁଣି ହେଲା କୀଟଭେଦ । ୧୪ ।
ଛଳେ କେ ଭ୍ରୂଭଙ୍ଗୀ ନାହିଁ ଜାଣୁ । ଘୋର ରତିରଣେ ମୁହିଁ ଇଛି ॥
୧ଦର୍ପକ ଧନୁ ଏ ଦର୍ପହତ ହୋଇ ପକାଇ ଦେଇ ସେ ପଳାଇଛି । ୧୫ ।
ସଖୀଏ ଚହିଁ ଧୀରେ କହି । ଏଣୁ କି ଡୋଳା ଚଞ୍ଚଳ ବହି ।
ପ୍ରିୟ ୧କଞ୍ଜମୁଖ ଚୁମ୍ବିଥିଲା ୨ଭୃଙ୍ଗ ଖୋଜେ କି ସେହି ପଙ୍କଜ କାହିଁ । ୧୬ ।
କେ ଭାଷେ ହରିଣୀ ନବମାଳା । ଚଞ୍ଚଳ ଗୃହାଣି ନ ଛାଡ଼ିଲା ।
ଏହିକ୍ଷଣି ସିନା ଫିଟି ଆସିଅଛି କାନ୍ତ ବାହୁପାଶେ ପଡ଼ିଥିଲା । ୧୭ ।
ସହଚରୀଏ ପ୍ରକାଶ ଭାଷ । ନାହିଁ ମନୋଜ୍ଜ୍ୱଳ ସ୍ୱାସହାସ ।
ରତି ଦାନ କରି ଦକ୍ଷିଣା ଦେଲାଟି ଏହି ସୁଲକ୍ଷଣା ହୁଏ ଦୃଶ । ୧୮ ।
ସଖୀଏ ବୋଇଲା ପୃଥୁ ସ୍ତନ । ପୂର୍ଣ୍ଣକୁମ୍ଭ ଏଥି ହାସ ଚିହ୍ନ ।
କାନ୍ତ କର ବାଜି ଢଳିଥିଲା ପ୍ରେମସୁଧାଧାର ରହିଅଛି ଚିହ୍ନ । ୧୯ ।

---

୧୩—କେହି ସଖୀ କହିଲା, ଏ ସୁନ୍ଦରୀ ମଧ୍ୟମା ନାୟିକା ପରି କାହିଁକି ଅଣ୍ଟାରେ ହାତଭର ଦେଉଅଛି । ଏ ଅଣ୍ଟା ସ୍ତନଭାର ସହିତ ରହିପାରୁ ନାହିଁ. ଏଥିରେ କଣ ଭାଙ୍ଗିଯିବ,, ଏତେକ ଦୃଢ଼ ହୋଇ ପାରୁନାହିଁ । ୧ମଧ୍ୟ, ଅଣ୍ଟା ।

୧୪—କେହି ସଖୀ କହିଲା, ଦେଖ, ଏହାର ଓଷ୍ଠ ଦନ୍ତକ୍ଷତଦ୍ୱାରା ଶୋଭାଧାରଣ କରିଅଛି । ଗୁଣିକ ଲୋକମାନେ ତ ଏ ଓଷ୍ଠକୁ ଅମୂଲ୍ୟ ମାଣିକ୍ୟ କହନ୍ତି, ସେ ପୁଣି କୀଟ ଭେଦ ହେଲା କି ? ୧ରଦଚ୍ଛଦ, ଓଷ୍ଠ । ୨ରଦପଦ, ଦନ୍ତକ୍ଷତ ।

୧୫—ପୁଣି କେହି ସଖୀ ଛଳକରି କହିଲା, ଏ ସୁନ୍ଦରୀର କଣ ଭ୍ରୂଭଙ୍ଗ ନାହିଁ । ମୁଁ ଜାଣୁଛି, ଘୋର ରତି ଯୁଦ୍ଧରେ ଗର୍ବ ଖର୍ବ ହେବାରୁ କନ୍ଦର୍ପ ନିଜର ଏ ଧନୁକୁ ପକାଇ ଦେଇ ପଳାଇଅଛି କି । ୧ଦର୍ପକ, କନ୍ଦର୍ପ

୧୬—ସେଠାରେ ଅନ୍ୟ ଗୋଟିଏ ସଖୀ ଧୀରେ କହିଲା, ଏହି ହେତୁରୁ ଏହାର ଡୋଳା ଚଞ୍ଚଳ ହେଉଅଛି କି ? ଯେହେତୁ ଏହି ଡୋଳାରୂପକ ଭ୍ରମର ପ୍ରିୟର ପଦ୍ମମୁଖ ତ ଚୁମ୍ବିଥିଲା, ଏବେ ସେ କାହିଁ ବୋଲି ଖୋଜିବାରୁ ଚଞ୍ଚଳ ହେଉଅଛି କି ? ୧ କଞ୍ଜ, ପଦ୍ମ । ୨ ଭୃଙ୍ଗ, ଭ୍ରମର ।

୧୭—କେହି ସଖୀ କହିଲା, ଏ ନବବାଳା ହରିଣୀ ଅଟେ, ଏ ପ୍ରିୟର ବାହୁପାଶରେ ପଡ଼ିଥିଲା, ଏହିକ୍ଷଣି ଫିଟି ଆସିଛି, ଏଣୁ ଚଞ୍ଚଳ ଗୃହାଣୀ ଛାଡୁ ନାହିଁ ।

୧୮—ଅନ୍ୟ ଗୋଟିଏ ସହଚରୀ କହିଲା, ଅତି ଉଜ୍ଜ୍ୱଳ ହାସ ପରି ହସ ଆଉ ନାହିଁ ଯେ ମୋତେ ଏହା ଦେଖା ପଡ଼ୁଛି ? ଏ ସୁଲକ୍ଷଣାରେ ରତି ଦାନ ଦେଇ ତାର ଦକ୍ଷିଣାକରି ସେତିକ ଦେଇ ଅଛିକି ।

୧୯—କେହି ସଖୀ କହିଲା, ଏହାର ଏ ପୃଥୁଳ ସ୍ତନ ପ୍ରେମପୂର୍ଣ୍ଣ କୁମ୍ଭ ଅଟେ, ପ୍ରିୟର ହାତ ବାଜି ପ୍ରେମ ଅମୃତ ଧାର ଢାଳ ହୋଇଥିବାର ଚିହ୍ନ ରହିଅଛି ।

କେ କହଇ କ୍ଷୀଣକଟି ହରି । ଦାନ କଲା ମୋତି କୃପା କରି ।
ଯୁବା ପାରଧିଆ ଯଉବନକରୀକୁମ୍ଭ [୧]କରଜନାରାଚେ ଚିରି । ୧୦ ।

କେ କହେ ବଦନ ପୂର୍ଣ୍ଣଶଶୀ । ଗଣ୍ଡ ସ୍ଥଳ ଖଣ୍ଡ ଖଣ୍ଡ ଦଶି ।
ଭୋଗୀ ପ୍ରିୟତମେ ଚର୍ବଣ ହେଲା କି ଏହି ସୁଲକ୍ଷଣା ଯାଏ ଦଶି । ୧୧ ।

କଳଙ୍କ କଜ୍ଜ୍ୱଳ ମଧ୍ୟସ୍ଥାୟୀ । ଗଳି ପଡ଼ିବାରୁ ବହି ଯାଇ ।
ତାମ୍ବୁଳ ସିନ୍ଦୂର ରକତ ବ୍ୟକତ ଦେଖ ଦନ୍ତକ୍ଷତେ ଶୋଭା ପାଇ । ୧୨ ।

ଉତ୍ତର କରେ କେ ଏକଥା ନଷ୍ଟା । ପ୍ରସନ୍ନେ ଏବେ ନୋହିଲୁ ଶ୍ରେଷ୍ଠା ।
[୧]ନିଃଶେଷ କରି [୨]ପୀୟୂଷ ପିଇବାରୁ ରହିଛି ସିନା ମାତର ସିଠା । ୧୩ ।

ହସି ବୋଲେ ଏକ ପ୍ରିୟଆଳୀ । ଅଜିତ ଅତି ମନ୍ଥର ଚାଲି ।
ଘବଣିକୁଳୀ ଲାଗିଲାକି ଚରଣେ କେହି ଚାଲନ୍ତା ବୋଲି କେ ଛଳି । ୧୪ ।

କହେ କେ ନ କଲ [୧]ଚଇତନ । ଅଳସଭଙ୍ଗୀ ଭଙ୍ଗିମାମାନ ।
ଊର୍ଦ୍ଧ୍ୱେ ଛନ୍ଦୁଥିଲା କର ବେଳେ ବେଳେ ପାସୋରି ନ ପାରୁ ଆଲିଙ୍ଗନ ।୧୫।

---

୧୦—ଅନ୍ୟ କେହି ସଖୀ କହିଲା ଏହାର କୃଶ କଟି ସିଂହ ଅଟେ, ଯୁବା ପାରଧିଆ ( ଶିକାରୀ ) ଯୌବନ ରୂପକ ହାତୀର ଗଣ୍ଡସ୍ଥଳ ଅର୍ଥାତ୍ ସ୍ତନକୁ ନଖରୂପକ ଶରଦ୍ୱାରା ଚିରିଛି ସେ ସିଂହକୁ ଦୟାକରି ମୋତି ଦାନ କଲା, ଅର୍ଥାତ୍ ମୁକ୍ତାମାଳା ସ୍ତନରୁ ଛିଣ୍ଡି କଟି ପ୍ରଦେଶରେ ରହିଅଛି । [୧]କରଜ ନାରାଚ ନଖ ଶରରେ ।

୧୧—କେହି ସଖୀ କହିଲା, ଏହାର ମୁଖ ରୂପକ ପୂର୍ଣ୍ଣଚନ୍ଦ୍ର ଭୋଗୀ ( ସର୍ପ ) ପ୍ରିୟତମଙ୍କ ଦ୍ୱାରା ଚର୍ବିତ ହେଲା କି ? ଅତଏବ ଗଣ୍ଡସ୍ଥଳ ଓ କପାଳ ଖଣ୍ଡଖଣ୍ଡ ହୋଇ ଦଶି ପାରୁଅଛି । ଏହି ଲକ୍ଷଣା ଦେଉଅଛି । କଜ୍ଜ୍ୱଳ ରୂପକ କଳଙ୍କ ମଧ୍ୟରେ ଥିଲା । ବର୍ତ୍ତମାନ ଗଳିଲା ବହି ପଡ଼ୁଅଛି । ସିନ୍ଦୂର ରକ୍ତ ଓ ପାନବୋଳ ରକ୍ତପରି ବ୍ୟକ୍ତ ହୋଇଅଛି, ଦନ୍ତକ୍ଷତ ହାସ ଏପରି ଶୋଭା ହୋଇଅଛି ।

୧୩—କେହି ସଖୀ ଉତ୍ତର କଲା, ଏକଥା ନଷ୍ଟପ୍ରାୟ ଅଟେ, ଦେଖ ଏ ଏବେ ପ୍ରସନ୍ନତାରେ ଶ୍ରେଷ୍ଠା ହୋଇନାହିଁ ଅର୍ଥାତ୍ ଅତି ପ୍ରସନ୍ନ ଦଶୁନାହିଁ । କାରଣ ସମଗ୍ର ଭାବରେ ଅମୃତ ପିଇବାରୁ କେବଳ ସିଠାମାନ ପଡ଼ିଅଛି । [୧]ନିଃଶେଷ, ସମସ୍ତ । [୨]ପୀୟୂଷ, ଅମୃତ ।

୧୪—ଜଣେ ପ୍ରିୟସଖୀ ହସିକରି କହିଲା । ଅତି ଗମନ ବଡ଼ ମନ୍ଦ ହୋଇଅଛି । ସ୍ନେହରୂପକ ଚିକ୍କଣ ଗୋଡ଼ରେ ଲାଗିଲାଣି, କିପରି ବେଗେ ଚାଲି ପାରନ୍ତା । କେହି ସଖୀ ଏହା ଛଳିଲା ।

୧୫—କେହି ସଖୀ କହିଲା, ଏହାର ଅଳସ ଭଙ୍ଗୀ ଭଙ୍ଗିମାନକୁ ଜାଣିଲନାହିଁ ଏ ଯାହା ବେଳେବେଳେ ଅଳସ ଭାଙ୍ଗିବାକୁ ହାତ ଦୁଇକୁ ଉପରକୁ ଟେକି ଛନ୍ଦୁଛି, ବୋଧହୁଏ ପ୍ରିୟଙ୍କ ଆଲିଙ୍ଗନ କରିଥିବା ପାଶୋରି ପାରୁନାହିଁ । [୧]ଚଇତନ, ଜ୍ଞାନ ।

ଇଷି ଇଷି ବୋଲିବାରେ ବ୍ୟାଜେ । ଈଶ ଏଣ ବୋଲୁଥିଲା ଶ୍ରେୟ ଛପ ।
ଅଧିକୁଁ ଅଧିକ ଅନୁରାଗ ଯୋଗୁଁ ତନୁଶ୍ରୀଏ ହେଉ ବୋଇଲା ସେ । ୧୬ ।
ସଜନୀଏ ଚାହିଁ କହେ କେଜ । ଆଜ ହେଲା ଶିବୋତ୍ସବ ରଜ ।
ଉତ୍ତମା ଉତ୍ତମ ଲଗ୍ନ ହୋଇବାରୁ ପ୍ରମୋଦେ ଯେଘନଲୁ ଭତ୍ତମନ୍ତ୍ର । ୧୭ ।
କାମକଳୁଷତ ଗଲା ନାଶ । ମୁକତ ଲଭିଲୁ ଏ ସଂକ୍ରାନ୍ତ ।
ଅନ୍ତର୍ଗତେ ରଖି ଧ୍ୟାନ କରେ ସଖୀ ନିଶ୍ଚଳ ଭଜଇ ଅଙ୍ଗଦେଶ । ୧୮ ।
ବୟସୀଏ ଭାଷେ ଚାଲ ଚାଲ । ପରହ୍ଲାସ କି ଜାଣିବା କଲ ।
ଘନରସ କି ଜୃମ୍ଭକ ନ ପିଅନ୍ତା ଭୃଙ୍ଗ ଭେଦ କି ନୁହନ୍ତା ଫଳ । ୧୯ ।
ସେଠାରୁ କରପଇଠି ଦେଲେ । ବେଢ଼ି ଧୀରେ ସମ୍ମୋଷ୍ଟୀକି ନେଲେ ।
୧ପୂର୍ଣ୍ଣକଳାନିଧି ନକ୍ଷତ୍ର ପରିଧି ବିଧି ଉପମାକୁ ସିଦ୍ଧି କଲେ । ୨୦ ।
୧ଚଉରଣଗଣେ ଉଦ୍ଧେ ହୋଇ । ସହର ମାନ୍ତ ବଢ଼ାଇ ଦେଇ ।
ରମଣୀମଣୀକି ବେଶ କରିବାରେ ଆବେଶ ହୋଇଲେ ପ୍ରାଣସଙ୍ଗୀ । ୨୧ ।
ରଖି ୧ଅଶସ୍ତ୍ର ଇଙ୍ଗିତଶ୍ରେଣୀ । ୨ଅନୁଜୃମ୍ଭଏ ସ୍ୱର୍ଣ୍ଣ ଭଣି ।
ନବୀନାକୁ ଉପକାରୀ ଚାରିକଥା ଉତ୍ତାରୁ ଆନ ମଣ୍ଡିବା ପୁଣି । ୨୨ ।

---

୧୬—ଏ ଚତୁର ଇଷି ବୋଲିବା ବ୍ୟାଜରେ ଏଣ (ପ୍ରିୟ) ବୋଲୁଥିଲା, ଅଧିକରୁ ଅଧିକ ଅନୁରାଗ ହେତୁରୁ ଏହା ହେଉ ବୋଲୁଥିଲା ।

୧୭—ଜଣେ ସଜନୀ ଏହାର ଅକ୍ଷିକି ଚାହିଁ କହିଲା । ଆଜ ଦିବସରୁ ଉତ୍ସବ ହୋଇଥିଲା । ଏ ଉତ୍ତମା ଉତ୍ତମ ଲଗ୍ନ ମିଳିଯିବାରୁ ଆନନ୍ଦରେ ଉତ୍ତମନ୍ତ୍ର ଦେଇ ପଢ଼ାଇଲା ?

୧୮—କନ୍ଦର୍ପ ଗୋଳଅମର ନାଶ ହେଲା, ଏବେ ମୁଁ ମୁକ୍ତି ପାଇଲି । ସଖୀ ଏହି ସଂକ୍ରାନ୍ତି ଅନ୍ତରେ ରଖି ଧ୍ୟାନ କରୁଅଛ କି ? ଏହେତୁ ଏହି ଅଙ୍ଗ ଦେଶ ନିଶ୍ଚଳ ହୋଇଅଛି ।

୧୯—ଅନ୍ୟ ସଖୀ ଜଣେ କହିଲା । ଚାଲ ଚାଲ ପରିହାସକୁ ଜାଣିବା କଲ ପୀୟୂଷ ମେଘ ଜଳ ଚାତକ ପିଅନ୍ତା ନାହିଁ କି ? ଫୁଲକୁ ଭ୍ରମର ଭେଦ କରନ୍ତା ନାହିଁ କି ?

୨୦—ସଖୀମାନେ ବେଢ଼ି ହାତ ପଇଠି ଦେଇ ଦମ୍ପୋଷ୍ଟୀ କୋଠରୀକୁ ଘେନିଗଲେ ଅତଏବ ପୂର୍ଣ୍ଣଚନ୍ଦ୍ରର ନକ୍ଷତ୍ର ବେଢ଼ି ରହିଥିବା ଯେଉଁ ଉପମା ଦେବାକୁ ସିଦ୍ଧି କଲେ ଅର୍ଥାତ୍ ସୁନ୍ଦରୀର ଚାରିପାଖେ ସଖୀମାନେ ରହିବାରୁ ପୂର୍ଣ୍ଣଚନ୍ଦ୍ର ଚାରିପାଖେ ତାରା ବେଢ଼ି ରହିଥିଲା ପରି ।

୨୧—ସେହି ପ୍ରାଣସହମାନେ ଅଣଣା ଚୂଳକ ଅବାଣରେ ଉଦତ ହୋଇ ଶତ୍ରୁ କାମଙ୍କର ବଢ଼ାଇଦେଇ ସେ ରମଣୀ ମଣିକି ବେଶ କରିବାରେ ଅବେଶ ହେଲେ । ୧ଚାମର, ଅ-ଣା ।

୨୨—ଦାସୀମାନେ ଇଙ୍ଗିତମାନଙ୍କରେ ଅଶସ୍ତ୍ର (ଗୂଢ଼ାର୍ଥ) ରଖି ବଚାର କହିଲେ ଉପକାରୀ ଚାରିକଥା ପରେ ନବୀନାକୁ ଆନ ମଣ୍ଡନ କରିବା । ୧ଅଶସ୍ତ୍ର, ଅପ୍ରଶସ୍ତ । ୨ଅନୁଗାମୀ, ଦାସୀ ।

ଚଇଲ ରସରେ ମାଠିବାରୁ । ଦର୍ପଣ ଉପମା ମୁଖ ଧରୁ ।
ମାଚ ସଙ୍ଗେ ଉଚ୍ଚ ସମସ୍ୟେ ତୁଲନା ପେନ ୧ଗୁଞ୍ଜା ଜମ୍ବୁନଦଠାରୁ । ୩୩ ।
୧ଅଧର ତ ମୁଲ ଅଧରକୁ । ଅଦର ଏବେ ପଡ଼ନ୍ତି ତାକୁ ।
କାଲ ସବୁ କରେ ଦାଅ ତତପରେ ପାଞ୍ଜ ସେ ସୋଦର ଉପମାକୁ । ୩୪ ।
ଉଚ୍ଚକୁଚରେ ୧ଚେଲକୁ ରଖି । ଗଣ୍ଡମଣ୍ଡଳେ ମକରୀ ଲେଖି ।
ଗୁରୁ ଅଗୋଚର କର ୨ଶଶୀ-ଉର-ଭୂଷଣ-ନାଭିରେ ପ୍ରାଣସଖୀ । ୩୫ ।
ଚନ୍ଦନ ବନ୍ଦନ ବାସ ତନୁ । ବନ୍ଦନ କର ଚନ୍ଦନ ଯେନୁ ।
ଶ୍ରାନ୍ତ ହର ନିଦ୍ରା କଷାଇ ଦେଖାଉଁ ଶତ ରତିରଙ୍ଗ ସ୍ୱପ୍ନପନୁ । ୩୬ ।
କହୁଁ କହୁଁ ରମା ବେଶ ସାର । ଟବାଇଟଲ ଅସ ମଣୋହ୍ର କିର ।
ମହା ମହା ରସ ଅଶନାନ୍ତେ ଜନ ଳମୁକଙ୍କାମୁଙ୍କ ନୋହେ ଗୋଣ । ୩୭ ।
୧ମୃଣାଳ ନାମ ଅହାରୁ ଦୂର । ହୋଇଲାଣି କଣ୍ଠୁ ନ ବର୍ଗ୍ଗର ।
ଦହୁଲ ପବନ ମୋହିଲାଣି ମନ ଯେକତ ବୁଦ୍ଧ ଚଉରୁଷସାର । ୩୮ ।

---

—ତୈଳ ରସରେ ମାଠିବାରୁ ମୁଖ ଏବେ ଦର୍ପଣ ଉପମା ଧାରଣ କରୁ । ସମସ୍ୟରେ ମଧ୍ୟ ଉଚ୍ଚ ସହିତ ନୀଚ ତୁଳନା କରଯାଏ, କାଞ୍ଚନ ସଙ୍ଗେ ଗୁଞ୍ଜା ତୁଳନା ହେବାରୁ ଏହା ଜାଣ । ୧ଗୁଞ୍ଜ, କାଇଁଚ, ଜମ୍ବୁନଦ, ସୁନା ।

—ପାନ ଏହା ଓଷ୍ଠଠାରୁ ନକୃଷ୍ଟ, କିନ୍ତୁ ଏବେ ତାହୁ ଅଧର ଆଦର । ହିଁ କାଳ ସବୁ କରେ ଶୀଘ୍ର ସେ ପାନକୁ ଦଅ । ସେ ସୋଦର ଉପମାକୁ ପାଉ, ଅର୍ଥାତ୍ ସିନ୍ଦୂର ତୁଳନାକୁ ପାଉ । ନାଗବଲ୍ଲୀ ପାନ ଓ ନାଗସମ୍ଭବ ସିନ୍ଦୂର ଏଣୁ ପାନର ସିନ୍ଦୂର ସୋଦର ବୋଲି କୁହାଗଲା । ୧ଅଧର, ଓଷ୍ଠ ଓ ନକୃଷ୍ଟ ।

—ନଖଚିହ୍ନ କ୍ଷତାଦିମାନଙ୍କୁ ଗୁରୁଜନମାନେ ନ ଜାଣିବା ପାଇଁ ଉଚ୍ଚ କୁଚରେ କାଞ୍ଚଳା ପିନ୍ଧାଅ, ଓ ଗଣ୍ଡସ୍ଥଳରେ କସ୍ତୁରୀରେ ମକରୀ ଲେଖ । ୧ଚେଲ, କାଞ୍ଚଳା । ୨ଶଶୀଉର ଭୂଷଣ ମୃଗନାଭି, କସ୍ତୁରୀ ।

ଚନ୍ଦନଠାରୁ ଉତ୍କୃଷ୍ଟ ସୁବାସ ଶୀତଳ ଶରୀରକୁ ମାର୍ଜ୍ଜନ କରିବାକୁ ଚନ୍ଦନ ଗ୍ରହଣ କରୁ । ସେ ଚନ୍ଦନ ଶ୍ରାନ୍ତ ହରଣ କର ନିଦ୍ରା କରାଇ ସ୍ୱପ୍ନରେ ଶତ ଶତ ରଙ୍ଗ ଦେଖାଉ ।

କହୁଁ କହୁଁ ରମାକୁ ବେଶ କରିସାର କହିଲ ଅଗୋ । ମନୋହରକର ଅସ । ଅଗୋ ଗୋରୀ ମହାମହା ରସ ଭୋଜନ ଶେଷରେ ଲୋକ ଗୁବାକ ଖାଇଥାନ୍ତି ନାହିଁ କି ? ଭୋଜ ରସ ଭୋଜ ପରେ ଭୋଜନ ଗୁଆ ଖିଅପର ।

ମାଠରେ ଅହାର କରିବାକୁ ଯାହା ଲଗପର ମଣୁଥିଲୁ, ତାହା ଏବେ ଦୂର ହେଲାଣି । ଅଉ କିଛି ରୁଚିର ଚର ନାହିଁ । ଯେ ପବନ ଦହନରେ ପୋଡ଼ିପକାଉ ଥିଲା ଏବେ ତେ ମନ ମୋହୁଛାଣି, ବୃଦ୍ଧ ଚତୁରଶିରୋମଣି କନ୍ଦର୍ପ କରୁ । ୧ମୃଣାଳନାମ, ଦଣ୍ଡ ।

ଇଷି ଇଷି ବୋଲିବାର ବ୍ୟାଜେ । ଈଶ ଈଶ ବୋଲୁଥିଲା ସେ ତେଜେ ।
ଅଧିକୁଁ ଅଧିକ ଅନୁରାଗ ଯେକା ତନୁରେ ହେଉ ବୋଇଲା ସେ । ୨୬ ।
ସଜନୀଏ ଗୁହ୍ୟ ଭଣେ ନେଇ । ଆଜ ହେଲା ଶିବୋତ୍ସବ ସହି ।
ଉତ୍ତମା ଉତ୍ତମ ଲଗ୍ନ ହୋଇବାରୁ ପ୍ରମୋଦେ ଦେବନ୍ତି ରତିମନ୍ତ । ୨୭ ।
କାମକଳୁଷତ ଗଲା ନାଶ । ମୁକତ ଲଭିଲି ଏ ସଙ୍କ୍ରାନ୍ତ ।
ଅନ୍ତର୍ଗତେ ରଖି ଧ୍ୟାନ କରେ ସଖୀ ନିଷ୍ଫଳ ଭଜଇ ଅଙ୍ଗଦେଶ । ୨୮ ।
ବୟସୀଏ ଭାଷି ଚାଲ ଚାଲ । ପରହାସ କ ଜାଣବା କଲ ।
ଘନରସ କ ଚାତକ ନ ପିଅନ୍ତା ଭୃଙ୍ଗ ଭୋଗ କ ନୁହନ୍ତା ଫୁଲ । ୨୯ ।
ସେଠାରୁ କରପଇଠି ଦେଲେ । ବେଢ଼ି ଧୀରେ ଚନ୍ଦ୍ରମୋଷ୍ଟୀକି ନେଲେ ।
୧ପୂର୍ଣ୍ଣକଳାନିଧି ଲକ୍ଷଣ ପରିଧି ବିଧି ଉପମାକୁ ଯୋଡ଼ି କଲେ । ୩୦ ।
୧ତଭୂରଙ୍ଗଗଣେ ଜଡ଼େ ହୋଇ । ସତ୍ତର ମାଣ୍ଡ ବଢ଼ାଇ ଦେଇ ।
ରମଣୀମଣୀକି ବେଶ କରିବାରେ ଆବେଶ ହୋଇଲେ ପ୍ରାଣସଖୀ । ୩୧ ।
ରଖି ୧ଅଶସ୍ତ୍ର ଇଙ୍ଗିତଶ୍ରେଣୀ । ୨ଅନୁଚାରୀଏ ବଜାଇ ଭଣି ।
ନଶାନାକୁ ଉପକାଶି ଗୁହ୍ୟକଥା ଉତ୍ତରୁ ଆନ ମଣ୍ଡିବା ପୁଣି । ୩୨ ।

---

୨୬—ଏ ବଦ୍ୟ ଇଷି ବୋଲିବା କପଟରେ ଈଶ ( ପ୍ରିୟ ) ବୋଲୁଥିଲା, ଅଧିକରୁ ଅଧିକ ଅନୁରାଗ ହେତୁରୁ ଏହା ହେଉ ବୋଲୁଥିଲା ।

୨୭—ଜଣେ ସଜନୀ ଏହାର ଅର୍ଥ ତାହିଁ କହିଲା । ଆଜ ଶିବଙ୍କ ଉତ୍ସବ ହୋଇଥିଲା । ଏ ଉତ୍ତମା ଉତ୍ତମ ଲଗ୍ନ ମିଳିଥିବାରୁ ଆନନ୍ଦରେ ରତିମନ୍ତ୍ର ଦେଇ ପଡ଼ାଉଛି ?

୨୮—କନ୍ଦର୍ପ ଦୋଷଅପରୁ ନାଶ ହେଲା, ଏବେ ମୁଁ ମୁକ୍ତି ପାଉଛି । ସଖୀ ଏହି ସଙ୍କ୍ରାନ୍ତ ଅନ୍ତରେ ରଖି ଧ୍ୟାନ କରୁଅଛ କି ? ଏହେତୁ ଏହି ଭ ଅଙ୍ଗ ଦେଶ ନିଷ୍ଫଳ ହୋଇଅଛି ।

୨୯—ଅନ୍ୟ ସଖୀ କଣେ କହିଲା । ଚାଲ ଚାଲ ପରହାସକୁ ଜାଣିବା କର ବର୍ଷିଲ ଜଳ ଚାତକ ପିଅନ୍ତା ନାହିଁ କି ! ଫୁଲକୁ ଭ୍ରମର ଭୋଗ କରନ୍ତା ନାହିଁ କି !

୩୦—ସଖୀମାନେ ବେଢ଼ି ହାତ ପଇଠି ଦେଇ ଚନ୍ଦ୍ରମୌଷ୍ଟୀ ହେମାଙ୍କ ସେଠାରୁ ନେଇଗଲେ ଅତଏବ ପୂର୍ଣ୍ଣଚନ୍ଦ୍ରର ଲକ୍ଷଣ ବେଢ଼ି ରହିଥିବା ଯେପରି ଉପମା ଦେବାକୁ ଯିବି କଲେ ଅର୍ଥାତ୍ ସୁନ୍ଦରୀ ଚାରିପାଖେ ସଖୀମାନେ ରହିବାରୁ ପୂର୍ଣ୍ଣଚନ୍ଦ୍ର ଚାରିପାଖେ ତାରା ବେଢ଼ି ରହିଥିଲା ପରି ।

୩୧—ସେହି ପ୍ରାଣସଖୀମାନେ ଅଙ୍ଗଣା ଭୂମିକ ଅଖାଡ଼ରେ ଉଦ୍ଭବ ହୋଇ ଶୀଘ୍ର ଜାଣନ୍ତରୁ ବଢ଼ାଇଦେଇ ସେ ରମଣୀ ମଣିକ ବେଶ କରିବାରେ ଆବେଶ ହେଲେ । ୧ଚତୁର, ଅ-ଶା ।

୩୨—ଦାସୀମାନେ ଇଙ୍ଗିତମାନଙ୍କରେ ଅଶସ୍ତ ( ଗୂଢ଼ାର୍ଥ ) ରଖି ବଢ଼ାଇ କହିଲେ ଉପକାଶି ଗୁହ୍ୟକଥା ପରେ ନଶାନାକୁ ଅନ ମଣ୍ଡନ କରିବା । ୧ଅଶସ୍ତ, ଅପ୍ରଶସ୍ତ । ୨ଅନୁଚାରୀ, ଦାସୀ ।

ରଇଳ ରସରେ ମାଠିବାରୁ । ଦର୍ପଣ ଉପମା ମୁଖ ଧରୁ ।
ମାଚ ସଙ୍ଗେ ଉଚ୍ଚ ସମସ୍ୱେ ତୁଳନା ଯେଣ [୧]ଗୁଞ୍ଜା ଜମ୍ବୁନଦଠାରୁ । ୩୩ ।
[୧]ଅଧର ତ ମୂଲ୍ୟ ଅଧରଙ୍କୁ । ଅଦର ଏବେ ଫଉଚ୍ଛି ତାଙ୍କୁ ।
ଜାଲ ସବୁ କରେ ଦଅ ତତପରେ ପାଜ ସେ ସୋଦର ଉପମାଙ୍କୁ । ୩୪ ।
ଉଚ୍ଚକୁଚରେ [୧]ଗ୍ରୈଳକୁ ରଖି । ଗଣ୍ଡମଣ୍ଡଳେ ମକରୀ ଲେଖି ।
ଗୁରୁ ଅଗୋଚର କର [୨]ଶଶୀ-ଉର-ଭୂଷଣ-ନାଭିରେ ପ୍ରାଣସଖୀ । ୩୫ ।
ଚନ୍ଦନ ବନ୍ଦନ ବାସ ତନୁ । ବନ୍ଦନ କର ଚନ୍ଦନ ଯେନୁ ।
ଶ୍ରାନ୍ତ ହର ନିଦ୍ରା କରାଇ ଦେଖାଞ୍ଜି ଶତ ଶତରଙ୍ଗ ସୁସ୍ୱପନୁ । ୩୬ ।
କହୁଁ କହୁଁ ରମା ବେଶ ସାର । ଟବାଇଲେ ଅସ ମଣୋହର କିର ।
ମହା ମହା ରଥ ଅଶନାନ୍ତେ ଜନ ଜମୁଡ଼ିକାମୁଞ୍ଜ ନୋହେ ଗୋର ।୩୭।
[୧]ମୁନାଲି ନାମ ଅଦ୍ଧାରୁ ଦୂର । ହୋଇଲାଣି କଛି ନ ବସ୍ୱର ।
ଦକ୍ଷିଣ ପବନ ମୋହିଲାଣି ମନ ଯେନତ ବୁଦ୍ଧ ଚରୁସ୍ୱାସାର । ୩୮ ।

---

—ରେଚିକ ରସରେ ମାଠିବାରୁ ମୁଖ ଏବେ ଦର୍ପଣ ଉପମା ଧାରଣ କରୁ । ସମସ୍ୱରେ ମଧ୍ୟ ଜାଚ ସହିତ ଉଚ୍ଚ ତୁଳନା କରାଯାଏ, କାଚର ସଙ୍ଗେ ସୁନା ତୁଳନା ହେବାରୁ ଏହା ଜାଣ । [୧]ଗୁଞ୍ଜା, କାଚ, ଜମ୍ବୁନଦ, ସୁନା ।

—ପାନ ଏହା ଓଷ୍ଠଠାରୁ ନକୃଷ୍ଟ; କେଣୁ ଏବେ ତାହୁ ଅଦର ଅଳ୍ପ । ହିଁ ଜାଲ ସବୁ କରେ ଶୀଘ୍ର ସେ ପାନକୁ ଦଅ । ସେ ସୋଦର ଉପମାକୁ ପାଉ, ଅର୍ଥାତ୍ ସିନ୍ଦୂର ତୁଳନାକୁ ପାଉ । ନାଗବଲ୍ଲୀ ପାନ ଓ ନାଗସମ୍ଭବ ସିନ୍ଦୂର ଏଣୁ ପାନର ସିନ୍ଦୂର ସୋଦର ବୋଲି କୁହାଗଲା । [୧]ଅଧର, ଓଷ୍ଠ ଓ ନିକୃଷ୍ଟ ।

-କଶରକ୍ତ ସ୍ତନମାନଙ୍କୁ ଗୁରୁଜନମାନେ ନ ଜାଣିବା ପାଇଁ ଉଚ୍ଚ କୁଚରେ କାଞ୍ଚଳା ପିନ୍ଧାଅ, ଓ ଗଣ୍ଡସ୍ଥଳରେ କସ୍ତୁରୀରେ ମକରୀ ଲେଖ । [୧]ଚୋଳି, କାଞ୍ଚୁଳା । [୨]ଶଶୀ-ଉର ଭୂଷଣ ମୃଗନାଭି, କସ୍ତୁରୀ ।

ଚନ୍ଦନଠାରୁ ଉତ୍କୃଷ୍ଟ ସୁବାସ ଶୀତଳ ଶରୀରକୁ ମାର୍ଜନା କରିବାକୁ ଚନ୍ଦନ ଗ୍ରହଣ କରୁ । ସେ ଦିନ ଶ୍ରାନ୍ତ ହରଣ କର ନିଦ୍ରା କରାଇ ସ୍ୱପ୍ନରେ ଶତ ଶତ ରଙ୍ଗ ଦେଖାଅ ।

କହୁଁ ରମାକୁ ବେଶ କରସାର କହୁଁ ଅଗୋ । ମନୋହରକର ଅଙ୍ଗ । ଅଗୋ ଗୋରୀ ମହାମହା ରସ ଭୋଜନ ଶେଷରେ ଲୋକ ଶୃଙ୍ଗାର ମୁଗ୍ଧ ହୁଏ ନାହିଁ କି ? ତୋର ରସ ଭୋଜ ପରେ ହେଉନ ଶୃଙ୍ଗାରପାଦ ।

ଶୀତରେ ଅହାର କରିବାକୁ ଯାହା କଷ୍ଟପଡ଼ ମଣୁଥିଲୁ, ତାହା ଏବେ ଦୂର ହେଲାଣି । ଅଳ୍ପ କିଛି ଲାଗୁ କର ନାହିଁ । ସେ ପବନ ବରଫରେ ପୋଡ଼ାପକାଉ ଥିଲା ଏବେ ସେ ମନ ମୋହୁଛାଣି, ଯେ ଚରୁଶୀତଳ୍ପା କରିବ କଷ୍ଟ । [୧]ମୁଣାଳିକାମ, ଦଣ୍ଡ ।

ଦୁଷ୍ଟାନ୍ତରମାନ ଗିରେ ରଖି । ଭଷି ତୋଷିଲେ ଯେ ପ୍ରାଣସଖୀ ।
ପଲକ ଅନ୍ତରେ ପଲଙ୍କ ଅଙ୍କରେ ନିଶଙ୍କନିଦ୍ରା ଆନନ୍ଦସୁଖୀ । ୭୯ ।

ସୁବାହୁଜେ ଯେନ ଯାର ପର । ଅଧିକଭୂଜ ଛେଦନ କର ।
ସେ ରାମ ବଳିଷ୍ଠଗନ୍ଧର୍ବର ପଦ ଭାବେ ବେଢ ଅର୍ଥେ ଖାରବର । ୮୦ ।



୭୯—ପ୍ରାଣସଖୀମାନେ ଦୃଷ୍ଟାନ୍ତମାନଙ୍କ କଥାରେ ତୋଷାଇ ସନ୍ତୁଷ୍ଟ କରାଇଲେ । ସେ ଆନନ୍ଦ ସୁ
ପଲକ ଭିତରେ ପଲଙ୍କଉପରେ ନିଃଶଙ୍କରେ ନିଦ୍ରାଗଲା ।

୮୦—ଯାହାର ପର (ଶତ୍ରୁ) ସୁବାହୁ ରାକ୍ଷସ ଓ ଅଧିକଭୂଜ (ରାବଣ) କୁ ଯେ ଛେଦନ କରିଥିଲେ, ଏବଂ
ବଳିଷ୍ଠବାଳୀର ଗର୍ବହର ଅଟନ୍ତି । ଏପରି ଯେ ରାମଚନ୍ଦ୍ର । ପୁଣି ସୁବାହୁଜେ (ଉତ୍ତମ କ୍ଷତ୍ରିୟମାନେ)
ଯାହାର ପର (ଶତ୍ରୁ) ହୋଇଥିଲେ । ସେମାନଙ୍କୁ ଓ ଅଧିକଭୂଜ (ସହସ୍ରାର୍ଜୁନକୁ) ଯେ ଛେଦନ
କରିଥିଲେ । ବଳିଷ୍ଠମାନଙ୍କର ଯେ ଗର୍ବହର ଅଟନ୍ତି ଏପରି ଯେ ପରଶୁରାମ, ଏହିପରି ଦୁଇ ଅର୍ଥରେ
ସେ ଦୁହିଙ୍କ ପାଦପଦ୍ମକୁ ଖାରବର ଉପେନ୍ଦ୍ରଭଞ୍ଜ ବନ୍ଦନା କଲେ ।

ସମାପ୍ତୋଽୟଂ ଗ୍ରନ୍ଥଃ ।।



Printed by H. K. Das, Chandrodaya Press, Cuttack